# ଜିତିନି କି ହାରିନି

### ଏକ ଆତ୍ମଲିପି


ଲେଖକ : ଭୂପେନ୍ ମହାପାତ୍ର

ପ୍ରକାଶକ : **ଶିକ୍ଷାସନ୍ଧାନ,** ଏନ୍.ଡ଼ି - ୭ ,ଭି.ଆଇ.ପି. ଏରିଆ,
ଆଇ.ଆର୍.ସି. ଭିଲେଜ, ଭୁବନେଶ୍ୱର, ପିନ୍ - ୭୫୧୦୧୫
ଦୂରଭାଷ : ୦୬୭୪-୨୫୫୬୧୦୯
sikshasandhan@gmail.com
www.sikshasandhan.org.in
ସହଯୋଗ ରୂପାନ୍ତର, ଭୁବନେଶ୍ୱର

ପ୍ରକାଶ କାଳ : ୨୦୧୮

ମୁଦ୍ରଣ : **ଶିକ୍ଷା ପ୍ରକାଶନୀ,** ଏନ୍.ଡ଼ି-୭ ,ଭି.ଆଇ.ପି. ଏରିଆ,
ଆଇ.ଆର୍.ସି. ଭିଲେଜ, ଭୁବନେଶ୍ୱର, ପିନ୍ - ୭୫୧୦୧୫

ଆଇ.ଏସ୍.ବିନ : ୯୭୮-୯୩-୮୦୯୬୮-୧୬-୨

ମୂଲ୍ୟ : ୨୦୦/-


---

# *Jitini ki harini*

### *Eka Atma Lipi*


Written by **Bhupen Mohapatra**

Publishd by **Sikhyasandhan,** ND-7, VIP Area,
IRC Village, Bhubaneswar, Pin-751015
Tel. : 0674-2556109, sikshasandhan@gmail.com
www.sikshasandhan.org.in
in collaboration with Rupantar, Bhubaneswar

First Published : 2018

Printed at **Siksha Prakashani,** ND-7, VIP, Area,
IRC Village, Bhubaneswar, Pin-751015

I.S.B.N. 978-93-80968-16-2

Price 200/-

# ମୁଖବନ୍ଧ

ଓଡ଼ିଆ ସାହିତ୍ୟରେ ଜୀବନୀ ବା ଆତ୍ମଜୀବନୀ ଏବକୁ ବହୁତ ବେଶି ଆଖିଦୃଶିଆ ହୋଇଗଲାଣି । ତାର ସୃଷ୍ଟି ଫକୀରମୋହନଙ୍କ ଠାରୁ । ସେଥିରେ ଯେଉ ସମୟ ଓ ସମାଜର ଚିତ୍ର ରହିଛି ତାର ବେଶ କିଛି ଅଂଶ ମଧ ତାଙ୍କ ଗଳ୍ପୋପନ୍ୟାସରେ ରହିଛି । ସେ ସବୁ ଏତେ ସ୍ୱଷ୍ଟ ଓ ଜୀବନ୍ତ ଯେ ତାକୁ ମଧ ଆଲୋଚକ ମାନେ ସତ୍ୟର ଖୁବ୍ ନୀକଟବର୍ତ୍ତୀ ବୋଲି କହିଥାନ୍ତି । ସାହିତ୍ୟରେ ଯୋଉ ସାମାଜିକ ବାସ୍ତବବାଦ କଥା କୁହାଯାଏ ସେ ସବୁ ଏଇ ଶ୍ରେଣୀର । ସତ୍ୟର ଜୀବନ୍ତ ଛବିକୁ ଟୋଳି ଧରିବାରେ ଭାଷା ଓ ଶବ୍ଦମାନେ କଲମ ମୁନରେ ତତ୍ପର ହୋଇଉଠନ୍ତି । ସେ ସାହିତ୍ୟ ସେତେବେଳେ କାଳଜୟୀ ହୋଇଉଠେ । ସେଥିରେ ମଣିଷ ଅତୀତକୁ ଦେଖି ଭବିଷ୍ୟତ ସ୍ୱପ୍ନ ଦେଖେ ଏବଂ ଆଗକୁ ବଢିବାରେ ରାସ୍ତା ତିଆରି କରେ । ଏଇଥିରୁ ହିଁ ମଣିଷ ଜାତିର ଇତିହାସ ତିଆରି ହୁଏ ।

ମୋର ଏ ଜୀବନୀ ଲେଖିବା ପଛରେ ସେମିତି କିଛି ଉଦ୍ଦେଶ୍ୟ ଅବଶ୍ୟ ନ ଥିଲା । ଥିଲା ଗୋଟାଏ ନିଛକ ଲେଖକୀୟ ଭାବପ୍ରବଣତା ସହିତ ସମୟର ଆବଶ୍ୟକତା । ମୁଁ ମୋ ଗଳ୍ପ ଓ ଉପନ୍ୟାସ ମାନଙ୍କରେ ଯେଉ ସମୟ ଓ ସମାଜର ଚିତ୍ର ଆଙ୍କିଚି ତାକୁ ଯଦି ଧାରାବହିକ ଭାବରେ ସଜେଇ ରଖାଯାଏ ତାହା ପାଠକକୁ ଯେଉଁ ସନ୍ଦେଶ ଦେବ ମୋ ଆତ୍ମକଥାରେ ମଧ ଠିକ ସେହି ସତ୍ୟ ଓ ତଥ୍ୟ ପାଠକମାନେ ପାଇ ପାରିବେ । ପାର୍ଥକ୍ୟ କେବଳ ଏତିକି ଯେ ସାହିତ୍ୟରେ(ଗଳ୍ପୋପନ୍ୟାସ) indirect speech ଥିଲାବେଳେ ଆତ୍ମକଥାରେ direct speech ରହିଛି । ଗଳ୍ପୋପନ୍ୟାସରେ ସତ୍ୟର ଛାଇଟିଏ ଦେଖିବାକୁ ମିଳୁଥିବା ବେଳେ ଆତ୍ମକଥାରେ ସତ୍ୟକୁ ସାମନା ସାମନି ଭେଟି ହେବ । ସତ୍ୟର ପରିପ୍ରକାଶରେ ମୁଁ କୁଣ୍ଠାବୋଧ କରିନାହିଁ ।

ମୋର ଆଦ୍ୟ ଜୀବନର ଦାରିଦ୍ର୍ୟ ଓ ଆର୍ଥିକ ଦୂରାବସ୍ଥାଠାରୁ ଆରମ୍ଭକରି ସେ ସମୟର ଅସହାୟତାକୁ ମୁକ୍ତ କଣ୍ଠରେ ଖୋଲିଦେଇଛି । ଆଦ୍ୟ ଯୌବନରେ ପାଦେ ପାଦେ ଆଗକୁ ବଢିବାର ସଂଘର୍ଷ ଓ ଯନ୍ତ୍ରଣାରୁ ଉତ୍ପନ୍ନ ବିଷକୁ ମୁଁ ନୀଳକଣ୍ଠ ପରି ପିଇଯାଇଛି । ସବୁବେଳେ ଲଢ଼େଇ ମଇଦାନରେ ମୁଁ ଏକା । ଭୟ ନାହିଁ କି ଭାଙ୍ଗି ପଡ଼ିନାହିଁ । ହାରିବାର ଦୁଃଖ ନାହିଁ କି ଜିତିବାର ଆନନ୍ଦ ମଧ ନାହିଁ । କିମ୍ୱା ଏମିତି ମଧ କହିହେବ ଯେ କେବେ ହାରିନାହି

କି ଜିତି ନାହିଁ । କିନ୍ତୁ ସବୁ ସଂଘର୍ଷ ମଧ୍ୟରେ ଆଗକୁ ବଢ଼ିଛି ସିନା ପଛକୁ ଫେରିଚାହିଁ ନାହିଁ । ତାହାହିଁ ମୋର ସବୁଠାରୁ ବେଶି ଆତ୍ମସନ୍ତୋଷ । ସରକାରୀ ଚାକିରୀରେ ଯେତିକି ସ୍ୱାଧୀନତା ପାଇଛି ସେତିକି ମଧ୍ୟ ଅନ୍ୟାୟ ଅତ୍ୟାଚାରରେ ଜର୍ଜରିତ ହୋଇଚି ଓ ତାକୁ ମୁକାବିଲା କରିଛି ସାହାସର ସହିତ । ମୋ ଆଗରେ ବଡ଼ହେଇ ମଥାଟେକି ଯେଉମାନେ ଛିଡ଼ା ହେଇଛନ୍ତି ସେମାନଙ୍କୁ ଫିତା ପକେଇ ମାପିଛି, ତଉଲିଛି ଆଉ ଦେଖାଇଦେଇଛି ସେମାନଙ୍କ ପ୍ରକୃତ ଉଚ୍ଚତା ଆଉ ଗଭୀରତା କେତେ ।

ଏ ସମସ୍ତ କାମରେ ମୋତେ ସାହାଯ୍ୟ କରିଛି ମୋର ସାହିତ୍ୟ । ଚିର ସହଚର ମୋର ଏକାନ୍ତ ବନ୍ଧୁହୋଇ ମୋ ସାଥୀରେ ଥିଲା, ଅଛି ଓ ଶେଷ ପର୍ଯ୍ୟନ୍ତ ରହିବ ।

ମୋ ନିଜର ଏହି କାହାଣୀ ଲେଖିଲା ବେଳେ ମୋତେ ଯଥେଷ୍ଟ ସାହାଯ୍ୟ କରିଛି ଲଲାଟେନ୍ଦୁ । ଯଦିଓ ଆମ ପରିବାରରେ ଆମ ପୂର୍ବପୁରୁଷଙ୍କ ବଂଶାବଳୀର କିଛି ଅଂଶ ରହିଛି ଓ ଆଦ୍ୟ ପୂରୁଷଙ୍କ ସମ୍ବନ୍ଧରେ ବହୁ କାହାଣୀ ଏବେ ମଧ୍ୟ ପରିବାର ସଦସ୍ୟଙ୍କ ମୁଖରେ ପ୍ରଚଳିତ, କିନ୍ତୁ ସେସବୁ ଜନଶ୍ରୁତି ସହିତ ଇତିହାସର ସଂପର୍କ କଅଣ ଓ ତାହାର କେତେ ନୀକଟବର୍ତ୍ତୀ/ଦୂରବର୍ତ୍ତୀ, ସେ ସମ୍ବନ୍ଧରେ ଇତିହାସ ପୃଷ୍ଠାରୁ କିଛି ତଥ୍ୟ ବାହାର କରି ସେ ମୋ ସାମନାରେ ଥୋଇଦେଇଛି । ତାଛଡ଼ା ମୋ ସ୍ମୃତିବିଭ୍ରମ ହୋଇଥିବା କେତେକ ପାରିବାରିକ ଘଟଣାବଳିକୁ ସେ ମନେ ପକାଇଦେଇଥିବାରୁ ମୁଁ ସେସବୁକୁ ଏଥିରେ ସ୍ଥାନିତ କରିପାରିଛି । ସର୍ବୋପରି ପାଣ୍ଡୁଲିପିର ପ୍ରକାଶନର ଦାଇତ୍ୱ 'ଶିକ୍ଷାସନ୍ଧାନ'ନେଇଥିବାରୁ ମୁଁ ଏହାର ଅଧ୍ୟକ୍ଷ ପ୍ରଫେସର ଯତୀନ୍ଦ୍ର କୁମାର ନାୟକଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ଜନ୍ମାଷ୍ଟମୀ
୨.୯.୨୦୧୮

ଭୂପେନ୍ ମହାପାତ୍ର

# ସୂଚୀ

# ବଂଶଲତା ଓ ପୂର୍ବପୁରୁଷ

ମୋ ନିଜ ବିଷୟରେ କିଛି ଲେଖିବାକୁ ହେଲେ ମୋର ପୂର୍ବ ପୁରୁଷଙ୍କ ସମ୍ବନ୍ଧରେ କିଛି କହିବା ଆବଶ୍ୟକ । ସେମାନଙ୍କର ସଂପୂର୍ଣ୍ଣ ବଂଶାବଳୀ ଆଉ ଆମ ପରିବାରରେ ନାହିଁ । ସମୟକ୍ରମେ ସେ ସବୁ ହଜିଯାଇଛି । ଜଳେଶ୍ୱର ଥାନା ଅନ୍ତର୍ଗତ ଅଲାଲ୍‌ପୁର, ଆରୁହା ଓ କୋଟ୍‌ସାହି ଗାଁର ଚୌଧୁରୀ ପରିବାରର ଆଦ୍ୟ ପୁରୁଷ ଚନ୍ଦ୍ରଶେଖର ଦାସ ଖୋର୍ଦ୍ଧାରୁ ଆସି ଏହି ବଂଶର ଜମିଦାରୀ ପ୍ରତିଷ୍ଠା କରିଥିଲେ । ସେହି ଜମିଦାରୀ ସତ୍ୱ ମୋଗଲ ସମୟରେ ମିଳିଥିଲା ବୋଲି ଆମ ପରିବାର ଲୋକେ କହନ୍ତି । ଜମିଦାରୀ ପାଇଲା ପରେ ସେମାନଙ୍କ ସାଙ୍ଗିଆ ଦାସ ମହାପାତ୍ର ହେଲା । ଜମିଦାରୀ ଖଜଣା ଆଦାୟ ବାବଦ ସେମାନଙ୍କୁ ଏହି ତିନୋଟି ଗାଁରେ ନିଷ୍କର ଜମିପ୍ରାପ୍ତ ହୋଇଥିଲା, ଯାହାକୁ ତାଙ୍କ ବଂଶଧରମାନେ ଆଜିପର୍ଯ୍ୟନ୍ତ ଭୋଗକରି ଆସୁଛନ୍ତି । ଯଦିଓ ବହୁଗୁଡ଼ିଏ ଜମିକୁ ସେମାନେ ବିକ୍ରି କରିସାରିଛନ୍ତି ଓ ଆଜି ଆଉ ଜମିଦାରୀ ନାହିଁ, ଉତ୍ତର ବାଲେଶ୍ୱରରେ ଏହି ପରିବାର ଏକ ଅଭିଜାତ କରଣ ପରିବାରର ମାନ୍ୟତା ଆଜିପର୍ଯ୍ୟନ୍ତ ପାଇ ଆସୁଛି, ଯାହାଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରିବାକୁ ଏ ଅଂଚଳର ଅନ୍ୟାନ୍ୟ ଅଭିଜାତ କରଣ ପରିବାର ଆଗ୍ରହ ପ୍ରକାଶ କରନ୍ତି । ଏହି ପରିବାରର କୌଳିକ ଗୋତ୍ର ଶାଙ୍ଖ୍ୟାୟନ ଯାହାର ବିଶେଷତ୍ୱ ହେଲା ସଂଜବେଳେ ଶଙ୍ଖ ବାଜିବ ନାହି । କେବଳ ପୂଜାଦି ଉତ୍ସବ ମାନଙ୍କରେ ଶଙ୍ଖ ବାଜିଥାଏ । ମୁଁ ମୋର ବାବାଙ୍କ ଠାରୁ ଶୁଣିଛି ତାଙ୍କ ପିଲାଦିନେ ଏହି ତିନୋଟି ଗ୍ରାମ ମଧ୍ୟରେ ଛୁତିକା ଓ ଅସୌଚ ଆଦି ରୀତି ପାଳନ କରାଯାଉଥିଲା, ଯଦିଓ ଆଜି ନିଜ ଗ୍ରାମର ସଂପର୍କୀୟ ମାନଙ୍କ ମଧ୍ୟରେ ମଧ୍ୟ ଏସବୁ ପାଳନ କରିବାକୁ ଆଉ ବ୍ୟାକୁଳତା ବା ଆନ୍ତରିକତା ନାହିଁ । କିନ୍ତୁ ଏକା ପରିବାର ଓ ସମାନ ଗୋତ୍ର ହୋଇଥିବାରୁ ଏହି ତିନୋଟି ଗ୍ରାମର ଚୌଧୁରୀ ପରିବାର ମଧ୍ୟରେ ବିବାହ ଆଜି ପର୍ଯ୍ୟନ୍ତ ନିଷେଧ । ଯଦିଓ ଏହି ତିନୋଟି ଗ୍ରାମରେ ଅନ୍ୟାନ୍ୟ ଜାତିର ଲୋକ ରୁହନ୍ତି, କିନ୍ତୁ ଚୌଧୁରୀ ପରିବାର ବ୍ୟତୀତ ଅନ୍ୟ କରଣ ପରିବାର କ୍ୱଚିତ ଦୃଷ୍ଟିଗୋଚର ହୁଅନ୍ତି । ବଂଶର ଜ୍ୟେଷ୍ଠ ବା ମୁଖ୍ୟ ସଦସ୍ୟଙ୍କ ବଂଶଧରମାନେ ଅଲାଲ୍‌ପୁରରେ ରୁହନ୍ତି । ସେମାନଙ୍କ ଆର୍ଥିକ ସ୍ୱଚ୍ଛଳତା ଅନ୍ୟ ଦୁଇଗ୍ରାମର ପରିବାର ଅପେକ୍ଷା ଅଧିକ । ପୂର୍ବତନ ପ୍ରଶାସକ ହେରମ୍ବ ନାରାୟଣ ଦାସ ମହାପାତ୍ର ଓ ଏସ୍.ସି.ବି. ମେଡ଼ିକାଲ କଲେଜର ପୂର୍ବତନ ଅଧ୍ୟକ୍ଷ ଗିରିଜା ଶଙ୍କର ଦାସ ମହାପାତ୍ର ଏହି ଗ୍ରାମର ।

ଚନ୍ଦ୍ରଶେଖରଙ୍କ ପରବର୍ତ୍ତୀ ପିଢ଼ିର ବଂଶଧରମାନଙ୍କ ବିଷୟରେ ବିଶେଷ କିଛି ଜଣାପଡ଼େ ନାହିଁ । ସେ କେବେ ଓ କେଉଁ ଶାସକଙ୍କ ସମୟରେ ଜମିଦାରି ପାଇଥିଲେ ତାହାର ନଥିପତ୍ର ଏବେ ଆଉ ନାହିଁ । ଏ ସମ୍ବନ୍ଧରେ ଗିରିଜା ଶଙ୍କର ଦାସ ମହାପାତ୍ର ତାଙ୍କ ଆତ୍ମଜୀବନୀ Footprint ରେ ଯାହା ଲେଖିଛନ୍ତି, ସେଥିରୁ ମନେହୁଏ ଯେ, ଚନ୍ଦ୍ରଶେଖର ହିନ୍ଦୁ ରାଜତ୍ୱ ସମୟରୁ ଏକ ପଦାତିକ ବାହିନୀର ନେତୃତ୍ୱ ନେଇ ଗଜପତି ରାଜାଙ୍କ ଆଦେଶରେ ଖୋର୍ଦ୍ଧାରୁ ତମ୍ଲୁକ୍ ପର୍ଯ୍ୟନ୍ତ ଆସି ସେଠାରେ ଅବସ୍ଥାନ କରୁଥିଲେ । କିନ୍ତୁ ଓଡ଼ିଶା ଶତ୍ରୁମାନଙ୍କ ଦ୍ୱାରା ଆକ୍ରମଣ ହେବାରୁ ତାଙ୍କର ପରବର୍ତ୍ତୀ ପିଢ଼ି ପ୍ରଥମେ କାନ୍ଥୀ ଓ ପରେ ଗୋବରଘଟା ଗ୍ରାମକୁ ଆସି, ତା' ପରେ ପରେ ଆରୁହା ଓ କୋଟସାହି ଗ୍ରାମକୁ ପଳାଇ ଆସିଥିଲେ । ସବାଶେଷରେ ପରିବାରର ମୁଖ୍ୟଅଂଶ ଅଲାଲ୍‌ପୁର ଯାଇ ସେଠାରେ ବାସ କଲେ । ଏତକ ତଥ୍ୟ ଗିରିଜା ଶଙ୍କର ତାଙ୍କ ପରିବାରର ସୂତ୍ରରୁ ପାଇଥିଲେ ବୋଲି ଲେଖିଛନ୍ତି ।

ଏହି ତଥ୍ୟ ସଂପୂର୍ଣ୍ଣ ଠିକ୍ ବୋଲି ମନେହୁଏ ନାହିଁ । ଆମେ ଯଦି ଇତିହାସର ପାରିପାର୍ଶ୍ୱିକ ଘଟଣାବଳୀ ଅନୁଧ୍ୟାନ କରିବା ତେବେ ଚନ୍ଦ୍ରଶେଖରଙ୍କ ଇତିହାସ ଏତେ ପୁରାତନ ବୋଲି ଦାବି କରାଯାଇ ନପାରେ । ମନେହୁଏ ଗିରିଜା ଶଙ୍କର ଯାହା ଶୁଣିଥିଲେ, ହୁଏତ ତାକୁ ଠିକ୍ ଭାବରେ ମନେ ରଖିନାହାନ୍ତି ବା ଅନୁଶୀଳନ କରିନାହାନ୍ତି । ତେବେ ଏ ସମ୍ବନ୍ଧରେ ମୁଁ ମୋର ପରିବାର ସୂତ୍ରରୁ ପିଲାଦିନେ ଯାହା ଶୁଣିଛି, ତାହା ଅଧିକ ନିର୍ଭରଯୋଗ୍ୟ ବୋଲି ମନେହୁଏ । ଆମ ପରିବାରର ଇତିହାସ ସମ୍ବନ୍ଧରେ ଅନେକ କଥା ପରିବାରର ବୟୋଜେଷ୍ଠମାନେ ପୁରୁଷ ପୁରୁଷ ଧରି ସ୍ମୃତିରେ ସାଇତି ରଖିଥିଲେ ଯାହା ପରବର୍ତ୍ତୀ ପିଢ଼ି ଶୁଣୁଥିଲେ ।

ଚନ୍ଦ୍ରଶେଖର ତାଙ୍କ ପରିବାର ସହିତ ପ୍ରାୟ ସପ୍ତଦଶ ଶତାବ୍ଦୀର ଶେଷଭାଗ ବେଳକୁ ଖୋର୍ଦ୍ଧାରୁ ଜଳେଶ୍ୱର ଆସି ସହର ନିକଟସ୍ଥ କୌଣସି ଗାଁରେ ରହି ଚଟଶାଳୀରେ ଶିକ୍ଷକତା କରୁଥାନ୍ତି । ଜଣେ ବିଦ୍ୱାନ ଓ ମିଷ୍ଟଭାଷୀ ବ୍ୟକ୍ତିରୂପେ ତାଙ୍କର ସେ ଅଂଚଳରେ ବେଶ୍ ଖ୍ୟାତି ଓ ସମ୍ମାନ ରହିଥିଲା । ତାଙ୍କ ସ୍ତ୍ରୀ ଜଣେ କୁଶଳୀ କାରିଗର ଥିଲେ ଯିଏ ନିଜ ହାତରେ ବହୁ ସୁନ୍ଦର ଖେଳନା ଓ ଗୃହସଜ୍ଜା ଉପକରଣ ତିଆରି କରିପାରୁଥିଲେ । ଏକଦା ବଙ୍ଗଳା ଓ ଓଡ଼ିଶାର ନବାବ୍ ଜଳେଶ୍ୱର ଗସ୍ତରେ ଆସି ମହମ୍ମଦପାଟଣା ଗ୍ରାମରେ କ୍ୟାମ୍ପ୍ ଦରବାର କରି କିଛି ଯୋଗ୍ୟ ବ୍ୟକ୍ତିଙ୍କ ସନ୍ଧାନରେ ଥିଲେ, ଯାହାଙ୍କୁ ସେ ତାଙ୍କ ପ୍ରଶାସନରେ ନିଯୁକ୍ତି ଦେବାକୁ ଚାହୁଁଥିଲେ । ତେଣୁ ନବାବ୍‌ଙ୍କୁ ଏହି ସୁଯୋଗରେ ସାକ୍ଷାତ କରିବାକୁ ଚନ୍ଦ୍ରଶେଖରଙ୍କ ସ୍ତ୍ରୀ ତାଙ୍କୁ ପରାମର୍ଶ ଦେଲେ । ନବାବ୍‌ଙ୍କୁ ସାକ୍ଷାତ କରି ଭେଟି ଦେବାପାଇଁ ସେ ତାଙ୍କ ହାତରେ ତିଆରି ସୋଲ ଓ ତେନ୍ତୁଳି ପତ୍ରର ଏକ ବିଶାଳ ଢ଼ାଲ ଓ ତରବାରୀ

ଚନ୍ଦ୍ରଶେଖରଙ୍କ ହାତରେ ଦେଲେ । ତାକୁ ନେଇ ଚନ୍ଦ୍ରଶେଖର ଦରବାରରେ ପହଂଚି ବହୁ ସମୟ ଅପେକ୍ଷା କଲାପରେ ନବାବ୍‌ଙ୍କୁ ସାକ୍ଷାତ ଅନୁମତି ପାଇଲେ ଓ ତାଙ୍କୁ ଉକ୍ତ ଢାଲ ଓ ତରବାରୀ ଭେଟି ଦେଇଥିଲେ । ଭେଟି ପାଇ ସାରିବା ପରେ ନବାବ୍ ତାଙ୍କୁ ଦୂରରେ ଥିବା ଉଦ୍ଦିଷ୍ଟ ଆସନରେ ବସିବାକୁ ଇଙ୍ଗିତ ଦେଲେ । ଚନ୍ଦ୍ରଶେଖର ବସି ରହିଲେ, କିନ୍ତୁ ନବାବ୍ ତାଙ୍କ ସହିତ କୌଣସି କଥା ହେଲେନାହିଁ । ସେହି ସମୟରେ ସେ ଅନ୍ୟମାନଙ୍କୁ ଭେଟୁଥାନ୍ତି ଓ ସେମାନଙ୍କ ସହିତ ଦୁଇଚାରିପଦ କଥା ହୋଇ ତାଙ୍କ ତରଫରୁ କିଛି ଉପହାର ଦେଇ ବିଦା କରୁଥାନ୍ତି । ଏହାଦେଖି ଚନ୍ଦ୍ରଶେଖର ଭାବିଲେ ଯେ ସମ୍ଭବତଃ ସେ ଭେଟି ଦେଇଥିବା ଉପହାର ନବାବ୍‌ଙ୍କ ପସନ୍ଦ ହେଲାନାହିଁ, ନଚେତ୍ ସେ ତାଙ୍କ ସହିତ ଏ ପର୍ଯ୍ୟନ୍ତ କଥା କାହିଁକି ହେଉନାହାନ୍ତି । ତେଣୁ ନିଜକୁ ଅପମାନିତ ମନେକରି ସେ ସମସ୍ତଙ୍କ ଅଜ୍ଞାତରେ ନବାବ୍‌ଙ୍କ ଠାରୁ ଆଉ ଅନୁମତି ନନେଇ ଘରକୁ ଫେରି ଆସିଲେ ଓ ତାଙ୍କ ସ୍ତ୍ରୀଙ୍କ ଉପରେ ଭୀଷଣ ବିରକ୍ତ ହେଲେ ।

ଚନ୍ଦ୍ରଶେଖରଙ୍କୁ ଗାଁ ଲୋକେ ଚନ୍ଦ୍ରଶିଖ୍ ବୋଲି କହୁଥାନ୍ତି । ଏହି ଘଟଣାର ପରଦିନ ନବାବ୍‌ଙ୍କ ଦ୍ୱାରା ପ୍ରେରିତ ଜଣେ ବ୍ୟକ୍ତି ତାଙ୍କ ଗ୍ରାମକୁ ଆସି ଚନ୍ଦ୍ରଶେଖରଙ୍କୁ ଖୋଜିଥିଲେ । କିନ୍ତୁ ଗାଁର ଜଣେ ଅଶିକ୍ଷିତ ଓ ମୂର୍ଖବ୍ୟକ୍ତି ଚନ୍ଦ୍ରଶେଖର ବୋଲି ଗାଁରେ କେହି ନାହାନ୍ତି ବୋଲି କହିବାରୁ ସେ ଫେରିଯାଇଥିଲେ । କିନ୍ତୁ ଚନ୍ଦ୍ରଶିଖ୍ ଯେ ଚନ୍ଦ୍ରଶେଖର ତାହା ନବାବ୍ କିମ୍ୱା ତାଙ୍କ ଲୋକ ବୁଝିପାରି ତା' ପରଦିନ ସେହି ବ୍ୟକ୍ତିଙ୍କୁ ପୁଣି ଚନ୍ଦ୍ରଶେଖରଙ୍କ ନିକଟକୁ ପଠାଇ ତାଙ୍କୁ ଡକାଇ ଥିଲେ । ଏଥର ନବାବ ଚନ୍ଦ୍ରଶେଖରଙ୍କୁ ଭେଟି ତାଙ୍କ ସହିତ କଥାବାର୍ତ୍ତା ହେବାପରେ ତାଙ୍କ ଯୋଗ୍ୟତା ସମ୍ବନ୍ଧରେ ସନ୍ତୁଷ୍ଟ ହୋଇ ତାଙ୍କୁ ଜଳେଶ୍ୱର ପର୍ଗଣାର ପୂର୍ବପଟରେ ଥିବା କେତେକ ମାହାଲ୍ ଓ ତାଲୁକର ଚୌଧୁରୀ ପଦରେ ନିଯୁକ୍ତ କରିଥିଲେ । ସେସବୁ ଅଂଚଳରେ ଖଜଣା ଆଦାୟ କରିବା ସଂଗେସଂଗେ ସେଠାକାର ଶାନ୍ତିଶୃଙ୍ଖଳା ରକ୍ଷା କରିବା ଦାୟିତ୍ୱ ମଧ୍ୟ ତାଙ୍କର ଥିଲା । ଏଥିପାଇଁ ତାଙ୍କ ଅଧୀନରେ କିଛି ପାଇକ ପରିବାର ତାଙ୍କ ଠାରୁ ଜମି ଜାଗିର ନେଇ ରହିଥିଲେ । ଏହି ଜମିଦାରି କାର୍ଯ୍ୟ ବାବଦକୁ ଚନ୍ଦ୍ରଶେଖରଙ୍କୁ କୋଟସାହି ଓ ଆରୁହା ଗ୍ରାମର ବହୁ ନଙ୍କର ବା ନିଷ୍କର ଜମି ମିଳିଥିଲା । କୁହାମଧ୍ୟ ଯାଉଥିଲା ଯେ ଜଳେଶ୍ୱର ପର୍ଗଣା ସହିତ ତାଙ୍କୁ ହିଜିଳି(କାନ୍ଥି) ଓ ତାମ୍ରଲିପ୍ତି ଅଂଚଳର କିଛି ତାଲୁକରେ ମଧ୍ୟ ଜମିଦାରୀ ସତ୍ତ୍ୱ ମିଳିଥିଲା ଓ ସେଠାରେ କିଛି ନିଷ୍କର ଜମି ମିଳିଥିଲା । ସେ ସମସ୍ତ ଜମିଦାରିକୁ ସେ ନିଜର ପରିବାର ସଦସ୍ୟ ଓ ଗୁମାସ୍ତାଙ୍କ ଦ୍ୱାରା ପରିଚାଳନା କରୁଥିଲେ । କିନ୍ତୁ କୋଟସାହି ହିଁ ଥିଲା ତାଙ୍କର ମୁଖ୍ୟାଳୟ, ଯେଉଁଠାରେ ସେ ନିଜର ଏକ ବଡ଼ ବାସଗୃହ ନିର୍ମାଣ କରିଥିଲେ । ଚନ୍ଦ୍ରଶେଖରଙ୍କ ପରେ ତାଙ୍କ ପରିବାର କୋଟସାହି ଓ ଆରୁହା ଗ୍ରାମରୁ ଏହି ଜମିଦାରୀ ପରିଚାଳନା କରୁଥାନ୍ତି ।

ଯଦିଓ ସେମାନଙ୍କ ପରିବାର ସ୍ୱତନ୍ତ୍ର ହୋଇସାରିଥିଲା, କିନ୍ତୁ ଜମିଦାରିକୁ ସେମାନେ ଯୌଥ ପରିବାର ଭଳି ଚଳାଉଥାନ୍ତି । ମୋଗଲ ମାନଙ୍କ ସମୟରେ ଆମ ଜମିଦାରିର ମୁଖ୍ୟାଳୟ କୋଟସାହି ଥିବାରୁ ତାହାକୁ କୋଟସାହିଗଡ଼ ବୋଲି କୁହାଯାଉଥିଲା । ମୁଁ ପିଲାଦିନେ ମଧ୍ୟ ଆମ ଗାଁ'କୁ କେହିକେହି କୋଟସାହିଗଡ଼ କହୁଥିବା ଶୁଣିଛି ।

ଚନ୍ଦ୍ରଶେଖରଙ୍କୁ କେଉଁ ନବାବ ଏହି ଜମିଦାରି କେବେ ଦେଇଥିଲେ ତାହା କହିବା ସହଜ ନୁହେଁ । କାରଣ ଜମିଦାରି ନିଲାମ ହେବା ପରେ ପରେ କାଳକ୍ରମେ ସମସ୍ତ Title Deed ବା ସତ୍ତ୍ୱ ଦଲିଲ୍ ହଜିଯାଇଛି । କିନ୍ତୁ ଏ ସମୟର ଇତିହାସକୁ ଯଦି ଦେଖାଯାଏ, ତେବେ ଦେଖାଯିବ ଯେ ସପ୍ତଦଶ ଶତାବ୍ଦୀର ଶେଷଭାଗ ଓ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗ ମୋଗଲ ଓଡ଼ିଶା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ସମୟ ଥିଲା । ଏହି ସମୟରେ ବଙ୍ଗଳା ଓ ଓଡ଼ିଶା ସୁବାରେ ମୁର୍ସିଦ୍ କୁଲି ଖାଁ ବୋଲି ଜଣେ ଦେବାନ୍ ନିଯୁକ୍ତ ହୋଇଥିଲେ ଯିଏ କି ଆଉରଙ୍ଗଜେବ୍‌ଙ୍କ ବହୁ ବିଶ୍ୱସ୍ତ କର୍ମଚାରୀ ଥିଲେ । ତାଙ୍କ କର୍ମ ପ୍ରବଣତା ଓ ସଚ୍ଚୋଟ-ପଣିଆ ପାଇଁ ସେ ବଙ୍ଗଳାର ନବାବ୍ ଆଜିମ୍ ଉନ୍ ଶାନ୍‌ଙ୍କ ଅପେକ୍ଷା ଆଉରଙ୍ଗଜେବ୍‌ଙ୍କ ଅଧିକ ନିକଟତର ହୋଇପାରିଥିଲେ । ଆଜିମ୍ ଉନ୍ ଶାନ୍, ଆଉରଙ୍ଗଜେବ୍‌ଙ୍କ ନାତି ହୋଇଥିଲେ ମଧ୍ୟ ସେ ତାଙ୍କୁ ସଂପୂର୍ଣ୍ଣ ବିଶ୍ୱାସ କରୁ ନଥିଲେ । ସେଥିପାଇଁ ମୁର୍ସିଦ୍ କୁଲିଙ୍କୁ ଦେବାନ୍ ନିଯୁକ୍ତ କରି ରାଜସ୍ୱ ଆଦାୟ କ୍ଷମତା ତାଙ୍କୁ ଦେଇଥିଲେ । ୧୭୦୮ବେଳକୁ ଆଜିମ୍ ଉନ୍ ଶାନ୍ ବଙ୍ଗଳା ସୁବା ଛାଡ଼ିବା ପରେ ମୁର୍ସିଦ୍‌ଙ୍କୁ ବଙ୍ଗଳା ଓ ଓଡ଼ିଶା ଉଭୟ ସୁବାର ସୁବେଦାର ଓ ଦେବାନ୍ ଏହି ଦୁଇ ପଦରେ ନିଯୁକ୍ତ କରାଯାଇଥିଲା । ଏହି ଦୁଇ ପଦରେ ନିଯୁକ୍ତି ପାଇବାପରେ ଓଡ଼ିଶା ଓ ବଙ୍ଗଳାରେ କିପରି ଅଧିକ ରାଜସ୍ୱ ଆଦାୟ ହୋଇପାରିବ ସେ ଦିଗରେ ସେ କେତେକ ଉଲ୍ଲେଖନୀୟ ପଦକ୍ଷେପ ନେଇଥିଲେ । ଏଥିପାଇଁ ସେ ଜଳେଶ୍ୱର, ହିଜିଲି ଓ ତାମ୍ରଲିପ୍ତି ଆଦି ଅଂଚଳକୁ ଅଧିକ ପର୍ଗଣା ଓ ମାହଲରେ ବିଭକ୍ତ କରି, ସେ ସବୁ ଅଂଚଳରେ ନୂତନ ଜମିଦାର ନିଯୁକ୍ତ କରିଥିଲେ । ଏହି ଜମିଦାର ନିଯୁକ୍ତିରେ ସ୍ଥାନୀୟ ଲୋକଙ୍କୁ ଅଗ୍ରାଧିକାର ଦିଆଯାଉଥିଲା । ଏପରି ପଦକ୍ଷେପର ଉଦ୍ଦେଶ୍ୟଥିଲା, ଏ ଅଂଚଳର ଅଧିକ ଅମଳକ୍ଷମ ଜମି ଯାହା ଏପର୍ଯ୍ୟନ୍ତ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା, ସେଗୁଡ଼ିକ ଚଷୋପଯୋଗୀ କରି ଅଧିକ ଉତ୍ପାଦନ ବଢ଼ାଇବା । ଅଧିକ ଉତ୍ପାଦନ ହେଲେ ହିଁ ରାଜସ୍ୱ ବୃଦ୍ଧି ପାଇବ । ଏ ପର୍ଯ୍ୟନ୍ତ ଏ ଅଂଚଳରେ ଅର୍ଥାତ୍ ଜଳେଶ୍ୱର, ଭୋଗରାଇ, ଓ ବାଲିଆପାଳ ଅଂଚଳରେ ଯେଉଁ ନାମଜାଦା ଜମିଦାର ମାନେ ଥିଲେ, ସେମାନେ ହେଲେ ଲକ୍ଷ୍ମଣନାଥ ଓ ଦେହୁରଦାର ରାୟ ମହାଶୟ, ଶାହାବନ୍ଦର ଓ ଜାମକୁଣ୍ଡାର ଭୂୟାଁ ଜମିଦାର । ଆକବରଙ୍କ ସମୟରେ ଓଡ଼ିଶାରେ ଫାର୍ସୀ ଭାଷାରେ ଜ୍ଞାନଥିବା ବ୍ୟକ୍ତି ନଥିବାରୁ ଜମିଦାରୀ କାର୍ଯ୍ୟ ଠିକ୍ ଭାବରେ ପରିଚାଳନା କରିବାପାଇଁ ଏମାନଙ୍କୁ ବଙ୍ଗଳା

ଓ ରାଜସ୍ଥାନରୁ ଅଣାଯାଇଥିଲା । କିନ୍ତୁ ଅଷ୍ଟାଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ଫାର୍ଶି ଲେଖି ପଢ଼ି ପାରୁଥିବା ବ୍ୟକ୍ତିଙ୍କ ସଂଖ୍ୟା ଅନେକ ବଢ଼ିଯାଇଥିଲା । ତେଣୁ ସ୍ଥାନୀୟ ଯୋଗ୍ୟ ବ୍ୟକ୍ତିଙ୍କୁ ନିଯୁକ୍ତି ଦେଲେ, ସେମାନେ ଅଧିକ ଚଷୋପଯୋଗୀ ଜମିକୁ ଚଷ କରିପାରିବେ ବୋଲି ବିଶ୍ୱାସ କରି ମୁର୍ସିଦ୍‌କୁଲି ଉଭୟ ବଙ୍ଗଳା ଓ ଓଡ଼ିଶାରେ ଏହିପରି ଅନେକ କ୍ଷୁଦ୍ର ଜମିଦାରି ସୃଷ୍ଟିକରି ସ୍ଥାନୀୟ ଲୋକଙ୍କୁ ଚୌଧୁରୀ ଓ କାନୁନ୍‌ଗୋ ଆଦି ପଦରେ ନିଯୁକ୍ତି ଦେଉଥିଲେ । ସେ ସମୟରେ ଉତ୍ତର ବାଲେଶ୍ୱରରେ ଆମ ପରିବାର ବ୍ୟତୀତ ଭୋଗରାଇର କୁଶୁଡ଼ା, କାନ୍ଥୀର ପଂଚେଟ୍,ବସ୍ତା ଅଂଚଳର ଧିତ୍‌ପୁରା ଓ ବାଲିଆପାଳର ବାଲିକୁଟି ଜମିଦାରୀ ମଧ୍ୟ ସୃଷ୍ଟି କରାଯାଇ ସେ ସବୁ ଜମିଦାରୀରେ ଓଡ଼ିଆମାନଙ୍କୁ ନିଯୁକ୍ତି ଦିଆଯାଇଥିଲା । ସେମାନଙ୍କ ନିଜର ପଦବୀ ପୂର୍ବରୁ ଯାହା ଥାଉ ନା କାହିଁକି ଚୌଧୁରୀ ପଦରେ ନିଯୁକ୍ତ ହେବା ପରେ ସେମାନଙ୍କ ସାଙ୍ଗ୍ୟା ଦାସ ମହାପାତ୍ର ହୋଇଥିଲା । କେବଳ ବାଲିସାହୀ ଜମିଦାର 'କାନୁନ୍‌ଗୋ' ପଦବୀରେ ନିଯୁକ୍ତ ହୋଇଥିଲେ ଓ କାନୁନ୍‌ଗୋ ଦାସ ମହାପାତ୍ର ବୋଲି ଲେଖୁଥିଲେ ।

ଓଡ଼ିଶାକୁ ମୁର୍ସିଦ୍ କୁଲି ପ୍ରତ୍ୟକ୍ଷ ଭାବରେ ଶାସନ ନକରି ତାଙ୍କ ଜାମାତା ସୁଜାଉଦ୍ଦିନ୍ ଖାଁକୁ ଏଠାକାର ନାଏବ୍ ସୁବେଦାର ନିଯୁକ୍ତ କରି ତାଙ୍କ ଦ୍ୱାରା ଶାସନ ପରିଚାଳନା କରୁଥାନ୍ତି । ତେଣୁ ମୁର୍ସିଦଙ୍କ ପ୍ରଶାସନ ନୀତିକୁ ସେ ହିଁ ଓଡ଼ିଶାରେ କାର୍ଯ୍ୟକ୍ଷମ କରୁଥାନ୍ତି । ଜଣେ ଉଦାରବାଦୀ ଓ ଲୋକ ହିତକାରୀ ଶାସକ ରୂପେ ସୁଜାଉଦ୍ଦିନଙ୍କ ଖ୍ୟାତିଥିଲା । ଓଡ଼ିଶାରେ ଶାସନକାର୍ଯ୍ୟ ପରିଚାଳନା ପାଇଁ ସେ ଭୂପତି ରାୟ ଓ କିଶୋର ରାୟ ନାମକ ଦୁଇଜଣ ଓଡ଼ିଆ ବ୍ରାହ୍ମଣଙ୍କୁ ତାଙ୍କ ପରାମର୍ଶଦାତା ନିଯୁକ୍ତ କରିଥିଲେ । ଯାହାମନେ ହୁଏ ଏହି ସୁଜାଉଦ୍ଦିନ୍ ହିଁ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଦଶକ ବେଳକୁ ଚନ୍ଦ୍ରଶେଖରଙ୍କ ସମେତ ଏହିପରି ଅନେକ ଓଡ଼ିଆ ଜମିଦାରଙ୍କୁ ନିଯୁକ୍ତି ଦେଇଥିଲେ ।

ଆମ ପରିବାରର ଲୋକ ଚନ୍ଦ୍ରଶେଖରଙ୍କୁ ଢାଲିଆ ଚନ୍ଦ୍ରଶେଖର ଦାସ ବୋଲି କୁହନ୍ତି । ସେ ଢାଲ ଓ ତରବାରୀ ଉପହାର ଦେଇ ଜମିଦାରୀ ପାଇଥିଲେ ବୋଲି ତାଙ୍କୁ ଢାଲିଆ ଚନ୍ଦ୍ରଶେଖର କୁହାଯାଉଥିବା ମୁଁ ଶୁଣିଛି । ତେବେ ମୋର ଯାହା ମନେହୁଏ ତାଙ୍କ ପରବର୍ତ୍ତୀ ପିଢ଼ିରେ ହୁଏତ ଆଉ କେହି ପ୍ରଭାବଶାଳୀ ଚନ୍ଦ୍ରଶେଖର ଥାଇପାରନ୍ତି । ତେଣୁ ତାଙ୍କୁ ପୃଥକ୍ ଓ ସ୍ୱତନ୍ତ୍ର ଭାବରେ ଚିହ୍ନିତ କରିବା ପାଇଁ ତାଙ୍କୁ ପରବର୍ତ୍ତୀ ପିଢ଼ି ଢାଲିଆ ଚନ୍ଦ୍ରଶେଖର ବୋଲି କହୁଥିଲେ ।

ଚନ୍ଦ୍ରଶେଖରଙ୍କୁ ମିଳିଥିବା ଏହି ଜମିଦାରି ତାଙ୍କ ପରିବାର ପ୍ରାୟ ଶହେ ବର୍ଷଧରି ଭୋଗ କରିଥିଲେ । ତାଙ୍କ ସପ୍ତମ ପିଢ଼ିର ଦୁର୍ଗା ପ୍ରସାଦ ଦାସ ମହାପାତ୍ରଙ୍କ ସମୟରେ ଏହି ଜମିଦାରୀକୁ ଇଷ୍ଟ୍‌ଇଣ୍ଡିଆ କମ୍ପାନୀ ସରକାର ସୂର୍ଯ୍ୟାସ୍ତ ଆଇନ୍ ବଳରେ ଜବତ୍ କରି

ନିଲାମ୍ କରିଦେଇଥିଲେ, ଯାହାର ବହୁ ଅଂଶ ଲକ୍ଷ୍ମଣନାଥର ରାୟ ମହାଶୟ କିଣି ନେଇଥିଲେ । ମରହଟ୍ଟା ଶାସନ ସମୟରେ ସେ ସବୁର୍ଣ୍ଣରେଖା ନଦୀର ଉତ୍ତରଦିଗ ବଙ୍ଗଳାରେ ଇଷ୍ଟ ଇଣ୍ଡିଆ କମ୍ପାନୀ କର୍ତ୍ତୃତ୍ୱରେ ଥିବାରୁ ଏହି ଜମିଦାରୀ ୧୭୯୩ ମସିହାର ଚିରସ୍ଥାୟୀ ବନ୍ଦୋବସ୍ତ ବ୍ୟବସ୍ଥାର ଅନ୍ତର୍ଭୁକ୍ତ ହୋଇଥିଲା । ଏହି ବ୍ୟବସ୍ଥା ଅନୁସାରେ ବର୍ଷର ନିର୍ଦ୍ଦିଷ୍ଟ ଦିନ ବା ତାରିଖରେ ସୂର୍ଯ୍ୟାସ୍ତ ପୂର୍ବରୁ ସରକାରୀ ତହବିଲ୍‌ରେ ଖଜଣା ଜମାକରି ନ ପାରିଲେ ଜମିଦାରୀ ନିଲାମ ହୋଇଯାଉ ଥିଲା । ଆମ ପରିବାର ଲୋକେ କହନ୍ତି ଯେ ଏହି ଜମିଦାରୀ ନିଲାମ୍ ପଛରେ ଦୁର୍ଗାପ୍ରସାଦଙ୍କ ଜଣେ ବିଶ୍ୱସ୍ତ ଗୁମାସ୍ତା ଯାହାଙ୍କୁ ତହବିଲ୍‌ରେ ଟଙ୍କା ଜମା କରାଇବାର ଦାୟିତ୍ୱ ଦିଆଯାଇଥିଲା ସେ ଜାଣିଶୁଣି ସୂର୍ଯ୍ୟାସ୍ତ ପୂର୍ବରୁ କୌଣସି ଆଳ ଦେଖାଇ ଏହାକୁ ଜମାକରି ନଥିଲେ ଯାହାଦ୍ୱାରା ତାଙ୍କ ଜମିଦାରି ନିଲାମ ହୋଇଗଲା । ଆହୁରି ମଧ୍ୟ ଶୁଣାଯାଏ ଯେ ଏହି ଷଡ଼ଯନ୍ତ୍ର ପଛରେ ରାୟ ମହାଶୟଙ୍କ ହାତ ମଧ୍ୟ ରହିଥିଲା । ଜମିଦାରୀ ହରାଇବା ପରେ ଦୁର୍ଗାପ୍ରସାଦ ଏପରି ଭାଙ୍ଗି ପଡ଼ିଲେ ଯେ ସେ ନିଜ ବନ୍ଧୁକରେ ନିଜକୁ ଗୁଳିକରି ଆତ୍ମହତ୍ୟା କରିଦେଲେ ।

ଜମିଦାରୀ ନିଲାମ ହେବାପରେ ଚନ୍ଦ୍ରଶେଖରଙ୍କୁ ଯେଉଁ ନିଷ୍କର ଜମି ମିଳିଥିଲା, ସେଗୁଡ଼ିକ ଆଉ ଫେରାଇ ନ ନେବାକୁ ଆମ ପରିବାର ତରଫରୁ ସରକାରଙ୍କ ନିକଟରେ ଏକ ଅନୁଗ୍ରହ ପିଟିସନ୍ ଦାଖଲ କରାଗଲା । ଏହାକୁ ଆଂଶିକ ଭାବରେ ମଞ୍ଜୁରୀ ଦିଆଯାଇଥିଲା । କୋଟସାହି ଓ ଆରୁହାରେ କିଛିଟା ନିଷ୍କର ଜମି ଆମ ନାଁରେ କାଏମ୍ ରହିଲା । ଜମିଦାରୀ ସିନା ନିଲାମ ହେଲା କିନ୍ତୁ ଜଳେଶ୍ୱର ପାଖାପାଖି ଅଂଚଳରୁ ଖଜଣା ଆଦାୟ କରିବା ରାୟ ମହାଶୟଙ୍କ ପାଇଁ ସେତେଟା ସହଜ ନଥିଲା । ୧୮୦୩ ବେଳକୁ ଯଦିଓ ଓଡ଼ିଶା ଇଷ୍ଟଇଣ୍ଡିଆ କମ୍ପାନୀ ଦ୍ୱାରା ଅଧିକୃତ ହେଲା, ମରହଟ୍ଟାମାନଙ୍କ ଉପଦ୍ରବ କିନ୍ତୁ କେତେକ ଅଂଚଳରେ ସଂପୂର୍ଣ୍ଣ ହ୍ରାସ ପାଇ ନଥିଲା । ସେମାନେ ସେଥିପାଇଁ ରାୟ ମହାଶୟଙ୍କ ପାଇଁ ଖଜଣା ଆଦାୟ କରିବାର କଣ୍ଟକ ହୋଇ ପଡ଼ିଲେ । ଏହା ଲକ୍ଷ୍ୟକରି କଲିକତାର କମ୍ପାନୀ କର୍ତ୍ତୃପକ୍ଷ ହୃଦୟଙ୍ଗମ କଲେ ଯେ, ଦାସ ମହାପାତ୍ରଙ୍କ ପରିବାରକୁ ଖଜଣା ଆଦାୟରେ ସଂପୃକ୍ତ ନ କଲେ, ଖଜଣା ଆଦାୟ ସହଜ ହେବନାହିଁ । ସେଥିପାଇଁ ସେମାନେ ଜଳେଶ୍ୱର ପାଖ ଗାଁ ଅଲାଲ୍‌ପୁରରେ କିଛି ନିଷ୍କର ଜମିଦେଇ ଆମ ପରିବାରକୁ ପୁଣି ଚୌଧୁରୀ ପଦବୀରେ ନିଯୁକ୍ତ କରିଥିଲେ । ସେହି ନିଯୁକ୍ତି ଆମ ପରିବାରର ଜ୍ୟେଷ୍ଠ ବା ମୁଖ୍ୟ ସଦସ୍ୟଙ୍କୁ ଦିଆଯିବା ପରେ ସେମାନେ ଉନବିଂଶ ଶତାବ୍ଦୀର ପ୍ରଥମ ଦଶକ ବେଳକୁ ଅଲାଲ୍‌ପୁର ଉଠିଯାଇ ସେଠାରେ ରହିଲେ ।

ଯେଉଁମାନେ କୋଟସାହି ଓ ଆରୁହା ଏହି ଦୁଇ ଗାଁ'ରେ ରହିଗଲେ ସେମାନେ ପୁରୁଷାନୁକ୍ରମେ ସେହି ନିଷ୍କର ଜମିକୁ ଭୋଗ କରିବାକୁ ଲାଗିଲେ । କିନ୍ତୁ ସମୟକ୍ରମେ

ପରିବାର ବୃଦ୍ଧି ପାଇବାରୁ ଓ ଜମି ଭାଗ ବଣ୍ଟରା ହେବାରୁ ଏହି ଦୁଇ ଗ୍ରାମର ଚୌଧୁରୀ ପରିବାରର ଅବସ୍ଥା ଶୋଚନୀୟ ହୋଇପଡ଼ିଲା । ମୁଁ ଶୁଣିଛି ଯେ ବଡ଼ ଅଂଶ ଅଲାଲ୍‌ପୁର ଯିବାପରେ ନିଷ୍କର ଜମିଗୁଡ଼ିକ ଏହି ତିନି ଗ୍ରାମର ପରିବାର ମଧ୍ୟରେ ଯେଉଁ ଭାଗ ବଣ୍ଟରା ହୋଇଥିଲା, ସେଥିରୁ କୋଟସାହି ଭାଗରେ ୬ ଅଣା ଅଂଶ ସଂପତ୍ତି ପଡ଼ିଥିଲା । ଅର୍ଥାତ୍ ଅନ୍ୟ ଦଶଭାଗ ଅଲାଲପୁର ଓ ଆରୁହା ମଧ୍ୟରେ ବଣ୍ଟା ଯାଇଥିଲା । ଆମ ବଂଶର କୂଳଦେବତା ମଦନ ମୋହନ କୋଟସାହିରେ ରହିଲେ, କିନ୍ତୁ ନୀତି ନିୟମ ଅନୁସାରେ ତାଙ୍କ ରକ୍ଷଣାବେକ୍ଷଣ କରିବା ଆମପାଇଁ ସହଜ ନହେବାରୁ ତାଙ୍କୁ ତାଙ୍କ ଜମି ସହିତ ତାଙ୍କର ପୂଜକ ପରିବାରକୁ ଦେଇ ଦିଆଗଲା । ଜମିଦାରି ଥିବା ସମୟରେ ପରିବାରର ଯେଉଁ ରୀତି ରିୱାଜ୍ ଦୁର୍ଗାପୂଜା, ସରସ୍ୱତୀ ପୂଜା ଓ ଗଣେଶ ପୂଜା ଇତ୍ୟାଦି ହେଉଥିଲା, ତାହାର ଦାୟିତ୍ୱ ମଧ୍ୟ ଯଥାକ୍ରମେ ଅଲାଲ୍‌ପୁର, ଆରୁହା ଓ କୋଟସାହି ମଧ୍ୟରେ ବଣ୍ଟାଗଲା । କିନ୍ତୁ କାଳକ୍ରମେ ଆମ ପରିବାରର ଅବସ୍ଥା ଏତେ ଶୋଚନୀୟ ହୋଇପଡ଼ିଲା ଯେ ଗଣେଶ ପୂଜା ମଧ୍ୟ ବନ୍ଦ ହୋଇଗଲା । ଶେଷରେ ଆମ ଗାଁ ଓ ଏହାର ଆଖପାଖର ଜମିଦାରିକୁ ପାଖ ଗାଁ ଜମାଲ୍‌ପୁରର ଜଣେ ଲୁଣ ବ୍ୟବସାୟୀ ବିଶ୍ୱନାଥ ପରିଡ଼ା କିଣି ନେଇଥିଲେ । ମୋ ଜେଜେବାପାଙ୍କ ଅବସ୍ଥାତ ବହୁତ ଖରାପ ହୋଇଯାଇଥିଲା, କିନ୍ତୁ ବିଶ୍ୱନାଥ ପରିଡ଼ା ଜମିଦାରୀ କିଣିନେବା ପରେ ମୋର ବଡ଼ବାପା ଓ ବାବା ତାଙ୍କ ଜମିଦାରୀର ଖଜଣା ଆଦାୟକାରୀ ଭାବରେ ନିଯୁକ୍ତ ହେବା ପରେ ଆମ ଅବସ୍ଥାରେ ଅନେକ ଉନ୍ନତି ଆସିଥିଲା ।

ଦୁର୍ଗାପ୍ରସାଦଙ୍କ ପରଠାରୁ ମୋ ମଧ୍ୟରେ କେତେ ପୀଢ଼ିର ବ୍ୟବଧାନ ତାହା ଅବଶ୍ୟ ମୁଁ କହି ପାରିବି ନାହିଁ, କିନ୍ତୁ ଶ୍ରାଦ୍ଧ ଆଦି ପାଇଁ ଏ ପର୍ଯ୍ୟନ୍ତ ଆମ ପରିବାରରେ ଯେଉଁମାନଙ୍କ ନାମ ଲିଖିତ ହୋଇ ରହିଛି, ସେମାନଙ୍କ ମଧ୍ୟରେ ସର୍ବପ୍ରଥମ ହେଉଛନ୍ତି ଚୌଧୁରୀ ରାଘବାନନ୍ଦ ଦାସ ମହାପାତ୍ର । ତାଙ୍କ ସହିତ ମୋର ସଂପର୍କ ନିମ୍ନ ପ୍ରକାରରେ

**ଚୌଧୁରୀ ରାଘବାନନ୍ଦ ଦାସ ମହାପାତ୍ର**
**ଓ ବିଷ୍ଣୁପ୍ରିୟା**



**ଚୌଧୁରୀ ବୈଦ୍ୟନାଥ ଦାସ ମହାପାତ୍ର**
**ଓ ଝୋମାଦେବୀ**



**ଚୌଧୁରୀ ଗୋବର୍ଦ୍ଧନ ଦାସ ମହାପାତ୍ର**
**ଓ ମୁକ୍ତାମଣି**






ଦୁର୍ଗାପ୍ରସାଦ ଓ ରାଘବାନନ୍ଦଙ୍କ ମଧ୍ୟରେ କେତେ ପିଢ଼ିର ବ୍ୟବଧାନ ତାହା କହିବା ସହଜ ନହେଲେ ମଧ୍ୟ ଏହି ଦୁଇ ପିଢ଼ି ମଧ୍ୟରେ ଜୟନାରାୟଣ ନାମକ ମଧ୍ୟ ଜଣେ ବଂଶଜ ଥିଲେ । ଶୁଣାଯାଏ ଯେ ତାଙ୍କରି ସମୟରୁ ଆମ ଜମି ଭାଗ ବଣ୍ଟରା ଆରମ୍ଭ ହୋଇଥିଲା । ତାଙ୍କର ଓ ରାଘବାନନ୍ଦଙ୍କ ଅନ୍ୟଭାଇ ମାନେ ମଧ୍ୟ ଥିଲେ ଯାହାଙ୍କ ବଂଶଧର ଆମ ଗାଁରେ ଅଛନ୍ତି । ଆମ ଅବସ୍ଥା ଶୋଚନୀୟ ହୋଇ ପଡ଼ିବାର ଅନ୍ୟତମ କାରଣ ହେଲା ସୁବର୍ଣ୍ଣରେଖା ନଈ, ଯାହାକି ବାରମ୍ବାର ଗତି ପରିବର୍ତ୍ତନ କରି ଆମର ବହୁ ଜମିକୁ ଲୀନ କରିଦେଲା । ଆମ ପୂର୍ବପୁରୁଷଙ୍କ ଯେଉଁ ପକ୍କାଘର ଥିଲା, ତାହା ମଧ୍ୟ ନଦୀ ଗର୍ଭରେ ଲୀନ ହୋଇଯାଇଛି । ଏହି ଘରର ଇଟା ମୋ ପିଲାଦିନ ପର୍ଯ୍ୟନ୍ତ ନଦୀରୁ ମିଳୁଥିଲା । ନଦୀର ଏହିପରି ପ୍ରକୋପ ଯୋଗୁଁ ଆମ ପରିବାରର ବହୁ ସଦସ୍ୟ ଜମିବିକ୍ରି କରି ଗାଁ ଛାଡ଼ି ଚାଲି ଯାଇଥିଲେ । କିନ୍ତୁ ସ୍ୱାଧୀନତା ପରଠାରୁ ନଦୀ ଧାରରେ ଠାଏ ଠାଏ ପଥର ପଡ଼ିବାରୁ ଏବେ ସେହି ପ୍ରକୋପ ଅନେକ କମିଯାଇଛି ଓ ନଈ ଆଉ ଶଯ୍ୟା ପରିବର୍ତ୍ତନ କରୁନାହିଁ ।



# ମୋ' ଗାଁ

ଗାଁ'ର ନା' କୋଟସାହି ।

ଏପରି ଗୋଟିଏ ଗାଁ ସାରା ଭାରତରେ କୋଉଠି ଥିବ ଏ ବିଶ୍ୱାସ ମୋର ନାହିଁ । ଆମ ଗାଁ'ର ତିନି ପାଖରେ ଆଉ ଯେଉଁ ଗାଁ ସବୁ ଅଛି ମୋତେ ସେଗୁଡ଼ାକ ଭଲ ଲାଗେନି । କାହିଁକି ଭଲ ଲାଗେନି କହି ପାରିବିନି । ହୁଏତ ତା'ର କାରଣ ଗୋଟାଏ । ସେଇଟା ହେଲା ଆମ ଗାଁ'ର ପଶ୍ଚିମ ପାଖକୁ ଲାଗି ବହିଯାଉଛି ନଈ ସୁବର୍ଣ୍ଣରେଖା । ଆମ ଘର ଗୁଡ଼ାକ ଠିକ୍ ନଈ ତଡ଼ା ଉପରେ ।

ଏଇ ନଈର ସୌନ୍ଦର୍ଯ୍ୟ କାହିଁରେ କଅଣ । ସକାଳେ ଦେଖିଲେ ଯେମିତି ଭଲ ଲାଗେ - ଖରାବେଳେ, ସଂଧ୍ୟାରେ କି ରାତିରେ ଦେଖିଲେ ବି ସେମିତି ଭଲ ଲାଗେ ।

ଗାଁ'ଟା ସବୁଦିନ ସବୁବେଳେ ଭଲ ଲାଗେ । ଏ ନଈଟା ବି ସେମିତି । ଆମର ସବୁ ଦୁଷ୍ଟାମି ମାନେ ନାଚିବା, କୁଦିବା, ଖେଳିବା ମାଆ ଯେମିତି ଖୁସିରେ ସହି ନିଏ, ନଈଟା ସେମିତି । ଆପତ୍ତି ନାହିଁ, ଅଭିଯୋଗ ନାହିଁ, ନଈକୂଳ ମାଆ କୋଳ ସମାନ ।

ସେଇଥି ପାଇଁ ମୁଁ ଭାବେଁ ଆମ ଗାଁ ପରି ଆଉ ଗୋଟିଏ ଗାଁ କୋଉଠି ଅଛି, କେହି ଆଉ ତା'ସରି ମୋଟେ ନୁହେଁ ।

ଅବଶ୍ୟ ସେଯାଏଁ ମୁଁ ମାତ୍ର ଆମ ପାଖରେ ଥିବା ପାଂଚ ସାତ ଖଣ୍ଡ ଗାଁ କେବଳ ଦେଖିଥାଏ, ଦୃଷ୍ଟି ପରିସର ସେତିକି ।

ନଈ ଛଡ଼ା ସେ ଗାଁ'ର ଆଉ କ'ଣ ଅଛି ? ରାସ୍ତାଘାଟ ସବୁ ଖରାଦିନେ ଯେମିତ ଶୁଖିଲା, ବର୍ଷାଦିନେ ବି ସେମିତି । ଅନ୍ୟ ଗାଁ ପରି କାଦ ପଚ୍‌ପଚ୍ ହୁଏନା । ସବୁଠି ଶୁଖିଲା । ଯେତେ ବର୍ଷା ହେଲେ ବି ପାଣି ଗଡ଼ିଯାଏ ନଈକୁ ।

ନଈବଢ଼ି ହେଲେ ଆହୁରି ମଜା । ଗାଁ ଭିତରେ ପାଣି ପଶେ, ଗୋହିରୀରେ ପାଣି ଆଣ୍ଠୁଏ । ସେଥିରେ ଆହୁରି ମଜା । ତିନିଟା କଦଳୀ ଗଛ କାଟି ଯୋଡ଼ି ଦେଲେ ଭେଳା ହେଇ ଯାଏ । ଆଣ୍ଠୁଏ ପାଣିରେ ଚଳେଇବାର ମଜା ଏବର ପିଲା ପାଇବେ କୋଉଠୁ ? ଭେଳା କେବେ କେମିତି ଓଲଟିଲେ ଦୁମ୍‌ଦାମ୍ ପାଣିରେ ପଡୁ ପୁଣି ଉଠୁ, ପୁଣି ଚାଲୁ ।

ନଈବଢ଼ି ଆମପାଇଁ ଆଶୀର୍ବାଦ । ବଢ଼ିଟା ଭଲଲାଗେ । ବର୍ଷାଦିନ ଆସିଲେ ମନ ଛକ୍ ପକ୍ ହୁଏ, ବଢ଼ି ଆସନ୍ତା କି । ଆମ ଘରର ବଡ଼ମାନେ ଆହୁରି ଖୁସି । ମାଛ ଧରିବାକୁ

ସୁବିଧା । ପ୍ରଚୁର ମିଳେ । ଖାଇବାରେ ବି ମଜା । ବଢ଼ିର ପରବର୍ତ୍ତୀ ଖୁସି ଚାଷରୁ ମିଳେ । ବଢ଼ି ପାଣିରେ ପଟୁ ଥାଏ । ଚାଷ ଭଲ ହୁଏ । ଖତ କି ସାରର ଆବଶ୍ୟକତା ନାହିଁ ।

ନଈ ପାଖିଆ ଅଂଚଳକୁ 'ପାଳକୂଳ' କହନ୍ତି । ଭଲ ଚାଷ ସହ ପନିପରିବା ମଧ୍ୟ ଭଲ ହୁଏ । ଆମ୍ବ, ପଣସ, ସପୁରୀ, ଜାମୁ, ଲିଚୁ କାହିଁରେ କଅଣ । କୋଳି ବି ପ୍ରଚୁର । ଜଙ୍ଗଲୀ କୋଳିରେ ଘର ମହକେ । ସାବଧାନ । ବେତକୋଳି ତୋଳିଲାବେଳେ ସାବଧାନ ।

ମୋ ଗାଁ, ମୋ ମାଆ, ଆମ ନଈ, ମୋ ଜାଣିବାରେ ଆଉ କୋଉଠି ନାହିଁ ।

ଏବେ କୁହାଯାଉଛି ସରକାର ବିଶୁଦ୍ଧ ପାଣି ଯୋଗାଉ ନାହାନ୍ତି ବୋଲି ରୋଗ ବେମାରି ବଢୁଛି ।

ମୋ ଜାଣିବାରେ ମୋତେ ୧୮/୧୯ ହେବା ଯାଏ ଏଇ ନଈ ପାଣି ପିଇଛି । ଖରା ଦିନର ସ୍ୱଚ୍ଛପାଣି ଯେମିତି ମିଠା, ବର୍ଷାଦିନେ ତା'ର ଗୋଳିଆ ପାଣି ବି ସେତିକି ମିଠା ସେଇ ନଈପାଣି ଛଡ଼ା ଆଉ ଗତି କାହିଁ? ଆମ ଗାଁ'ରେ ସେତେବେଳେ ଟିଉବ୍‌ୱେଲ୍ କି କୂଅ ନଥିଲା । ଆମର ସବୁକାମ ସେଇ ନଈରେ । ମୋ ମା' ଦିନକୁ ହୁଏତ କୋଡ଼ିଏ 'ଗାଗରା' (ପିତ୍ତଳର ଓଜନିଆ) ପାଣି ନଈରୁ ଆଣୁଥିବ । ପିତ୍ତଳ ଗାଗରାରେ ନଈରୁ ପାଣି ନେଇ ତଡ଼ାରେ ଉପରକୁ ଉଠିବା ସହଜ କଥା ନୁହେଁ ।

ବର୍ଷାଦିନେ ପାଣି ଗୋଳିଆ ହେଲେ ମାଆ ଗାଗରାରେ ଟିକେ ଚୂନ ପକେଇ ଦିଏ । ଚୂନ ବି ସବୁବେଳେ ମିଳେନି । ତାକୁ ବି ପିଆ ହୁଏ, ଆମେ ସେଥିରେ ଅଭ୍ୟସ୍ତ । କାହିଁ ପେଟ ବେମାରି? ମୁଁ ତ ଜାଣିନି । ସେଇ ନଈକୂଳରେ ସମସ୍ତେ ଝାଡ଼ାଯାଇ ଶୌଚ ହୁଅନ୍ତି । ଗୋରୁ ଛେଳି ସମସ୍ତେ ଗାଧୁଅନ୍ତି । ଏବେ 'ସ୍ୱଚ୍ଛତା' ଯେତେ ବଢୁଛି ରୋଗ ବେମାରି ସେତିକି ବଢୁଛି । ହସ୍‌ପିଟାଲ୍ ସେତିକି ବଢୁଛି । ଔଷଧ ଖର୍ଚ୍ଚ ସେତିକି ବଢୁଛି ।

ଆମ ଗାଁ'ରେ ସେତେବେଳେ ଜଣେ ଦି' ଜଣ ଗୁଣିଆ ଥିଲେ । ସେମାନେ ମଣିଷ ଓ ପଶୁମାନଙ୍କର ସମାନ ଚିକିତ୍ସା କରୁଥିଲେ, କେବଳ ମନ୍ତ୍ର ଫୁଙ୍କି । ଭୂତ ପ୍ରେତ (ବିଶେଷ କରି ନାରୀମାନଙ୍କର) ଛଡ଼ାଉଥିଲେ । କେମିତି କେଜାଣି ସେତେବେଳେ ଗାଁ'ରେ ଭୂତମାନଙ୍କର ପ୍ରାଦୁର୍ଭାବ ବେଶୀ ଥିଲା । ଭାରୀ ପରାକ୍ରମୀ ଏବର ନେତାମାନଙ୍କ ପରି । ଭୂତମାନେ ରାସ୍ତାର ଗୋଟିଏ ପାଖରେ ଗଛଡାଳରେ ବସି ଅନ୍ୟପାଖର ଏକ ଗଛଡାଳରେ ଗୋଡ ରଖି ବସନ୍ତି । ରାତିରେ ସେ ଗୋଡ଼ ତଳଦେଇ ଯଦି କେହି ଗଲା ସେ ଘରେ ପହଂଚି ରକ୍ତ ବାନ୍ତି କରିବ ହିଁ କରିବ । ତାପରେ ଆସେ ଗୁଣିଆ । ଏମିତି କାହାଣୀ ଅନେକ ଅଛି ।

କେମିତି ରୋଗ ଭଲ ହୁଏ କେଜାଣି ।

ଛୋଟ ପିଲାଙ୍କୁ ପେଟ ରୋଗରୁ ମୁକ୍ତ କରିବା ପାଇଁ ଏବେ ମଧ୍ୟ ଗାଁ'ମାନଙ୍କରେ ତତଲା ଲୁହାର ଚେଙ୍କ ଦିଆଯାଉଛି । ମୋ ପିଲାକାଳେ ଦେଖିଛି ଗାଁ'ର ଜଣେ ଦି ଜଣ ପିଲାଙ୍କୁ ରଡ଼ ନିଆଁରେ ଦା'କୁ ତତେଇ ପ୍ଳୀହା ରୋଗ ଭଲ କରିବାକୁ ଚେଙ୍କ ଦିଆ ଯାଇଛି । ଇସ୍, କି ଅମାନବିକ । ତିନି ଚାରି ଜଣ ତାକୁ ମାଡ଼ିବସନ୍ତି ।

ଏସବୁ ସେତେବେଳେ ଥିଲା ସାଧାରଣ ଚିକିତ୍ସା । ଏବେ ମଧ ବହୁତ ଲୋକ ଲକ୍ଷ୍ମଣ ମିଶ୍ରଙ୍କ ନା' ମନେ ରଖିଥିବେ । ୧୯୫୦/୬୦ ଯାଏଁ ତାଙ୍କ ଲିଖିତ 'ବନୌଷଧି ଓ ମନ୍ତ୍ରୌଷଧି ବିଜ୍ଞାନ' ବହି ହାଟରେ ଖୁବ୍ ବିକ୍ରି ହେଉଥିଲା । ବେଶ ମୋଟା ବହି । ଲକ୍ଷ୍ମଣ ମିଶ୍ର ଥିଲେ ପୋଲିସ ବିଭାଗର ଏସ୍.ପି. । କିନ୍ତୁ ଜଣେ ଭଲ କବିରାଜି ଡାକ୍ତର ଏବଂ ସେ ଖ୍ୟାତ 'ମନ୍ତ୍ରୌଷଧି' ପାଇଁ । ଗାଁ'ରେ କାହାକୁ ସାପ କାମୁଡ଼ିଲେ ଏସ୍.ପି. ଲକ୍ଷ୍ମଣ ମିଶ୍ରଙ୍କୁ ତାଙ୍କ ବାସଭବନ ବା ଅଫିସରେ ଥାଇ ମଧ ମନ୍ତ୍ର ଉଚ୍ଚାରଣ କରି କୁଆଡ଼େ ରୋଗୀକୁ ଭଲକରି ପାରୁଥିଲେ । ତାଛଡ଼ା ବିଭିନ୍ନ ଚେର, ମୂଳ ଓ ପତ୍ରରୁ ଔଷଧ ମଧ ତିଆରି କରୁଥିଲେ ଏବଂ ସେଇ ଜ୍ଞାନ ଆଧାରିତ ପୁସ୍ତକ ବୋଧେ ଏବେ ମଧ ଲୋକଙ୍କ ପାଖରେ ଥିବ । ସେ ଥିଲେ ଜଣେ ଉତ୍ସର୍ଗୀକୃତ ମଣିଷ । ଯେତେବେଳେ ଡାକ୍ତରଖାନା/ ହସ୍‌ପିଟାଲ୍ କୋଉଠି ନଥିଲା ସେତେବେଳେ ସେ ଥିଲେ 'ଦେବଦୂତ' । ସମସ୍ତେ ତାଙ୍କୁ ସେଇ ଆଖିରେ ଦେଖୁଥିଲେ, ଏସ୍. ପି. ନୁହେଁ ।

ତାଙ୍କ ପୁଅ ହେମନ୍ତ ମିଶ୍ର କିନ୍ତୁ ରାଉରକେଲାର ସୁବିଦିତ ଇଂଜିନିୟର ଏବଂ ଭାରତର ଜଣେ ଶ୍ରେଷ୍ଠ ରାଜନୀତିଜ୍ଞ, ସ୍ୱାଧୀନତା ସଂଗ୍ରାମୀ ପୂର୍ବତନ ରାଜ୍ୟପାଳ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ଜାମାତା । ବସ୍ତିଆ ମେମୋରିଆଲ ଟ୍ରଷ୍ଟର ମାଲିକ ।

ଲକ୍ଷ୍ମଣ ମିଶ୍ର ସିନା ନାହାନ୍ତି କିନ୍ତୁ ତାଙ୍କ ବନୌଷଧି ଓ ମନ୍ତ୍ରୌଷଧି ଏବେବି ଅଛି । ଓଡ଼ିଶାରେ ଶିକ୍ଷାର ପ୍ରସାର ଯେତେ ବଢ଼ିଥିଲେ ମଧ ଏବେ ଗାଁ' ଗହଳିରେ ପ୍ରଚଳିତ ମନ୍ତ୍ର ଓ ଟୁଟୁକା ହିଁ ବିକଳ୍ପ । ଆଦିବାସୀ ଏରିଆରେ ସରକାର ଏଯାଏ ବିକଳ୍ପ କିଛି ଦେଇପାରି ନାହାନ୍ତି ।

ଆମ ଗାଁ'ରେ ସେତେବେଳେ ସ୍କୁଲ ନଥିଲା । ପ୍ରାଇମେରୀ ସ୍କୁଲରେ ପଢ଼ିବା ପାଇଁ ଜମାଲପୁର ପର୍ଯ୍ୟନ୍ତ ପିଲାମାନେ ଯାଇପାରୁ ନଥିଲେ । ଜମାଲପୁରରେ ପ୍ରାଇମେରୀ ଠାରୁ ହାଇସ୍କୁଲ ପର୍ଯ୍ୟନ୍ତ ଥିଲା । ଆମ ଗାଁରୁ ପ୍ରାୟ ଦେଢ଼ କିଲୋମିଟର ଦୂର । ରାସ୍ତା ପୁଣି ସଂପୂର୍ଣ୍ଣ ନଈ ପାଖେ ପାଖେ । ତେଣୁ ସେ ସମୟରେ ଛୋଟ ପିଲାଙ୍କ ପାଇଁ ଗାଁ'ରେ ଗୋଟିଏ ଚାଟଶାଳୀ ଥିଲା । ମୋ'ପାଠ ସେଇଠୁ ଆରମ୍ଭ । ଦିନକୁ ଦୁଇଥର ଯିବାକୁ ପଡୁଥିଲା । ଚମତ୍କାର ସିଷ୍ଟମ ଚାଟଶାଳୀରେ । ଯିଏ ପ୍ରଥମେ ଯାଇ ପହଂଚିବ ତା' ହାତରେ ମାଷ୍ଟ୍ରେ ଆସ୍ତେକରି ବେତଟା ଛୁଆଁଇ ଦେବେ । ତାପରେ ଯିଏ ଯେତେ ଡେରିରେ ଆସିବ

ସେ ସେତିକି ବେତମାଡ଼ ଖାଇବ । ତେଣୁ ପିଲାମାନଙ୍କ ଭିତରେ ପ୍ରତିଯୋଗିତା ହୁଏ, କିଏ କେତେ ଶୀଘ୍ର ଆସି ପହଂଚିବ ।

ଶିକ୍ଷକ ଜଣେ । ପ୍ରଥମେ ପଣିକିଆ, ପରେ ଅନ୍ୟାନ୍ୟ ସବୁ ମୁଖସ୍ଥ କରିବାକୁ ହୁଏ ।

ମୁଁ ଖୁବ୍ କମ୍‌ଦିନ ଏ' ଚାଟଶାଳୀକୁ ଯାଇଛି । ସେତେବେଳେ ମୋ ବଡ଼ ଭାଇ ଜମାଲପୁର ମାଇନର ସ୍କୁଲର ଛାତ୍ର । ଗାଁ ଚାଟଶାଳୀ ବନ୍ଦ ହୋଇ ଯିବାରୁ ଦିନେ ମୋତେ ବାବା ନେଇ ଜମାଲପୁର ପ୍ରାଇମେରୀ ସ୍କୁଲରେ ପହଂଚିଲେ । ସେଠି ଥିଲେ ଯଜ୍ଞେଶ୍ୱର କାନୁନଗୋ ଯିଏ ମୋ ମା'ର ପୁତୁରା ଅର୍ଥାତ୍ ମୋର ଜଣେ ମାମୁଁ ପୁଅ ଭାଇ । ବାବା କହିଲେ ଇଏ ରହିଲା । ତା' ଭାଇ ତାକୁ ଦୈନିକ ଆଣିବ ଓ ନେବ । ବାକି ଦାୟିତ୍ୱ ତୋର । ମୋର ପ୍ରଥମ ଶ୍ରେଣୀରେ ଏଡ୍‌ମିଶନ ହେଇଗଲା ।

ଏହି ଯଜ୍ଞେଶ୍ୱର ଭାଇ ସ୍କୁଲରେ ଆମ ମାନଙ୍କ ଏକପ୍ରକାରର ଗାର୍ଡ଼ିଆନ୍ ଥିଲେ । ପାଠପଢା ସହିତ ଅନ୍ୟାନ୍ୟ କାର୍ଯକଳାପକୁ ମଧ୍ୟ ସେ ତଦାରଖ କରୁଥାନ୍ତି । ମେଟ୍ରିକୁଲେସନ୍ ସାର୍ଟିଫିକେଟ୍‌ରେ ମୋର ଜନ୍ମ ତାରିଖ ଯାହା ୩ ଅଗଷ୍ଟ ୧୯୩୫ ଉଲ୍ଲେଖ ରହିଛି, ତାହା ତାଙ୍କ ଦ୍ୱାରା ଲେଖାଯାଇଥିଲା । ଏହି ତାରିଖ ପ୍ରାୟ ଦେଢ଼ ବର୍ଷ ବେଶି, ଯାହା ପଛରେ ଏକ ବିଶେଷ କାରଣ ରହିଥିଲା । ମୋ ବଡ଼ଭାଇ ପାଟନା ବିଶ୍ୱବିଦ୍ୟାଳୟ ଅଧିନରେ ମେଟ୍ରିକ ପରୀକ୍ଷା ଦେଇଥିଲେ । କିନ୍ତୁ ଫର୍ମପୂରଣ ବେଳେ ତାଙ୍କ ପ୍ରକୃତ ବୟସ ପାଟନା ବିଶ୍ୱବିଦ୍ୟାଳୟ ନିୟମ ଅନୁଯାୟୀ ଅଳ୍ପ କିଛିମାସ କମ୍ ପଡୁଥିବାରୁ ସେ ପରୀକ୍ଷାପାଇଁ ଅନୁପଯୁକ୍ତ ବିବେଚିତ ହୋଇଥାନ୍ତେ । କିନ୍ତୁ ଯଜ୍ଞେଶ୍ୱର ଭାଇ ସେ କଥା ଜାଣି ଫର୍ମ ପୂରଣ ବେଳେ ତାଙ୍କ ବୟସ ବଢାଇ ଦେଇ ପରୀକ୍ଷା ପାଇଁ ତାଙ୍କୁ ଯୋଗ୍ୟ ବିବେଚିତ କରାଇଥିଲେ । ମୁଁ ଅବଶ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧିନରେ ମେଟ୍ରିକ ପରୀକ୍ଷା ଦେଇଥିଲି । କିନ୍ତୁ ଭାଇ ଯେଉଁ ଅସୁବିଧାର ସମ୍ମୁଖୀନ ହୋଇଥିଲେ ମୁଁ ଯେପରି ଭବିଷ୍ୟତରେ ସେହି ଅସୁବିଧାର ସମ୍ମୁଖୀନ ନ ହୁଏ, ସେଥିପାଇଁ ଯଜ୍ଞେଶ୍ୱର ଭାଇ ସ୍କୁଲ ରେକର୍ଡ଼ରେ ମୋ ଜନ୍ମ ତାରିଖକୁ ଯଥେଷ୍ଟ ବଢାଇ ଦେଇଥିଲେ । ମୋର ଜାତକ ଥିଲା, କିନ୍ତୁ ତାକୁ ମୋ ମା ପିଲାଦିନେ ଜଣେ ଜ୍ୟୌତିଷଙ୍କୁ ଦେଖାଇବାକୁ ଦେଇଥିଲା । କିନ୍ତୁ ତାହା ତାଙ୍କ ପାଖରେ ରହିଗଲା । ତେଣୁ ମୋର ପ୍ରକୃତ ଜନ୍ମ ତାରିଖ ଏ ପର୍ଯନ୍ତ ଅଜ୍ଞାତ । ତେବେ ମୁଁ ବୈଶାଖ ମାସରେ ଧନୁ ରାଶିରେ ଜନ୍ମ ହୋଇଥିବା ଆମଘରେ କୁହନ୍ତି ।

ମୋ ବଡ଼ଭାଇ ଏ.ଜି. ଅଫିସରୁ ୩୦ ଏପ୍ରିଲ୍ ୧୯୯୦ ରେ ଅବସର ନେଲେ । ସେ ମୋ ଠାରୁ ପାଂଚ ବର୍ଷ ବଡ଼ । ଅବସର ପରେ ସେ ଯେତେବେଳେ ଶୁଣିଲେ ଯେ ମୁଁ ୩୧ ଅଗଷ୍ଟ ୧୯୯୩ରେ ଅବସର ନେବି ସେ ଆଶ୍ଚର୍ଯ୍ୟ ହୋଇଗଲେ ଓ ସେହି ଭୁଲ୍ ଜନ୍ମ ତାରିଖର ପୃଷ୍ଠଭୂମିକୁ ମନେ ପକେଇ ଖୁବ ହସିଲେ । ଆହୁରି ମଜାକଥା ହେଉଛି

ମୋ ବଡ଼ବାପା ପୁଅ ଭାଇ କୁଞ୍ଜ ଯିଏକି ମୋ ଠାରୁ ବର୍ଷେ ସାନ ସେ ମଧ ସରକାରୀ ଚାକିରୀରୁ ୩୦ ଏପ୍ରିଲ୍ ୧୯୯୩ ରେ ଅବସର ନେଇଥିଲା ।

ମୁଁ ତିନିବର୍ଷ ସେଠି ପଢ଼ିଲା ପରେ ମାଇନର ସ୍କୁଲକୁ ଚତୁର୍ଥ ଶ୍ରେଣୀରେ ପଢ଼ିବା ପାଇଁ ଆସିଲି । ମାଇନର ସ୍କୁଲ ଓ ହାଇସ୍କୁଲ ଗୋଟିଏ ଜାଗାରେ କିନ୍ତୁ ସ୍ୱତନ୍ତ୍ର ବିଲ୍‌ଡିଂ । ବିରାଟ କେମ୍ପସ୍ । ବିରାଟ ଫୁଟବଲ ପଡ଼ିଆ । ମୁଁ ବଡ଼ ସ୍କୁଲରେ ପଢୁଛି ବୋଲି ମୋର ଗର୍ବ । ସକାଳେ ୧୦ଟା ବେଳକୁ ମୁଁ ଭାତ ଖାଇ ସ୍କୁଲକୁ ଯାଏଁ । ସାଥିରେ ଭାଇ ଓ ଭୂପତି ଭାଇ ଯିଏକି ମୋ ମାମୁଁଙ୍କ ପୁଅ । ମୋଟାମୋଟି ସେ ବଡ଼ ଥିବାରୁ ଆମର ଗାର୍ଡିଆନ । ମାଇନର ସ୍କୁଲ ଓ ହାଇସ୍କୁଲର ହେଡ୍‌ମାଷ୍ଟର ଜଣେ । ମାଷ୍ଟର ଅନେକ । ମୋର ମନେଅଛି ମୋର ମାଇନର ଚତୁର୍ଥ ଶ୍ରେଣୀ ବେଳେ ହେଡ୍‌ମାଷ୍ଟର ଥିଲେ ପୂର୍ଣ୍ଣାନନ୍ଦ ମିଶ୍ର । ଅତି ସମ୍ମାନୀୟ ବ୍ୟକ୍ତିତ୍ୟ । ତାଙ୍କ ପୁଅ ସୋମନାଥ ଓ ଝିଅ କିଶୋରୀ ସେହି ହାଇସ୍କୁଲରେ ପଢୁଥାନ୍ତି । ପରେ ଯାଜପୁରର ବିରଜା ହାଇସ୍କୁଲ ପ୍ରତିଷ୍ଠା ହେବା ପରେ ସେମାନେ ସେଠାକୁ ଚାଲିଗଲେ । ସୋମନାଥ ମିଶ୍ର ଆଇ.ପି.ଏସ୍. ପାଇ ଡି.ଜି. ପାହ୍ୟାରେ ଅବସର ନେଇଥିଲେ । ପୂର୍ଣ୍ଣାନନ୍ଦଙ୍କ ପରେ ଆସିଲେ ପ୍ରଫୁଲ୍ଲ ବେନାର୍ଜୀ । ସ୍କୁଲ ଇତିହାସରେ ସେ ମଧ ଜଣେ ସ୍ମରଣୀୟ ଶିକ୍ଷକ । ବାକୀ ଶିକ୍ଷକ ମାନଙ୍କ ମଧରେ ଥିଲେ ଶାସ୍ତ୍ରୀୟ ସଂଗୀତ ଗାୟକ କ୍ଷିତୀଷ ଚନ୍ଦ୍ର ମୈତ୍ର, ପ୍ରଫୁଲ୍ଲ ଗାନ୍ଧି, ବଂଶୀ ପରମାଣିକ,ଭାନୁ ପରମାଣିକ ଓ ପ୍ରସନ୍ନ ପାଳ ପ୍ରମୁଖ । ପ୍ରସନ୍ନ ପାଳ ଜଳେଶ୍ୱର ନିର୍ବାଚନ ମଣ୍ଡଳୀରୁ ବହୁ ବର୍ଷଧରି ରାଜ୍ୟ ବିଧାନସଭାକୁ ପ୍ରତିନିଧିତ୍ୱ କରୁଥିଲେ ।

ସେ ସମୟରେ ସମଗ୍ର ଉତ୍ତର ବାଲେଶ୍ୱରରେ ଜମାଲପୁର ବିଶ୍ୱନାଥ ଏକାଡେମୀ ଦ୍ୱିତୀୟ ହାଇସ୍କୁଲ । ପ୍ରଥମ ଲକ୍ଷ୍ମଣନାଥ ହାଇସ୍କୁଲ । ସମଗ୍ର ଉତ୍ତର ବାଲେଶ୍ୱରରେ ତୃତୀୟ ହାଇସ୍କୁଲ ନଥିଲା । ଦୁଇଟିଯାକ ହାଇସ୍କୁଲ ସ୍ୱାଧୀନତାର ଯଥେଷ୍ଟ ପୂର୍ବରୁ ଦୁଇ ନାମଜାଦା ଜମିଦାରଙ୍କ ଦାନରେ ସ୍ଥାପିତ ହୋଇଥିଲା । ତେବେ ସେ ଯା'ହେଉ ମୋ ବାପାଙ୍କର ତିନି ଭାଇ ଭିତରୁ ବାପା ସବୁଠାରୁ ସାନ । ବଡ଼ ବାପା ସେତେବେଳେ ଜମିଦାରମାନଙ୍କ ଠାରେ ସିରସ୍ତା କାମ କରୁଥିଲେ । ମୋ ବାପା ମଧ୍ୟ ସେମିତି । କିନ୍ତୁ ବଡ଼ ବାପାଙ୍କ ପରି ସ୍ଥାୟୀ କାମରେ ନଥିଲେ । ମୁଁ ବୋଧହୁଏ ବର୍ଷକର ହୋଇଥିବା ବେଳେ ମୋ ବାପାମାନେ ଭିନେ ହେଇଗଲେ । ଜମିବାଡ଼ି ତ ଭାଗ ହେଲା କିନ୍ତୁ ତିନି ବଖରାର ବିରାଟ ଘର ଯେତେବେଳେ ଭାଗ ହେଇଗଲା ସେତେବେଳେ ମୋର ଅସୁବିଧା ହେଲା ସବୁଠୁ ବେଶୀ । ମୋ ବଡ଼ମା'ଙ୍କ ସେତେବେଳେ ପୁଅ ନଥିବାରୁ ସେ ମୋତେ ପୁଅ ପରି ପାଳୁଥିଲେ । ତେଣୁ ସେତେବେଳେ ବସ୍ତୁତଃ ମୋର ଦୁଇଟା ମାମୁଁ ଘର । ବଡ଼ମା'ଙ୍କ ବାପଘର (ପାରୁଲିଆ) ଓ ମୋ ନିଜ ମାମୁଁଘର (ସମ୍ପତିଆ) । ମୁଁ ବଡ଼ମା'ଙ୍କ ସହିତ ସୁଆରିରେ ବସି

ପାରୁଲିଆ ଯାଇଛି, ମା' ସହିତ ସୁଆରିରେ ବସି ସମ୍ପୁତିଆ ମଧ୍ୟ ଯାଇଛି । ତେଣୁ ସବୁଠି ମୋର ଅଧିକାରରେ କେହି ବାଧା ଦେଉ ନଥିଲେ । କିନ୍ତୁ ବାପାମାନେ ଭିନେ ହେଲାପରେ ସେ ଅଧିକାର ସଙ୍କୁଚିତ ହେବାକୁ ଲାଗିଲା ।

# ପୁରୀରେ ଯାହା ଦେଖିଲି

ମୋର ପୁରୀ ଯାଇ ଜଗନ୍ନାଥ ଦର୍ଶନର ଅନୁଭୂତି ଏବେ ମଧ୍ୟ ଜାଗ୍ରତ ରହିଛି । ବୋଧହୁଏ ତିନି କି ଚାରିବର୍ଷ ବୟସ । ତଥାପି ମା'କୋଳ ମୋର ସବୁବେଳେ ଅଧିକାର ଭୁକ୍ତ । ହଠାତ୍ ଦିନେ କଥାହେଲା ଆମେ ସବୁ ପୁରୀ ଯିବୁ ଜଗନ୍ନାଥ ଦର୍ଶନପାଇଁ । ମୋ ବାପା, ମା, ବଡ଼ବାପା, ବଡ଼ମାଆ, ମଝିଆବାପା, ମଝିଆମାମା, ଗାଁ'ରୁ ତିନି ଚାରିଟା ପରିବାର, ସଂପର୍କରେ ଦାଦା, ଖୁଡ଼ିହେବେ ଏବଂ ଆମ ସାଙ୍ଗରେ ଥିଲେ ଆମ ଗାଁ'ର ଏକମାତ୍ର ବ୍ରାହ୍ମଣ ପରିବାର ଶୀତଳ ପ୍ରସାଦ ନନ୍ଦ ଓ ତାଙ୍କ ସ୍ତ୍ରୀ । ମୋଟ ବୋଧହୁଏ, ଦଶ କି ପନ୍ଦର ହେବେ । ସନ୍ଧ୍ୟା ସାତଟାବେଳକୁ ସମସ୍ତେ ବାହାରିଲୁ । ସାଥିରେ ମୁଢି ଚୁଡ଼ାର ଗୋଟିଏ ଛୋଟ ଛୋଟ ବୋଝ । କାଖରେ ଜାକି ଚାଲିଲୁ । ଖରାଦିନ । ଜଳେଶ୍ୱର ରାସ୍ତା ଶୁଖିଲା ଥାଏ । ପ୍ରାୟ ପାଂଚ ମାଇଲ ବାଟ । ଜମି ମଝିରେ ଗୋରୁଗାଡ଼ିର ରାସ୍ତା । ସେଥିରେ ଚାଲିବାକୁ ଅସୁବିଧା । ବର୍ଷାଦିନେ ସେ ରାସ୍ତରେ ଯିବା ବଡ଼ କଷ୍ଟ । ଚାଷ ଜମି ସେଥିରେ ପୁଣି ଜୋକ ଓ ସାପ ।

ଜଳେଶ୍ୱରରେ ପହଂଚି ଗୋଟିଏ କଥା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଆମେ ଯେତେବେଳେ ରେଲ୍‌ଲାଇନ ପାଖରେ ପହଂଚିଲୁ ମୁଁ ଦେଖିଲି ଆକାଶରେ ନାଲି ନେଳି ଆଲୁଅ ଜଳୁଛି । ଆରେ ଏଗୁଡ଼ା କ'ଣ ? ଇଏତ ଜହ୍ନ ନୁହେଁ, ତାରା ବି ନୁହେଁ । ମୋ ବଡ଼ ଭାଇ ସେତେବେଳେ ବୋଧହୁଏ ଚତୁର୍ଥ ଶ୍ରେଣୀରେ, ସେ ମୋ ଆଗରେ ଚାଲୁଥାଏ ।

ଏ ଭାଇ, ଏଇଟା କିସ ଗୋ ? ସେ ନାଲି ନେଳି ଆଲୁଅକୁ ଦେଖାଇ ପଚାରିଲି । ସେ ହସିଦେଲା । କହିଲା, ବୋକାଟା । ସେଇଟା କିସ ଜାଣିନି । ସେଇଟାକୁ ଦେଖିଲେ ରେଲ୍‌ଗାଡ଼ି ଆସିବ । ମୁଁ ସେତେବେଳେ ଭାବୁଥିଲି ମୋ ବଡ଼ଭାଇ ଯେତେ କଥା ଜାଣିଛି, ଆଉ କେହି ଜାଣିନି ।

ମୁଁ ଚୁପ । ଗାଡ଼ିଟାକୁ ଦେଖିବାକୁ ମୋର ଇଚ୍ଛା । ପୁଣି ପଚାରିଲି, ଗାଡ଼ିଟା ସେ ଲାଇନ ଉପରେ ଉପରେ ଆସିବ ?

ତାର ଉତ୍ତର ବୋଧହୁଏ ଭାଇକୁ ମଧ୍ୟ ଜଣା ନଥାଏ । ରେଲ ଲାଇନ ପାର ହେବାକୁ ଗୋଟିଏ ଗଳା ପୋଲ ଥାଏ । ସେଇ ପୋଲ ତଳଦେଇ ଆମେ ଯାଇ ଗୋଟାଏ ସଡ଼କ ଉପରେ ପହଂଚିଲୁ । ସଡ଼କଟା ଗୋଡ଼ି ପକା । ଏବର ପିଚୁ କିମ୍ବା ଢ଼ଳେଇ ନୁହେଁ ।

ସଡ଼କ ଉପରେ ପହଂଚିଲା ମାତ୍ରେ ସମସ୍ତେ ଜୟ ଜଗନ୍ନାଥ କହି ସେଥିରୁ ଧୂଳି ନେଇ ମଥାରେ ମାରିଲେ । କେହି କେହି ମୁଣ୍ଡିଆ ମାରିଲେ । ମୋ ମାଆ ମୋ ମୁଣ୍ଡକୁ ମାଟି ଉପରେ ମାଡ଼ିଦେଲା । ସେଇଟା ଥିଲା 'ଜଗନ୍ନାଥ ସଡ଼କ' । ସେମାନେ କୁହାକୁହି ହେଲେ, ଏଇଟା ବଡ଼ଦାଣ୍ଡକୁ ଲାଗିଛି ।

ଶୀତଳ ନନା କହିଲେ, ଏଇଟା ପ୍ରଥମ ଜଗନ୍ନାଥ ଦର୍ଶନ । ଠାକୁରଙ୍କୁ ଛୁଇଁଲ ବୋଲି ଭାବ । ଆମେ ଷ୍ଟେସନରେ ପହଂଚିଲୁ । ଗାଡ଼ି ଆସିବାକୁ ଡେରି ଅଛି । ସମସ୍ତେ ଗୋଡ଼ ହାତ ଧୋଇ ପ୍ଲାଟଫର୍ମ ଉପରେ ବସି ପଡ଼ିଲେ । ମନେଅଛି ସେତେବେଳେ ଷ୍ଟେସନରେ ବିଜୁଳିବତି ନଥିଲା । ଲଣ୍ଠନ ଜଳୁଥିଲା । ଷ୍ଟେସନ ଅଫିସ ଭିତରୁ ସବୁବେଳେ କୋଉଠୁ କେଜାଣି ଟକ୍ ଟକ୍ ଶବ୍ଦ ଆସୁଥିଲା । ସେ ସବୁ ଯେ ଟେଲିଗ୍ରାଫ୍ ସେ କଥା ମୁଁ କି ମୋ ଭାଇ ମଧ୍ୟ ବୁଝିବାର ବୟସ ହେଇ ନଥିଲା ।

ଗାଡ଼ି ଆସିଲା । ହାୱଡ଼ା-ପୁରୀ ପାସେଞ୍ଜର । ବଡ଼ବାପା ଥିଲେ ଆମର ଗାଇଡ୍ । ଆମେ ସବୁ ଖପାଖପ୍ ଗାଡ଼ିକୁ ଉଠିଲୁ । ତା ଭିତରେ ପ୍ରବଳ ଭିଡ଼ ।

ଜଗନ୍ନାଥ ଦର୍ଶନକୁ ଯାଉଛ ? କେତେଜଣ ଆମକୁ ପଚାରିଲେ ମୁଣ୍ଡରେ ହାତ ଲଗାଇ ।

ଜଗନ୍ନାଥ ସବୁବେଳେ ଜୀବନ୍ତ ପ୍ରତିମା । ଜଳ, ସ୍ଥଳ, ଆକାଶ ସବୁଠି ସେ ବିରାଜୁଛନ୍ତି । ଆମେ ଗାଁରୁ ବାହାରିବାବେଳେ ରାସ୍ତାରେ ଗାଁ'ର ଲୋକମାନେ ସ୍ତ୍ରୀ ପୁରୁଷ ସମସ୍ତେ ଠିଆ ହୋଇ କହୁଥା'ନ୍ତି, ତୁମର ଭାଗ୍ୟ । ଜଗନ୍ନାଥ ଦର୍ଶନକୁ ଯାଉଛ । ସେଇଠି ବି ସେମାନେ ଦୁଇ ହାତ ଯୋଡ଼ି ନମସ୍କାର କରନ୍ତି । ଜଣେ ଜଣେ ବାବାଙ୍କ ହାତରେ ଟଙ୍କେ ଦି ଟଙ୍କା ଦେଇ କହିଲେ, "ଆମ ପାଇଁ ମହାପ୍ରଭୁଙ୍କ ଭୋଗ ଟିକେ ଆଣିବ" ।

ଟ୍ରେନରେ ଜଗନ୍ନଥ ଧାମକୁ ଯାଉଥିବା ଯାତ୍ରୀମାନଙ୍କ ପାଇଁ କେହି କେହି ବସିବା ପାଇଁ ଜାଗା ଛାଡ଼ି ଦେଲେ । ତଥାପି ସମସ୍ତଙ୍କ ପାଇଁ ନ ହେବାରୁ ମୋ ବଡ଼ମାଆ ଓ ଆଉ କେତେ ଜଣ ତଳେ ବସିଗଲେ । ମୋ ମାଆ ବି, ମୁଁ ତା'କୋଳରେ ।

ପୁରୀରେ ପହଂଚିଲା ବେଳକୁ ସକାଳ ଆଠ ବୋଧେ । ପିମ୍ପୁଡ଼ିଧାର ପରି ଲୋକ ଚାଲିଛନ୍ତି । ପାଟି ଶୁଭୁଛି 'ଜୟ ଜଗନ୍ନାଥ'। କିନ୍ତୁ ଲୋକେ ଦୁଇ ହାତ ଟେକୁଛନ୍ତି କାହିଁକି ? ଆମ କୀର୍ତ୍ତନିଆ ଦଳଙ୍କପରି । ସଂକୀର୍ତ୍ତନରେ ହାତ ଟେକିବା ବୋଧେ ଚୈତନ୍ୟଙ୍କ ସମୟରୁ ଆରମ୍ଭ ହେଇଥିଲା । ଧାର୍ମିକ ଭାବଧାରା ମାଧ୍ୟମରେ ଜାତିପ୍ରଥା ବିରୁଦ୍ଧରେ ଯୋଉ ସଂସ୍କାରର ଯୁଗ ଆରମ୍ଭ ହେଇଥିଲା, ଯାହା ମଧ୍ୟ ଜଗନ୍ନଥ ସଂସ୍କୃତିର ମୂଳକଥା, ତାକୁ ଆମେ ପରବର୍ତ୍ତୀ କାଳରେ ବଂଚେଇ ରଖି ପାରିଲୁନି । ଜାତିପ୍ରଥା ଜଗନ୍ନାଥ ସଂସ୍କୃତିରେ ସ୍ଥାନ ପାଉନି ବୋଲିତ ସେଠି ମହାପ୍ରସାଦ ହାଣ୍ଡିରେ ସମସ୍ତେ ହାତମାରନ୍ତି ।

ଗାଡ଼ିରୁ ଓହ୍ଲାଇଲା ମାତ୍ରେ ଜଣେ ଆସି ଆମକୁ ପାଛୋଟି ନେଲେ । ତାଙ୍କୁ ସେମାନେ 'ପଣ୍ଡା' କହୁଥିଲେ । ସେ କୁଆଡ଼େ ଆମ ପୁରୋହିତ । ମୋର କିନ୍ତୁ ମନେପଡ଼ିଲା ସେ ଲୋକଟି ବର୍ଷେ, ଦି' ବର୍ଷରେ ଥରେ ଆମ ଘରକୁ ଆସି ପାଂଚ ସାତଦିନ ରହନ୍ତି, ଗାଁ ଗାଁ ବୁଲି ଖଜଣା ଆଦାୟ କରନ୍ତି । ସେ ଆମ ରନ୍ଧାଭାତ ଖାଆନ୍ତି ନାହିଁ । ତାଙ୍କପାଇଁ ସ୍ୱତନ୍ତ୍ର ନୂଆ ହାଣ୍ଡି ଅଣାଯାଏ । ସେଥିରେ ସେ ଭାତ ରାନ୍ଧି ଖାଆନ୍ତି । ପରେ ଜାଣିଲି ଆମ ଅଂଚଳରେ ଜଗନ୍ନାଥଙ୍କର ଅନେକ ଜମି ଅଛି ଏବଂ ସେଥିରୁ ଖଜଣା ଆଦାୟ ପାଇଁ ସେ ଆସନ୍ତି । ପଣ୍ଡା ମହୋଦୟ ପୁରୀରୁ ଆସିବାବେଳେ ପ୍ରଚୁର ଜଗନ୍ନାଥଙ୍କ ଭୋଗ ନେଇ ଆସି ଥାଆନ୍ତି । ଆମ ଗାଁ ଓ ପାଖ ଗାଁରେ ସେ ସବୁ ବଂଟା ହୁଏ । ଥରେ ପୁରୀରୁ ଭୋଗ ବା ମହାପ୍ରସାଦ ଆସିଲେ ଆଶ୍ଚର୍ଯ୍ୟ ଲାଗେ । ତାହା ବର୍ଷ ବର୍ଷ ଧରି ସରେନାହିଁ । ଗୋଟିଏ ବୋତଲ ଗଙ୍ଗାଜଳରେ ଆଉ ଦୁଇ ବୋତଲ ନଈ ପାଣି ମିଶିଲେ ତାହା ଯେମିତି ପବିତ୍ର ଗଙ୍ଗାଜଳରେ ପରିଣତ ହେଇଯାଏ, ଜଗନ୍ନାଥ ଭୋଗ ମଧ୍ୟ ସେମିତି ଭାବରେ ବଢୁଥିବ । ତାହାହିଁ ମହାପ୍ରସାଦ ନାମରେ ନାମିତ ।

ଗୋଟିଏ ଅସମ୍ଭବ 'ବିଶ୍ୱାସ' ଆମ ହିନ୍ଦୁବାଦୀଙ୍କର ଯାହାକୁ ଏକବିଂଶ ଶତାବ୍ଦୀରେ ବିଜ୍ଞାନ ଯେତେ ଉପରକୁ ଉଠି ଥିଲେ ମଧ୍ୟ ସେ 'ବିଶ୍ୱାସ'କୁ ତା'ର ରତ୍ନ ସିଂହାସନରୁ ଟିକିଏ ମାତ୍ର ହଟାଇ ପାରି ନାହିଁ ।

ଆମେ ଯାଇ ସେ ପଣ୍ଡାଙ୍କ ଘରେ ରହିଲୁ । ତାଙ୍କ ଉପର ମହଲାରେ ଗୋଟିଏ ବିରାଟ ହଲ୍ ଅଛି । ସେଠି ସପ ମସିଣା ପଡ଼ିଥିଲା । ସମସ୍ତେ ସେଇଠି । ପଣ୍ଡା ଆମକୁ ଭୋଗ (କୁଣ୍ଡି) ଆଣି ଦେଲେ । ଆମେ ଖାଇ ସାରି ଗଲୁ ମନ୍ଦିରକୁ ।

ତାଆରି ଭିତରେ ମୁଁ ଭାଇ ସହିତ ଚମ୍ପଟ ମାରିଲି ସମୁଦ୍ର କୂଳକୁ । ପ୍ରଥମେ ସମୁଦ୍ରର ଗର୍ଜନ ଶୁଣି ଡରିଗଲି । ଭାଇକୁ ପଚାରିଲି ଏଇଟା କୋଉଠି ସରିଛି ? ତା' ସେପାଖରେ କିସ ଅଛି ?

ଏଇଟା କୋଉଠି ସରି ନାହିଁ । ସେ ପାଖରେ ଦେଶ ଅଛି ।

ତା ଉତ୍ତରକୁ ବୁଝିବା ଅବସ୍ଥାରେ ମୁଁ ନଥିଲି । ବୁଲାବୁଲି ଅବଶ୍ୟ ହେଲା ।

ପୁରୀରେ କୁଆଡ଼େ ନିୟମ ଅଛି ଜଣକୁ କାହାକୁ 'ଧର୍ମ' ଦେବାକୁ ହେବ । ହାତରେ ମହାପ୍ରସାଦ ଦେଇ ମୋ ମାଆ ନନ୍ଦଙ୍କୁ ଭାଇ (ନନା) ମାନ୍ୟ ଦେଲା । ଅନ୍ୟମାନେ ମଧ୍ୟ ସେମିତି ଜଣେ ଜଣଙ୍କୁ 'ଧର୍ମ' ଦେଲେ । ଶୀତଳ ନନା ମୋର ମାମୁଁ ହେଲେ ସେଇ ଦିନଠୁ ।

ମୋର ମନେଅଛି ଶୀତଳ ନନା ବଂଚିଥିବା ଯାଏ ଆମର ପାରିବାରିକ ବନ୍ଧୁ ପରି ପର୍ବ ପର୍ବାଣିରେ ତାଙ୍କ ଘରକୁ ମାନ୍ୟତା ଯାଏ । ଗୁଆ ପଡ଼େ, ବେଭାର ମଧ୍ୟ ଯାଏ ।

'ବସୁଧୈବ କୁଟୁମ୍ବକମ୍' ଜଗନ୍ନାଥ ସଂସ୍କୃତିର ସଂକେତ । ଜାତି ଧର୍ମ ନିର୍ବିଶେଷରେ ଅଭଡ଼ା ସମସ୍ତେ ଏକାଠି ମିଶି ଖାଆନ୍ତି । ପରସ୍ପରର ଅଇଁଠା ମଧ୍ୟ ଖାଆନ୍ତି ।

ଏପରି ମହାନ୍ ପ୍ରଥା ଆଉ କୋଉଠି ଅଛି ?

## ବାଲ୍ୟାବସ୍ଥା

ମୋର ବାଲ୍ୟାବସ୍ଥା ଭଲରେ ଥିଲା । ମୋର ବଡ଼ ଭାଇ ମଧ୍ୟ । ବାପା ଭିନେ ହୋଇ ଗଲା ପରେ ଆମର ଅବସ୍ଥା ବୋଧେ ଆଉ ଟିକିଏ ଭଲ ଆଡ଼କୁ ଆସିଲା । ଜମିବାଡ଼ି ଖୁବ୍ ବେଶି ନଥିଲେ ମଧ କିଛି ଥିଲା । ତିନି ଜଣ ମଜୁରିଆ ସହିତ ଗୋଟିଏ ଗୋରୁମଣ୍ଡା ଟୋକା ଆମ ଘରେ ରହୁଥିଲେ । ତା'ଛଡ଼ା ଭୂପତି ଭାଇ ମେଟ୍ରିକ ପଢ଼ିବା ବେଳୁ ଆସି ଆମ ଘରେ ରହିଲେ । ଖାସ କରି ମୋର ପଢ଼ାପଢ଼ି ଦେଖିବା ପାଇଁ ଜଣେ ପ୍ରାଇମେରି ସ୍କୁଲ ଟିଚର ମଧ୍ୟ ରହିଲେ ।

ମୋର ଜନ୍ମ ପରେପରେ ମା'ର ହଠାତ୍ ପକ୍ଷାଘାତ ରୋଗ ହେଲା । ତା'ର ଗୋଟିଏ ହାତ ଏକ ପ୍ରକାର ଅଚଳ । ସେ ଥିଲା ଘରର ଏତେ ବଡ଼ ପରିବାରର ଏକ ମାତ୍ର ଅନ୍ନଦାତ୍ରୀ । ତେଣୁ ମୋତେ ଧରିବା ପାଇଁ ଗାଁ'ର ବୁଢ଼ୀଟିଏ ରହିଲା । ଅନ୍ୟାନ୍ୟ କାମ ପାଇଁ ଆଉ ଗୋଟିଏ ସ୍ତ୍ରୀଲୋକ ମଧ୍ୟ ରହିଲା । ମା'ର କବିରାଜି ଚିକିତ୍ସା ଚାଲିଲା । ମୋର ମନେ ଅଛି, ଜଣେ କବିରାଜ ୪/୬ ମାସ ଚିକିତ୍ସା କଲାପରେ ସେ ଭଲ ନହେବାରୁ ଥରେ ଆସି କହିଲେ ୟାଙ୍କୁ 'ବାମ୍ଫ' ଦେବାକୁ ହେବ । ଖାଲି ଔଷଧରେ ଭଲ ହେବନି । ତାହାହିଁ ହେଲା । ମାଆକୁ ଗୋଟିଏ ଚୌକି ଉପରେ ବସେଇ ଦିଆଗଲା । ଦୁଇଟା କମ୍ବଳ ଘୋଡ଼େଇ ଦିଆଗଲା । ସେହି କମ୍ବଳ ତଳେ ବଡ଼ ଝୁଣା ସରାଟିଏ ରଖାଗଲା । କମ୍ବଳ ଭିତରେ ସେ ଅଣନିଶ୍ୱାସୀ ହେଇ ଛାଟି ପିଟି ହେଲେ ଦୁଇ ଜଣ ମାଡ଼ି ଧରୁଥିଲେ । ଅଧ ଘଂଟାଏ ପରେ ତାକୁ ଯେତେବେଳେ ଛାଡ଼ିଦିଆଗଲା ସେ ଅଚେତ ହେଇ ତଳେ ପଡ଼ିଗଲା । ମୁଁ କାନ୍ଦିଉଠିଲି । ମାଆ କିନ୍ତୁ ସେଇଥିରେ ଭଲ ହେଇଗଲା । ସ୍ୱାଭାବିକ ହୋଇ ଉଠିଲା । ମୋତେ କୋଳକୁ ନେଇ ପାରିଲା । ନଈରୁ ମଧ ଗାଗରାରେ ପାଣି ଆଣି ପାରିଲା ।

ମୋ ଅପା ମାନେ ବଡ଼ ବାପାଙ୍କ ବଡ଼ ଝିଅ, ତା' ବାହାଘର କଥା ମନେ ପଡ଼ିଲେ କୌତୁକିଆ ଲାଗେ । ମୁଁ ଥାଏ ତା'ର ଚେଲା । କୋଳି ତୋଳିଲାବେଳେ, ବିଲ ଜଙ୍ଗଲକୁ ଗଲେ, ମୁଁ ତା'ର ସାଙ୍ଗ । ଫେରିଲାବେଳକୁ ମୋର ସବୁ ପକେଟ୍ ଆଗ ଭର୍ତ୍ତିହେଇଥାଏ । ବିଲରୁ ସେ କାଇଁଚ ବି ଆଣେ । କାଇଁଚରେ ସେ ପଙ୍ଖା ତିଆରି କରେ । ଅପାର ବୟସ ସେତେବେଳେ ବୋଧେ ଦଶ କି ବାର ହେଇଥିବ । ତାର ବାହାଘର ବେଳେ କନିଆଁ ଦେଖି ଆସିଥିବା ଲୋକମାନଙ୍କୁ ସେହି ପଙ୍ଖା ଓ ରୁମାଲରେ ପଡ଼ିଥିବା ଫୁଲ ଦେଖେଇ

ଦିଆଯାଇଥିଲା । ସେମାନେ ରାନ୍ଧିବା ବିଷୟରେ ମଧ୍ୟ କେତେକ ପ୍ରଶ୍ନ ପଚାରିଲେ । ବାଃ, ଝିଅର ପ୍ରଶଂସା ସେମାନେ କଲେ ।

ତା'ପରଦିନ ମୁଁ ଦେଖିଲି ଅପା ଆମ କୋଠା (ମାଟି କାନ୍ଥର ଛାତ) ଉପରେ ବସି ଗୋଟାଏ ବହିରୁ କଅଣ ଗୀତ ଶିଖୁଛି । ବେଶ ଲହର ଦେଇ ନିମ୍ନ ସ୍ୱରରେ ବୋଲୁଛି । ପରେ ଜାଣିଲି ସେଗୁଡ଼ିକ କାନ୍ଦଣା ଗୀତ । ଝିଅମାନେ ବାହାହେଇ ଗଲାବେଳେ ମାଆ, ମାଉସୀ ଓ ଅନ୍ୟମାନଙ୍କୁ ଧରି କାନ୍ଦିବାକୁ ହୁଏ । ଖାଲି ଭୋ ଭୋ ରଡ଼ିକରି କାନ୍ଦିଲେ ହେବନି, କିଛି କହିବାକୁ ହୁଏ । ସେଥିପାଇଁ ଗୋଟେ ଷ୍ଟାଣ୍ଡାର୍ଡ଼ ଗୀତ ଲେଖା ହେଇ ଚଟି ବହିସବୁ ହାଟରେ ବିକ୍ରି ହୁଏ । ବାହାଘର ସିଜିନ୍‌ବେଳେ ତାହାର ଡିମାଣ୍ଡ୍ ବେଶୀ । ଭଲ କାନ୍ଦିବା ଗୋଟେ କଳା । ବେଳେବେଳେ ପରିବାର ଭିତରେ ଏପରିକି ଗାଁ କି ସାଇ ପଡ଼ିଶାରେ ମଧ ଝିଅମାନଙ୍କ ଭିତରେ ତାହାର ପ୍ରତିଯୋଗିତା ହୁଏ । ବୁଢ଼ୀମାନେ ବେଳେବେଳେ ମନ୍ତବ୍ୟ ଦିଅନ୍ତି 'ଅମୁକ ଝିଅ ଭଲ କାନ୍ଦିଥିଲା, ସେ ସମସ୍ତଙ୍କୁ କନ୍ଦାଇ ଦେଲା' ।

ଏବେ ଭାବେ, ସେ ପ୍ରକାର କାନ୍ଦଣା ବହିର ଲେଖକର ବାହାଦୂରୀକୁ ପ୍ରଶଂସା କରିବାର ନାହିଁ କି ? କାନ୍ଦଣା ବହି ଉପରେ କେହି ଗବେଷକ କିଛି କରିଛନ୍ତି କି ନା ମୁଁ ଜାଣେନା । କିନ୍ତୁ ସେଥିରେ ସୃଜନଶୀଳତା ଅଛି ।

"ଉଠିଲା ସୁଆରୀ ବସିଲା ନାହିଁ ମା'ଗୋ,
ଘୂରି ଚାହିଁଲା ବେଳକୁ ଦୁଶିଲା ନାହିଁ ମା'ଗୋ ।"

ମୋ ଅପା ପାଖରେ ସେମିତିକା ବହି ବୋଧେ ପାଂଚ ଛଅ ଖଣ୍ଡ ଥିଲା, ବିଭିନ୍ନ କବିଙ୍କର । ବାହାଘରର ଅନେକ ପରେ ସେ ଥରେ ଗାଁକୁ ଆସିବାରୁ ତାକୁ ମୋର ଆଉ ଗୋଟେ ଭଉଣୀ (ଦାଦାଝିଅ) ତାକୁ ଲୁଚାଇ କରି କହିଲା,'ମୋତେ ସେଗୁଡ଼ା ଦେଇଯା'।

ମଜାର ଘଟଣାଟିଏ ଘଟିଲା ବାହାଘରବେଳେ । ହାତଗଣ୍ଠି ପଡ଼ିସାରିଲା ପରେ ବ୍ରାହ୍ମଣ ପଚାରିଲେ, ଏବେ କନ୍ୟାଦାନ ସରିଲା, ବାକି ଦାନ ?

ମୋ ବଡ଼ବାପା କହିଲେ, 'ଏଇ ସାମନାରେ ଥିବା ଫଳନ୍ତି ନଡ଼ିଆ ଗଛକୁ ଝିଅକୁ ଦାନ କଲି ।' ତା'ର ପ୍ରତ୍ୟେକ ଫଳ ସେ ଖାଇବ ।

ମୁଁ ଆଶ୍ଚର୍ଯ୍ୟ ହେଲି, ଅପା ତାକୁ କେମିତି ନେବ ?

ଦାନକର୍ମ ସେତିକିରେ ସରିଲା ନାହିଁ । ବଡ଼ମା' ଝିଅକୁ କୋଳରେ ଧରି ବସିଥିଲେ । କହିଲେ କନ୍ୟାଦାନ ସହିତ 'ଗୋ' ବି ତ ଦାନ ଦେବା କଥା । ମୁଁ ମୋର କାଳିଗାଈର ଛଡ଼ାକୁ ଏଇଠି ଟେକିଦେଉଛି ।

ସମସ୍ତେ ଖୁସି ହେଇଗଲେ । ଚାଷଜମି, ଫଳନ୍ତି ଗଛ ଦୁଧିଆଳୀ ଗାଈ ବା ଛଡ଼ା ସେତେବେଳେ କନ୍ୟାଦାନ ସହିତ ସମାନ ପୂଣ୍ୟ ଅର୍ଜନ କରୁଥିଲା । ଝିଅ ଘରୁ ଧାଈଟିଏ ମଧ୍ୟ ପଠା ଯାଉଥିଲା । ଆଗରୁ ଜମିଦାର ରାଜାମାନେ ସ୍ଥାୟୀ ଭାବରେ ପଠାଉଥିଲେ । ପରେ ତାହା ଅସ୍ଥାୟୀ ପ୍ରଥାକୁ ଖସି ଆସିଲା । ଏବେ ତାହା ପ୍ରାୟ ଲୋପ ପାଉଛି ।

ମୋ ଅପା ସହିତ ବିଧବା ସ୍ତ୍ରୀଟିଏ ଧାଈ ଭାବରେ ଯାଇ ମାସଟିଏ ଥିଲା ।

# ମୁଁ ଭୂତ ଦେଖିଛି

କିଏ ବିଶ୍ୱାସ କରୁ ବା ନକରୁ ମୁଁ କିନ୍ତୁ ଭୂତ ଦେଖିଛି । ଭୂତଟା ଯେ ଏତେ ଭଲ ଓ ସାଧାରଣ ମଣିଷ ହେଇପାରେ ଏ ବିଶ୍ୱାସ ମୋର ନଥିଲା । ପରେ ମୁଁ ଭାବୁଥିଲି ଭୂତଟା ଯଦି ସାଧାରଣ ମଣିଷ ପରି, ଯଦି ଭୂତଦ୍ୱାରା ଭୟ ଦୂର ହେଇ ପାରୁଛି, ତେବେ ଗାଁ'ଟା ଯାକ ଯେତେ ଭୂତ ହେଲେ କ୍ଷତି କଅଣ ? ଭୂତମାନେ ତ ପୁଣି ଏଇ ଗାଁରେ ରହିବେ ନା, ଆଉ ଯିବେ କୁଆଡ଼େ ?

ମୁଁ ଖୁବ୍ ଛୋଟ ଥିଲି । ବୋଧେ ଚାରି କି ପାଂଚ ବର୍ଷ ବୟସ । ଆମ ଘରେ ସେଦିନ ଅଷ୍ଟପ୍ରହରୀ ସଂକୀର୍ତନ ହେଉଥିଲା । ଅଷ୍ଟପ୍ରହରୀ ବା ଚବିଶ ପ୍ରହରୀ ସେତେବେଳେ ଗାଁ'ମାନଙ୍କରେ ପ୍ରାୟ ହେଉଥିଲା । ଚୈତନ୍ୟ ମହାପ୍ରଭୁଙ୍କ ପ୍ରଭାବ ସେ ସମୟ ଅର୍ଥାତ୍ ୧୯୪୦/୪୫ ଯାଏ ଥିଲା । କେତେକ ଜାଗାରେ ଚୈତନ୍ୟଙ୍କ ମୁର୍ତ୍ତି ରଖି ଲୋକେ ପୂଜା କରୁଥିଲେ । ଗାଁ ଗାଁରେ ସଂକୀର୍ତ୍ତନିଆ ଦଳ ମଧ୍ୟ ଥିଲେ । ବୈଷ୍ଣବ ଧର୍ମୀମାନଙ୍କ ସ୍ଥାନ ସମାଜରେ ସ୍ୱତନ୍ତ୍ର ଥିଲା । ସେମାନଙ୍କ ସ୍ଥାନ ବ୍ରାହ୍ମଣମାନଙ୍କ ପରେଥିଲା । ଦାନ ଦକ୍ଷିଣା ଦେଲାବେଳେ ବ୍ରାହ୍ମଣମାନଙ୍କୁ ଏକ ଟଙ୍କାଦେଲେ ବୈଷ୍ଣବମାନଙ୍କୁ ଆଠଅଣା ବା ପଚାଶ ପଇସା ଦିଆ ଯାଉଥିଲା ।

ବୈଷ୍ଣବମାନେ ସାଧାରଣତଃ ସମାଜର ତଳ ଶ୍ରେଣୀରୁ ବା ବ୍ରାହ୍ମଣେତର ଜାତିରୁ ଆସି ଥାଆନ୍ତି । ମୁଁ ତ ଭାବୁଛି ସ୍ୱାଧୀନତା ଆସିଲା ପରେ ମଧ୍ୟ ଗାନ୍ଧୀବାଦୀମାନେ ଯୋଉମାନେ ଜାତିପ୍ରଥାର ବିରୋଧ କରୁଥିଲେ ସେମାନେ ଯଦି ବୈଷ୍ଣବ ଧର୍ମକୁ ପ୍ରୋତ୍ସାହିତ କରିଥାନ୍ତେ ତେବେ ହୁଏତ ଏତେବେଳକୁ ଆମ ଉତ୍କଟ ଜାତିପ୍ରଥାର ଅନେକ ସୁଧାର ଆସିପାରି ଥାଆନ୍ତା ।

ତେବେ ସେ ଯାହା ହେଉ ଆମ ଘରେ ଯେଉଁ ଅଷ୍ଟପ୍ରହରୀ ସଂକୀର୍ତ୍ତନ ସେଦିନ ହେଉଥିଲା, ସେଥିପାଇଁ ଆମର ବହୁତ ବନ୍ଧୁ କୁଣିଆ ଆସିଥିଲେ । ସେମାନଙ୍କ ଭିତରୁ ମହାନ୍ତି ସାହିର ପିଉସା ପ୍ରିୟନାଥ ଦାସଙ୍କ ସ୍ତ୍ରୀ ଓ ତାଙ୍କ ଝିଅ ଗାଲୁଅପା ମଧ୍ୟ ଆସିଥିଲେ । ଗାଲୁଅପା ମୋ'ଠୁ ବୟସରେ ଅନେକ ବଡ଼ । ସେତେବେଳେ ତା'ର ବୟସ ୧୩ କି

୧୪ ହେଇଥିବ । କାରଣ ସେ ସେତେବେଳେ ଶାଢ଼ି ପିନ୍ଧୁଥିଲା ଏବଂ ଆମ ଘରକୁ ଆସି ସେ ମୋତେ 'ମୁଣ୍ଡିଆ ମାର' କହି ମୋ ମୁଣ୍ଡଟାକୁ ତା' ଗୋଡ଼ ପାଖରେ ମାଡ଼ି ଦେଇଥିଲା । କିନ୍ତୁ ସେଇ ସମୟଠାରୁ ମୁଁ ତା'ର ସାଙ୍ଗ ହେଇଗଲି । ସେ ଯୁଆଡ଼େ ଯାଏ, ମୋତେ ସାଙ୍ଗରେ ନିଏ ।

ସେଦିନ ସଞ୍ଜବେଳେ ଦାଣ୍ଡ ଖଳାରେ ଚୈତନ୍ୟ ମହାପ୍ରଭୁଙ୍କୁ ବସେଇ ପୁଜା ଚାଲିଥାଏ । ଗାଁ'ଟା ଯାକର ଲୋକ ଭର୍ତ୍ତି । କୀର୍ତ୍ତନିଆ ଦଳ ପାଳିକରି ଖୋଳ କରତାଳ ବଜେଇ 'ଜୟ ରାଧା ଗୋବିନ୍ଦ ଜୟ' କରି ନାଚି ନାଚି ବେଢ଼ା ପକଉ ଥାଆନ୍ତି । ଆମ ପିଲାଦଳଙ୍କର ବା ସେଠି କି କାମ । ସଞ୍ଜ ଅନ୍ଧାର ହେଇଗଲାଣି । ଆମେ ଲୁଚକାଳି ଖେଳ ଆରମ୍ଭ କରିଦେଲୁ । ଏ ଖେଳରେ ଜଣେ ହଜିବା ବା ଲୁଚିବା ଓ ଅନ୍ୟମାନେ ଖୋଜିବାର ମଜା ଏ ଯାଏଁ ମୋର ମନେଅଛି । ଏବେ ତ ହଜିବା ଖୋଜିବା କଥାଟାକୁ କବିମାନେ ତାଙ୍କ କବିତାରେ ଲେଖି ଭାବ ବିହ୍ୱଳତାରେ ଲୁହ ଗଡ଼ଉଥିବାର ଦେଖାଯାଉଛି । କିନ୍ତୁ ସେତେବେଳେ ଏଥିରୁ ଆମେ ପ୍ରଚୁର ମଜା ନେଉଥିଲୁ । ଗାଲୁ ଅପା ଥିଲା ଆମର ନେତା । ସେ ସବୁଠୁ ବଡ଼ । ଆମେ ପୁଅ ଝିଅ ମିଶି ସାତ ଆଠ ଜଣ ।

ମୁଁ ଆଗରୁ କହିଛି ଆମ ଘରଠୁ ସୁବର୍ଣ୍ଣରେଖା ନଈଟା ଖୁବ୍ ବେଶୀରେ ଦୁଇଶହ ଗଜ ଦୂରହେବ । ମଝିରେ ଗୋଟିଏ ବିରାଟ ବରଗଛ । ଲମ୍ବା ଲମ୍ବା ଓହଳ । ଶହେ ବର୍ଷର ପୁରୁଣା ବାବାଜୀର ଦାଢ଼ୀପରି । କିମ୍ବା ନଈ ସେପାରି ମୁସଲମାନ ବସ୍ତି କାଦରୟାଁର ଗୋରୁ ବ୍ୟବସାୟ କରୁଥିବା କାଲୁମିଆଁର ଦାଢ଼ୀପରି ସିଧା ତଳକୁ ଓହଳି ଥାଏ ।

ଆମ ଲୁଚକାଳି ଖେଳର ପରିସର ସେଇ ଯାଏଁ ଲମ୍ୱିଥାଏ । ଆମେ ଆମ ଘରର ପଛପଟ ଦେଇ ଯେଉଁଠି ଅଧା ଆଲୁଅ ଓ ଅଧା ଅନ୍ଧାର ସେଇଠୁ ବରଗଛ ଯାଏଁ ଯାଇ ପୁଣି ଦାଣ୍ଡ ପଟକୁ ଆସୁ । ଏମିତି ଗୋଟାଏ ଖେଳ ଚାଲିଥିବାବେଳେ ଥରେ ମୁଁ ପଛରେ ରହିଗଲି ଅନ୍ୟମାନେ ପଳାଇ ଆସିଲେ ।

ସେ ବରଗଛର ଦୁର୍ନାମ ଥାଏ ଯେ ସେଥିରେ କୁଆଡ଼େ ଭୂତ ଥାଏ । ସେ ଗଛ ମୂଳରେ ମଧ୍ୟ ପୂଜା ହୁଏ । ବରଗଛ ଠାରୁ ନଈ ପାଖଯାଏ ବିଭିନ୍ନ କଣ୍ଟା ଓ କୋଳି ଗଛର ଜଙ୍ଗଲ ।

ମୁଁ ଯେତେବେଳେ ଏକୁଟିଆ ହେଇଗଲି ହଠାତ୍ ମୋର ଭୂତ କଥା ମନେପଡ଼ିଲା । ବଡ଼ ବିକଳ ଆଖିରେ ମୁଁ ଚାରିଆଡ଼କୁ ଅନାଇଲି । କାନ୍ଦି ପକାଇବି କି ଆଉ,ବଡ଼ ପାଟିରେ, କାନ୍ଦ ଶୁଣି ହୁଏତ ଘରୁ ସମସ୍ତେ ଦଉଡ଼ି ଆସିବେ । ମୁଁ ଏତେ ଡରି ଗଲି ଯେ ସେ ଗଛ କି ତା'ର ଓହଳମାନଙ୍କୁ ମୋଟେ ଚାହିଁଲିନି । ସେଥିରୁ କାଳେ ଭୂତ ବାହାରି ପଡ଼ିବ । ଭୂତମାନଙ୍କ ଅତ୍ୟାଶ୍ଚର୍ଯ୍ୟ ଓ ନିର୍ଦ୍ଦୟ କାମର ଅନେକ କଥା ମୋର ମନେପଡ଼ି ଯାଇଥିଲା ।

ଗଛର ଅନ୍ଧାର ଡାଳରୁ ଭୂତ ଆସି ମୋତେ ଟେକି ନେଇଯିବ କି ? ଦୁଇହାତ ପାପୁଲିରେ ଦୁଇ ଆଖି ବନ୍ଦକରି ତା'ରି ଫାଙ୍କ ଦେଇ ମୁଁ ଟିକିଏ ଟିକିଏ ଦେଖୁଥାଏ । ହଠାତ୍ ସେଇ ଛୋଟିଆ ଫାଙ୍କଦେଇ ଦେଖିଲି ମୋ କଟିମାମା ଅର୍ଥାତ୍ ସ୍ୱାନ ବଡ଼ମା ନଈରୁ ଘରକୁ ଆସୁଛନ୍ତି । ମୋର ଦମ୍ଭ ପଶିଲା । ଯାଃ ଆଉ ଡର କ'ଣ ? ଭୂତ ମୋର କ'ଣ କରିବ ? ମୁଁ ତାଙ୍କ ପଛେପଛେ ଚାଲିଲି । ଘର ପାଖରେ ପହଂଚି ବୀରଦର୍ପରେ ଘର ଭିତରକୁ ଦଉଡ଼ି ଗଲି । ଗାଲୁ ଅପା ଓ ଅନ୍ୟମାନେ ମୋତେ ଘେରିଗଲେ । ଅପା କହିଲା ଯେ, ତୁ କୁଆଡ଼େ ଥିଲୁ ରେ ? ତୋତେ ଏଠାରେ ସମସ୍ତେ ଖୋଜୁଛନ୍ତି । ମୁଁ କହିଲି, ତୁମେ କୋଉଠି ଲୁଚିଲ କି ? ମୁଁ ତ ତୁମ ପଛେପଛେ ଗଛ ପର୍ଯ୍ୟନ୍ତ ଗଲି । ସେଠି ତୁମକୁ ନଦେଖି ମୁଁ ଡରି ଗଲି । ଅନ୍ଧାରରେ କେମିତି ଆସିବି ଭାବୁ ଭାବୁ ସେଆଡ଼ୁ କଟିମାମା ଆସୁଥିଲେ, ମୁଁ ତାଙ୍କ ପଛେପଛେ ଆସିଗଲି ।

ସେ କହିଲା, କଟିମାମା ? ଆରେ ସେ ତ ନଈକୁ ଯାଇ ନାହାନ୍ତି । ସେତ ଘର ଭିତରେ ରୋଷେଇ ଘରେ କ୍ଷୀରୀ ରାନ୍ଧୁଛନ୍ତି ।

ମୁଁ କହିଲି ତେବେ କିଏ କେଜାଣି, ମୁଁ ତ ତାଙ୍କୁ ଦେଖିଛି ।

ସେ ବ୍ୟସ୍ତ ହେଇ ପଡ଼ିଲା । କଟିମାମାଙ୍କୁ ଯାଇ ପଚାରିଲା । ସେ ମନା କଲେ ।

ଅପା ଆସି ମୋତେ କହିଲା ତୁ ନିଶ୍ଚେ ଭୂତ ଦେଖିଛୁ । ସେ ମୋ ମୁଣ୍ଡ ଉପରେ ତିନିଥର ଥୁ ଥୁ କରିବା ପରେ କହିଲା ଚାଲ, ତୋର ଆଜି କିଛି ଖାଇବା ଦରକାର ନାହିଁ । ଏଇଠି ଠାକୁର ପାଖରେ ବସ ।

ତାପରେ ମୋତେ ସମସ୍ତେ ଘେରିଗଲେ । ମାଆ, ଖୁଡ଼ି ସମସ୍ତେ । ସମସ୍ତେ ଟିକେ ଟିକେ ଆଉଁସି ପକାଇଲେ । ମାଆ କହିଲା 'ସେଇ ସମ୍ପୁଡ଼ି ମାଆ ହେଇଥିବ । ସିଏ ସେଇ ବଡ଼ ଗଛରେ ଅଛି । ମୁଁ ଜାଣେ' । ଆଜି ବି ମୁଁ ଭାବେ ଏ ଭୂତ କଅଣ ଓ କିଏ ?ମୋ ଭିତରୁ କେହିଜଣେ ବାହାରି କୁହେ ମୁଁ ସେହି । ମୋତେ ତୁମେ ଦେଖି ନ ଥିଲ ?

# ଗାଁ'ର ସାମାଜିକ ସ୍ଥିତି ଓ ସାମାଜିକତା

ମୁଁ ଆଗରୁ କହିଛି ଆମର ଗୋଟାଏ ନିମ୍ନ ମଧ୍ୟବିତ୍ତ ପରିବାର । କୃଷି ଉପରେ ନିର୍ଭରଶୀଳ । ଆମ ବାପାମାନେ ଭିନେ ହେଇଯିବା ପରେ ଆମର ଆର୍ଥିକ ସ୍ଥିତି ଭଲ ହେଇଥିଲା । ବାପା ଜମିଦାରୀ ସିରସ୍ତା କାମ କରୁଥିଲେ । ଯେତେଦୂର ମନେପଡୁଛି ଜମିଦାର ବିଶ୍ୱନାଥ ପରିଡ଼ାଙ୍କର ଓ ତା' ସହିତ କଂଟେଇର ଜଣେ ଜମିଦାରଙ୍କର । ତେଣୁ ସେ ବର୍ଷଯାକ ବ୍ୟସ୍ତ ରହୁଥିଲେ । ଏଥିରୁ ଭଲ ରୋଜଗାର ହେଉଥିଲା । ଆସ୍ତେ ଆସ୍ତେ

କିଛି ଅର୍ଥ ହାତକୁ ଆସିଲା । ଗୋଟାଏ ଭଲ କୃଷକ ପରିବାର ହିସାବରେ ସ୍ୱୀକୃତି ମିଳିଲା । ଯଦିଓ ଆମର ଜମିଦାର ହିସାବରେ ଗୋଟାଏ ନାଁ ଥିଲା ବୋଲି ମୋ ବାପା, ବଡ଼ବାପା ନିଜ ନାଁ ପଛରେ ଚୌ: (ଚୌଧୁରୀ) ବୋଲି ସବୁବେଳେ ଲେଖୁଥିଲେ, କେବେ କୋଉଠି ଜମିଦାରୀ ଥିଲା ତା ଚିହ୍ନବର୍ଣ୍ଣ ଅବଶ୍ୟ ମୋତେ ଜଣାନାହିଁ । କିନ୍ତୁ କର୍ପୂର ନଥିଲେ କନାଟାକୁ ତ ଦେଖିଛି । ଗାଁ ଗଣ୍ଡାରେ ସେ ଅଂଚଳରେ 'ଚୌଧୁରୀ ସାଆନ୍ତେ' ବୋଲି ଡାକ ନାଁ ଅଛି । ସେମିତି ମାନ୍ୟତା ମଧ୍ୟ ଅଛି ।

କୋଟସାହି ଗାଁ'ଟା ବେଶୀ ବଡ଼ ନୁହେଁ । ୫୦ / ୬୦ ଘରହେବ । ପ୍ରଥମେ କରଣ ପରିବାର ଆଠ/ଦଶଟା ଘରହେବ । ତାପରେ କେତେଗୁଡ଼ିଏ ଚଷୀ ପରିବାର । ତାଆରି ଭିତରେ ବ୍ରାହ୍ମଣ, ଗଉଡ଼, କୁମ୍ଭାର ଓ ରାଢ଼ୀ ଏବଂ ଶେଷରେ ଥାଏ ହାଡ଼ି ଓ ମହୁରୀ । ବାଗ ଓ ଡିଙ୍ଗାଶାଳ ଗାଁ' ଦିଟା ସାମାନ୍ୟ ଅଲଗା ହେଲେ ମଧ୍ୟ ସେଗୁଡ଼ିକ କୋଟସାହି ଭିତରେ । କୁଆଡ଼େ ଗାଁ ଟା ନଈଖାଇ ଯିବାରୁ ଭାଗ ଭାଗ ହେଲା ସିନା, କିନ୍ତୁ ଏବେ ମଧ ମନ୍ଦିର ଓ ବିଭର ଆଚାର ସବୁ ଗୋଟାଏ । ବାଗ ଗାଁରେ ଥିବା ଧୋବା ବାରିକ ଆମର । ସେମାନେ ଜାଗିରି ଖାଆନ୍ତି । ତେଣୁ ସେବା ମାଗଣା । ବାଗରେ ମଧ୍ୟ କେଉଟ ପରିବାର ଅଛନ୍ତି । ଡିଙ୍ଗାଶାଳରେ ଅଛନ୍ତି କଣ୍ଡରା ଓ ପାଣ ।

କୋଟସାହିକୁ ଗୋଟିଏ ସ୍ୱୟଂ ସଂପୂର୍ଣ୍ଣ ଗାଁ ବୋଲି କହିହେବ । ଯେଉଁଠି ସବୁ ଜାତି ଗୋଟିଏ ଜାଗାରେ ଥାଆନ୍ତି ଏବଂ ସବୁ କାମରେ ମିଳି ମିଶି କାମକରନ୍ତି, ତାକୁହିଁ ସ୍ୱୟଂ ସଂପୂର୍ଣ୍ଣ କହିହେବ । ରେଭେନ୍ୟୁ ରେକର୍ଡ଼ ମଧ୍ୟ ଗୋଟିଏ । ଆମ କରଣ ପରିବାର ବିଶେଷ କରି ବଡ଼ବାପା ଥିଲେ ଗାଁ ମାଲିକ ।

ମନ୍ଦିର ଗୋଟିଏ । କାଳୀ ମନ୍ଦିର । କାଳୀ କୁଆଡ଼େ ଆମ ପରିବାରର ଥିଲା କିନ୍ତୁ ନଈ ଖାଇ ଯିବାରୁ ଆମେ ତ ଉଠି ଆସିଲୁ, କାଳୀଙ୍କ ସ୍ୱତନ୍ତ୍ର ମନ୍ଦିର (ଛୋଟ) ହେଲା । ଅନେକ ପରେ ଅର୍ଥାତ୍ ମୋ ପିଲାକାଳେ ଜମାଲପୁରର ଜମିଦାର ବିଶ୍ୱନାଥ ପରିଡ଼ା ସେଠି ଗୋଟିଏ ଶିବ ମନ୍ଦିର ତୋଳାଇ ଥିଲେ । ସେଇଟା ଦ୍ୱିତୀୟ ବିଶ୍ୱଯୁଦ୍ଧ ଆଗର କଥା । ସେଇ ମନ୍ଦିର ବେଢ଼ା ଭିତରେ ଚଣ୍ଡୀ ମନ୍ଦିରଟିଏ ମଧ୍ୟ ଅଛି । ଚଣ୍ଡୀ ଗୋଟିଏ ଗୋଲ ମାଙ୍କଡ଼ା ପଥରର ମୂର୍ତ୍ତିଟିଏ । ସେ ମୂର୍ତ୍ତି ପୁରୁଷ କି ସ୍ତ୍ରୀ ଜଣାନାହିଁ । ନଈରେ ଭାସି ଆସିଥିଲା । ଲୋକେ ତାକୁନେଇ ଚଣ୍ଡୀ ହିସାବରେ ପୂଜା କରନ୍ତି । ଜୈନ କି ମହାବୀର ମୂର୍ତ୍ତି ବି ହେଇପାରେ । ଚନ୍ଦନ ସିନ୍ଦୂର ଲାଗି ଏବେ ତା'ର ରୂପବି ବଦଳି ଗଲାଣି ।

ମନ୍ଦିରଟା ଆମ ଘରପାଖରେ । ସକାଳେ ଓ ସନ୍ଧ୍ୟାବେଳେ ଆମର ସେଇଟା ଖେଳ ଜାଗା । ଗୋଟାଏ ବିରାଟ କନିଅର ଗଛ ସେ ମନ୍ଦିର ବେଢ଼ାରେ । ଆମେ ସବୁ ତା'ଡାଳରେ ଚଢ଼ି କନିଅର ଫୁଲ ତୋଳି ସେଥିରୁ ମହୁ ଶୋଷିବା ଆମର ପ୍ରଧାନ ଖେଳ । ଶିବ ମନ୍ଦିର

ତୋଳା ହେଉଥିଲାବେଳେ ତା' ଉପରକୁ ଚଢ଼ି ତଳେ ଥିବା ବାଲି ଉପରକୁ (ପ୍ରାୟ ୪୦ଫୁଟ ଉପରୁ) ଡେଇଁ ଥିଲୁ । ନଈରେ ଘଣ୍ଟା ଘଣ୍ଟା ପହଁରିବା, ବୁଡ଼ିବା ଏବଂ ଅନ୍ୟ ସମୟରେ ଭାଇ ଓ ଦାଦାମାନଙ୍କ ସହିତ ମାଛ ଧରିବା ଥିଲା ମୋର ଦୁର୍ଦ୍ଧର୍ଷ ବାଲ୍ୟ ଚପଳତା । ଏ ସବୁରେ ମୁଁ ଥିଲି ଆଗରେ ।

ମୁଁ ଆଗରୁ କହିଛି ଆମ ଗାଁ କି ପାଖ ଗାଁ'ରେ ମଧ୍ୟ ସ୍କୁଲ ନଥିଲା । ଥିଲା ଚାଟଶାଳୀ । ସେ ସବୁ ମଧ୍ୟ ଅସ୍ଥାୟୀ । ଜମାଳପୁରରେ ସ୍କୁଲ ହେଲାପରେ ବିଶେଷକରି ଆମ ପରିବାରର ପିଲାମାନେ ୩ / ୪ ଜଣ ଜମାଳପୁର ଗଲେ । ଆମ ଗାଁ'ର ଅନ୍ୟ ଜାତିର, ଏପରିକି ବ୍ରାହ୍ମଣ ପିଲାମାନଙ୍କ ଭିତରେ ବି ପାଠ ପଢ଼ାର ବିଶେଷ ଆଗ୍ରହ ନଥିଲା । ସେମାନେ ଚାଷକାମରେ ରହି ଯାଉଥିଲେ । ଅନେକ ପରେ, ପ୍ରାୟ ୧୯୫୦ବେଳକୁ ପ୍ରାଇମେରୀ ସ୍କୁଲଟିଏ ହେଲା ଏବଂ ବୋଧେ ବାପା ହିଁ ଥିଲେ ତା'ର ପ୍ରଥମ ସେକ୍ରେଟେରୀ । ଏବେ ଗାଁ'ର ଅନେକ ପିଲା ସେଥିରେ ପଢୁଛନ୍ତି ଏବଂ ସେଠୁ ଜମାଳପୁର ହାଇସ୍କୁଲକୁ ଯାଉଛନ୍ତି । ସେଇଟା ଏବେ ମାଇନର ସ୍କୁଲ ।

## ଗାଁ'ର କଳାକୁଞ୍ଜ ମେଳା

ଏଇ ସମୟରେ ମଧ୍ୟ ଜମାଳପୁର ପ୍ରସିଦ୍ଧି ଲାଭ କରିଥିଲା କୁଞ୍ଜ ମେଳାପାଇଁ । ମୋର ଲେଖାଯୋଖା ପିଉସା ପ୍ରିୟନାଥ ଦାସ ଥିଲେ ପ୍ରଥମ ଉଦ୍ୟୋକ୍ତା । ବଡ଼ ପ୍ରଭାବଶାଳୀ ବ୍ୟକ୍ତିତ୍ୱ । ପ୍ରଚଣ୍ଡ କ୍ଷମତାଶାଳୀ । ହରେକୃଷ୍ଣ ମହତାବ ତାଙ୍କୁ ମାନୁଥିଲେ । ଜଳେଶ୍ୱରର ପ୍ରଥମ ଏମ୍.ଏଲ୍.ଏ. କରୁଣାକର ପାଣିଗ୍ରାହୀ ଆସିଲେ ତାଙ୍କରି ଘରେ ଡେରା ପକାଉ ଥିଲେ । ପିଉସା ଥିଲେ କଂଗ୍ରେସର ସମର୍ଥକ ଏବଂ ତାଙ୍କ ପାଇଁ ମୋ ବାପା ବଡ଼ବାପା ମଧ୍ୟ କଂଗ୍ରେସର ସମର୍ଥକ ।

କୁଞ୍ଜମେଳାର ପ୍ରଥମ ଆକର୍ଷଣ ହେଲା ମାଟିର ମୂର୍ତ୍ତି । ପ୍ରାୟ ୧୦୦ ଖଣ୍ଡେ ତିଆରି ହୁଏ । ରାମାୟଣ ଓ ମହାଭାରତର କାହାଣୀକୁ ନେଇ । ଚମତ୍କାର ମୂର୍ତ୍ତିସବୁ । ଖୁବ୍ ଭିଡ଼ ହୁଏ ଏଠି । କୁରୁସଭା, ଦ୍ରୌପଦୀର ବସ୍ତ୍ରହରଣ, କୁରୁକ୍ଷେତ୍ରର ଯୁଦ୍ଧ, ଭୀଷ୍ମ ଶରଶଯ୍ୟା ଇତ୍ୟାଦି । ବେଳେବେଳେ ସେଠି ଟିକଟ ମଧ୍ୟ ହୁଏ । ପାଂଚ ପଇସା, ଦଶ ପଇସା । ତା'ର ଦ୍ୱିତୀୟ ଆକର୍ଷଣ ହେଲା ଯାତ୍ରା । ଓଡ଼ିଆ ଓ ବଙ୍ଗଳା ଯାତ୍ରା । ମେଦିନୀପୁରଆଡୁ ଦଳ ଆସନ୍ତି । ପ୍ରବଳ ଭିଡ଼ ହୁଏ । ଏଇ ସମୟରେ ଦୂର ଗାଁ'ମାନଙ୍କରୁ ବନ୍ଧୁ ବାନ୍ଧବ ଆସି ଯାଆନ୍ତି । ଆମ ଘରେବି ଭିଡ଼ ଜମେ । ୧୫/୨୦ କିଲୋମିଟର ଦୂରରୁ ଚାଲି ଚାଲି ଆସିବା ଅତି ସାଧାରଣ କଥା । ତା'ର ତୃତୀୟ ଆକର୍ଷଣ ହେଲା ଅଷ୍ଟପ୍ରହରୀ ସଂକୀର୍ତ୍ତନ । ଉତ୍ତର ବାଲେଶ୍ୱର ଅଂଚଳରେ ସଂକୀର୍ତ୍ତନର ଲୋକପ୍ରିୟତା ଏବେ ମଧ୍ୟ କମିନି ।

ଯେକୌଣସି ସମୟରେ ହୁଏ, ସଂକୀର୍ତ୍ତନ ଏବେ ମଧ୍ୟ ବଙ୍ଗଳାରେ ହୁଏ । ଓଡ଼ିଆରେ ବୋଧେ ନାହିଁ, ସେଇଠି ମଧ ଭାଗବତ ପୋଥି ବସେ । 'ପୋଥି ବସିବା' ଶବ୍ଦଟା ସେଇଠୁ ଆରମ୍ଭ ହେଇଥିବ ।

ପିଉସାଙ୍କ ପରେ ବୋଧେ କିଛି ଦିନ ମେଳା ବସୁଥିଲା । ପରେ ଉତ୍ତର ବାଲେଶ୍ୱରର ଏହି ଅପୂର୍ବ ସାଂସ୍କୃତିକ ମେଳା ଯାହା ସମସ୍ତ ଓଡ଼ିଆ ଓ ବଙ୍ଗଳା ଭୂଖଣ୍ଡକୁ ଗୋଟିଏ କରି ବାନ୍ଧି ରଖିଥିଲା, ତାହା ବନ୍ଦ ହେଇଗଲା । ଏବେ ସୁବର୍ଣ୍ଣରେଖା ନଦୀ ଗର୍ଭରେ ସେ ସ୍ଥାନଟା ଲୋପ ପାଇଗଲାଣି ।

## ବାବାଙ୍କ ସରକାରୀ ଚାକିରି

୧୯୫୦ ବେଳକୁ ଜମିଦାରୀ ପ୍ରଥା ଉଠିଗଲା । ସେଇ ସମୟରେ ଖଜଣା ଆଦାୟ ସରକାରଙ୍କ ହାତକୁ ଆସିଲା । ବାବାଙ୍କ ନିଯୁକ୍ତି ସରକାରଙ୍କ ଅଧୀନରେ ରେଭିନ୍ୟୁ ଇନ୍ସପେକ୍ଟର ଭାବରେ ମିଳିଗଲା । ବାବା ଯଦିଓ ଇଂରାଜୀ ଜାଣି ନଥିଲେ ତଥାପି ଆବଶ୍ୟକତା ଏତେ ବେଶୀଥିଲା ଯେ ତାଙ୍କ ପରି ଯେଉଁମାନେ ସାମାନ୍ୟ ଜମି ଜମା କାମ ଜାଣିଥିଲେ ସେମାନଙ୍କୁ ଏ ଚାକିରୀ ମିଳିଥିଲା । ଏଇ ସମୟଟା ଆମ ପାଇଁ ଖୁବ୍ ଭଲଥିଲା । ଗୋଟାଏ ସ୍ଥାୟୀ ରୋଜଗାରର ଆବଶ୍ୟକତା ଥିଲା । କାରଣ ପାରିବାରିକ ଖର୍ଚ୍ଚ ବଢୁଥିଲା । ଭାଇ ସେତେବେଳେ ରେଭେନ୍‌ସାରେ ବି.ଏ. ପଢୁଥିଲେ । ଭୂପତି ଭାଇ ସେତେବେଳେ ବାଲେଶ୍ୱରରେ ବି.ଏ. ପଢୁଥିଲେ । ସେ ଆଉ ଆମଠାରୁ ସାହାଯ୍ୟ ନେଉ ନଥିଲେ । କିନ୍ତୁ ଘରେ ମୁଁ ଓ ମୋ ସାନଭଉଣୀ ବାସନ୍ତୀ । ମୋର ବୋଧେ ଅଷ୍ଟମ ଶ୍ରେଣୀ ଓ ବାସନ୍ତୀ ବୋଧେ ୩ୟ କି ୪ର୍ଥରେ ପଢୁଥିଲା । ବାବାଙ୍କ ଚାକିରି ସଂପୂର୍ଣ୍ଣ ଅସ୍ଥାୟୀ । ପ୍ରାୟ ଦୁଇ ବର୍ଷ ପରେ ସେ ପୁଣି ଘରେ ବସିଗଲେ ।

ମୋର ମନେ ଅଛି ଏଇ ସମୟରେ ବାବା ରାଇବଣିଆ ଠାରେ ଆର୍.ଆଇ. ଥିଲା ବେଳେ ମୁଁ ଥରେ ଦି ଥର ସେଠାକୁ ଯାଇଛି । ଚାଲି ଚାଲି ୧୫/୨୦ କିଲୋ ମିଟର ଗୋଟାଏ ଦିନରେ ଯାଇ ପୁଣି ସେଇ ଗୋଟାଏ ଦିନରେ ଫେରିବା ସେଇ ପ୍ରଥମ । ମୋ ପରି ଫୁଟବଲ ଖେଳରେ ମାତୁଥିବା ପିଲା ପାଇଁ ସେଇଟା କିଛି ନୁହେଁ ।

ବାବାଙ୍କ ପକ୍ଷେ ଘର ଚଳେଇବା କଷ୍ଟ ହେଲା । ଭାଇ ବି.ଏ. ପାସ କରି ଆସିବା ପରେ ସେଇ ହାଇସ୍କୁଲରେ ଶିକ୍ଷକ ପଦରେ ନିଯୁକ୍ତ ହେଲେ । ଏଥିରେ ସାମାନ୍ୟ ସୁଧାର ହେଲେ ମଧ୍ୟ ତାହା ସେମିତି କିଛି ନୁହେଁ । ଅଭାବ ରହୁଥିଲା ବୋଲି ମୋର ମନେଅଛି ଅନେକ ସମୟରେ ସ୍କୁଲରେ ମୋ ଦରମା ଦିଆଯାଇ ପାରୁ ନଥିଲା । ଭାଇଙ୍କ ଚାକିରୀ ମଧ୍ୟ ଅସ୍ଥାୟୀ ଥିଲା । ଏମିତି ଗୋଟାଏ ସମୟରେ ଭାଇଙ୍କର ବିବାହ ପ୍ରସ୍ତାବ ଆସିଲା ।

ପ୍ରସ୍ତାବ ଆଣିଲେ ମୋର ସେଇ ପିଉସା । ତାଙ୍କ କଥାକୁ ବାବା ଅମାନ୍ୟ କରିପାରି ନଥିଲେ । ତେବେ ପ୍ରସ୍ତବଟା ବି ଥିଲା ବେଶ ଲୋଭନୀୟ । ପାଂଚ ମାଣ ଚାଷ ଜମି, ଟଙ୍କା, ସୁନା ଏସବୁ ସେ ସମୟର କମ୍ କଥା ନୁହେଁ । ଉମା ଚରଣ ଦାସ ମହାପାତ୍ର ମଧ୍ୟ ସମ ପରିମାଣରେ ପ୍ରଭାବଶାଳୀ ଓ ଧନବାନ । ପାଂଚ ମାଣ ଚାଷ ଜମି ସେ ସମୟରେ ଗୋଟିଏ ବିରାଟ କଥା । ବିବାହ ସେଇଠୁ ହେଇଗଲା । ଯୌତୁକର ପ୍ରଲୋଭନ କାମ ଦେଇଥିବ ।

ପରିବାରର ବୋଝ ବଢ଼ିଲା କିନ୍ତୁ କମିଲା ନାହିଁ । ଭାଇ ସ୍କୁଲରୁ ବୋଧେ ୩୦/୪୦ ଟଙ୍କା ପାଉଥିଲେ । ଏ ଦିଗରେ ତାଙ୍କର ଗୋଟିଏ ଶଳା ବୋଧେ ୭/୮ ବର୍ଷର ଓ ଆଉ ଗୋଟିଏ ଶାଳୀ (ସେଇ ୫/୬ ବର୍ଷର) । ସେମାନେ ମଧ ଆସି ଆମଘରେ ରହି ଜମାଲପୁର ସ୍କୁଲରେ ପଢ଼ିଲେ । ଅବଶ୍ୟ ତାଙ୍କ ଶଶୁର ଘରୁ ନିୟମିତ ଧାନ ଚାଉଳ ଆସୁଥିଲା । କିନ୍ତୁ ସେଇଟା ଯଥେଷ୍ଟ ନୁହେଁ । ଅନ୍ୟାନ୍ୟ ଖର୍ଚ୍ଚ ଅନେକ ।

ସେତେବେଳେ ଘଡ଼ି ନଥିଲା । ମାଆ ଖରାର ଛାଇ ପିଣ୍ଡା ଉପରେ ଦେଖି ସମୟ ଜାଣୁଥିଲା । ଘଡ଼ି କୋଉଠି ଥିଲା ? ସେଇ ଛାଇ ଦେଖି ସେ ଆମଙ୍କୁ ବାଧ କରୁଥିଲା, ଯାଅ ବେଳ ହେଇଗଲାଣି । ଆମେ ପାଠପଢ଼ା ବନ୍ଦ କରି ଦଉଡ଼ୁ ଥିଲୁ ନଈକୁ । ନାଆକୁ ବୁଡ଼ ପକେଇ ଆସିଲା ବେଳକୁ ଚାରିଟା ଆସନ ପଡ଼ି ଗରମଭାତ ଥାଳିରେ ବଢ଼ା ସରିଥିବ । ଅଧିକାଂଶ ସମୟରେ ସେ ନିଜେ ପଙ୍ଖାଟିଏ ଧରି ବିଞ୍ଚୁଥାଏ । ନହେଲେ ଭାତରେ ହାତ ମାରିହଉଛି କୋଉଠି ? ଆମେ ସବୁ ସ୍କୁଲ ଗଲାପରେ ସେ ଠାକୁର ପୂଜା କରେ, ତାପରେ ନିଜେ ଜଳଖିଆ ତ ନୁହେଁ ବରଂ ସେଇ ଥାଳିରେ (ବାବା ନଥିଲେ) ଯିଏ ଯାହା ଛାଡ଼ିଥାଏ ତାକୁ ମିଶାଇ ଖାଇଦିଏ । ତଥାପି ସେଇ ସମୟଟା ୧୨ଟାରୁ କମ୍ ନୁହେଁ । ତାପରେ ତା'ର ଟିକିଏ ବିଶ୍ରାମ ।

ତା'ର ବା ବିଶ୍ରାମ କାହିଁ ? ସେତେବେଳକୁ ମୁଲିଆ ମଜୁରୀ ଏବଂ ଗାଈ କଥା ମଧ୍ୟ ଥାଏ । ନାରୀର ବିଶ୍ରାମ ରାତି ୧୦ଟା ପରେ । ଏବେ ବି ସେମିତି ନାହିଁ କି ? ବଦଳିଛି କୋଉଠି ? ଏବର ସ୍ତ୍ରୀଟି ଚାକିରି କରୁଥିଲେ ବିଶ୍ରାମ ଗୋଟାଏ ସ୍ୱପ୍ନର କଥା । ସମୟ ଅନେକ ବଦଳିଛି । ତାଙ୍କ ପାଇଁ ଆଇନ ମଧ୍ୟ ହେଉଛି । କିନ୍ତୁ ନା ତାଙ୍କୁ ସ୍ୱାଧୀନତା ମିଳିଛି, ନା ବିଶ୍ରାମ ମିଳିଛି । ନାରୀଟି ମଧ୍ୟ ତାକୁ ଖାତିର କରି ନାହିଁ । ସେ ଅଧିକାର ଟିକୁ ସେ ତା'ର ଅଭିଧାନରୁ ବାହାର କରି ଫୋପାଡ଼ି ଦେଇଥିବ ବୋଧେ ।

ମୋ ମାଆ ପାଠ ପଢ଼ି ନାହିଁ କିନ୍ତୁ ଗୀତା ଭାଗବତ ପଢ଼େ । ଠାକୁର ପୂଜାବେଳେ ଗୀତା ପାଠ ଅନିବାର୍ଯ୍ୟ କଥା । ତା'ଛଡ଼ା ସାଧାରଣ ଭାବେ ଟଙ୍କା ପଇସାର ହିସାବ, କୋଉ ଗାଈର ଦୁଧ କେତେ ହେଲା, କେତେ ବିକ୍ରି ହେଲା । କେତେ ପଇସା ଆସିଲା, ସେ ହିସାବ ଭୁଲ ହୁଏନି । ଏ ବିଷୟରେ ବାବା ମଧ ନିଶ୍ଚିନ୍ତ ।

ମାଆ ଗୀତା ଭାଗବତ ସହିତ ବଙ୍ଗଳା ମହାଭାରତ ମଧ ପଢ଼ି ପାରୁଥିଲା । ସେତେବେଳେ ଉତ୍ତର ବାଲେଶ୍ୱର ଅଂଚଳରେ ବଙ୍ଗଳା ପ୍ରାୟ ସମସ୍ତେ ପଢ଼ି ପାରୁଥିଲେ । ଜମିଦାରୀ ଜମିଜମା କାଗଜ ମଧ୍ୟ ବଙ୍ଗଳାରେ ଥିଲା । କିନ୍ତୁ ଝିଅ ବୋହୂମାନେ ବଙ୍ଗଳା ପଢ଼ିବା ସ୍ୱାଭାବିକ ନଥିଲା । ମୋ ମାଆ କାଶୀନାଥ ଦାସଙ୍କ ମହାଭାରତକୁ ବ୍ୟାସାସନ ଉପରେ ରଖି ପଢୁଥିବାବେଳେ ପ୍ରାୟ ଖରାବେଳେ ମୁଁ ତା'ପାଖରେ ବସୁଥିଲି । ଦୁଇ କି ତିନି ବର୍ଷ ହେଇଥିବି । ପେଣ୍ଟ୍ ପିନ୍ଧିବାକୁ ମୋତେ ବିରକ୍ତ ଲାଗୁଥିଲା । ମୋତେ ସେ କୋଳରେ ବସାଉଥିଲା ।

ମୁଁ ସ୍ୱୀକାର କରିବି ଯେ ମୁଁ ପ୍ରଥମେ ମା'ଠାରୁ ହିଁ ବଙ୍ଗଳା ଶିଖିଥିଲି ଏବଂ ମୋର ପ୍ରଥମ ପରିଚୟ ବଙ୍ଗଳାର 'କ୍ଷ' ସହିତ । ମା' ଆଙ୍ଗୁଳିରେ ଧାଡ଼ି ଦେଖି ପଢୁଥିଲାବେଳେ ମୁଁ ମଧ୍ୟ ତାକୁ ଦେଖୁଥିଲି । ଗୋଟିଏ ଜାଗାରେ ଅଟକି ଯାଇ ପଚାରିଲି, ମା,ଏଇଟା କିସ ଗୋ ? କି ଗଛ ?

ସେ ହସିଲା, "ଏଇଟା ଗଛ ନୁହେଁ 'କ୍ଷ' ।"

ବଙ୍ଗଳା ଭାଷାର 'କ୍ଷ'ଟା ଗୋଟାଏ ବରଗଛ ପରି ଦେଖାଯାଏ । ଆମ ଉତ୍ତର ବାଲେଶ୍ୱରୀ ଭାଷାରେ 'ବରଗଛ' ଓ 'ବଟଗଛ' (ବର ଓ ଅଶ୍ୱତ୍ଥ) ଗୋଟିଏ ଅର୍ଥରେ ଯାଏ ।

ମହାଭାରତ ପଢ଼ିଲାବେଳେ ମୁଁ ଯଦି ତା' ପାଖରେ ବସୁ ନଥା'ନ୍ତି, ମୁଁ ବଙ୍ଗଳା ଅକ୍ଷର ଚିହ୍ନି ନ ଥାଆନ୍ତି କି ଆଜି ମୁଁ ସ୍ୱଚ୍ଛ ଭାବରେ ବଙ୍ଗଳା ପଢ଼ି, କହି ପାରୁ ନ ଥାଆନ୍ତି । ସେ ଦୃଷ୍ଟିରୁ କହିବାକୁ ଗଲେ ମୁଁ ଓଡ଼ିଆ ଅକ୍ଷର ସହିତ ପରିଚିତ ହେବା ପୂର୍ବରୁ ବଙ୍ଗଳାର କେତେଟା ଅକ୍ଷର ସହିତ ପରିଚିତ ହେଇ ସାରିଥିଲି ।

ସେଇଠୁ ମଧ୍ୟ ଜାଣିଲି ମହାଭାରତକୁ କାଶୀରାମ ଦାସ ହିଁ ଲେଖିଛନ୍ତି । ପ୍ରତି ପରିଚ୍ଛେଦ ପରେ ମାଆ, 'କାଶୀରାମ ଦାସ କହେ' ବୋଲି ପଢ଼ି ସାରି ଦୁଇ ହାତ ମୁଣ୍ଡରେ ଛୁଆଇଁ ବହି ବନ୍ଦ କରେ । ମୁଁ ଭାବେ ମାଆର ଏଇ ଅପୂର୍ବ ସେବା, ପରିବାର ପ୍ରତି ତା'ର ଅଯାଚିତ ଦାନର କିଞ୍ଚିତାଂଶ ମଧ୍ୟ କେହି ଦେଇ ପାରିବନି ।

## ଅଙ୍କର ଅତ୍ୟାଚାର

ସ୍କୁଲ ଶିକ୍ଷାଟା ଥିଲା ମୋ ପାଇଁ ଦୁଇଟା କାରଣରୁ ଦୁର୍ବିସହ । ପ୍ରଥମଟି ହେଲା ଆର୍ଥିକ ଦୁରବସ୍ଥା ଏବଂ ଦ୍ୱିତୀୟଟି 'ଅଙ୍କର ଅତ୍ୟାଚାର' । ପ୍ରଥମଟି ହେଲା ମୋର ସ୍କୁଲ ଜୀବନ ସମୟ ଭିତରେ କ୍ୱଚିତ ଖଣ୍ଡେ ପେଣ୍ଟ୍ ସାର୍ଟରୁ ବେଶୀ ଥିଲା ଏବଂ ପର୍ବପର୍ବାଣୀରେ ତାକୁ ସଫାକରି କାଚି, ଶୁଖେଇ ପିନ୍ଧି ସ୍କୁଲ ଯିବା କଷ୍ଟକର ଥିଲା । କ୍ଲାସ୍ ଟେନ୍ ବେଳେ ମୁଁ ପ୍ରଥମେ ଯୋତା ପିନ୍ଧିଲି । ତା' ପୂର୍ବରୁ ସପ୍ତମ ଶ୍ରେଣୀ ଯାଏଁ ଖାଲିପାଦ ଓ ଅଷ୍ଟମ ଶ୍ରେଣୀଠାରୁ ହାୱାଇ ଚପଲ ।

ଅବଶ୍ୟ ଏଇଟା ହିଁ ଥିଲା ସେ ସମୟ ବ୍ୟବସ୍ଥା । କ୍ଲାସକୁ ଅଳ୍ପ କେତେଜଣ ମାତ୍ର ଯୋତା ପିନ୍ଧି ଆସୁଥିଲେ । ହେଡ଼୍‌ମାଷ୍ଟର ପ୍ରଫୁଲ୍ଲ ବେନାର୍ଜୀ ବିଶେଷ କରି ବର୍ଷାଦିନେ ସ୍କୁଲକୁ ଖଡ଼ମ (କଠଉ) ପିନ୍ଧି ଆସୁଥିଲେ । ଆଉକିଛି ଶିକ୍ଷକ ଯୋତା ବା ଚପଲକୁ ବେଗ୍‌ରେ ଧରି ସ୍କୁଲକୁ ଆସୁଥିଲେ ଏବଂ ସେଠି ପୋଖରୀରେ ବା ଟ୍ୟୁବୱେଲରେ ଗୋଡ଼ ହାତ ଧୋଇ ପଙ୍କ, କାଦୁଅ ଛଡ଼େଇ ସାର୍ଟ ପେଣ୍ଟ୍ (ଅଧିକାଂଶ ଧୋତି ସାର୍ଟ) ପିନ୍ଧି, ଚପଲ ପିନ୍ଧୁଥିଲେ । ବର୍ଷାଦିନର ଦୁରବସ୍ଥା କହିଲେ ନ ସରେ । ସମସ୍ତେ ଗାଁ'ରୁ ଆଉ କିଛି ନଈ ପାରହେଇ ଆସୁଥିଲେ । କେହି କେହି ୩/୪ କିଲୋମିଟର ଦୂରରୁ ଓ ଆଉ କିଛି ପିଲା ବେଶୀ ଦୂରରୁ ଆସୁଥିଲେ ବୋଲି ହଷ୍ଟେଲ କିମ୍ବା ମେସ୍‌ରେ ରହୁଥିଲେ । ଅଂଚଳର ଅବସ୍ଥା ସମ୍ପନ୍ନ ପରିବାରଙ୍କ ଘରେ ବହୁ ଗରିବ ପିଲା ରହୁଥିଲେ । ଏ ସଂସ୍କୃତି ସେତେବେଳେ ଥିଲା । କାରଣ ସମଗ୍ର ଉତ୍ତର ବାଲେଶ୍ୱରରେ ସେତେବେଳେ ମାତ୍ର ଦୁଇଟା ହାଇସ୍କୁଲ ।

ପ୍ରଥମରୁ ଅଙ୍କ ଥିଲା ମୋର ପ୍ରଥମ ଶତ୍ରୁ । ୨+୨=୪ ଏବଂ ୨ଗୁଣନ୨=୪ ଏହାକୁ କେବେବି ମୁଁ ଠିକ୍ ବୋଲି ଭାବୁ ନଥିଲି । ଏଇଟା ଭୁଲ ବୋଲି ମୋର ଅନେକ ଦିନଯାଏଁ ଧାରଣା ଥିଲା । ଏଇସବୁ ମିଶାଣ ଫେଡ଼ାଣରେ ମୋର ସବୁବେଳେ ଭୁଲ ହେଉଥିଲା । ଅଙ୍କ ମାଷ୍ଟ୍ରେ ମୋତେ 'ପାଠ ଚୋର' ବୋଲି କହୁଥିଲେ । ଅଙ୍କ ପିରିଅଡ଼୍ ଆସିଲେ ମୁଁ ପ୍ରମାଦ ଗଣୁଥିଲି । ତେଣୁ ଅଙ୍କରେ ମୋର ସବୁବେଳେ ଶୂନରୁ ବେଶୀ ରହୁ ନଥିଲା । ତେବେ ଅଷ୍ଟମ ଶ୍ରେଣୀରେ ଏଲଜେବ୍ରା ଓ ଜ୍ୟାମିତି ତା ସହିତ ମିଶିବାରୁ ମୁଁ ଟିକିଏ ଆଶ୍ୱସ୍ତି ଲାଭ କଲି । ତଥାପି ବିଷୟଟାକୁ ଦେଖିଲେ ମୋତେ ଜର ଆସି ଯାଉଥିଲା ।

ତା ସତ୍ତ୍ୱେ ମୋର ହେଡ଼୍‌ମାଷ୍ଟର ସବୁବେଳେ କହୁଥିଲେ ଅନ୍ୟ ସବୁ ବିଷୟରେ ଭୂପେନର ଫାଷ୍ଟ ଡିଭିଜନ ମାର୍କ ଆସୁଥିବାରୁ ଏବଂ ଜଣେ ଭଲ ଫୁଟବଲ ପ୍ଲେୟାର ହେଇଥିବାରୁ କୌଣସି ପ୍ରକାରେ ମ୍ୟାଥ୍‌ରେ ୩୦ ପାଇଗଲେ ତା'ର ଭବିଷ୍ୟତ ଉଜ୍ଜ୍ୱଳ । ତେଣୁ ୨ଗୁଣନ୨ = କେତେ କହିପାରୁ ନଥିଲେ ମଧ୍ୟ ମୁଁ ତାଙ୍କ ଆଖିରେ ଭଲ ଷ୍ଟୁଡେଂଟ୍ । ଖେଳ ସହିତ ଡିବେଟ୍ ଏବଂ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୁଁ ଆଗରେ ଥିଲି । ଅଷ୍ଟମ ଶ୍ରେଣୀରେ ମୁଁ ପଢୁଥିବା ବେଳେ ଜିଲା ମାଜିଷ୍ଟ୍ରେଟ ପ୍ରାଣନାଥ ମହାନ୍ତି ଆସିଥିଲେ ପୁରସ୍କାର ବିତରଣ ଉତ୍ସବକୁ ମୁଖ୍ୟ ଅତିଥିହେଇ । ହେଡ଼୍‌ମାଷ୍ଟର ମୋତେ ଗୋଟିଏ ଇଂରାଜୀ ଏକାଙ୍କିକାରେ ଭାଗ ନେବାକୁ କହିଲେ । ଏକାଙ୍କିକାଟି ମାତ୍ର ଅଧଘଂଟାର । ମୋରଥିଲା ମୁଖ୍ୟ ଭୂମିକା । ତାକୁ ହେଡ଼୍‌ମାଷ୍ଟର ନିଜେ ଲେଖିଥିଲେ । ସେ ମଧ୍ୟ ଆମକୁ ଶିଖାଇଥିଲେ । ବେଶ୍ ପ୍ରଶଂସିତ ହେଲା । ମୁଖ୍ୟ ଅତିଥି ମୋ ସହିତ ହେଣ୍ଡ୍‌ସେକ୍ କରି ସାବାସ ବୋଲି କହିଲେ ।

କବିତା ଲେଖା ମୋର ଆରମ୍ଭ ହେଇଥିଲା ସପ୍ତମ ଶ୍ରେଣୀରୁ । ସେତିକିବେଳେ ମୋ ସହିତ ମିଶିଲେ ନିତ୍ୟାନନ୍ଦ ମହାନ୍ତି ଓ ରବୀନ୍ଦ୍ର ଧଳ । ଗୀତ ଲେଖିବାରେ ଆମ୍ଭେ ଥିଲୁ

ଧୁରନ୍ଧର । ବେଳେବେଳେ ମାଷ୍ଟରଙ୍କ ନା'ରେ ମଧ୍ୟ ଲେଖୁଥିଲୁ । ନିଜନିଜ ଭିତରେ ଲୁଚେଇ ପଢୁଥିଲୁ ।

## ଗାଁ'ର ନାଟ୍ୟକଳା

ମୁଁ ମଧ୍ୟ ଥିଲି ନାଟକ ପ୍ରିୟ । ସେତେବେଳେ ଗାଁ ଗାଁ ରେ ଯାତ୍ରା ଦଳ ଥିଲା । ଆମ ଗାଁ'ରେ ଥିଲା ଗୋଟାଏ । ଦୁଇଜଣ ଓସ୍ତାଦ ଆସି ଜଣକ ଘରେ ରହି ଶିଖେଇଲେ । ମୋ ବଡ଼ବାପା ଥିଲେ ମୁଖିଆ । ସେ ଦୈନିକ ସନ୍ଧ୍ୟା ସମୟରେ ଆଖଡ଼ା (ରିହାରସେଲ) ଦେଖିବାକୁ ଯାଉଥିଲେ । ମୁଁ ମଧ୍ୟ ବେଳେ ବେଳେ ଯାଉଥିଲି । ତା'ଛଡ଼ା ପର୍ବପର୍ବାଣୀରେ ଆଖ ପାଖ ଗାଁରେ ଯାତ୍ରା ହେଲେ ମୋତେ ଅଟକେଇବ କିଏ? ଗାଁ'ର ଯାତ୍ରା ସେତେବେଳେ ପ୍ରତିଯୋଗିତା ଭିତ୍ତିରେ ହେଉଥିଲା । ଭଲ ଓସ୍ତାଦ ବାଛିବାରେ ମଧ୍ୟ ପ୍ରତିଯୋଗିତା ହେଉଥିଲା କିନ୍ତୁ ଏହାଦ୍ୱାରା ନୂଆ ନାଟକର ଅଭାବ ପଡ଼ିଲା । ଯେତେ ପୌରାଣିକ ଥିଲା ସେ ସବୁ ସରିଲା । ଐତିହାସିକ ନାଟକଗୁଡ଼ିକରେ ଜୋର ଦିଆଯାଉ ନଥିଲା । ତା'ର କାରଣ ଏଥିରେ ବେଶୀ ଖର୍ଚ୍ଚ ପଡୁଥିଲା । ଖଣ୍ଡେ କାଠ ଚେଆର ଉପରେ ଚାଦର ଖଣ୍ଡେ ଘୋଡ଼େଇ ଦେଇ ତାକୁ ମହାରାଜଙ୍କ ମଣିମୁକ୍ତା ଖଚିତ ସିଂହାସନ କହିଲେ ଲୋକେ କମେଂଟ୍ ମାରୁଥିଲେ ।

ନୂଆ ଆଉ ଚରିତ୍ରକୁ ସୁହାଉଥିବା ନାଟକର ଆବଶ୍ୟକତା ପଡ଼ିଲା । ସେତେବେଳେ ଲିଙ୍ଗଲେଶ୍ୱରରେ କାଳୀଚରଣ ଦାସ ବୋଲି ଜଣେ ଭଲ ନାଟ୍ୟକାର ଥିଲେ । ଭଲ ଅଭିନେତା ମଧ୍ୟ । ମୋ ଜାଣିବାରେ ସେ ଗୋଟିଏ ଗୋଟିଏ ଗାଁ'କୁ ଯାଇ ୧୦/୧୫ ଦିନ ଗାଁ' ମୁଖିଆଙ୍କ ଘରେ ରହି ନୂଆ ନାଟକଟିଏ ଲେଖି ଦିଅନ୍ତି । ସେଥିପାଇଁ ତାହାଙ୍କୁ ଆର୍ଥିକ ସହାୟତା ଦିଆ ଯାଉଥିଲା । ସେଇଟା ଥିଲା ତାଙ୍କ ପେସା । ତା'ଛଡ଼ା ସେ ଜଣେ ଭଲ ଅଭିନେତା ଥିବାରୁ ଦଳମାନେ ଭଲ ପ୍ରଦର୍ଶନ ପାଇଁ ତାଙ୍କୁ ଗେଷ୍ଟ ଆର୍ଟିଷ୍ଟ ହିସାବରେ ଡାକୁଥିଲେ । ଅବଶ୍ୟ ସେଥିପାଇଁ ସେ ପାରିଶ୍ରମିକ ପାଉଥିଲେ । ସେଇଟା ହିଁ ଥିଲା ତାଙ୍କର ପେସା । ମୋର ମନେହୁଏ ଏଥିରୁ ସେ ଭଲ ଭାବରେ ଏବଂ ସମ୍ମାନ ଜନକ ଭାବରେ ଚଳୁଥିଲେ । ସେ ୫୦/୬୦ଟି ନାଟକ ଲେଖିଥିବା କଥା ମୁଁ ଶୁଣିଛି । ୧୫/ ୧୬ ଦିନ ଭିତରେ ସେ ଗୋଟିଏ ପଂଚାଙ୍କ ପୌରାଣିକ ନାଟକ ଲେଖି ପାରୁଥିଲେ । ଲେଖିବା ପାଇଁ ସେ 'ଏଡଭାନ୍ସ' ମଧ୍ୟ ନେଉଥିଲେ । ପ୍ରତିଯୋଗିତା ଯେତେ ବଢୁଥିଲା ନୂଆ ନାଟକ ଲେଖା ସେତିକି ବଢୁଥିଲା । କାଳୀଚରଣ ଦାସଙ୍କ ଡିମାଣ୍ଡ ସେତିକି ବଢୁଥିଲା । ନାଟକରେ ସଂଗୀତ, ନୃତ୍ୟ, ହାସ୍ୟରସ ସବୁ ରହୁଥିଲା । ଯାତ୍ରା ଦଳମାନେ ମଧ୍ୟ ବ୍ୟବସାୟିକ ଭିତ୍ତିରେ ନାଟକ ପରିବେଷଣ କରୁଥିଲେ । ଆମ ଅଂଚଳର ସାଂସ୍କୃତିକ

ପରମ୍ପରା, ଭାଷାଗତ ସାମଞ୍ଜସ୍ୟ ପଶ୍ଚିମ ବଙ୍ଗର ମେଦିନୀପୁର ଅଂଚଳ ସହିତ ସମାନ ଥିବାରୁ ସେ ଅଂଚଳର ଯାତ୍ରା ଆମ ଅଂଚଳରେ ଲୋକପ୍ରିୟତା ଯେତିକି ପାଉଥିଲା, ଆମ ଅଂଚଳର ଯାତ୍ରା ସେ ଅଂଚଳରେ ସେତିକି ଲୋକ ପ୍ରିୟଥିଲା । ଆମେ କିଛିବି ଫରକ ଜାଣିପାରୁ ନଥିଲୁ । ଆମର ସେ ସମ୍ପର୍କ ଏବେ କେତେକାଂଶରେ ଅଛି, ଯଦିଓ କିଛିଟା ପରିବର୍ତ୍ତନ ଆସିଛି ।

ଯୋଉ ସମୟରେ ଗାଁ'ରୁ ଯାତ୍ରା ମରିମରି ଆସିଲା ଠିକ୍ ସେଇ ସମୟରେ ଆମ ହାଇସ୍କୁଲରେ ଥିଏଟର ପ୍ରତି ଲୋକଙ୍କର ଆଗ୍ରହ ସୃଷ୍ଟି ହେଲା । ସେତେବେଳେ ବିଜୁଳିବତି ନ ଥିଲା କି ମାଇକର ବ୍ୟବସ୍ଥା ନଥିଲା । ମାଇକ୍ରୋଫୋନ ନୁହେଁ ତାକୁ ଲାଉଡ ସ୍ପୀକର ହିଁ କୁହା ଯାଉଥିଲା । ଟିଣର ଚୁଙ୍ଗୀ ପରି ଦେଖିବାକୁ । ପ୍ରାୟ ଏକ ଫୁଟ ଦେଢ଼ ଫୁଟ ଲମ୍ବା । ସେ ସବୁ କେବଳ ପ୍ରଚାର ବେଳେ ବ୍ୟବହାର ହେଉଥିଲା ।

ନୂଆ ନୂଆ ଥିଏଟରରେ ମଂଚଟିଏ ଅବଶ୍ୟ ବନ୍ଧା ହେଉଥିଲା । ଚାରିପଟେ ଖୁଂଟ ପୋତି କଟକରୁ ବଡ଼ ବଡ଼ ସିନ୍ ଅଣା ଯାଉଥିଲା । କଟକ ଛଡ଼ା ଅନ୍ୟ କୋଉଠି ସେ ସବୁ ମିଳୁ ନଥିଲା । କଟକରୁ ଭଡ଼ାରେ ଅଣା ଯାଉଥିଲା । ତାକୁ ବାଉଁଶରେ ଟାଙ୍ଗି ଝୁଲାଇ ଦିଆ ଯାଉଥିଲା । ତାପରେ ଗୋଟିଏ ଦଉଡ଼ିରେ ଟାଣି ନିଆ ଯାଉଥିଲା ।

ଲାଇଟ୍‌ର ବ୍ୟବସ୍ଥା ମଧ୍ୟ ଭିନ୍ନ ଥିଲା । ପେଟ୍ରୋମାକ୍ସ ଲାଇଟ୍ ଦୁଇପ୍ରକାର । ଗୋଟାଏ ଲଣ୍ଠନ ପରି ଅର୍ଥାତ୍ ପମ୍ପ୍ ଦିଆ ଯାଉଥିଲା । ଅନ୍ୟଟିର ଉପର ପାଖରେ ତେଲ ରହୁଥିଲା ଏବଂ ତଳଅଂଶରେ ଲାଇଟ୍ ଥିଲା । ତାକୁ ଡେ'ଲାଇଟ୍ କୁହାଯାଉଥିଲା । ଥିଏଟରରେ ଏଇ ଡେ'ଲାଇଟ୍‌ର ଆବଶ୍ୟକତା ବେଶୀ ପଡୁଥିଲା । ସେଥିରେ ଗୋଟିଏ ବାଡ଼ିରେ ହାଡ଼ବୋର୍ଡ଼ର ଠୁଙ୍ଗା ତିଆରି କରି ଉଇଙ୍ଗ କଡ଼ରୁ ଲାଇଟ୍‌କୁ ଢାଙ୍କି ଅନ୍ଧାର ସୃଷ୍ଟି କରା ଯାଉଥିଲା । ସେତେବେଳେ ତାକୁ ହିଁ ମଡର୍ଣ୍ଣ ଡ୍ରାମା କୁହାଯାଉଥିଲା । ମଡର୍ଣ୍ଣ ଡ୍ରାମାର ଜନ୍ମ କଟକରେ । ସେଇଠି ମଧ୍ୟ ବିଜୁଳି ନଥିବା ଅବସ୍ଥାରେ ଏଇ ପ୍ରକାର ଡ୍ରାମା ହେଇଥିଲା । ସେତେବେଳେ କଟକରେ କେତେକ ସଂସ୍ଥା (ବେଶୀ ନୁହେଁ) ଥିଲା । ଯେଉମାନେ ଦୋକାନ ଖୋଲି ସେଥିରେ ବହୁ ପ୍ରକାର ସିନ୍, ଥିଏଟର ସରଞ୍ଜାମ, ପୋଷାକପତ୍ର ଇତ୍ୟାଦି ରଖୁଥିଲେ । ପେଣ୍ଟିଂ ମଧ୍ୟ କରାଇ ପାରୁଥିଲେ । ଏଇଟା ଥିଲା ସେମାନଙ୍କର ବ୍ୟବସାୟ । ଏଇଟା ଗୋଟିଏ ସମୟ ଯେତେବେଳେ ଓଡ଼ିଶାରେ ବ୍ୟବସାୟିକ ଭିତ୍ତିରେ ପେଶାଦାର ରଙ୍ଗମଂଚ ସବୁ ଗଢ଼ି ଉଠିଥିଲା ଏବଂ ଏଇ ସମୟରେ ପ୍ରଥମ କରି ଝିଅମାନେ ମଂଚରେ ଅଭିନୟ କରିବାକୁ ଆସିଲେ ।

ଆମ ଜମାଳପୁର ସ୍କୁଲରେ ପ୍ରଥମ ଥିଏଟର ବୋଧେ ୧୯୪୦ ମସିହାରେ ହେଇଥିଲା । ଛୋଟ ହେଇଥିଲେ ମଧ୍ୟ ମନେଅଛି ମହାଭାରତର ଗୋଟିଏ ଦୃଶ୍ୟରେ

ନବ କୁମାର ପରିଡ଼ା ଓ ଯତୀନ୍ଦ୍ର ମହାପାତ୍ର ଭୀମ ଓ ଦୁଃଶାସନ ଭୂମିକାରେ ଅଭିନୟ କରିଥିଲେ । ସେମାନଙ୍କ ଯୁଦ୍ଧ ଦେଖି ମୁଁ ଡରି ଯାଇଥିଲି ।

ସବୁପ୍ରକାର ସୁବିଧା ଅସୁବିଧା ସତ୍ତ୍ୱେ ମୋର ସ୍କୁଲ ଶିକ୍ଷା ମୋଟାମୋଟି ଭଲରେ କଟିଲା । ମୋର ବୋଧେ କ୍ଲାସ ଟେନ୍ ବର୍ଷ ଅର୍ଥାତ୍ ଭାଇଙ୍କ ବିବାହ ପରେ ଅବସ୍ଥା ବଦଳିବ ବୋଲି ଆଶା କରା ଯାଉଥିଲେ ମଧ୍ୟ ତାହା ହେଲା ନାହିଁ । ହଠାତ୍ ଭାଇ ଏକାଉଂଟେଂଟ୍ ଜେନେରାଲରେ(ଏ.ଜି.) ଗୋଟିଏ ଚାକିରୀ ପାଇ ରାଞ୍ଚି ଚାଲିଗଲେ । ସେତେବେଳେ ଓଡ଼ିଶାର ଏ.ଜି. ଅଫିସ୍‌ଟା ରାଞ୍ଚିରେ ଥିଲା । ସେ ରାଞ୍ଚି ଚାଲିଯିବାରୁ ତାଙ୍କ ପିଲାମାନେ ସମସ୍ତେ ଆମଘରେ ନରହି ଶଶୁର ଘର ଗାଁ ଓଡ଼ିଆପଡ଼ାକୁ ଚାଲିଗଲେ । ସ୍ୱାଭାବିକ ଭାବେ ସେମାନଙ୍କ ସହ ଆମ ସମ୍ପର୍କ ଦୁରେଇବାକୁ ଲାଗିଲା । ଆମେ ପୁଣି ଯୋଉ ଅବସ୍ଥାରେ ଥିଲୁ ସେଇ ଅବସ୍ଥାକୁ ଫେରିଲୁ । ସେ ଦୁରତା ବଢ଼ି ବଢ଼ି ଚାଲିଲା । ପରବର୍ତ୍ତୀ ଅବସ୍ଥାରେ ଭୁବନେଶ୍ୱରରେ ଗୋଟାଏ ଏ.ଜି.ଅଫିସ ଖୋଲିବାରୁ ଭାଇ ସେଠାକୁ ଆସିଗଲେ । ସେତେବେଳେ ସେ ଦୂରତା ଏକ ସ୍ଥାୟୀ ଦୁରତାରେ ପରିଣତ ହେଲା ।

ହେଡ୍‌ମାଷ୍ଟରଙ୍କ ନୈତିକ ସାହାଯ୍ୟରୁ ହିଁ ମୁଁ ମେଟ୍ରିକ୍ ପାସ୍ କରି ପାରିଲି । ସେ ସମୟରେ ମେଟ୍ରିକ୍ ପାସ୍‌ଟା ସାଧାରଣ ନଥିଲା । ସେଠାକାର କମ୍ପାଉଣ୍ଡର ତଥା ଜଣେ ବିଶିଷ୍ଟ ବ୍ୟକ୍ତି ଯତୀନ୍ଦ୍ର ପଟ୍ଟନାୟକ ମୋତେ କହିଲେ, 'ଯା ହେଉ ତୋ ବାବା ପୁଅ ଦି' ଟା କୁ ଉଚ୍ଚଶିକ୍ଷିତ କରିଦେଲେ'। ମୋର ମନେପଡ଼ିଲା ରାଧାନାଥ ଯେତେବେଳେ ଏଣ୍ଟ୍ରାନ୍‌ସ୍ ପାସ୍ କଲେ ତାଙ୍କୁ ଦେଖିବାକୁ ଗାଁ ଗାଁ'ରୁ ଲୋକମାନେ ଆସିଥିଲେ । ମୋତେ ଅବଶ୍ୟ ଦେଖିବାକୁ କେହି ଆସି ନଥିଲେ କିନ୍ତୁ ଜମାଳପୁର ଅଂଚଳରେ ସେତେବେଳକୁ ମୋର ଗୋଟାଏ ସ୍ୱତନ୍ତ୍ର ପରିଚୟ ସୃଷ୍ଟି ହେଇ ସାରିଥିଲା । ଖେଳ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ହିଁ ଥିଲା ମୋର ପରିଚୟ । ମେଟ୍ରିକ୍ ପଢ଼ିଲା ବେଳୁହିଁ ଉତ୍ତର ବାଲେଶ୍ୱରର ଅନେକ ଅଂଚଳକୁ ବିଭିନ୍ନ ଫୁଟବଲ ଟୁର୍ଣ୍ଣାମେଂଟ୍‌ରେ ଗେଷ୍ଟ ପ୍ଲେୟାର ହିସାବରେ ଯାଇ ଖେଳୁଥିଲି । ଏପରିକି ବାଲେଶ୍ୱରରେ ମଧ୍ୟ ଖେଳିଛି ଖାଲି ଗୋଡ଼ରେ । ସେତେବେଳେ ଖେଳରେ ବୁଟ୍‌ର ବ୍ୟବହାର ପ୍ରାୟ ନଥିଲା । ବାଲେଶ୍ୱର ଏବର ଷ୍ଟେଡିୟମ୍‌ରେ ଏବଂ ପରେ ରିଜର୍ଭ ପୋଲିସ ପଡ଼ିଆରେ ଖେଳିଲି । ବେଳେବେଳେ ଯଦିଓ ଜଣେ ଦି ଜଣ ବୁଟ୍ ପିନ୍ଧୁଥିଲେ ଖେଳ ମଝିରେ ବୁଟ୍ ଖୋଲି ଦେଉଥିଲେ ।

## ମୋର ଅଭିନୟ : ରାଜନୀତିରେ ନୁହେଁ କି ପ୍ରେମରେ ବି ନୁହେଁ

ପଚାଶ ଦଶକରେ ମୁଁ ପ୍ରଚୁର ଯାତ୍ରା ଥିଏଟର ଦେଖିଛି । ତା ପୂର୍ବରୁ ବି ଦେଖିଛି । ଛୋଟ ପିଲାବେଳେ, ସେତେବେଳେ ଗାଁ ଗାଁରେ ଯାତ୍ରା ଦଳଥିଲା - ପ୍ରତିଯୋଗିତା

ଭିତ୍ତିରେ । ଆମ ଗାଁ'ରେ ବି ଗୋଟାଏ ଦଳଥିଲା । ମୋ ବଡ଼ ବାପା ଗାଁ ମାଲିକ ହିସାବରେ ଥିଲେ ତା'ର ମଧ୍ୟ ମାଲିକ । ଗାଁର ଯାତ୍ରାଦଳ ପାଇଁ କଲିକତାରୁ ଅଣା ଯାଉଥିଲା ସିନ୍, ପୋଷାକ ଓ ସଂଗୀତ ନୃତ୍ୟ ପାଇଁ ବାଦ୍ୟଯନ୍ତ୍ର । ବୋଧେ ଆମକୁ କଟକ ଅପେକ୍ଷା କଲିକତାରୁ ଏ ସବୁ ଆଣିବାକୁ ସୁବିଧା ହେଉଥିଲା ।

ଫକୀରମୋହନ ତ ପୁଣି କଲିକତାରୁ ଗୋରୁଗାଡ଼ିରେ ଛାପାଖାନା ଆଣିଥିଲେ । ରେଳଗାଡ଼ି ନଥିଲା । ସେ ବର୍ଣ୍ଣନା ପଢ଼ିଲେ ଏବେବି ରୁମ ମୂଳ ଟାଙ୍କୁରି ଉଠେ । ଆମର ସଂପର୍କ ବଙ୍ଗଳା ସହିତ ବେଶୀ ।

ମୋର ଜଣେ ଦାଦା (ଶରତ ଦାଦା) ଗାଁ ତରଫରୁ କଲିକତା ଯାଇ ସେଠୁ ହାରମୋନିୟମ, ଡୁବିତବଲା ସହିତ ରାଜାରାଣୀଙ୍କ ପୋଷାକ ସବୁ ଆଣିଥିଲେ । ସେଥିପାଇଁ ଗାଁରେ ସମସ୍ତଙ୍କ ଠାରୁ ଚାନ୍ଦା ନିଆଯାଇଥିଲା । ଗାଁ'ର ଏକତା ଏଥିରୁ ଜଣା ପଡୁଥିଲା ।

ଗାଁ'ର ଯାତ୍ରାଦଳକୁ ଶିଖେଇବା ପାଇଁ ଦୁଇଜଣ ଓସ୍ତାଦ ଆସି ଅପେକ୍ଷାକୃତ ଆର୍ଥିକ ଅବସ୍ଥା ଭଲଥିବା ମଧୁ ବେହେରା ଘରେ ରହିଲେ । ସକାଳ ସନ୍ଧ୍ୟା ରିହାରସେଲ୍(ଆଖଡ଼ା) ଆରମ୍ଭ ହେଲା । ଶରତ ଦାଦା ସେଥିରେ ଗୋଟେ ରାଜା ଭୂମିକାରେ ଅଭିନୟ କରିଥିଲେ । ମୁଁ ଅନେକ ଥର ମୋ ବଡ଼ ବାପାଙ୍କ ସହିତ ମଧୁ ବେହେରା ଘରେ ହେଉଥିବା ରିହାରସେଲ୍ ଦେଖିବାକୁ ଯାଇଛି । ମଧୁ ବେହେରାର ପୁତୁରା ଦୁଇଜଣ କାର୍ତ୍ତିକ ଓ ଗଣେଶ ମୋ ଠାରୁ ସାମାନ୍ୟ ଛୋଟ ସେ ଯାତ୍ରାରେ ନୃତ୍ୟ ଗୀତରେ ସାମିଲ୍ ଥିଲେ । ସେମାନେ ମୋର ଖେଳ ସାଙ୍ଗ ଥିଲେ । କିନ୍ତୁ ସେମାନେ ଯେତେବେଳେ ଗୀତଗାଇ ନାଚିଲେ ମୋତେ ମଜା ଲାଗୁଥିଲା । ସେ ନାଚରେ ଭୁଲ୍ ହେଲେ ଓସ୍ତାଦ ଜଣକ ତାକୁ ବାଡ଼ିରେ ପିଟୁଥିଲା । ମୁଁ ତେଣୁ ନାଚଟାକୁ ମୋଟେ ପସନ୍ଦ କରୁ ନଥିଲି । କିନ୍ତୁ ଅଭିନୟ ପ୍ରତି ଆଗ୍ରହ ଥିଲା । ପିଲା ଖେଳରେ ଆମେ ଅଭିନୟ କରୁ ନ ଥିଲୁ କି ? ତେଣୁ ଯାତ୍ରାରେ ନିଶଦାଢ଼ି ଖଞ୍ଜି କିମ୍ବା ମୁକୁଟ ଲଗେଇ ଖଣ୍ଡାଧରି ରାଜାପରି ଯୁଦ୍ଧ କରିବାକୁ ମୋର ଇଚ୍ଛାଥିଲା । ସେ ଇଚ୍ଛାଟା ଆହୁରି ଛୋଟବେଳୁ ଜାଣି ହେଉଥିବ । ଦୁଇଖଣ୍ଡ ବାଡ଼ିକୁ ଖଣ୍ଡାକରି ଆମେ ରାଜା ହେଇ ଯାଉଥିଲୁ କିମ୍ବା ଗୋଟାଏ ଅପେକ୍ଷାକୃତ ମୋଟା ବାଡ଼ିକୁ ଗଦାକରି ଏବଂ ହାଫ୍ ପେଣ୍ଟର ପଛପଟେ ଗୋଟାଏ ଗାମୁଛାକୁ ଝୁଲେଇ ହନୁମାନର ଲାଙ୍ଗୁଡ଼ କରି ଆମେ ଲଙ୍କା ଜୟ କରିବାକୁ ଯାଇଥିଲୁ । ସେ ଯୁଦ୍ଧର ଶେଷ ନ ଥିଲା । ଯୁଦ୍ଧର ଖେଳ ଓ ଲଙ୍କା ବିଜୟ ଆମର ପ୍ରାୟ ଦୈନନ୍ଦିନ କାରବାର ।

ରାବଣକୁ ଯେତେ ମାରିଲେବି ସେ ବଂଚି ଉଠୁଥିଲା ଏବଂ ପରଦିନ ଆମର ପୁଣି ସେଇ ଯୁଦ୍ଧରୁ ଆରମ୍ଭ ହେଇଥିଲା ।

ଏବେ ଭାବୁଛି ସେ ଯୁଦ୍ଧର ଶେଷ ନାହିଁ ବୋଧେ । ସାରାଜୀବନ ତ ଯୁଦ୍ଧ କଲି, ସବୁଠି ଓ ସବୁବେଳେ, ସବୁ କ୍ଷେତ୍ରରେ, ଚାକିରିରେ ଥିଲାବେଳେ ଓ ଚାକିରିରୁ ଅବସର ନେଲାପରେ ମଧ୍ୟ ଯୁଦ୍ଧର ବିରାମ ନାହିଁ । କିନ୍ତୁ ରାବଣମାନେ ମରୁ ନାହାନ୍ତି । ମରିବା ତ ଦୂରର କଥା, ସେ ହାରୁ ନାହିଁ ମଧ୍ୟ । ଏଥିରୁ ପ୍ରମାଣିତ ହେଉଛି ଯେ  ରାବଣ ହିଁ ପୃଥିବୀର ସବୁଠାରୁ ପରାକ୍ରମୀ । ଅପରାଜେୟ ବୀର ଏବଂ ସେ ବୀରତ୍ୱ ତା'ର ରହିଛି ଯୁଗରୁ ଯୁଗକୁ । ରାମାୟଣ ଯୁଗ ସେ କେବେ ଠାରୁ ଅତିକ୍ରମ କରିସାରିଛି । ଆହୁରି କେତେ ଯୁଗ ଏମିତି ବିତିବ ।

ଆଉ ଆମେ ସବୁ ସେଇ ବୀରତ୍ୱ ଠାରେ ପରାଜୟ ସ୍ୱୀକାର କଲାପରେ ନିଜର ଗୋଟାଏ ମିଛ ସ୍ୱାଭିମାନକୁ ଟେକି ରଖିବା ଉଦ୍ଦେଶ୍ୟରେ (ଏବର ମଣିଷ ବୋଲି) ରାବଣକୁ ମାରିଛୁ ବୋଲି ପ୍ରତିବର୍ଷ ରାବଣ ପୋଡ଼ିର ମିଛ ଅଭିନୟ କରୁ । ରାବଣ ମରିନାହିଁ, ମରି ପାରେନା । ତାକୁ ଏବେ ଯେ କୁହାଯାଉଛି ବଡ଼ବଡ଼ ନୋଟ୍‌କୁ ଅକାମି (ଡିମନିଟାଇଜେସନ୍)କରି ମାରି ଦିଆଯିବ । ଏଇଟା ବି ଭୁଲ୍ କଥା ।

ପିଲାବେଳର ରିହାରସେଲ୍ ଦେଖିବାର ନିଶାକ୍ରମେ କିଶୋର ଅବସ୍ଥାରେ ଅସଲ ଯାତ୍ରା ଦେଖି ନିଶାରେ ପରିଣତ ହେଲା । ପ୍ରତିବର୍ଷ ଏଇ କାର୍ତ୍ତିକ ପୂର୍ଣ୍ଣିମା ଦିନ ଆମ ଗାଁ ଠାରୁ ୪ କିଲୋମିଟର ଦୂରରେ ନଦୀ ସେ ପାଖରେ ଥିବା "ଚଢ଼ ଚୋରମାରା' ଗାଁରେ ଥିବା ମଠରେ ଯାତ୍ରା ହୁଏ ଓ ଯାତ୍ରା (ମେଳା) ବସେ । ରାତି ୯ଟା ବେଳେ ଆମେ ଯାଉ ସେ ଯାତ୍ରା ଦେଖିବାକୁ । ସାଥିରେ ଆଉ ଦୁଇ ଜଣ ମଧ୍ୟ ଯାଆନ୍ତି । ଚୋରମରା ଠାରେ ନୌକାରେ ନଦୀ ପାରହେଇ ଆମେ ଯେତେବେଳେ ଯାଇ ପହଂଚିଲୁ ମଠରେ, ମୋ ଆଖି ଖୋସି ହେଇଗଲା । ମୁଁ ଆଗରୁ କେବେ ମଠ ଦେଖି ନଥିଲି । ସେଠି ବାବାଜୀମାନେ ରହନ୍ତି ବୋଲି ଶୁଣି ଥିଲି । ବାବାଜୀ କହିଲେ ଯାହାର ଲମ୍ବା ନିଶଦାଢ଼ୀ ସହିତ ମୁଣ୍ଡରେ ବିରାଟ ଜଟ ଥିବ ।  ମଜା ଲାଗେ ଏମାନଙ୍କୁ ଦେଖିବାକୁ । ଏମାନଙ୍କର ପିଲା ପରିବାର ନଥାଏ । ଭିକମାଗି ଚଳନ୍ତି । କିନ୍ତୁ ଏଠି ସେସବୁ ଭିନ୍ନ । ମଠରେ ନାରୀମାନେ ଥିଲେ । ସେମିତି କିଛି ସୁନ୍ଦରୀ ନ ହେଲେ ମଧ୍ୟ ଅସୁନ୍ଦରୀ ନୁହେଁ । ସୁନ୍ଦର ପଣର ବା ମାପକାଠି କୋଉଠୁ ଆସିବ ? ସ୍ୱୟଂ ଈଶ୍ୱର ମଧ୍ୟ ମାପକାଠିଟିଏ ତିଆରି କରିପାରି ନାହାନ୍ତି ।

ମଠଟା ବି ଭଲ ପରିବେଶରେ । ଠିକ୍ ସୁବର୍ଣ୍ଣରେଖା କୂଳରେ ଏବଂ ବିରାଟ ଆମ୍ବ ବଗିଚା ଭିତରେ ଗୋଟାଏ ମନୋରମ ପରିବେଶ । ଯାତ୍ରା ଆରମ୍ଭ ହେବାକୁ ଡେରିଅଛି । କିଛି ଗାଁ ଲୋକ ବୋଧେ ଧାଡ଼ିରେ ବସି ଖାଉଥିଲେ । ମଧ୍ୟବୟସ୍କା ସ୍ତ୍ରୀଟିଏ ଆମକୁ ଡାକିଲା, ଏ ଛୁଆ, ଆସ ଖାଇବ । ଆମେ ତ ଖାଇଥିଲୁ । ମନା କଲୁ । ତାପରେ ଆରମ୍ଭ ହେଲା ଗୋଟାଏ ପୌରାଣିକ ନାଟକ । ଯୁଦ୍ଧ ଠାରୁ ନାଚଗୀତ ଭରପୁର । ବେଶ୍ ମଜା

ଲାଗିଲା । ଥଟ୍ଟା ତାମସା ଓ ହସକୌତୁକ ମଧ୍ୟ କମ୍ ନାହିଁ । ପାହିଗଲା ରାତି, ଆମେ ଜାଣି ପାରିଲୁ ନାହିଁ । ସେଇ ଯେ ନିଶା ଲାଗିଗଲା, ସେଇଟା ଆଉ ଛାଡ଼ିଲା ନାହିଁ । ଆଖ ପାଖ ଗାଁରେ ଯୋଉଠି ଯେତେ ଯାତ୍ରା ସୁଆଙ୍ଗ ହେଲା ତାକୁ ଦେଖିବାକୁ ଦୌଡ଼ିଲି । ଘର ତରଫରୁ କିଛି ବାଧା ନଥାଏ କି ପ୍ରଶ୍ନ ମଧ୍ୟ ପଚରାଯାଏ ନାହିଁ । ବଡ଼ଭାଇ କଟକ ଚାଲି ଯାଇଥିଲେ ପଢ଼ିବାକୁ । ଭୂପତି ଭାଇ (ମୋ ମାମୁଁ ପୁଅଭାଇ ଯିଏ ଆମ ଘରେ ରହି ମେଟ୍ରିକ୍ ଯାଏଁ ପଢ଼ିଥିଲେ) ସେ ତା'ର ଅନେକ ଆଗରୁ ଚାଲି ଯାଇଥିଲେ । ତେଣୁ ଖେଳ ଓ ଯାତ୍ରା ଦେଖାରେ ମୁଁ ମୋ ନିଜର ମାଲିକ । ଖାଲି ମାଆଁକୁ ପଦେ କହିବାର ଅଛି ।

ସେଇ ସମୟରେ ମୁଁ ଯେ ଖାଲି ଯାତ୍ରା ଦେଖିଛି ତା ନୁହେଁ, ଗାଁର ଲୋକପ୍ରିୟ ବେଶ ସେତେବେଳେ ବାଦିପାଲା, ଚଢ଼େୟା ନୃତ୍ୟ, କୃଷ୍ଣଲୀଳା । ଏସବୁ ଗାଁ ଲୋକଙ୍କର ଅତି ସାମାନ୍ୟ ଖର୍ଚ୍ଚରେ ହେଇପାରୁଥିଲା ଏବଂ ଲୋକେ ତାକୁ ରାତିଯାକ ଉପଭୋଗ କରୁଥିଲେ । ଏସବୁ ଥିଲା କାହାଣୀ ପ୍ରଧାନ । ହାସ୍ୟ ଓ ବ୍ୟଙ୍ଗ ଥିଲା ମାଧ୍ୟମ । ଏସବୁ ମନୋରଞ୍ଜନ କାର୍ଯ୍ୟକ୍ରମ କୌଣସି ପର୍ବପର୍ବାଣୀରେ ହିଁ ହେଉଥିଲା । ଅଭ୍ୟାସ ଆସ୍ତେ ଆସ୍ତେ ନିଶାରେ ପରିଣତ ହୁଏ । ଥରେ ତ ଅତ୍ୟନ୍ତ ମଜାର ଘଟଣାଟିଏ ଘଟିଥିଲା । ଆମ ଭିତରେ ସବୁଠୁ ବୟସରେ ବଡ଼ ଥିଲେ ଭାନୁ ନନ୍ଦ । ଆମେ ତାଙ୍କୁ ଭାନୁ ନନା ବୋଲି କହୁଥିଲୁ । ମୁଁ ଯେତେବେଳେ କ୍ଲାସ ଫୋର କି ଫାଇବ୍‌ରେ ସେ ବୋଧେ ସେତେବେଳେ ୭ମ କି ୮ମରେ । ସେ କିନ୍ତୁ ପାଠପ୍ରତି ବେଶୀ ନଜର ନଦେଇ ତାଙ୍କ ବାପାଙ୍କ ବେଉସା ପୂଜାପଦ୍ଧତି ବ୍ରାହ୍ମଣବାଦୀ କାମରେ ମନ ଦେଉଥିଲେ ।

ସେ ଦିନ ଥିଲା ଶିବରାତ୍ରୀ । ଶିବ ମନ୍ଦିରରେ ପୂଜା ତ ହେବ । ଅଧିକନ୍ତୁ ଜାଗର ଜଳିବା ଓ ମହାଦୀପ ଉଠିବା ପର୍ଯ୍ୟନ୍ତ ସମସ୍ତେ ମନ୍ଦିର ବେଢ଼ାରେ ଅନିଦ୍ରା ରହି ବସି ରହିବା ଗୋଟାଏ ବିଧି । ତେଣୁ ସେଦିନ ଯାତ୍ରାର ଆୟୋଜନ କରାଯାଇଥାଏ । କିନ୍ତୁ ସେଦିନ ସନ୍ଧ୍ୟାରେ ଖବର ଆସିଲା ଯେ ଯୋଉ ଯାତ୍ରାଦଳକୁ ଆସିବା ପାଇଁ କୁହା ଯାଇଥିଲା ସେ ଆସି ପାରିବ ନାହିଁ । ସମସ୍ତଙ୍କର ଭାଳେଣି ପଡ଼ିଲା । କେହି ଜଣେ କହିଲେ ତମେ ପିଲାମାନେ କିଛି ଗୋଟେ କରୁନ । ଭାନୁ ନନା ଆସି ଆମ ଆଗରେ ଠିଆ ହେଲେ । ଆମକୁ କହିଲେ ତୁମେମାନେ ଯାତ୍ରା କରି ପାରିବ ? କେତେ ଯାତ୍ରା ଦେଖିଛ । ସେଥିରୁ ମନରୁ ଫାନ୍ଦି କିଛି କହି ପାରିବନି । ଆମେ ସମସ୍ତେ ଡେଇଁ ପଡ଼ିଲୁ । କାହିଁକି ହବ ନାହିଁ । ମୁଁ କହିଲି ମୁଁ ରାଜା ହେବି । ଆର ଜଣକ କହିଲା ମୁଁ ମନ୍ତ୍ରୀ ହେବି । ରାଣୀଟିଏ ହେବାକୁ କେହି ରାଜି ହେଲେନି । ନନାର କଥା କେହି ମାନିଲେନି । ଜଣେ ମୁରବୀ ଲୋକ ଆମର ଏ ଯୁକ୍ତି ତର୍କ ଦେଖି ହସିଲେ । ତା ପରେ କହିଲେ ଯାତ୍ରାଟାକୁ ଖେଳ ବୋଲି ଭାବୁଚ କିରେ ? ଯାଅ ପଳାଅ ଏଠୁ ।

ମୋର କିନ୍ତୁ ଯାତ୍ରା ନିଶା ଗଲାନାହିଁ । ମୋର ୭ମ ଓ ୮ମ ଶ୍ରେଣୀ ବେଳକୁ ସ୍କୁଲକୁ ଆସିଲେ ଦୁଇଜଣ ଶିକ୍ଷକ । ସରୋଜ ମିଶ୍ର - ଜଣେ ସଂଗୀତ ଶିକ୍ଷକ ଏବଂ ଆଉ ଜଣେ - ଅମୀୟ ବସୁ । ସେ ଥିଲେ ସହକାରୀ ଶିକ୍ଷକ । କିନ୍ତୁ ନାଟକ ଓ ଗଳ୍ପ କବିତାର କଳା ମଧ୍ୟ ତାଙ୍କ ଭିତରେ ଥିଲା । ଆମ ସ୍କୁଲରେ ପିଲାମାନଙ୍କୁ ନେଇ ପ୍ରଥମେ ନାଟକ କରିବା ଆରମ୍ଭ ହେଲା । ପ୍ରଥମେ ହେଲା 'ଯୌତୁକ' । ଅମୀୟ ବାବୁ ମୋତେ ସେଥିରେ ଗୋଟିଏ ଚାକରର ଭୂମିକା ଦେଲେ । ମାତ୍ର ଦୁଇଥର ମଂଚକୁ ଆସିବାକୁ ହେବ । ପ୍ରଥମ ଥର ଡାଇଲଗ୍ କିଛିନାହିଁ । ଦ୍ୱିତୀୟଥର ସାମାନ୍ୟ ପଦେ । ଲାଜ ତ ପ୍ରବଳ । ଗୋଡ଼ ଥରୁଥାଏ । ଡାଇଲଗଟିକୁ ଯେତେ ମୁଖସ୍ଥ କରିଥିଲେ ମଧ୍ୟ ସିନ୍ କଡ଼ରୁ ପାଟି କରି କହିଲା ପରେ ସେତକ କହିଦେଲି ।

ବଡ଼ ଅଡୁଆ ଥିଲା ଏ ବୁଢ଼ାର ଭୂମିକା । ଗାମୁଛାଟିକୁ ବାରମ୍ବାର କାନ୍ଧରେ ସଜାଡ଼ିବାକୁ ପଡୁଥାଏ ।

ଓଃ ତା ପରେ ପ୍ରଶଂସା । ମୁଁ କୁଆଡ଼େ ନିଖୁଣ ଚାକରର ଅଭିନୟ କରିଥିଲି । ଜୀବନର ପ୍ରଥମ ମଂଚରେ ଅଭିନୟ । ଚାକିରିର ଅଭିନୟରୁ ଜୀବନ ଯାକ ସେଇ ଚାକରର ଅଭିନୟ(servant) କରି ଚାଲିଲି । କହିଦିଏ ଯେ ଅମୀୟ ବସୁ ହେଉଛନ୍ତି ବିଶିଷ୍ଟ ଚିତ୍ରଶିଳ୍ପୀ ଓ ମଂଚ ଅଭିନେତା ଅସୀମ ବସୁଙ୍କ ବଡ଼ଭାଇ । ଅସୀମ ବସୁଙ୍କ ପରି ସେ ପେଶାଦାର କଳାକାର ନଥିଲେ ମଧ୍ୟ ମଂଚ ଅଭିନୟରେ ତାଙ୍କ ଠାରୁ କିଛି କମ୍ ନଥିଲେ । ପରେ ସେ ରାଉରକେଲା ଷ୍ଟିଲ୍ ପ୍ଲାଂଟ୍‌କୁ ଆସି ସେଠାକାର କଲଚରାଲ୍ ଏକାଡେମୀରେ ସଂପୃକ୍ତ ହୋଇ ବିଭିନ୍ନ ସାହିତ୍ୟ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ ।

ପରବର୍ତ୍ତୀ ଅବସ୍ଥାରେ ଆମର ଅନେକ ଗୁଡ଼ିଏ ନାଟକ ମଂଚସ୍ଥ ହେଇଛି । ଭାଇଭାଉଜ, ଫେରି ଆ, ସମାଧି, ମାଣିକଯୋଡ଼ି ଏବଂ ପୌରାଣିକ ବଭ୍ରୁ ବାହନ । ଗଣେଶ ପୂଜା, ସରସ୍ୱତୀ ପୂଜା ଛଡ଼ା ଅନ୍ୟ ସମୟରେ ମଧ୍ୟ ହୋଇଛି । ସିନ୍ ସବୁ ଆସେ କଟକରୁ ଭଡ଼ାରେ ଏସବୁ କଥା ପୂର୍ବରୁ ଲେଖାଯାଇଛି ।

ପୋଲିସ୍‌କୁ ଆସିବା ପରେ ଥରେ ନାଟକର ଆୟୋଜନ ହେଲା । ଭଲ ଭଲ କିଛି ଅଭିନୟରେ ଜ୍ଞାନ ଥିବା ଲୋକ ଥିଲେ । କିନ୍ତୁ ନାଟକରେ ନିର୍ଦ୍ଦେଶନା ଦେଇପାରୁଥିବା ଲୋକ ବାରିପଦାରେ ଜଣେ ମାତ୍ର ଥିଲେ; ଉମେଶ ଚନ୍ଦ୍ର ମହାନ୍ତି । ଆଉ କେହି ସେତେବେଳେ ନ ଥିଲେ ନୁହେଁ : ନାଟ୍ୟକାର ଆନନ୍ଦ ଶଙ୍କର ଦାସ ଓ ବିଶିଷ୍ଟ ଗୀତିକାର ଗୁରୁକୃଷ୍ଣ ଗୋସ୍ୱାମୀ ପ୍ରଭୃତି ଅନେକ । କିନ୍ତୁ ପୋଲିସ ଡ୍ରାମା ପାଇଁ ଡକା ଯାଇଥିଲା ଉମେଶ ବାବୁଙ୍କୁ । ସବ୍ ଇନିସ୍‌ପେକ୍ଟର ଅସୀମ ଚକ୍ରବର୍ତ୍ତୀ, ରବୀନ୍ ବେହେରା ଓ ଶରତ ମହାନ୍ତି ପ୍ରଭୃତି ଥିଲେ ଆଗଧାଡ଼ିରେ । ମୁଁ ସମସ୍ତଙ୍କ ପଛରେ । ନାଟକ 'ଲକ୍ଷ୍ୟହୀରା' । କିନ୍ତୁ

ନାରୀ ଭୂମିକାରେ ଅଭିନୟ କରିବ କିଏ ? ସେତେବେଳେ କଟକରେ କେବଳ ନାରୀ ଭୂମିକାରେ ଅଭିନୟ କରିବାକୁ ନାରୀ ମିଳୁଥିଲେ । ମୁଁ ୫୭/୫୮ ମସିହାର କଥା କହୁଛି । ବାରିପଦା କି ଅନ୍ୟ ଅଂଚଳର ଝିଅମାନେ ଏତେ ଆଗକୁ ଆସି ନଥିଲେ ଯଦିଓ ବାରିପଦା ସେତେବେଳେ ଅନ୍ୟାନ୍ୟ ଜିଲ୍ଲା ସଦର ମହକୁମା ତୁଳନାରେ କଳା ଓ ସାଂସ୍କୃତିକ ଜାଗୃତିରେ ଢେର ଆଗରେ ଥିଲା । ମୋ ଜାଣିବାରେ ବାରିପଦାରେ ସେଥର ଯୋଉ ପୋଲିସର ଡ୍ରାମା ହେଲା ସେଥିରେ ପ୍ରଥମ ଥର ପାଇଁ ନାରୀମାନେ ହିଁ ନାରୀ ଭୂମିକାରେ ଅଭିନୟ କରିଥିଲେ । କଟକରୁ ଗ୍ଲୋରିଆ ରାଉତ୍ ଓ ଅନିମା ପେଦିନି ଆସିଥିଲେ । ରିଜର୍ଭ ଅଫିସ୍ ପାଖରେ ଥିବା କେଂଟିନ୍ ହଲରେ ରିହାରସେଲ ଆରମ୍ଭ ହେଲା । ସେ ଦିନ ସନ୍ଧ୍ୟାରେ ଯୋର ଭିଡ଼ । କିପରି ନାରୀ ସେମାନେ ଯୋଉମାନେ ପୁରୁଷମାନଙ୍କ ସାଥୀରେ ପ୍ରେମର ଡାଇଲଗ କହିବେ ପୁଣି ଅଣ୍ଟାରେ ହାତଛନ୍ଦି ।

ନାଟକଟି ଆୟୋଜିତ ହେଇଥିଲା କଟକରେ ହେଉଥିବା All India Police Cultural Meet ପାଇଁ । ଅନ୍ୟାନ୍ୟ ଜିଲ୍ଲାରୁ ଡ୍ରାମା ଟିମ୍ ମଧ୍ୟ ଆସିଥିଲା । ତା ଭିତରୁ ନିର୍ବାଚନ ହେବ । ମୋର ଗୌଣ ଭୂମିକାଟିଏ । ଭିକାରି ପିଲାଟିଏ ଗୀତ ଗାଇଗାଇ ଭିକ ମାଗୁଥିବା ଏ ଭୂମିକାଟିକୁ ବୋଧେ ନିର୍ଦ୍ଦେଶକ ଯୋଡ଼ି ଥିଲେ । ମୂଳ ନାଟକରେ ଥିଲା କି ନା କେଜାଣି । ଆମେ ସବୁ ଗଲୁ, କଟକ ବାରବାଟି ଷ୍ଟାଡ଼ିଅମ୍ । ଯେଉଁଠାରେ ନାଟକ ହେଉଥିଲା । ସାରା ଭାରତର ବିଭିନ୍ନ ଜାଗାରୁ ଦଳମାନ ଆସିଥିଲେ । ଆମ S.P ଗୋକୁଳାନନ୍ଦ ମହାନ୍ତି ଆଗରୁ କଟକ ଆସି ଆମର ରହିବା ଓ ଖାଇବାର ବ୍ୟବସ୍ଥା କରିଥିଲେ । କିନ୍ତୁ ଆମେ ଫେଲ୍ ମାରିଲୁ । ଢେଙ୍କାନାଳ ଟିମ୍ ଫାଷ୍ଟ ହେଲା । ସେଠାକାର S.P କୁଆଡ଼େ ନିଜେ ଜଣେ ଭଲ ଅଭିନେତା । ରବିନ ବେହେରା ନିଜର ଅସନ୍ତୋଷ ପ୍ରକାଶ କରି କହିଲେ ତାଙ୍କୁ ପୁରସ୍କାର ଦେବାପାଇଁ ତ ଆଗରୁ ଠିକ୍ ହୋଇଥିଲା ଆମକୁ କାହିଁକି ଡାକୁଥିଲେ ?

ଏମିତିକା ଅଭିଯୋଗ ଗୋଟାଏ ସାଧାରଣ କଥା ଏବେ ଯାର ବ୍ୟାପ୍ତି ସବୁ ଦିଗକୁ ବ୍ୟାପିଲାଣି । ଅଲିମ୍ପିକ୍ ଖେଳରେ ହାରିଲେ ମଧ୍ୟ କହୁଛନ୍ତି ଏଥିରେ ରାଜନୀତି ପଶିଗଲା । ଫୁଟବଲ୍ ଖେଳରେ ହାରିଲେ କହୁଛନ୍ତି ରେଫରୀ ପକ୍ଷପାତ କଲା - ତାଙ୍କ ଲୋକ । ଆଉ ନିର୍ବାଚନରେ ହାରିଲେ କହୁଛନ୍ତି ସରକାରୀ ଦଳ ମୋ ଲୋକ ପ୍ରିୟତାକୁ ସହ୍ୟ କରି ପାରିଲେ ନାହିଁ, ପୋଲିସ ଲଗେଇ ଦେଲେ । ଯେମିତି ଏବେ କୁହାଯାଉଛି ବଡ଼ ବଡ଼ ନୋଟକୁ ନାକଚ କରିବା ଦ୍ୱାରା ସେମାନଙ୍କ ଠାରେ ଥିବା ଗୋଛା ଗୋଛା ବ୍ଲାକ୍ ମନି ବେକାର ହେଲା - ତେଣୁ ବିମୁଦ୍ରାୟନରେ କହିଲେ ଦୁର୍ନୀତି ବିରୋଧରେ ଆମ ଛଡ଼ା ଆଉ କିଏ ସଫଳତାର ସହିତ ଯୁଦ୍ଧ କରି ପାରିଛି ? ରାଜନୀତିରେ ଏସବୁ ସଂଳାପ ବହୁତ ଶୁଣାଯାଏ ।

ଏସବୁ ସାଧାରଣ କଥା । ଯୁଗେ ଯୁଗେ ମଣିଷର ଏ ଦୁର୍ବଳ ମାନସିକତା ଥିଲା ଓ ଅଛି ।

ନାଟକରେ ଏ ପରାଜୟ ମୋତେ କିନ୍ତୁ ବାଧି ନ ଥିଲା । ତା'ର କାରଣ ସେଥିରେ ମୋର ଅଂଶଗ୍ରହଣ ଥିଲା ଅତି ସାଧାରଣ । ମୁଁ ତା' ଠୁ କିଛି ବେଶୀ ଆଶା କରିଥିଲି ।

କିନ୍ତୁ ପରବର୍ତ୍ତୀ କାଳରେ ମୁଁ ଯେତେବେଳେ ରାଉରକେଲାରେ ଆସି ପହଂଚିଲି ସେଠି ଦେଖିଲି ସେଇ ଅସୀମ ଚକ୍ରବର୍ତ୍ତୀ ଓ ଶରତ ମହାନ୍ତିଙ୍କୁ । ଅସୀମ ବାବୁ ଓଡ଼ିଶା ପୋଲିସରୁ ରାଉରକେଲାର ସିକ୍ୟୁରିଟି ଫୋର୍ସକୁ ଡେପୁଟେସନ୍‌ରେ ଆସିଥିଲେ ଓ ଶରତ ମହାନ୍ତି ପୋଲିସ ଚାକିରି ଛାଡ଼ି ସିକ୍ୟୁରିଟି ଫୋର୍ସରେ ଜଏନ୍ କରିଥିଲେ । ସେମାନେ ଏଠି ଆରମ୍ଭ କଲେ: ସିକ୍ୟୁରିଟି ଡ୍ରାମାଟିକ କ୍ଲବ୍ । ସେତେବେଳକୁ ରାଉରକେଲାରେ ଭବାନୀ ପଣ୍ଡା, ଦୁର୍ଗା ଦାସ ଓ ସିଂହଦେଓ (ଇଷ୍ଟେଟ୍ ଅଫିସ୍) ସେମାନଙ୍କ ନେତୃତ୍ୱରେ  ନାଟକର ହାଓ୍ୱା ଆରମ୍ଭ ହୋଇ ସାରିଥାଏ । ବେଶ କେତୋଟି ନାଟକ ମଂଚସ୍ଥ ହୋଇସାରିଥାଏ । ଆମ ସାଥିରେ ଅଜୟ ଦାସ ଥାଆନ୍ତି ଆଉ ଜଣେ ଭଲ ଅଭିନେତା । ନାଟକ ପାଇଁ ସମସ୍ତେ ମାତି ଉଠିଲେ । ସ୍ଥିର ହେଲା ଯେ ନାଟକ ପାଇଁ ସାଧାରଣ ଲୋକଙ୍କ ଠାରୁ ଚାନ୍ଦା ନିଆଯିବ ଏବଂ ସେଥିରେ ନାଟକ ହେବ ।-ଟିକେଟ ପୁସ୍ ସେଲ୍ ମାଧ୍ୟମରେ ଅର୍ଥ ସଂଗ୍ରହ ହେବ ଏବଂ ଡ୍ରାମା ପରେ ବଳକା ଅର୍ଥକୁ ଡିଫେନ୍‌ସ ଫଣ୍ଡ୍‌କୁ ଦିଆଯିବ । ଏଥିରେ କର୍ତ୍ତୃପକ୍ଷଙ୍କ ସମର୍ଥନ ମିଳି ଥିଲା । ଆନନ୍ଦ ଶଙ୍କର ଦାସଙ୍କ ଲିଖିତ ନାଟକ 'କପଟପାଶା'ର ରିହରସେଲ୍ ଆରମ୍ଭ ହେଲା ।

ମୋର ଏଥିରେ ଭଲ ଭୂମିକାଟିଏ ଥିଲା । ପୋଲିସ୍ ଇନ୍‌ସପେକ୍ଟର । ଡ୍ରାମା ତାରିଖ ପାଖେଇ ଆସିଲା । ରିହରସେଲ ଜୋର୍‌ସୋର ଚାଲିଥାଏ । ନିର୍ଦ୍ଦେଶକ ଥିଲେ ଦୁର୍ଗାଦାସ । ଏଥିରେ ଅସୀମ ବାବୁଙ୍କ ମନ କ୍ଷୁବ୍ଧ । ସେ ଦୂରରେ ରହିଲେ । ଠିକ୍ ଏ ସମୟରେ ମୋର ଡାହାଣ ହାତ ବୁଢ଼ା ଆଙ୍ଗୁଳିରେ କଣରେଖାଟିଏ ହୋଇ ପାଚିଗଲା । ପ୍ରବଳ ଯନ୍ତ୍ରଣା ହେଲା । ମୁଁ ଇସ୍ପାତ୍ ଜେନେରାଲ୍ ହସ୍ପିଟାଲ୍‌ରେ ଚିକିତ୍ସିତ ହେଉଥିଲି । ଡାକ୍ତର ଆଶୁରାୟ କହିଲେ ଅପରେସନ୍ ଛଡ଼ା ଉପାୟ ନାହିଁ, ମୋ ସହିତ ମୋର ଜଣେ ଶଳା ସଂପର୍କ ହେବ ପ୍ରଫୁଲ୍ଲକୁ ନେଇ ମୁଁ ଯାଇଥିଲି । ଅପରେସନ୍ ପରେ ମୋ ହାତକୁ ସେ ବେଣ୍ଡେଜ କନାରେ କାନ୍ଧ ସହିତ ବାନ୍ଧିଦେଲେ । ପ୍ରଫୁଲ୍ଲ ମୋତେ ତା ସାଇକେଲରେ ବସାଇ ଘରକୁ ଆଣିଲା । ଡାକ୍ତର ୭ଦିନ complete rest ଦେଲେ । ଶୋଇ ରହିବା ଛଡ଼ା ଅନ୍ୟ ଉପାୟ ନ ଥିଲା ।

ଅନ୍ୟ ଦିଗରେ ଆମର ପୋଖତ ଇନ୍‌ସପେକ୍ଟରମାନେ ଛପା ରସିଦ ନେଇ ଡିଫେନ୍ସ ଫଣ୍ଡ ପାଇଁ କହି ପ୍ରଚୁର ଚାନ୍ଦା ଅସୁଲ କଲେ । ତାର ଅଭିଯୋଗ ଗଲା ମେନେଜମେଂଟ୍‌ର ଭିଜିଲେନ୍ସ ଡିପାର୍ଟମେଂଟ୍‌କୁ । DGM ଡକାଇ ତଦନ୍ତ କଲେ । ଚାନ୍ଦା ଟଙ୍କା ସବୁ କୁଆଡ଼େ

ଗଲା କେଜାଣି । DGM କହିଲେ ନାଟକ ବନ୍ଦ କର । ଦୁର୍ନୀତିର ତଦନ୍ତ କର । ତାହା ହିଁ ହେଲା । କିନ୍ତୁ ସେମାନେ କେମିତି କହି ଥାଆନ୍ତେ ଯେ ଦୁର୍ନୀତି ପାଇଁ ନାଟକ ବନ୍ଦ ହେଲା । ମୋ ମୁଣ୍ଡରେ ନଡ଼ିଆ ପିଟି ଖସି ଯିବାକୁ ସୁବିଧା ହେଲା । ଯାହା ମୁଁ ପରେ କହିବି ।

## ଚୌଧୁରୀ ଉମେଶ

ତାର ଅନେକ ଦିନ ପରେ ବୋଧେ ୧୯୬୮ ବେଳକୁ ଜଣେ ବିଶିଷ୍ଟ ନାଟ୍ୟକର୍ମୀ ଓ ସଂଗଠକ ଚୌଧୁରୀ ଉମେଶ ଚନ୍ଦ୍ର ଦାସ ଗଢ଼ିଲେ 'ଡ୍ରିମଲାଣ୍ଡ' । କେବଳ ନାଟକ ହିଁ ତାଙ୍କର ଉଦ୍ଦେଶ୍ୟ । ସେ ଚାହିଲେ ସେଇ 'କପଟପାଶା'କୁ ମଂଚସ୍ଥ କରିବାକୁ । ଉମେଶ ବାବୁ ଜଣେ କରିତ୍କର୍ମା ବ୍ୟକ୍ତି । ସେ କଟକରୁ ବାବିଙ୍କୁ (ସାମୁଏଲ ସାହୁ) ଡକେଇଥିଲେ ନିର୍ଦ୍ଦେଶନା ପାଇଁ । ଉମେଶ ବାବୁ ଥିଲେ ମୋର ପରମ ବନ୍ଧୁ ।

ଆମର ବନ୍ଧୁତା ରାଜଗାଙ୍ଗପୁର ସମୟରୁ । ଏପରି ନାଟକ ପ୍ରାଣ ମଣିଷଟିଏ କ୍ୱଚିତ୍ ମିଳିବେ । ସେ ତ ଯେତେବେଳେ ନାଟକ କରନ୍ତି ମୋତେ ଡାକନ୍ତି । କିଛି ନ ହେଲେ ସ୍ମାରକର କାମ ତ କରିବି । ଅଠର ନମ୍ବର ସେକ୍ଟରରେ ବୋଧେ ପ୍ରଫୁଲ୍ଲ ପଟ୍ଟନାୟକଙ୍କ ଘରେ ରିହାରସାଲ ଚାଲିଥାଏ । ସ୍ମାରକର କାମ ମୁଁ କରୁଥାଏ । ନାଟକକୁ ଆଉ ସାତଦିନ ଅଛି । ବାବି ଆସି ପହଂଚିଲେ । ସନ୍ଧ୍ୟାରେ ସେ ରିହାର୍ସାଲ୍ ଦେଖିଲେ ତା' ପରେ ହଠାତ୍ କହିଲେ ଇଏ ଇନ୍ସପେକ୍ଟର ରୋଲ ଯିଏ କରୁଛି ତାକୁ ବଦଳକର । ଉମେଶ ବାବୁ ଚିନ୍ତାରେ ପଡ଼ିଲେ । ମୁଁ ତ ଥିଲି ସ୍ମାରକ କାମରେ । ମୋତେ କହିଲେ ତୁମେ ପାରିବ କି ? ମୁଁ ଚମକି ପଡ଼ିଲି । କହିଲି ଆଉ ସାତଦିନ ଅଛି । ସେ କହିଲେ ସେଥିରେ କ'ଣ ଅଛି, ଡାଇଲଗ ତ ତୁମେ ଜାଣିଛ ଆଉ ଭୟ କ'ଣ ? ଉମେଶ ବାବୁ ବି ସଙ୍ଗେ ସଙ୍ଗେ ହଁ ଭରିଦେଲେ । ବାବି କହିଲେ ତୁମେ ଡାଇଲଗ୍ ଭୁଲିବ ବୋଲି ଭାବୁଛ କି ?

ଗୋଟିଏ ବିଶେଷ କଥା ହେଲା ବାବି ନିଜେ ଏଥିରେ ଅଭିନୟ କରୁଥିଲେ । ମୁଁ ଗୋଇନ୍ଦା ଇନ୍ସପେକ୍ଟର ବିରୁପାକ୍ଷ ମହାନ୍ତି ଭୂମିକାରେ ରହିଲେ ସେ ମୋର କାଉଣ୍ଟରପାର୍ଟ ମିଃ ରାୟ ଭାବରେ ରହିବେ । ମୋର ଭୟ ଥିଲା ମୁଁ ତାଙ୍କର ସମକକ୍ଷ କେବେବି ହେଇ ପାରିବି ନାହି । ମଂଚ ଉପରେ ବାରି ହେଇ ପଡ଼ିବି । ବେଶ ତିନି ଚାରିଟା ସିନ୍‌ରେ ତାଙ୍କ ସହିତ ମୋର ଅଭିନୟ ଥିଲା । ବାବିଙ୍କ ଭଳି ଜଣେ ଉଚ୍ଚସ୍ତରର ଅଭିନେତା ରାଉରକେଲା ମଂଚ ରେ ଅଭିନୟ କରିବା ଏଇ ପ୍ରଥମ । ସେ ମୋତେ କହିଲେ ତୁମେ ବ୍ୟସ୍ତ ହୁଅନା, ଅସ ମୋ ସହିତ ଠିଆ ହୁଅ । ମୁଁ ରାଜି ହେଇଗଲି, ରିହାରସାଲ ଚାଲିଲା । ନାରୀ ଭୂମିକା ପାଇଁ ଉମେଶ ବାବୁ ଜଣକୁ ଆଣିଥିଲେ କଟକରୁ । ଚାରିଆଡ଼େ ପ୍ରଚାର ହେଲା ବାବି

ନିଜେ ଅଭିନୟ କରିବେ । ଅଠର ନମ୍ବର ସେକ୍ଟର କମ୍ୟୁନିଟି ସେଣ୍ଟରରେ ନାଟକ ମଂଚସ୍ଥ ହେଲା । ଷ୍ଟେଜ୍ ବନ୍ଧା ଠାରୁ ଗେଷ୍ଟ ଆଟିଷ୍ଟ ଠିକ୍ କରିବା ସେମାନଙ୍କର ରହିବା, ଖାଇବା, ତାଙ୍କ ପାଉଣା ଇତ୍ୟାଦି ସବୁ କାମ ଉମେଶ ବାବୁଙ୍କର । ସେ ଯେ କେତେ ହନ୍ତସନ୍ତ ହେଉଛନ୍ତି ସେ କଥା ମୁଁ କିଛି ଜାଣେ ।

ନାଟକ ଦିନ ସନ୍ଧ୍ୟାବେଳକୁ ହଲ ଭରପୂର ହୋଇଗଲା । ଚିଫ୍ ଗେଷ୍ଟ୍ ଥିଲେ ଚିଫ୍ ସିକ୍ୟୁରିଟି ଅଫିସର ଗୋବିନ୍ଦ ଚନ୍ଦ୍ର ସେନାପତି । ବହୁ ଅଫିସରଙ୍କ ସହିତ ସେ ଆଗଧାଡ଼ିରେ ବସିଲେ । ଅଭିନୟ ଚାଲିଥିବାବେଳେ ବାବି ତାଙ୍କର ନିଜର ଡାଇଲଗ କହିସାରିଲା ପରେ ମୋ ଡାଇଲଗ ମଧ୍ୟ ଏମିତି ଭାବରେ ଉଚ୍ଚାରଣ କରନ୍ତି ଯେ ମୁଁ ଚଟାପଟ୍ ଧରିନିଏ ଅଥଚ ଦର୍ଶକ ମୋତେ ଜାଣି ପାରେ ନାହିଁ । ଏହି ଡାଇଲଗ୍ କହିବା ବେଳେ ସେ ନିଜ ନିଶ ମୋଡ଼ିବା ବାହାନାରେ ଓଠକୁ ହାତ ଦ୍ୱାରା ଏପରି ଲୁଚାଉଥିଲେ ଯେ ତାହା ଦର୍ଶକମାନେ ଆଦୌ ଜାଣିପାରୁ ନଥିଲେ ।

ନାଟକ ଶେଷ ହେଲା । ସେନାପତି ସାହେବ ଉଠି ଆସିଲେ ମଂଚ ଉପରକୁ । ତାଙ୍କ ସହିତ ଉମେଶ ବାବୁ । ସେ ପ୍ରଥମେ ବାବି ସହିତ ପରିଚୟ କରେଇଲା ପରେ ମୋତେ ଦେଖେଇ ସେନାପତି ସାହେବଙ୍କୁ କହିଲେ ୟାଙ୍କୁ ଚିହ୍ନନ୍ତୁ । ସେ ଭାବବିହ୍ୱଳ ହୋଇ କହିଲେ ଆରେ ଇଏତ ଭୂପେନ୍ । ବାବି ମୋ ପାଖରେ । ତା ପରେ ସେନାପତି ସାହେବ କହିଲେ ଆପଣ ଦୁଇ ଜଣଙ୍କର କମ୍ବିନେସନ ଚମତ୍କାର ଥିଲା । ବେଶ୍ ପ୍ରଶଂସା କଲେ ନାଟକକୁ ।

ମୋ ଜୀବନର ଏଇଟାକୁ ଗୋଟାଏ ଚରମ ସଫଳତା ବୋଲି ମୁଁ ମନେକରେ । କିନ୍ତୁ ସେ ସଫଳତାର ସମସ୍ତ ପ୍ରାପ୍ୟ ଯେ ମହାନ ଅଭିନେତା ବାବିଙ୍କର ଏ କଥା ମୁଁ ବରାବର ସ୍ୱୀକାର କରିଛି । ସମଗ୍ର ନାଟକ ଭିତରେ ମୋର ସମସ୍ତ ସଂଳାପକୁ ସେ ତାଙ୍କର ନିଶ ସାଉଁଳୁ ଥିବା ଭିତରେ ହିଁ କହି ଦିଅନ୍ତି ଏବଂ ମୁଁ ତାଙ୍କ ଆଡ଼େ ମୋଟେ ନ ଚାହିଁ ତୁରନ୍ତ ତାକୁ କହିଦିଏ । ଆମ ଦୁଇଜଣଙ୍କର ଏପରି ସହଯୋଗ ଥିଲା ଯେ ଦର୍ଶକମାନେ ଆମେ ଅଭିନୟରେ ପେଶାଦାର ବୋଲି ମନେ କରିଥିଲେ । ଯଦିଓ ମୋର ଭୂମିକାଟି ଥିଲା ଗୋଇନ୍ଦା ଇନିସ୍‌ପେକ୍ଟର, କିନ୍ତୁ କାହାଣୀରେ ଛଦ୍ମବେଶ ଧାରଣ କରିଥିବାରୁ ମୋତେ ବହୁତ ବେଶୀ ବୁଢ଼ା ହେବାକୁ ପଡ଼ିଥିଲା କେବଳ ଶେଷ ଦୃଶ୍ୟକୁ ଛାଡ଼ିଦେଲେ ।

ତାର ଦୁଇବର୍ଷ ପରେ ସେଇ ନାଟକକୁ ଆମେ CISF କ୍ଲବ ତରଫରୁ ସିଭିକ୍ ସେଂଟରରେ ମଂଚସ୍ଥ କଲୁ । ସେଥିରେ ମୋ ସହିତ ପ୍ରଦୋଷ ପଣ୍ଡା ଓ ବି. ମଲ୍ଲିକ ଅଭିନୟ କରିଥିଲେ । ମୁଁ ମୋ ପୂର୍ବ ଭୂମିକାରେ ଥିଲି । ଏଥର ମଧ୍ୟ ନାଟକଟି ଏପରି ଆଦୃତ ହେଲା ଯେ ତାହା ପୂର୍ଣ୍ଣ ପ୍ରେକ୍ଷାଳୟରେ ଦିନକ ଜାଗାରେ ଦୁଇଦିନ ଅଭିନୀତ

ହେଲା । ଏହା ମଧ୍ୟ ହୋଇଥିଲା ଶ୍ରୀ ସେନାପତିଙ୍କ ଉପଦେଶରେ । ତାର ଦୁଇ ତିନୋଟି ଫଟୋ ଏଯାଏଁ ମୋ ଆଲବମ୍‌ରେ ଅଛି ।

ମୁଁ ଯେ ନାଟକରେ ସଫଳତା ପାଇବି ଏହା ଥିଲା ମୋ ଚିନ୍ତାର ବାହାରେ । ଉମେଶ ବାବୁଙ୍କ ଉତ୍ସାହ ଓ ବାବିଙ୍କ ସାହାଯ୍ୟ ବିନା ଏତକ ମୋତେ ସମ୍ଭବ ହେଇ ପାରି ନ ଥାଆନ୍ତା । ଆଜି ଏଇ ଅବସରରେ ବନ୍ଧୁ ଉମେଶଙ୍କୁ ମୋର ଗଭୀର ଶ୍ରଦ୍ଧା ଓ ଅଭିନେତା ସାମୁଏଲ ସାହୁ(ବାବି)ଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା ଓ ସମ୍ମାନ ଜଣାଉଛି ।

ଏସବୁ ସତ୍ତ୍ୱେ ବେଳେବେଳେ ଇର୍ଷା ପରାୟଣ ବ୍ୟକ୍ତିମାନେ ଅନ୍ୟର ପ୍ରଶଂସାକୁ ସହ୍ୟ କରି ନ ପାରି ସତ୍ୟର ଅପଳାପକୁ ରଙ୍ଗଦେଇ କଥା ତିଆରି କରନ୍ତି । ସିକ୍ୟୁରିଟି ଡିପାର୍ଟମେଂଟର ଡ୍ରାମାର ପ୍ରସ୍ତୁତିବେଳେ ମୋର ଡାହାଣ ହାତ ବୁଢ଼ା ଆଙ୍ଗୁଳିର ଅପରେସନ ହେଇଥିଲା । ଡା. ଆଶୁରାୟ (ଜଣାଶୁଣା ସଲ୍ୟ ଚିକିତ୍ସକ) ମୋର ସଂପୂର୍ଣ୍ଣ ନଖଟିକୁ କାଟି ବାହାର କରି ଦେଇଥିଲେ । ତାର ପ୍ରମାଣ ଏବେ ମଧ୍ୟ ଅଛି । ଆଜି ୫୦ ବର୍ଷ ପରେ ମଧ୍ୟ ଯିଏ ଦେଖିବ ସେ ଅତି ସହଜରେ ଦୁଇଟି ବୁଢ଼ା ଆଙ୍ଗୁଳିର ନଖ ଭିତରେ ଥିବା ପାର୍ଥକ୍ୟକୁ ଦେଖି ପାରିବ । ହାତଟିକୁ ଅପରେସନ ପରେ ବ୍ୟାଣ୍ଡେଜ୍ ବେକ ସହିତ ବାନ୍ଧି ନ ଥିଲେ ତାହା ହୁଏତ ଅନେକ ଡେରିରେ ଭଲହେଇ ଥାଆନ୍ତା । ମୋର ଯନ୍ତ୍ରଣାର ମଧ୍ୟ ଉପସମ ହୋଇ ନ ଥାଆନ୍ତା । ଏହି ନିରାଟ ସତ କଥାଟିକୁ ନ ଜାଣି କିମ୍ବା ଜାଣିବାକୁ ଚେଷ୍ଟା ନକରି ରାଉରକେଲାର ଜଣେ ଯୁବଲେଖକ ସନତ୍ ରାୟ ଗୋଟାଏ ପ୍ରବନ୍ଧରେ (ରାଉରକେଲା ରିପୋର୍ଟରେ ପ୍ରକାଶିତ) ଲେଖିଲେ ଯେ ଭୂପେନ ବାବୁ ନାଟକରେ ଅଭିନୟ ନ କରିବା ଉଦ୍ଦେଶ୍ୟରେ ଅପରେସନ୍‌ର ବାହାନା କଲେ । ଫଳରେ ନାଟକଟି ବନ୍ଦ ହୋଇଗଲା ।

ଏହା ଲେଖା ଯାଇଥିଲା ଘଟଣାର ପ୍ରାୟ ୨୦ବର୍ଷ ପରେ ଏବଂ ମୁଁ ରାଉରକେଲାରୁ ବିଦାୟ ନେଇସାରି ଥିବାରୁ ଲେଖକଙ୍କୁ ସେ ସୁଯୋଗ ମିଳିଗଲା । ତା'ର ଅନେକ ଦିନ ପରେ ମୁଁ ଥରେ ରାଉରକେଲା ଆସି ରଜନୀ ବାବୁଙ୍କ ପ୍ରେସ୍‌ରେ ବସିଥିବା ବେଳେ ସେ ମୋତେ କାଗଜଟି ଦେଖେଇଲେ । ମୁଁ ତାକୁ ପଢ଼ି ଆଶ୍ଚର୍ଯ୍ୟ ହେଲି । ଏ ଭଦ୍ରଲୋକ କିଏ ମୁଁ ଜାଣି ନ ଥିଲି । ତା'ର କାରଣ ମୋର ରାଉରକେଲାରେ ଥିବା ସମୟ ଭିତରେ ତାଙ୍କ ନାମ ଶୁଣି ନଥିଲି । ରଜନୀ ବାବୁଙ୍କ ଠାରୁ ତାଙ୍କ ବିଷୟ ଜାଣିଲାପରେ ବଲାନୀରୁ ତାଙ୍କ ଠାକୁ ରେଜେଷ୍ଟ୍ରି ଡାକରେ ଚିଠିଟିଏ ଦେଲି । ସେଥିରେ ଲେଖିଥିଲି ଆପଣ ମିଥ୍ୟା କଥା ଲେଖି ଥିବାରୁ ମୋ ସମ୍ମାନରେ ଆଂଚ ଆସିଛି । ଆପଣ କ୍ଷମା ପ୍ରାର୍ଥନା ନ କଲେ ମୁଁ କୋର୍ଟର ଆଶ୍ରୟ ନେବି । ତାର କିଛିଦିନ ପରେ ମୁଁ ରାଉରକେଲା ଆସି ଗୋଟିଏ କବି ସମ୍ମିଳନୀରେ ହଠାତ୍ ତାଙ୍କୁ ଭେଟି ଯେତେବେଳେ ସେ କଥା ପଚାରିଲି ସେ ମୋତେ

ହରେକୃଷ୍ଣ ଦାସଙ୍କ ଠାରୁ ଶୁଣିଥିଲେ ବୋଲି କହିଲେ । ମୁଁ ହରେକୃଷ୍ଣ ବାବୁଙ୍କୁ ପଚାରିବାରୁ ସେ କହିଲେ ମୁଁ ତାଙ୍କୁ ଆପଣଙ୍କ ଅପରେସନ ଯୋଗୁଁ ବନ୍ଦହେଲା ବୋଲି କହିଥିଲି । କାରଣ ତାହା ଆମେ ଶୁଣିଥିଲୁ । ଛଳନା ବୋଲି କହି ନଥିଲି । ହରେକୃଷ୍ଣ ଦାସ ଜଣେ ସୁସାହିତ୍ୟିକ ଓ ରାଉରକେଲା କଲ୍‌ଚରାଲ ଏକାଡେମୀର ସଭ୍ୟ । ସେହି ହିସାବରେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ।

ଜଣେ ଗୋଟାଏ କଥା ଶୁଣି ତାର ସତ୍ୟତା ନ ଜାଣି ଅନ୍ୟ କେଉଁଠି ପ୍ରକାଶ କଲେ ତାହା ଅଜ୍ଞତା ବୋଲି ବୁଝାଯିବ । କିନ୍ତୁ ତାକୁ ଉଦ୍ଦେଶ୍ୟମୂଳକ ଭାବେ ପ୍ରକାଶ କଲେ ତାକୁ ମାନସିକ ବିକାର ବୋଲି କୁହାଯିବ । ଅବଶ୍ୟ ଏପରି ଲୋକ କିଛି ଥାଆନ୍ତି ଯେଉମାନେ ଅସୂୟା ପ୍ରକାଶ କରିବାରେ ଆନନ୍ଦ ପାଆନ୍ତି । ଏଇ ସବୁ ଲୋକଙ୍କ ବ୍ୟକ୍ତି ଚରିତ୍ର ମଧ୍ୟ ଦେଖିବାକୁ ହେବ । ପ୍ରଶଂସା ପଛରେ ଗୋଡ଼େଇଲେ ପ୍ରଶଂସା ମିଳେନାହିଁ । ପ୍ରଶଂସା ମନକୁ ମନ ଆସିବା କଥା ପଦ ପଦବୀ ଲୋଭ ଓ ପ୍ରଶଂସାର ଲୋଭ ମଣିଷକୁ ମଣିଷ କରେନି । କିଛି ଲୋକ ସବୁଠି ସବୁବେଳେ ଥାଆନ୍ତି ଯେଉଁମାନେ ଅନ୍ୟର ଭଲ ଦେଖି ପାରନ୍ତି ନାହିଁ ଓ ପରନିନ୍ଦା ତାଙ୍କର ପ୍ରଧାନକାମ ।

ଅଧ୍ୟାପକ ସନତ ରାୟ ରଜନୀ ବାବୁଙ୍କ ନାମରେ କୁତ୍ସାରଟନାମୂଳକ କବିତା ଲେଖିଥିଲେ ବୋଲି ବିଦ୍ୟାଧର ବାରିକ ମୋ ଦ୍ୱାରା ସଂପାଦିତ ରଜନୀକାନ୍ତ ଦାସ ଜୀବନ ଓ ଯୁଦ୍ଧ ବହିରେ ଲେଖିଛନ୍ତି । ଏହାକୁ ସେତେବେଳେ ସମସ୍ତେ ନିନ୍ଦା କରୁଥିଲେ ।

ଅଭିନୟରେ ମୋର ସେଦିନର୍ ସଫଳତା ପରେ ଆଉ ଆଗକୁ ବଢ଼ିବାର ନ ଥିଲା । ଅଭିନୟକୁ ପେଷା କରିବାର ସାହସ ମୋର ନ ଥିଲା । ଏବେ ତ ଅଭିନୟର ସଫଳତାରୁ ଜଣେ ଯାଇ ରାଜନୀତିର ଶୀର୍ଷରେ ପହଂଚିଯାଉଛି । ଅଭିନୟକୁ ଯଦି ବାସ୍ତବରେ ଛଳନାର ମାୟାଜାଲ ବୋଲି କୁହାଯାଏ ତେବେ ସେ ଅଭିନେତାମାନେ ରାଜନୀତିର ବାସ୍ତବ କ୍ଷେତ୍ରରେ ଜନତା ଆଗରେ ଭଲ ଅଭିନୟ କରିପାରିବେ । ସଫଳ ଅଭିନେତାମାନେ ତେଣୁ ଏବେ ରାଜନୀତିରେ । କିଏ କେମିତି ଅଭିନୟ କରୁଚି ତାକୁ ଜନତା ଦେଖୁଛି ।

ଏହାର ଚାରିବର୍ଷ ପରେ ୧୯୭୪ ରେ CISF ତରଫରୁ ବିଶ୍ୱଜିତ୍ ଦାସଙ୍କ 'ପ୍ରତୀପ ଗଡ଼ରେ ଦି ଦିନ' ଡ୍ରାମା ମଂଚସ୍ଥ ହୋଇଥିଲା । ଏହି ଡ୍ରାମା ପଶ୍ଚାତ୍‌ରେ ମଧ୍ୟ ଡି.ଆଇ.ଜି.ଗୋବିନ୍ଦ ଚନ୍ଦ୍ର ସେନାପତିଙ୍କ ପ୍ରେରଣା ଓ ଉତ୍ସାହ ରହିଥିଲା । ଏଥିରେ ମୁଁ ଦେଓ୍ୱାନ ଜନାର୍ଦ୍ଦନ ପଟ୍ଟଯୋଶୀ ଓ ପ୍ରଦୋଷ ପଣ୍ଡା ପଲିଟିକାଲ୍ ଏଜେଣ୍ଟ୍ ବା ମୁଖ୍ୟ ଭୂମିକାରେ ଅଭିନୟ କରିଥିଲେ । ଏଥିରେ ଷ୍ଟିଲ୍ ପ୍ଲାଂଟର ଫଟୋଗ୍ରାଫର ପ୍ରଫୁଲ୍ଲ ଜେନାଙ୍କ ସ୍ତ୍ରୀ ଓ ଝିଅ ଅଭିନୟ ମଧ୍ୟ କରିଥିଲେ । ଦେଓ୍ୱାନ ଭୂମିକାରେ ମୋର ଅଭିନୟକୁ ମଧ୍ୟ ଲୋକେ ପ୍ରଶଂସା କରିଥିଲେ । ଏହା ମଧ୍ୟ ସେହି ସିଭିକ୍ ସେଣ୍ଟରରେ ଦୁଇଦିନ ଧରି ମଂଚସ୍ଥ ହୋଇଥିଲା ।

ଏହା ପୂର୍ବରୁ ମଧ୍ୟ ୧୯୬୫ ରୁ ୧୯୬୭ ଏହି ଦୁଇ ବର୍ଷରେ ମୁଁ ଯେତେବେଳେ ପୁରୁଣାପାଣିରେ ଥିଲି, ସେଠାରେ ମୁଁ ଥରେ ଦି' ଥର ଡ୍ରାମା କରାଇଥିଲି ଓ ନିଜେ ଅଭିନୟ କରିଥିଲି । ସେଇଠି ମଧ୍ୟ ମୁଁ ଗୋଟିଏ ଏକାଙ୍କିକା ଲେଖି ମାଇନ୍ସ ସେଫ୍‌ଟି ଉଇକ୍‌ରେ ମଂଚସ୍ଥ କରାଇଥିଲି । ତାହା ଥିଲା ଖଣି ସଂପର୍କରେ । ଖଣିର ଜୀବନକୁ ନେଇ ଖଣି ଅଂଚଳରେ ନାଟକ କଲେ ତାହା ପ୍ରଶଂସା ପାଇବା ସ୍ୱାଭାବିକ । ଏଥିରେ ମୋତେ ବେଶୀ ସାହାଯ୍ୟ କରିଥିଲେ ପ୍ରଦୀପ ରଥ, ଲେଖକ ଦେବାଶୀଷ ବେନାର୍ଜୀ ଓ ରବୀନ୍ଦ୍ର ନାଥ ଦାସ । କିନ୍ତୁ ସେ ନାଟକଟି କୁଆଡ଼େ ଗଲା କେଜାଣି ।

# ମୋର ପ୍ରଥମ ଗପ

ଦଶମ ଶ୍ରେଣୀରେ ପଢୁଥିବା ବେଳେ ମୋର ପ୍ରଥମ ଗପ 'ବିଚାରାଳୟ' ସ୍କୁଲ ମେଗାଜିନରେ ପ୍ରକାଶ ପାଇଲା ପରେ ହଠାତ୍ ମୁଁ ଚର୍ଚ୍ଚା ଭିତରକୁ ଆସିଗଲି । ଚର୍ଚ୍ଚା ଥିଲା ଦୁଇ ପ୍ରକାର । ନିନ୍ଦା ଓ ପ୍ରଶଂସା । ତା'ର କାରଣ ଗପଟା ଥିଲା ଆମ ସେ ଅଂଚଳର ବିଧାୟକ, ଜନନେତା ଏବଂ ସର୍ବୋପରି ମୋର ପିଉସା ପ୍ରିୟନାଥ ଦାସ ଓ ବଡ଼ବାପାଙ୍କ ପ୍ରିୟ କରୁଣାକର ପାଣିଗ୍ରାହୀଙ୍କ ବିରୋଧରେ । ବିଧାୟକ ମହୋଦୟ ଲୋକଙ୍କଠାରୁ ଚାନ୍ଦା ନେଇ ତାଙ୍କ କାମ କରାଉଛନ୍ତି, ଯାହା ମୁଁ ବଡ଼ବାପା ଓ ପିଉସାଙ୍କଠାରୁ ଶୁଣିଥିଲି । ତାକୁଇ ଗପ ଆକାରରେ ଲେଖିଥିଲି । ସେଥିରେ ଥିଲା ବିଧାୟକ ମହୋଦୟଙ୍କର ଏହି ପାପ ପାଇଁ ସେ ମୃତ୍ୟୁ ପରେ ଯମାଳୟରେ ଦଣ୍ଡିତ ହେଲେ ।

ଗପଟି ପ୍ରକାଶ ପାଇଲା ପରେ ସମସ୍ତ ଜମାଳପୁର ତା'ର ଆଖ ପାଖ ଅଂଚଳରେ ଚଂର୍ଚ୍ଚା ଆରମ୍ଭ ହେଲା । ମୋ ପିଉସା ଅତ୍ୟନ୍ତ କ୍ଷୁବ୍ଧ । ବାପା, ବଡ଼ବାପା ମଧ୍ୟ । ସେମାନଙ୍କର ଭୟର କାରଣ ହେଲା କରୁଣାକର ବାବୁ ଯଦି ଜାଣିବେ ତାଙ୍କର ପ୍ରିୟ ବନ୍ଧୁମାନଙ୍କ ପୁଅଟି ବିଧାୟକଙ୍କ କେତୋଟି ସତ କଥାକୁ ନେଇ ଗପ ଲେଖିଛି ଏବଂ ତାକୁ ସମସ୍ତେ ପଢ଼ିଲେଣି, ସେ ନିଶ୍ଚୟ ବିରକ୍ତ ହେବେ ।

ପିଉସା ଥିଲେ ହାଇସ୍କୁଲ ମେନେଜିଂ କମିଟିର ସଭାପତି ଏବଂ ବଡ଼ବାପା ଥିଲେ ସଦସ୍ୟ । ତା'ଛଡ଼ା ଯୋଉ ମହଲରେ ଲେଖାଟି ପ୍ରଚାରିତ ହେଲା ସେମାନେ ସମସ୍ତେ ସ୍କୁଲର ପ୍ରତିଷ୍ଠାତା ବିଶ୍ୱନାଥ ପରିଡ଼ାଙ୍କ ବଂଶଧର । ସେମାନେ ମଧ୍ୟ ବିଧାୟକ ମହୋଦୟଙ୍କ ଏକାନ୍ତ ଅନୁଗତ । ବିଧାୟକଙ୍କୁ ବା କିଏ ଅବଜ୍ଞା କରି ପାରିବ ? ବିଧାୟକଙ୍କ ସାହାଯ୍ୟ ସେ ସ୍କୁଲ ପ୍ରତି ମଧ୍ୟ କମ ନୁହେଁ । ସେ ଅବସ୍ଥାରେ ସେ ସମସ୍ତଙ୍କୁ ମୋ ଲେଖାଟା ଅଡୁଆରେ ପକାଇଲା । ପିଉସା ଓ ବଡ଼ବାପା ଏକ ପ୍ରକାର ଖଡ୍ଗହସ୍ତ ।

ପିଉସା ସ୍କୁଲକୁ ଆସି ହେଡ୍ ମାଷ୍ଟରଙ୍କୁ କହିଲେ କିଏ ସେ ଟୋକା ଏମିତି ଗପ ଲେଖିଛି ? ଆପଣ ବି ତାକୁ ଛାପୁଛନ୍ତି ?

ବଡ଼ବାପା ମୋତେ କହିଲେ, 'ବେ, ତୁ ପାଠ ପଢ଼ିତେ ଯାଉଛୁ ନା ସେଠି ଛତରାମି କରୁଛୁ' ?

ପ୍ରଧାନ ଶିକ୍ଷକ ଥିଲେ ମୋର ପ୍ରଥମ ସମର୍ଥକ । ସେ କହିଲେ, ଏଥିରେ କିଛି ଭୁଲ ନାହିଁ । ଗପ ଲେଖିବାରେ ପିଲାଙ୍କୁ ଉତ୍ସାହିତ କରିବା କଥା । ସେଥିରେ ତ କାହାରି ନାମ ନାହିଁ । ତାଙ୍କଠାରୁ ଏକଥା ଶୁଣିଲା ପରେ ଅନ୍ୟ ଶିକ୍ଷକମାନେ ମଧ୍ୟ ମୋତେ ପରୋକ୍ଷରେ ସମର୍ଥନ କଲେ ।

ମୋର ଟିକିଏ ଦମ୍ଭ ପଶିଲା । ବୋଧେ ମାସେ ଦି ମାସ ଯାଏ ମୁଁ ପିଉସା ଓ ବଡ଼ ବାପାଙ୍କ ସାମନାକୁ ଯାଇ ନଥିଲି । କିନ୍ତୁ ଉତ୍ସାହ ବଢ଼ିଲା । ବେଶ ଦମ୍ଭର ସହିତ ଲେଖା ଚାଲିଲା, ଅବଶ୍ୟ ସବୁ ଲୁଚେଇ ଲୁଚେଇ । ମୁଁ କିନ୍ତୁ ସେତେବେଳକୁ 'ପ୍ରଜାତନ୍ତ୍ର'ର ମୀନା ମଣ୍ଡଳୀର ସଭ୍ୟ ହେଇ ସାରିଥାଏ । ପ୍ରଜାତନ୍ତ୍ର ଆମ ଘରକୁ ଆସୁଥାଏ । ସ୍କୁଲକୁ ମଧ୍ୟ । ସ୍କୁଲରେ ଆମେ ଗୋଟିଏ ମୀନା ମଣ୍ଡଳୀ ଗଢ଼ିଥାଉଁ । ସେଥିରେ ମୁଁ ପ୍ରଧାନ ମନ୍ତ୍ରୀ ଓ ରାମଚନ୍ଦ୍ର ଦେଓ ନବମ ଶ୍ରେଣୀର, ଉପପ୍ରଧାନ ମନ୍ତ୍ରୀ । ପ୍ରଜାତନ୍ତ୍ରରେ ଆମ ନାଁ ବାହାରିଲା ପରେ ଆମକୁ ଆଉ ଦେଖେ କିଏ । ରାମଚନ୍ଦ୍ର ଦେ ପରେ 'ଦେଓ' ହୋଇ ଭଲ ଶିଶୁସାହିତ୍ୟ ଲେଖିଲେ । ଭଲ ପତ୍ରିକାଟିଏ ମଧ୍ୟ ପ୍ରକାଶ କଲେ । ଆମ ଅଂଚଳର 'ଦେ' ମାନେ 'ଦେଓ' ହେବା କଥା ବୋଲି ପରେ ଜାଣିଲି ।

## ପ୍ରଥମ ରୋଜଗାରର ପନ୍ଥା

ମେଟ୍ରିକ ପାସ ବେଳକୁ ଆମର ପାରିବାରିକ ଅବସ୍ଥାର ବେଶ କିଛି ଅବନତି ଘଟିଥିଲା । ଭାଇଙ୍କ ଅସହଯୋଗ ବାପାଙ୍କୁ ଚିନ୍ତାରେ ପକାଇଥିଲା । ଲଗାତାର ଚାରି ପାଂଚ ବର୍ଷ ଭିତରେ, ଅର୍ଥାତ୍ ତାଙ୍କର ଅସ୍ଥାୟୀ ଆର.ଆଇ. ଚାକିରି ଗଲାଠାରୁ ସ୍ଥିତି ଦୁର୍ବଳରୁ ଦୁର୍ବଳତର ହେଉଥିଲେ ମଧ୍ୟ ତାଙ୍କ ମନୋବଳ ଭାଙ୍ଗି ନଥିଲା । ମୁଁ ଓ ମୋର ସାନ ଭଉଣୀର ପାଠପଢ଼ା ସହିତ ଚାରି ଜଣଙ୍କ ଖର୍ଚ୍ଚ କମ କଥା ନ ଥିଲା । ଭାଇ ସେତେବେଳକୁ ଭୁବନେଶ୍ୱରରେ ପିଲା ଛୁଆ ଧରି ରହୁଥିଲେ । କ୍ୱଚିତ ସେ ଘରକୁ ଚିଠିପତ୍ର ଓ ଆର୍ଥିକ ସାହାଯ୍ୟ ଦେଉଥିଲେ ।

ଏ ପର୍ଯ୍ୟନ୍ତ ଦୃଢ଼ ମନୋବଳ ନେଇ ମୋତେ ପଢ଼ାଉଥିବା ବାବା ମୋତେ ଆଉ କଲେଜରେ ପଢ଼ାଇବା ସ୍ଥିତିରେ ନଥିଲେ । ମୁଁ ଆଇ.ଏ. ପଢିଲେ ବାଲେଶ୍ୱରରେ ପଢ଼ିଥାନ୍ତି ଯେଉଁଥିପାଇଁ ମାସକୁ ପ୍ରାୟ ୪୫/୫୦ ଟଙ୍କା ଖର୍ଚ୍ଚ ହୋଇଥାନ୍ତା । ଭାଇ ମୋତେ ଏତେ

ଟଙ୍କା ଦେଇ ପଢାଇବାକୁ ଅକ୍ଷମତା ପ୍ରକାଶ କଲେ ଯେଉଁଥିପାଇଁ ମୁଁ ଖୁବ୍ ହତାଶ ହୋଇପଡ଼ିଲି । କିନ୍ତୁ ତାଙ୍କର ଚାରିବର୍ଷର କଲେଜ ପଢ଼ାରେ ବାବା ଗୁଡ଼ାଏ ଖର୍ଚ୍ଚ କରିଥିଲେ । କିଛି ଜମି ବିକ୍ରି ଓ ଧାର ଉଧାର ମଧ୍ୟ କରିଥିଲେ ଯେଉଁଥିପାଇଁ ମୋ ବେଳକୁ ଆଉ କିଛି ନଥିଲା ।

ଗୋଟାଏ ପଟେ କଲେଜ ଶିକ୍ଷାରୁ ବଞ୍ଚିତ ଓ ଅନ୍ୟପଟେ ଘରର ଆର୍ଥିକ ଦୁର୍ଦ୍ଦଶା ମୋତେ ଏକପ୍ରକାର ଭାଙ୍ଗି ଦେଇଥିବା ବେଳେ ସାହାଯ୍ୟର ହାତ ବଢ଼ାଇଲେ ଜମାଲପୁରର ବିଶିଷ୍ଟ ବ୍ୟକ୍ତି ନବ କୁମାର ପରିଡ଼ା । ସ୍ୱାଧୀନତା ପୂର୍ବର ସେ ଅଂଚଳର ବିଶିଷ୍ଟ ଜମିଦାର ବିଶ୍ୱନାଥ ପରିଡ଼ାଙ୍କ ନାତି । ତାଙ୍କର ଦୁଇଟି ଝିଆରୀ ସପ୍ତମ ଓ ଚତୁର୍ଥରେ ପଢୁଥିଲେ । ଅନ୍ୟ ଜଣେ ବଦାନ୍ୟ ବ୍ୟକ୍ତି ଗିରିଜା ଶଙ୍କର ଦାସ, ତାଙ୍କର ଦୁଇ ପୁଅ ଚତୁର୍ଥ ଓ ତୃତୀୟରେ ପଢୁଥିଲେ । ଏମାନଙ୍କୁ ଟିଉସନ୍ କରି ମୁଁ ଯାହା କିଛି ପାଉଥିଲି ତାକୁ ଘରକୁ ଦେଇ ଦଉଥିଲି । ପରବର୍ତ୍ତୀ ଅବସ୍ଥାରେ ଆସିଲେ ହେଡ଼ମାଷ୍ଟରଙ୍କ ଦୁଇ ଝିଅ, ଲଛି ଓ ମୀନୁ । ଏଇଟା ଅବଶ୍ୟ ନିୟମିତ ନୁହେଁ । ସପ୍ତାହକୁ ଥରେ ଦି ଥର । ଅଙ୍କ ଛଡ଼ା ଅନ୍ୟ ବିଷୟରେ ପଢ଼ାଇବାକୁ ମୋର ଅସୁବିଧା ନଥିଲା । ବିଶେଷ କରି ଇଂରାଜୀ ପଢ଼େଇବାକୁ ମୋତେ ସମସ୍ତେ ଡାକୁଥିଲେ । ହେଡ଼ମାଷ୍ଟରଙ୍କଠାରୁ ମୁଁ ଆର୍ଥିକ ସାହାଯ୍ୟ ନେଇ ନାହିଁ ସତ କିନ୍ତୁ ତାଙ୍କ ଋଣ କଅଣ ଶୁଝା ଯାଇ ପାରିଚି କି ? ସେଥିରେ ମୋର ଥିଲା ଅପାର ଆନନ୍ଦ, କାରଣ ଛାତ୍ର ଅବସ୍ଥାରୁ ସେ ମୋତେ ଅତ୍ୟନ୍ତ ଭଲ ପାଉଥିଲେ । ନବ କୁମାର ପରିଡ଼ା ଓ ହେଡ଼ମାଷ୍ଟରଙ୍କ ସହିତ ମୋର ଗୋଟାଏ ପାରିବାରିକ ସମ୍ପର୍କ ଗଢ଼ି ଉଠିଥିଲା । ଭଲ ପାଇବା ଭିତରେ ହିଁ ମଣିଷ ବାନ୍ଧି ହେଇ ଯାଏ । ମୁଁ ତ ମୋ ବାପା ମା ଅପେକ୍ଷା ବେଳେ ବେଳେ ଏମାନଙ୍କୁ ଅଧିକ ପାଖାପାଖି ବୋଲି ଭାବୁଥିଲି । ଅଧିକାଂଶ ଦିନ ଏମାନଙ୍କ ଘରେ ମୋର ଖିଆପିଆ ହେଉଥିଲା ଏବଂ ଘର ବାହାରେ ମୁଁ ଏଇ ଝିଅମାଙ୍କର ଏକ ପ୍ରକାର ଗାର୍ଡିଆନ । ପରବର୍ତ୍ତୀ ଅବସ୍ଥାରେ ନବ ବାବୁଙ୍କ ଝିଆରୀ ମେଟ୍ରିକ ପାସ କରି ବାହା ହେଲା ଏବଂ ଲଛି ବା ଲକ୍ଷ୍ମୀ ବେନାର୍ଜୀ ବାଲେଶ୍ୱର କୁନ୍ତଳା କୁମାରୀ କଲେଜରୁ ବିଏ ପାଶ କରି ତା' ବାପାଙ୍କ ସହିତ ଖଡ଼ଗପୁର ଚାଲିଗଲା । ପ୍ରଫୁଲ୍ଲ ବେନାର୍ଜୀ ଜମାଲପୁର ଛାଡ଼ି ଖଡ଼ଗପୁର ଉତ୍କଳ ବିଦ୍ୟାପୀଠ ହାଇସ୍କୁଲକୁ ଗଲେ ଓ ସେଠୁ ଅବସର ନେଲେ ।

ଏ ସମସ୍ତଙ୍କ ସହିତ ସମ୍ପର୍କ ସେତେବେଳେ ଥିଲା ଏବଂ ଏବେ ମଧ୍ୟ ଅଛି କେବଳ ଫୋନରେ । ବହୁ ଉତ୍‌ଥାନ ପତନ ଭିତରେ ସେମାନେ ଯେମିତି ଯାଇଛନ୍ତି, ମୁଁ ବି ଯାଇଚି । କ୍ଷୀଣ ସୂତା ଖିଅର ସମ୍ପର୍କ ଏବେ ମଧ୍ୟ ଆମକୁ ବାନ୍ଧି ରଖିଚି । ଏଇତ ଦୁଇ ବର୍ଷ ତଳେ ମୁଁ ଯେତେବେଳେ ହଠାତ୍ ଦିନେ ଯାଇ ଖଡ଼ଗପୁରରେ ଲକ୍ଷ୍ମୀ ଘରେ ପହଂଚିଲି ଗୋଟାଏ ଆତ୍ମିକ ସମ୍ବର୍ଦ୍ଧନାରେ ଅଭିଭୂତ ହେଇ ପଡ଼ିଲି । ତା'ର ସ୍ୱାମୀ, ପିଲା ପରିବାର ସହିତ ଦୀର୍ଘ ଚାରିଘଂଟା କେମିତି କଟିଲା ଜାଣି ପାରିଲିନି ।

# ପ୍ରଥମ ସରକାରୀ ଚାକିରି

ଏବେ ଲକ୍ଷ୍ମୀ ବେନାର୍ଜୀ ଖାଂଟି ବଙ୍ଗାଳୀ ଝିଅ । ଓଡ଼ିଆ ମୋତେ କହି ପାରୁନି ଯଦିଚ ଭଲ ବୁଝି ପାରୁଚି । ନବ ବାବୁଙ୍କ ଝିଆରୀ ମଧ୍ୟ ଏବେ ସ୍ଥାୟୀ ବସବାସ କରୁଚି କଲିକତାରେ । ତା'ର ସ୍ୱାମୀ ଥିଲେ ବଙ୍ଗାଳୀ । ହାୟ, ତା'ର ସ୍ୱାମୀ ଅଚାନକ ଚାଲିଗଲେ । ପିଲାମାନେ ପ୍ରତିଷ୍ଠିତ ।

ମେଟ୍ରିକ ପାଶ ପରେ ଦିନେ ହଠାତ୍ ନବ ବାବୁ ମୋତେ କହିଲେ ତୁମେ ଆମ ସଂସ୍କୃତ ଟୋଲରେ ଶିକ୍ଷକତା କରିବ? ସରକାରୀ ଚାକିରି, ମାସକୁ ଦରମା ଚାଳିଶ ଟଙ୍କା । ମୁଁ ଥମ ହେଇ ଗଲି । ମନ୍ଦ ନୁହେଁ ତ । ସେଠି ଯେ ଗୋଟିଏ ସଂସ୍କୃତ ଟୋଲ ଅଛି ସେ କଥା ମୁଁ ଜାଣି ନଥିଲି । ଫୁଟବଲ ପଡ଼ିଆକୁ ଲାଗିଚି ଗୋଟାଏ ପରିତ୍ୟକ୍ତ ପକ୍କାକୋଠା । ମାତ୍ର ଗୋଟାଏ କୋଠରି । ପାଖରେ ଉଠା ପାଇଖାନାଟିଏ । ସେଇଟା ଯେ ଗୋଟାଏ ମଞ୍ଜୁରୀ ପ୍ରାପ୍ତ ସଂସ୍କୃତ ଟୋଲ ସେ କଥା ଜାଣି ନଥିଲି । କାରଣ ତାକୁ କେବେ ଖୋଲା ହେବାର ମୁଁ ଦେଖିନି । କେହି ପାଠ ପଢ଼ିବା ଦୂରର କଥା, ତା'ର ନାଁ କାହିଁକି 'ଟୋଲ'ହେଇଚି ସେ କଥା ମଧ୍ୟ ଜାଣେ ନି । ଆଶ୍ଚର୍ଯ୍ୟ ହେଲି ଯେତେବେଳେ ଶୁଣିଲି ସେଥିରେ ଜଣେ ହେଡ଼ପଣ୍ଡିତ ମଧ୍ୟ ଅଛନ୍ତି

ନବ ବାବୁଙ୍କର ଖଣ୍ଡିଏ ଚିଠିରେ ମୋ ଚାକିରି ହେଇଗଲା । ଜୀବନର ପ୍ରଥମ ଚାକିରି । କିଛି କାମ ନକରି ମଧ୍ୟ ଦରମା ଅଛି । ହେଡ଼ପଣ୍ଡିତ ମୋତେ କହିଲେ ତୁମର ସାଙ୍ଗ ସାଥୀ ଏଠି ଅନେକ ଅଛନ୍ତି । ସେମାନଙ୍କୁ ଡାକି ଆଣ । ଏଠି ନାମ ଲେଖାଇ ଦେବା । ତାପରେ ପରୀକ୍ଷା ପାଇଁ ଫର୍ମ ପୂରଣ କରାଇ ଦେବା ।

କି ପରୀକ୍ଷା ?

ମଧ୍ୟମା । ସଂସ୍କୃତରେ ମଧ୍ୟମା । ତୁମେ ମଧ୍ୟ ଦେଇପାରିବ । ଗୋଟିଏ ସାର୍ଟିଫିକେଟ ମିଳିବ । ସେ କହିଲେ ।

ପରୀକ୍ଷା କେବେ ?

ଆଉ ମାସକ ପରେ ।

ସଂସ୍କୃତ ପାଠ । ଆଉ ସମୟ କାହିଁ ? ମୁଁ କହିଲି ।

ସେ କଥା ମୁଁ ବୁଝିବିନି ? ଆଣ କେତେ ଜଣଙ୍କୁ ।

ମୁଁ ଓ ମୋର ଫୁଟବଲର ଅନ୍ୟତମ ପ୍ରିୟ ବନ୍ଧୁ ପୀତାମ୍ବର ନନ୍ଦଙ୍କୁ ନେଇ ଆମେ ଗଲୁଁ ବାଲେଶ୍ୱରକୁ ପରୀକ୍ଷା ଦେବାକୁ । ଦି ଜଣ ପାଖାପାଖି ବସିଲୁ । ସେ ମୋତେ ଡାକିଲା, ମୁଁ ତାକୁ ଡାକିଲି । ଅସୁବିଧା ଜାଗାରେ ସାରମାନେ ଡାକିଲେ ।

ମାସକ ପରେ ରେଜଲ୍ଟ ଆସିଲା, ଆମର ହାୟର ସେକେଣ୍ଡ ଡିଭିଜନ । ସାର୍ଟିଫିକେଟଟା ଅନେକ ଦିନ ଥିଲା । କୁଆଡ଼େ ଗଲା କେଜାଣି ।

ବିନା ଛାତ୍ରରେ ମୋର ଶିକ୍ଷକତା ବେଶ ଚାଲିଲା କିଛି ଦିନ । ସରକାରୀ ଦରମା । ୩/୪ ମାସରେ ଥରେ ଯାଇ ବାଲେଶ୍ୱର ଟ୍ରେଜେରୀରୁ ଦରମା ଆଣିବାକୁ ହୁଏ । ସେଠି ଆଜି କାଲିକା ପରି କିଛି ହରକତ ନାହିଁ । ବିଲ ଦେଲେ ଘଂଟାକ ଭିତରେ ଟଙ୍କା ମିଳି ଯାଏ । ଆଜି କାଲି କୁଆଡ଼େ'ହାତଗୁଞ୍ଜା'ଏକ ଅଲିଖିତ ସାମ୍ବିଧାନିକ ଅଧିକାର ଟ୍ରେଜେରୀ କିରାଣିମାନଙ୍କର ।

ଦିନେ ହଠାତ୍ ହେଡ଼ମାଷ୍ଟର କହିଲେ, ତୋର ତ ଟୋଲରେ କିଛି କାମ ନାହିଁ । ଏଠି ଗୋଟାଏ ଦି'ଟା କ୍ଲାସ ନଉନୁ? ସପ୍ତମ ଶ୍ରେଣୀ, ଅଷ୍ଟମ ପର୍ଯ୍ୟନ୍ତ ତୁ କିଛି କ୍ଲାସ ନେଇପାରିବୁ ।

ମୁଁ ଖୁସି ହେଲି । କିଛି କାମ ନଥିଲେ ଏଇଟା ମନ୍ଦ ନୁହେଁ । ଫୁଟବଲ ପଡ଼ିଆ ତ ମୋର ଅଧିକାର ଗତ ସ୍ଥାନ । ଟିଉସନ ବି ତ ଅଛି । ତା ଛଡ଼ା ସ୍କୁଲରେ ୧୦ରୁ ୪ ପର୍ଯ୍ୟନ୍ତ ରହିବାକୁ ହେଲା । ବେଶ କିଛି ଦିନ ଏମିତି ଚାଲିଲା । ବାପା ମାଆ ବି ଖୁସି ।

କେମିତି କେଜାଣି ଡେଇଁ ପଡ଼ିଲି 'ସୀମା ଆନ୍ଦୋଳନ'କୁ । ଗିରିଧାରୀ ପରିଡ଼ା, ଅକ୍ଷୟ ମହାନ୍ତି ଓ ମୁଁ । ଜମାଲପୁର, ଅଲାଲପୁରଠାରୁ ବାଲିଆପାଳ ଯାଏ ବିଭିନ୍ନ ସ୍କୁଲକୁ ଯାଇ ଧର୍ମଘଟ ପାଇଁ ଆହ୍ୱାନ ଦେଲୁଁ । ବେଶ ମଜା ଲାଗୁଥାଏ । ଜଲେଶ୍ୱରରେ ଷ୍ଟେସନ ପାଖ ପୋଲ(ଏବେ ଯେଉଁଠି ଟାଉନ ହଲ ଅଛି) ପାଖରେ ଗୋଟିଏ ସଭା ହେଲା । ସେତେବେଳକୁ ପ୍ରସନ୍ନ ପାଳ ପ୍ରଜା ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଇ ଥାଆନ୍ତି । ଜମାଲପୁର ହାଇସ୍କୁଲରେ ସେ ମୋର ଶିକ୍ଷକ ଥିଲେ । ତାଙ୍କ ନେତୃତ୍ୱରେ ସଭା ହେଲା । ପ୍ରାୟ ୪୦/୫୦ ଜଣ । ମୁଁ ସଭାପତି । ଅକ୍ଷୟ ମହାନ୍ତି ଓ ପ୍ରସନ୍ନ ପାଳ ଦେଲେ ଭାଷଣ । ସେତେବେଳେ ଲାଉଡ ସ୍ପିକର ଥିଲା ଟିଣର ଚୁଙ୍ଗା ଭଳିଆ । ଗୋଟିଏ ହାତରେ ଧରି କହିବାକୁ ହୁଏ । ସଭାପତିଙ୍କ ଭାଷଣ ବେଳକୁ ଗୋଡ଼ ଥରିଲା । ସାର ଯେତେବେଳେ କହିଲେ, 'ଭୂପେନ କୁହ' କିନ୍ତୁ ଭୂପେନର ପାଟି ଫିଟୁନି ।

ଗୋଆ ଆନ୍ଦୋଳନ ବେଳେ ମଧ୍ୟ ମନ ହୁଂକୁ ହୁଂକୁ ହେଲା । ପି.ଏସ.ପି. ତରଫରୁ କୁହାଗଲା ସବୁ ସୁବିଧା କରି ଦିଆଯିବ । ମୁଁ ଯିବାକୁ ସମ୍ମତି ଦେଲି । ମୋ ନାଁ ଖବର କାଗଜରେ ବାହାରିଲା । ଗୋଆ ଆନ୍ଦୋଳନର ସତ୍ୟାଗ୍ରହୀମାନଙ୍କୁ ଜଲେଶ୍ୱର ଓ ବାଲେଶ୍ୱର ଷ୍ଟେସନରେ ସଂବର୍ଦ୍ଧନା ଦିଆଯିବ ଫୁଲମାଳ ପକେଇ । ମନ କୁରୁଳି ଉଠିଲା । ଫଟୋ ବି ଖବର କାଗଜରେ ପ୍ରକାଶ ପାଇବ । ସବୁ ପ୍ରସ୍ତୁତ । ମୁଁ ୪ଟା ବେଳେ ଘରୁ ବାହାରିବା କଥା । କିନ୍ତୁ ଏ କଅଣ? ମାଆ ମୋର ସବୁ ଜିନିଷ ନେଇ ଗୋଟିଏ ବାକ୍ସ ଭିତରେ ରଖି ତାଲା ପକେଇ ଦେଇ ଅନ୍ୟ କାହା ଘରେ ଯାଇ ଲୁଚିଲା । ସନ୍ଧ୍ୟା ୬ଟା ପର୍ଯ୍ୟନ୍ତ ତାକୁ ପାଇଲିନି ।

ସେଥିରେ ଯାଇଥିଲେ ପରେ ନେତାଟିଏ ହେଇ ପାରିଥାଆନ୍ତି ବୋଧେ । ବିପ୍ଳବୀ କବି ରବି ସିଂଙ୍କ ସାଥି ହେଇ ପାରି ଥାଆନ୍ତି ।

ଆଉ ଗୋଟାଏ କାମ । ତାକୁ ସଫଳତା କହିବା ନା ବିଫଳତା ? 'ପୁରାତନ ଛାତ୍ର ସଂଘ' ଗଠନ କଲୁଁ । ଏଥିରେ ଗିରିଧାରୀ ଆଗରେ । ଗାଁ ଗାଁ ବୁଲି ଚାନ୍ଦା ସଂଗ୍ରହ କଲୁ । ପୁରାତନ ଛାତ୍ର, ସେମାନେ କିଛି ଅଫିସର ଥିଲେ । ସମସ୍ତଙ୍କୁ ଡକା ହେଲା । ସେମାନେ ମଧ୍ୟ ପ୍ରତିଶ୍ରୁତି ଦେଲେ । କିନ୍ତୁ ମିଟିଂ ଦିନ ପ୍ରସନ୍ନ ପାଳଙ୍କ ଛଡ଼ା ଆଉ କେହି ଆସିଲେନି ।

ହେଡ଼ମାଷ୍ଟର କହିଲେ ଏଥିପାଇଁ ଟିକେ ଅଭିଜ୍ଞତା ଦରକାର । ଆମ୍ଭେ କାନ ମୁଣ୍ଡ ଆଉଁସି ରହିଲୁଁ । ତାପରେ ଆଉ ସେଠି ପୁରାତନ ଛାତ୍ର ସଂଘ କଥା କେହି ଉଠାଇ ନାହାନ୍ତି ।

ତେବେ ସେ ଯା ହେଉ ସୀମା ଆନ୍ଦୋଳନ ଥିଲା ମୋ ଜୀବନର ଗୋଟାଏ ମାଇଲଖୁଂଟ । ଆନ୍ଦୋଳନର ଦୁଇଦିନ ପରେ ହେଡ଼ମାଷ୍ଟର କହିଲେ, ଆମର ନୂଆ ଶିକ୍ଷକ ଆସି ଗଲେଣି । ତୋର ଆଉ କ୍ଲାସ ନେବାର ଆବଶ୍ୟକତା ନାହିଁ । କିଛିଦିନ ପରେ ନବ ବାବୁ ମଧ୍ୟ କହିଲେ, 'ଟୋଲ ପାଇଁ ସରକାର ନୂଆ ନିଯୁକ୍ତି ଦେଇଛନ୍ତି' ।

ପରେ କିନ୍ତୁ ଜଣା ପଡ଼ିଲା ସୀମା ଆନ୍ଦୋଳନକୁ ବିଶେଷ କରି ପ୍ରଜା ସମାଜବାଦୀ ନେତା ପ୍ରସନ୍ନ ପାଳଙ୍କ ନେତୃତ୍ୱରେ ଆନ୍ଦୋଳନକୁ ଓହ୍ଲାଇବା ଥିଲା ସରକାର ବିରୋଧି କଥା । ସେତେବେଳେ କଂଗ୍ରେସର ପ୍ରଭାବ ଥିଲା ଯଥେଷ୍ଟ ବେଶୀ । ତେଣୁ ମୁଁ ଓ ଅକ୍ଷୟ ମହାନ୍ତି ପ୍ରଭୃତି କଂଗ୍ରେସ ବିରୋଧୀ ଓ ପି.ଏସ୍.ପି.ର ଲୋକ ହିସାବରେ ଚିହ୍ନା ହେଇଗଲୁ । ରାଜନୀତିର ଛିଟିକା ମୋ ଦେହରେ ପଡ଼ିଗଲା । ଦେହର ଧୂଳି ଝାଡ଼ିହେବ, ଅପବାଦର ଧୂଳି ଝାଡ଼ି ହେବନି ।

ଏମିତି ଏକ ସମୟରେ ପି.ଏସ୍.ପି. ତରଫରୁ ସେଥର ସରପଂଚ ପଦ ପାଇଁ ମୋତେ ପ୍ରାର୍ଥୀ କରାଗଲା । ଧୂଳି ତ ଲାଗି ସାରିଚି, ଚିନ୍ତା କାହିଁକି ? ମୋର ବଡ଼ବାପା କିନ୍ତୁ କଂଗ୍ରେସର ପୁରୁଣା ସଦସ୍ୟ । ପି.ଏସ୍.ପି. ଦଳଙ୍କ ସହିତ ମୁଁ ଯେତେବେଳେ ଯାଇ ନାମାଙ୍କନ ପତ୍ର ଦାଖଲ ପାଇଁ ଜଳେଶ୍ୱର ଡାକ ବଙ୍ଗଳାରେ ପହଂଚିଲି, ଦେଖିଲି ବଡ଼ବା କଂଗେସର ପ୍ରାର୍ଥୀ ଭାବରେ ସେଠି ଉପସ୍ଥିତ । ମୁଁ ଆଉ ନୋମିନେସନ ଦାଖଲ ନକରି ଫେରି ଆସିଲି । ବଡ଼ବାଙ୍କ ବିରୁଦ୍ଧରେ ଛିଡ଼ା ହେବାକୁ ମୋର ଇଛା ନଥିଲା । ମହାଭାରତରେ ଯୁଦ୍ଧ କ୍ଷେତ୍ରକୁ ଯାଇ ଅର୍ଜୁନଙ୍କ ଅବସ୍ଥା ଭଳି । ରାଜନୀତି କଅଣ ଆମ ପାରିବାରିକ ସମ୍ପର୍କକୁ ନଷ୍ଟ କରି ଦେବକି ? ରାତି ପାହିଲେ ମୁଁ କେମିତି ସେ ମୁହଁକୁ ଅନାଇ ପାରିଥାଆନ୍ତି ? ଗୋଟିଏ ଘର ଗୋଟିଏ ବାରନ୍ଦା, ସବୁଠି ପାଚେରୀ ଅଛି କିନ୍ତୁ କୋଉଠି ନାହିଁ ।

କିନ୍ତୁ ଏବେ ଆଉ ସେଦିନ ନାହିଁ । ରାଜନୀତି କରିବାରେ ସ୍ୱାମୀ ସ୍ତ୍ରୀ, ବାପ ପୁଅ, ଭାଇ ଭାଇ ସମ୍ପର୍କକୁ ମଧ୍ୟ ଅଲଗା କରି ସାରିଲାଣି । ସମସ୍ତେ ସମସ୍ତଙ୍କର ଶତ୍ରୁ । ବନ୍ଧୁତା କେବଳ ଶକୁନିର ଦୁର୍ଭେଦ୍ୟ କପଟାଚାର ଭିତରେ । ଏହାହିଁ ଭାରତୀୟ ରାଜନୀତିର ସ୍ୱରୂପ ।

ସବୁଆଡୁ ପରାଜୟର ଗ୍ଲାନି ମୋତେ ବ୍ୟସ୍ତ ବିବ୍ରତ କରୁଥିଲା ବେଳେ ଆମ ଗାଁ'ର (ବାଗ ଗାଁ) ବନମାଳି ଭୂୟାଁ ଦିନେ ଆସି ସାହାଯ୍ୟର ହାତଟିଏ ବଢ଼ାଇଲେ । ବନମାଳି ଥିଲେ ମୋର ତିନି ବର୍ଷର ସିନିଅର । ବାରିପଦାରେ ପୋଲିସ ଅଫିସରେ ଏଇ ବର୍ଷକ ତଳେ କିରାଣୀ ଚାକିରୀ ପାଇଛନ୍ତି । ମୋତେ କହିଲେ ବାରିପଦାରେ ପୋଲିସ ଟିମରେ ଫୁଟବଲ ଖେଳାଳି ଦରକାର । କିଛି ଦରମା ତ ଦେବେ । ଅଧିକନ୍ତୁ ଖେଳରେ ଭଲ କାମ କଲେ ସ୍ଥାୟୀ ଚାକିରିର ସମ୍ଭାବନା ଅଛି । ସ୍ପୋର୍ଟସ୍‌ମେନ ମାନଙ୍କର ଖେଳ ଓ ପ୍ରାକ୍ଟିସ୍ ଛଡ଼ା ଅନ୍ୟକାମ ନଥାଏ ।

ପ୍ରସ୍ତାବଟା ମନ୍ଦ ନୁହେଁ । ଚାକିରି ବଜାରରେ ଭୟଙ୍କର ମରୁଡ଼ି ପଡ଼ିଥିବା ବେଳେ କଥାଟା ମନକୁ ପାଉଚି । ଫୁଟବଲରେ ଗୋଲଟା ଏକମାତ୍ର ଲକ୍ଷ୍ୟ । ମୁଁ ସେଣ୍ଟର ଫରୱାର୍ଡ଼ର ଖେଳାଳୀ ଥିବାରୁ ଗୋଲ ଦେବାର ସୁଯୋଗ ପାଇଥାଏଁ । ତେବେ କଅଣ ଭାଗ୍ୟଟା ମୋ ହାତରେ । ମୁଁ ଆଉ ଜମାଳପୁର 'ଇସ୍କୁଲ' ପଡ଼ିଆରେ ଖେଳିବି ନାହିଁ, ଖେଳିବି ବାରିପଦା ପରି ଗୋଟାଏ ନାଁ କରା ସହରର ଷ୍ଟେଡିଅମରେ ।

ଖେଳକୁ ଖେଳ, ପୁଣି ମାସକୁ ମାସ ଦରମା ବି ଅଛି । ମନେ ମନେ ଭାବିଲି 'ଭାଗ୍ୟେନ ଏତତ୍ ସମ୍ଭବତି'। ଗୋଟାଏ ଭଲ 'ଗୋଲ' ହେଇଗଲା ବୋଧେ । ଦିନେ ଯାଇ ବନମାଳି ବାବୁଙ୍କ ସାଥିରେ ପହଂଚିଲି ବାରିପଦା ଏସ୍.ପି.ଙ୍କ ଅଫିସରେ । ସାଥିରେ ଥିଲେ ଅସୀମ ଚକ୍ରବର୍ତ୍ତୀ । ରିଜର୍ଭ ଅଫିସ ସବଇନ୍ସପେକ୍ଟର, ଜଣେ ଫୁଟବଲ ଖେଳାଳୀ ମଧ୍ୟ । ପରେ ଜାଣିଲି ସେ ଜଣେ ଭଲ ଅଭିନେତା । ନାଟକରେ ଅଭିନୟ କରନ୍ତି ।

ଏସ୍.ପି. ପଚାରିଲେ, 'ତୁମେ ଫୁଟବଲ ଖେଳ ?'

'ସାର' । ଏତେ ନମ୍ର ଉତ୍ତର ଆଉ କାହାକୁ କେବେ ଦେଇ ନଥିଲି ବୋଧେ ।

ମୁଁ ତାଙ୍କ ଖେଳ ବାଲେଶ୍ୱରରେ ଦେଖିଛି । ସେଣ୍ଟର ଫରୱାର୍ଡ଼ । ଅସୀମ ବାବୁ ଏସ୍.ପି.ଙ୍କୁ କହିଲେ ।

ମୁଁ ଆଶ୍ଚର୍ଯ୍ୟ ହେଲି । ମୋ ଖେଳ ଦେଖି ଥିବା ବ୍ୟକ୍ତି ବି ଏଠାରେ ଅଛନ୍ତି ? ତେବେ ମୁଁ ଆଉ 'ସାମାନ୍ୟ' ଭିତରେ ନାହିଁ ।

ଠିକ ଅଛି । ଆଜି ଚାରିଟା ବେଳକୁ ଫିଲ୍ଡକୁ ଆସ । ସେଠି ତୁମ ଖେଳ ଦେଖିବା । ଏସ୍.ପି. ରେଜିଷ୍ଟରରେ ଦସ୍ତଖତ କଲେ ।

ଅଫିସ ବାହାରକୁ ଆସି ଅସୀମ ବାବୁ କହିଲେ, ତମେ ଆଜି ଜଏନ୍ କର ।

ଭାବିଲି ଚାକିରିଟା ଏତେ ସହଜରେ ମିଳୁଥିଲା । ଅଥଚ ମୁଁ ରାତି ଅନିଦ୍ରାହେଇ ଚାରିଆଡ଼େ ଦଉଡ଼ୁଥିଲି ।

ଜମାଲପୁରଟା ମୋତେ କେମିତି ପିତା ପିତା ଲାଗିଲା । ସେଠାର ସ୍କୁଲ ପଡ଼ିଆ, ଟୋଲ ଗୃହ, ହେଡ଼ମାଷ୍ଟର, ନବବାବୁ, ସାଙ୍ଗସାଥି ଏ ସମସ୍ତେ ମୋତେ ଅଚିହ୍ନା ଅଚିହ୍ନା ଲାଗୁଥିଲେ ।

ଆଉ ମୋର ସେ ଟିଉସନ ଛାତ୍ରଛାତ୍ରୀମାନେ ? ଯୋଉମାନେ ମୋ'ଦ୍ୱାରା ଇଂରାଜୀ/ ଓଡ଼ିଆରେ ଭଲ ନମ୍ବର ପାଇଛନ୍ତି ବୋଲି ସ୍ୱୀକାର କରୁଥିଲେ ସବୁବେଳେ । ଅଧିକନ୍ତୁ ସେମାନଙ୍କ କ୍ଲାସ ଟିଚରମାନେ ମଧ୍ୟ କହୁଥିଲେ ।

ମୁଁ ତ ସେମାନଙ୍କ ପରିବାରର ଜଣେ । ସେମାନଙ୍କ ଛୋଟ ଛୋଟ ମୁହଁରେ ମୋ ସଫଳତାର ହସ ମୋତେ ପୁଲକିତ କରୁଥିଲା । ମଣିଷଟିଏ ବରାବର ସ୍ନେହ କାଙ୍ଗାଳ ।

ମୋତେ ଏବେ ସମସ୍ତଙ୍କୁ ଛାଡ଼ିବାକୁ ହେବ ।



# ପ୍ରଥମ ପୋଲିସ ଚାକିରି

ମୁଁ ଏବେ ପୋଲିସ ଡିପାର୍ଟମେଂଟର ଜଣେ ସଦସ୍ୟ । ମୋତେ ଯୋଉ ଦିନ ଖାକି ପୋଷାକ ଇସୁ କରାଗଲା, ହାଫ ପେଂଟ, ହାଫ ସାର୍ଟ ପ୍ରଭୃତି, ଭାବିଲି କୋଉ ଜନ୍ମର ପାପରୁ ଏ ସବୁ ମୁଣ୍ଡେଇବାକୁ ପଡୁଚି । ତାକୁ ନେଇ ଘରର ଗୋଟାଏ କୋଣରେ ଫୋପାଡ଼ି ଦେଲି । ସାରା ବାରିପଦାରେ ମୋର ପରିଚୟ ଫୁଟବଲ ପ୍ଲେୟାର । କିନ୍ତୁ ଡିପାର୍ଟମେଂଟର ସମସ୍ତେ ଜାଣନ୍ତି ମୁଁ କଅଣ । ପୋଷାକ କେବେ ପିନ୍ଧିବାକୁ ପଡୁ ନଥିଲା । ପୋଲିସ କାମ ପାଇଁ ମୋତେ କେହି କେବେ କହୁ ନଥିଲେ । ଅଫିସ ମଧ୍ୟ ଯାଉ ନଥିଲି । ମାତ୍ର ଛ'ମାସ କି ବର୍ଷେ ପରେ ନିର୍ବାଚନଟିଏ ପଡ଼ିଲା । ମୋର ପଦଟି ସେତିକି ବେଳେ ଏ.ଏସ୍.ଆଇ. ହେଲା ଓ ଗୋଟିଏ ନିର୍ବାଚନ ବୁଥର ଦାୟିତ୍ୱ ନେଇ ମୋତେ ରାଇରଙ୍ଗପୁର ପଠେଇ ଦିଆଗଲା । ୧୫ ଦିନ ପରେ ସେଠୁ ଫେରିଲା ବେଳକୁ ସେ ପଦ ଉହ୍ଲେଇ ଯାଇଥିଲା । ମୋ କାମ ପୁଣି ଫୁଟବଲ ଫିଲ୍ଡକୁ ଚାଲିଗଲା । ତା' ଭିତରେ ମୋର ଗୋଟିଏ ୬ମାସିଆ ଟ୍ରେନିଙ୍ଗ ସରିଥାଏ ।

ମନଟା ବିକ୍ଷେଇ ଉଠୁଥିଲା । କିନ୍ତୁ ମୋର ଦୁଇ ତିନି ଜଣ ବନ୍ଧୁ ଥିଲେ । ହରି ପଣ୍ଡା, ବିଜୟ, ହେମ, ରାଜୀବ । ତା'ଭିତରୁ ରାଜୀବ ଫୁଟବଲର ସାଙ୍ଗ । ହେମ ମାନେ ହେମେନ୍ଦ୍ର,

ବୟସର ସାଙ୍ଗ । ସିନେମା ଦେଖିବା ଓ ବୁଲିବା ଥିଲା ପ୍ରଧାନ କାମ । ବର୍ଷଯାକ ଫୁଟବଲ ଟିମ ସହିତ ସାରା ଓଡ଼ିଶା ବୁଲିବାରେ ବ୍ୟସ୍ତ ଥିଲେ ମଧ ମନ ଭିତରେ ପୋଲିସର ଖାକି ରଙ୍ଗ ପ୍ରତି ଗୋଟାଏ ବିତୃଷ୍ଣା ଭାବ ଥାଏ । ରାଜୀବ ମୋ ସହିତ ଏକମତ । ଆମର ଯୋଡ଼ି ଦୁର୍ଭେଦ୍ୟ । ଷ୍ଟେଟ ପୋଲିସ ପ୍ଲେଆର ହିସାବରେ ଆମର ପରିଚୟ । ଏଇଟା ଗୋଟାଏ ଗର୍ବ । ତଥାପି କିନ୍ତୁଟିଏ ମନ ଭିତରେ ।

ସେ ବର୍ଷ 'ଅଲ୍ ଇଣ୍ଡିଆ ପୋଲିସ କଲ୍‌ଚରାଲ ମିଟ' ହେଲା କଟକରେ । ଆଉ କେତେ ଜଣଙ୍କ ସାଥିରେ ମୁଁ ମୟୂରଭଞ୍ଜ ଜିଲ୍ଲାକୁ ପ୍ରତିନିଧିତ୍ୱ କଲି । ନାଟକ ଓ ଅନ୍ୟାନ୍ୟ କେରିକେଟର୍‌ରେ ମୋର ଭାଗ ନେବାର ଥିଲା । ଏଥିରେ ମାସେ କଟିଲା । ତା' ଭିତରେ କବିତା ଲେଖା ଓ ସାହିତ୍ୟ ପ୍ରତି ଅନୁରାଗ ଧିମେଇ ଯିବା ସ୍ୱାଭାବିକ । କିଛି ଭଲ ଲାଗୁ ନଥାଏ । ଖେଳ ସମୟ ହେଲେ ସିନା ପଡ଼ିଆକୁ ଯାଏଁ, ଅନ୍ୟ ସମୟରେ ଘରେ ଗୁହେଁ । ମୁଁ ସେତେବେଳେ ଉମେଶ ଭାଇ, ମୋର ବଡ଼ବାପାଙ୍କ ପୁଅ ଯେକି ସେତେବେଳେ ଫରେଷ୍ଟ ଡିପାର୍ଟମେଣ୍ଟରେ ଚାକିରି କରୁଥିଲେ, ତାଙ୍କରି ଘରେ ରହୁଥିଲି । ସେ ମଧ୍ୟ ସେତେବେଳେ ବିବାହ କରି ନଥିଲେ । ବନମାଳି ମଧ୍ୟ ସେଇଠି ଥିଲେ । ସେ ମଧ୍ୟ ଅବିବାହିତ । ବସ୍ତୁତଃ ଆମର ସେଇଟା ଗୋଟାଏ ବେଚେଲର୍ସ ମେସ୍ ଥିଲା । ଗାଁରୁ ଗୋଟିଏ ପିଲାକୁ ଆଣି ରଖିଥିଲୁ । ସେ ରନ୍ଧାରନ୍ଧି କରୁଥିଲା । ମାସିକ ଖର୍ଚ୍ଚ ବୋଧେ ପନ୍ଦରଟଙ୍କା ପଡୁଥିଲା ।

ଖରାବେଳେ ସେଦିନ କେହି ନଥାଏ । ଭାନୁ ବୋଧେ କୁଆଡ଼େ ବୁଲି ଯାଇଥିବ । ମୁଁ ଖାଇସାରି ଦାଣ୍ଡଘରେ ତଳେ ମସିଣା ଖଣ୍ଡେ ପକେଇ ଶୋଇଥାଏ । ଭଲ ଖିଲି ଖିଲି ପବନ ବହୁଥାଏ । ଦାଣ୍ଡକବାଟ ଖୋଲାଥାଏ । ନିଦ ଲାଗି ଯାଇଥାଏ । କେହି ଜଣେ ଆସିଲା ପରି ଲାଗିଲା । ଆଖି ଖୋଲି ଯାହା ଦେଖିଲି ସେଥିରେ ନିଦ ତ ପୂରା ଛାଡ଼ି ଗଲା କିନ୍ତୁ ଆଖି ଖୋଲି ପାରିଲି ନାହିଁ । ଡରରେ ଆଖି ବନ୍ଦକରି ଶୋଇ ଥିବାର ଛଳନା କଲି ।

୧୫/୧୬ ବର୍ଷର ଝିଅଟିଏ । ବେଶ ସୁନ୍ଦରୀ । ଫୁଲମାଳ ଗୁଡ଼ାଇଚି ଦେହରେ । ନିଜକୁ ସଜେଇଚି । ଗୋଟିଏ ଆଶ୍ରମ, ମେହେରଙ୍କ ବର୍ଣ୍ଣିତ ତପସ୍ୱିନୀ କାବ୍ୟର ବାଳିକା ପରି । ମୁଁ ଯେ ଛଳନା କରୁଚି ସେ କଥା ବି ସେ ହୁଏତ ବୁଝି ପାରିଥିବ । ମୋ ଛାତି ଧୁକୁ ଧୁକୁ । ଘରେ କେହି ନଥିବା ବେଳେ ... କେହି ଆସି ଯାଏ ଯଦି ? . . . ମୋ ସାମନାରେ ଗୋଟାଏ ପ୍ଲେଟରେ କିଛି ରଖି ଦେଲା ବେଳେ ମୁଁ ଚମକି ପଡ଼ି ପଚାରିଲି କିଏ ତୁମେ ? ଏ ସବୁ କିସ ? କେନେ ଆଣିଚ ? କିସ ହେବ ?

ତା'ର ସମସ୍ତ ଗମ୍ଭୀରତା ନିମିଷକେ କୁଆଡ଼େ ଉଭେଇ ଗଲା । ସେ ଫେଁ କିନି ହସି ଉଠିଲା ।

ଏ ସବୁ କୋଉଠିକାର ଭାଷା ? ସେ ପଚାରିଲା । ମୁଁ ସେ ଯାଏ ମୋର ଉତ୍ତର ବାଲେଶ୍ୱରୀ ଭାଷା ଛାଡ଼ି ନଥାଏ । ବାରିପଦାରେ ମଧ୍ୟ 'କିସ' 'କେନେ'ର ପ୍ରଚଳନ ଅଛି । କିନ୍ତୁ ଝିଅଟି ପୂରା କଟକୀ ଏବଂ ପଡ଼ିଶା ଘରୁ ଆସିଚି । ସେତେବେଳେ ଝିଅମାନଙ୍କ ସହିତ କଥାବାର୍ତ୍ତାକୁ ପ୍ରାୟ କେହି ପସନ୍ଦ କରୁ ନଥିଲେ ।

ମୁଁ ତାକୁ ଓଲଟି ପଚାରିଲି କେନେ ତୁମେ କେଇଠିକାର କି ? ସେ ଆହୁରି ହସିଲା । ବୋଧେ ମୋଠୁ ଆହୁରି କଥା ଶୁଣିବା ପାଇଁ ସେ ଠିଆ ହେଇ ରହିଲା । ଗୋରା ତକ ତକ ଷୋହଳ ବର୍ଷର ସୁନ୍ଦରୀ ଝିଅଟିଏ । ମୁଁ ତାକୁ ସିଧା ଚାହିଁ ପାରୁ ନଥାଏଁ । ମୋର ଭୟ ବଢୁଥାଏ ବୋଲି ଗଳାର ଶବ୍ଦ ଜଡ଼ି ଯାଉଥାଏ । ଏମାନେ ତ ଆଉ ଜମାଲପୁରର ଲକ୍ଷ୍ମୀ, ରତ୍ନେଶ୍ୱରୀ, ସିଦ୍ଧେଶ୍ୱରୀ ନୁହଁନ୍ତି,ଯୋଉମାନଙ୍କ ସହିତ ମୁଁ ଫ୍ରି ମିଶି ପାରୁଥିଲି । ନାରୀ କେନ୍ଦ୍ରିକ କଥାରେ ଯୋଉଠି ଭୟ ଥାଏ ସେଠି ଲାଜଟା କେମିତି ପାହାଡ଼ ପରି ମାଡ଼ି ବସେ ।

ମୁଁ ଯେତିକି ତାକୁ ଘର ଭିତରେ ଏକୁଟିଆ ଦେଖି ଭୟ କରୁଥିଲି, ସେ ବୋଧେ ସେତିକି ନିର୍ଭୟରେ ମୋ ମସିଣା ପାଖରେ ଠିଆହୋଇ ହସୁଥାଏ । ମୋତେ କଥା କୁହାଉଥାଏ ।

ଭୂପେନ ଭାଇ, ପାନ ରହିଲା, ଖାଇବେ ।

ମୁଁ ପାନ ଖାଏନି । ଏଠି ଆଉ କେହିବି ଖାଆନ୍ତିନି । ଆଃ, ଏଇଟା ରଜ ପାନ । ମିଠା ପାନ । ଖାଇତେ ହବ । ସେ ଜୋର ଦେଇ କହିଲା ଓ ଦଉଡ଼ି ପଳାଇଲା । ତା ଗୋଡ଼ର ପାଉଁଜି ଶବ୍ଦ ଶୁଭୁଥିଲେ ମଧ୍ୟ 'ଖାଇତେ ହବ' କଥାଟା ଯୋର ଶୁଭୁ ଥାଏ । ମୋତେ ଥଟ୍ଟା କଲା ?

ରଜ ? ରଜ କ'ଣ ? ଉତ୍ତର ବାଲେଶ୍ୱରରେ ରଜପର୍ବ ନାହିଁ । ଭାବିଲି ବୋଧେ ଏଠିକା ଝିଅମାନେ ବେଶୀ 'ଫରୱାର୍ଡ଼' । ଏଇଶବ୍ଦ ବେଶୀ ସହରୀ ଝିଅମାନଙ୍କ ପାଇଁ ବ୍ୟବହାର ହେଉଥିଲା । ମୋ ଭିତରୁ ସେତେବେଳ ଯାଏଁ ଭୟର କବାଟ ଖୋଲି ନଥାଏ ।

ଆମ ଫୁଟବଲ ପଡ଼ିଆକୁ ସେତେବେଳେ ଝିଅମାନେ ମଧ୍ୟ ଦେଖିବାକୁ ବେଳେବେଳେ ଆସୁଥିଲେ । ଝିଅମାନେ ପଡ଼ିଆରେ ଥିଲେ ଗୋଟାଏ ଭିନ୍ନ ମାନସିକତା ସୃଷ୍ଟିହୁଏ । ଏବେ ଯେତେବେଳେ କ୍ରିକେଟ ପଡ଼ିଆରେ ଆମେ କ୍ରିକେଟ ହିରୋମାନଙ୍କୁ ତାଙ୍କ ପ୍ରେମିକାମାନଙ୍କ ଅଣ୍ଟାରେ ହାତ ଗୁଡ଼େଇ ଚାଲିବାର ଦେଖୁ କିମ୍ବା 'ଫ୍ଲାଇଂ କିସ୍' ଦେବାର ଦେଖୁ ମନରେ ଆଉ ବିକାର ଆସେନି । ତାକୁ ଆମେ ସମୟ ସହିତ ତାଳ ଦେଇ ଚାଲିବା କଥା କହୁ ।

ସାମାନ୍ୟ ପରିଚୟ ଯୋଉଠି ଗଢ଼ିଉଠେ ସେଠି ଝିଅପୁଅଙ୍କ ସମ୍ପର୍କକୁ କେହି ଭିନ୍ନ ଆଖିରେ ଦେଖନ୍ତିନି, ବିଶେଷ କରି ବାରିପଦାରେ । ପର୍ବପର୍ବାଣୀରେ ସେ ସମ୍ପର୍କ ଆହୁରି

ଗାଢ଼ ହୁଏ । ଚିଠି ଦିଆନିଆ ଖୁବ୍ ଚାଲେ । ଜଣେ ଜଣେ ଏକାଧିକ ପୁଅ ଝିଅଙ୍କୁ ଏକ ସମୟରେ ଚିଠି ଦିଅନ୍ତି ବୋଲି ସେଇଠି ଦେଖିଲି । ବାପା ମାଆ ପ୍ରାୟ ନିର୍ବିକାର । ସାଧାରଣରେ, ବିଶେଷ କରି ଗାଁମାନଙ୍କରେ ଧାରଣା ସୃଷ୍ଟି ହେଇଥାଏ ଯେ ସହରୀ ଝିଅମାନଙ୍କ ଚରିତ୍ର ଠିକ୍ ନଥାଏ ।

ଆଃ, ଆଖିବୁଜି କେତେ ବଡ଼ ଅପବାଦର ଟେକାଟିଏ ଝିଅମାନଙ୍କ ଉପରକୁ ଫୋପାଡ଼ି ଦେଇ ହେଉଛି ? ଗାଁ'ରେ ସବୁନାରୀ କ'ଣ ସମାନ ? ବିଶେଷ କରି ବିଧବାମାନଙ୍କୁ ଦୋଷ ଦେବାରେ ଆମେ ଧୂରନ୍ଧର । ଗାଁ ମୁଖିଆମାନେ ଆକାଶରୁ ତୋଳି କଥା କହନ୍ତି । ଯେଉଁମାନେ ଶରତ ଚନ୍ଦ୍ରଙ୍କ 'ଚରିତ୍ର ହୀନା' ପଢ଼ିଥିବେ ସେମାନେ କେବେ ସେ କଥା କହିବେନି ।

ଫକୀରମୋହନ ଯେତେବେଳେ ଝିଅମାନଙ୍କ ପଢ଼ିବାପାଇଁ ତାଙ୍କଘରେ ଚାଟଶାଳୀଟିଏ ଖୋଲିଲେ ସେତେବେଳେ ବାଲେଶ୍ୱରର ଜମିଦାର ତାଙ୍କୁ ଭର୍ତ୍ସନା କରି କହିଥିଲେ ତୁମେ ନର୍କର ଦ୍ୱାର ଖୋଲୁଚ । ଝିଅମାନେ ପାଠ ପଢ଼ିଲେ ଆଉ ଦୁନିଆ ରଖିବେ ?

ମୁଁ ସେତେବେଳେ ବାରିପଦା ସଦରଥାନାରେ ଥାଏ । ପଛପଟେ ଗୋଟାଏ ଗେଷ୍ଟ୍ରୁମରେ ମୁଁ ରହୁଥାଏ । ଦଶଟାବେଳେ ଥାନାରେ ଜଣେ କନଷ୍ଟେବଳ ଆସି ଖବର ଦେଲା ଚିପଟ ଅଣ୍ଡିଆ ନଈ ପାଖରେ ଗୋଟାଏ ନବଜାତ ଶିଶୁର ମୃତଦେହ ପଡ଼ିଛି ।

ଏଥିରେ ପୋଲିସର କାମ ବଢ଼ିଯାଏ । ଗୋପୀନାଥ ମହାନ୍ତି ଥିଲେ ସର୍କଲ ଇନ୍ସପେକ୍ଟର । ସେତେବେଳେ ସର୍କଲ ଇନ୍ସପେକ୍ଟର ବିରାଟ ଲୋକଟାଏ । ସେ ସାଇକଲରେ ଆମ ଥାନା ଗେଟ ପାଖରେ ପହଂଚିବା ମାତ୍ରେ ଥାନା ବାରଣ୍ଡାରେ ଡିଉଟିରେ ଥିବା କନ୍‌ଷ୍ଟେବଳ ଦୌଡ଼ିଯାଇ ତାଙ୍କ ହାତରୁ ସାଇକଲଟି ଧରି ନିଏ । ସେଦିନ ସାର୍ ଆସିବା ମାତ୍ରେ ସମସ୍ତେ ଉଠି ନମସ୍କାର କରିବାମାତ୍ରେ ସେ କହିଲେ, 'ତୁମେମାନେ ଯାହା କୁହନା କାହିଁକି, ମୁଁ କିନ୍ତୁ 'ବାରିପଦା'କୁ ଆଉ ଏକ 'ପଦା' ବୋଲି କହିଥାଏ । ସେ ଚାରିଆଡ଼କୁ ଚାହିଁଲେ । ନିଜ ମନର ଅପରାଧ ବୋଧ ତାଙ୍କୁ ଡରାଉଥିଲା । ଜାତିରେ ପୋଲିସ । ଭାଷାର ଶାଳୀନତା ଏକ ଦୁର୍ମୂଲ୍ୟ କଥା । ସ୍ୱଚ୍ଛ ମାନବିକତା ସ୍ୱପ୍ନ ଛଡ଼ା ଆଉ କ'ଣ ହୋଇପାରେ ?

ଆଜି ସେକଥା ମନେପଡ଼ିଲେ ଦେହ ଶୀତେଇ ଉଠେ ।

ଅଲ୍‌ଇଣ୍ଡିଆ ପୋଲିସ କଲ୍‌ଚରାଲ ମିଟ୍‌ରୁ ଫେରିଲାବେଳକୁ ଫୁଟବଲ ସିଜିନ୍ ସରିଥାଏ । ମୋର ପୋଷ୍ଟିଂ ହେଲା ବାଙ୍ଗିରିପୋଷି ଥାନାକୁ । ମୟୂରଭଞ୍ଜର ଗୋଟିଏ କଥା

ଦେଖି ଖୁସିହେଲି । ଷ୍ଟେଟ ଥିଲାବେଳେ ମହାରାଜାଙ୍କ ଅମଳରେ ପୋଲିସର ଯୋଉ ଆଧୁନିକିକରଣ କରାଯାଇ ଥିଲା ତାହା ଅନନ୍ୟ । ସବୁଠି ଭଲ ବିଲଡିଂ, ଷ୍ଟାଫ କ୍ୱାର୍ଟରସ, ପାଇଖାନା, ଅବଶ୍ୟ 'ଉଠା ପାଇଖାନା' । କୂଅ କିମ୍ବା ଟିଉବୱେଲ୍ । ସବୁଠୁ ବଡ଼କଥା ହେଲା ପ୍ରତ୍ୟେକ ଥାନାକୁ ସ୍ୱତନ୍ତ୍ର ଟେଲିଫୋନ୍‌ର ବ୍ୟବସ୍ଥା । ପୋଲିସର ସ୍ୱତନ୍ତ୍ର ଟେଲିଫୋନ ଏକ୍ସଚେଞ୍ଜ୍ ମଧ୍ୟ ଥାଏ । ତା ସତ୍ତ୍ୱେ ଗୋପନ ବାର୍ତ୍ତା ପ୍ରେରଣ ପାଇଁ ପାରାମାନଙ୍କୁ ପୋଷା ଯାଇଥାଏ । ପାରାମାନେ ତାଲିମ ପ୍ରାପ୍ତ । ତା' ଗୋଡ଼ରେ ମେସେଜ ଲେଖି ବାନ୍ଧି ଦିଆଯାଏ । ପାରା ଯାଇ ଥାନାରେ ପହଞ୍ଚେ । ପୁଣି ଉତ୍ତର ନେଇ ଫେରିଆସେ । ଏ ବ୍ୟବସ୍ଥା ଅନେକ ଦିନ ପର୍ଯ୍ୟନ୍ତ ଚାଲୁଥିଲା । ବୋଧେ ୬୦ ଦଶକ ବେଳକୁ ସରକାରୀ ଟେଲିଫୋନ ବ୍ୟବସ୍ଥା ଭଲ ହେବାରୁ ଉଭୟ ପାରା ଓ ନିଜସ୍ୱ ଟେଲିଫୋନ ବ୍ୟବସ୍ଥା ବନ୍ଦହେଲା । ତା'ର କର୍ମଚାରୀ ମଧ୍ୟ ଛଟେଇ ହେଲେ ।

ସ୍ୱାଧୀନତା ପରେ ପୋଲିସର ବେତାର ବା ୱେରଲେସ୍ ବ୍ୟବସ୍ଥା ହେଲା । କିନ୍ତୁ ସେଥିରେ ମଧ୍ୟ ଗୋପନୀୟତା ରକ୍ଷା କରି ହେଲା ନାହିଁ । ସମୟ ଯେତେ ବଢ଼ିଲା ଗୋପନୀୟତା ଗୁରୁତ୍ୱ ସେତିକି ବଢ଼ିଲା । ଆଧୁନିକ ପ୍ରଣାଳୀରେ ଏବଂ ଉତ୍ତମ ମାନର ବାର୍ତ୍ତା ପ୍ରେରଣ ଯନ୍ତ୍ର ଯେତେ ବଢ଼ିଲା, ଆଧୁନିକ ପ୍ରଣାଳୀରେ ଅପରାଧ ମଧ୍ୟ ବଢ଼ି ବଢ଼ି ଚାଲିଲା । ଅପରାଧ ସହିତ ରାଜନୀତିର ସଂଯୋଗ ଏକ ଭିନ୍ନ ଅବସ୍ଥା ସୃଷ୍ଟିକଲା । ଅପରାଧ ସହିତ ରାଜନୀତି ମିଶିବାରୁ ଅପରାଧ ନିୟନ୍ତ୍ରଣ ଅଧିକ ଜଟିଳ ହେଲା । ଫଳରେ ଅପରାଧ ତା'ର କାୟା ବିସ୍ତାର କରି ସମାଜ ଓ ପ୍ରଶାସନର ପ୍ରତ୍ୟେକ ଗଳିକନ୍ଦିରେ ତାର ଅବାଧ ପ୍ରବେଶାଧିକାରକୁ ସାବ୍ୟସ୍ତକଲା ।

ବାଙ୍ଗିରିପୋଷି ମୋତେ ଭଲ ଲାଗିଲା । ଗୋଟିଏ ଶାନ୍ତ ଶିଷ୍ଟ ସୁନ୍ଦର ପରିବେଶ । ମୋର କାମ ସାମାନ୍ୟ । ଗୋଟିଏ ସ୍ୱତନ୍ତ୍ର କୋଠରୀ ମୋତେ ମିଳିଥାଏ । ପଢ଼ାପଢ଼ି ଲେଖାଲେଖି ପାଇଁ ସୁବିଧା । କିନ୍ତୁ ମନ ଖୋଜୁଥାଏ ମୁକ୍ତି । ଥାନା ସାମନାରେ ଥାଏ ହାଇସ୍କୁଲ । ବିରାଟ ଖେଳ ପଡ଼ିଆ । ସେଠି ହେଡ଼ମାଷ୍ଟର ଥାଆନ୍ତି ଭାନୁ ପରମାଣିକ । ମୋ ହାଇସ୍କୁଲରେ ସେ ଶିକ୍ଷକ ଥିଲେ । କ୍ଲାସ ଏଇଟ୍‌ରେ ଓଡ଼ିଆ ପଢ଼ାଉଥିଲେ । ମୋତେ ଭଲ ପାଉଥିଲେ । ମୁଁ ଅଧିକାଂଶ ସମୟରେ ତାଙ୍କ ପାଖରେ ଯାଇ ବସୁଥିଲି । ପ୍ରତିଦିନ ହାଇସ୍କୁଲ ପଡ଼ିଆରେ ଖେଳୁଥିଲି । ସେଠି ସମସ୍ତେ ମୋତେ ବହୁତ ମାନୁ ଥିଲେ ।

ମୋ ପାଖରେ ସୁଖଟା ବେଶୀ ଦିନ ରହି ପାରେନି । ମୁଁ ତାକୁ ଭଲ ପାଏନି କି ସେ ମୋତେ ଭଲ ପାଏନି କେଜାଣି ।



# ଅପରିଣତ ବୟସର ବାହାଘର

ସେଥର ମୁଁ ଘରକୁ ଯିବାରୁ ମାଆ ମୋତେ କହିଲା ଗୋଟାଏ ବାହାଘର ପ୍ରସ୍ତାବ ଆସିଚି, କଅଣ କରିବା ?

ମୁଁ 'ଏପ୍ରସ୍ତାବର ସୁରାକ ଆଗରୁ ପାଇଥିଲି । ଲକ୍ଷ୍ମୀ ମୋ ପାଖରେ ଟିକିଏ ବେଶୀ ପ୍ରଗଲ୍‌ଭା ପରି ମନେ ହେଉଥିଲା । ବଙ୍ଗାଳୀ ଝିଅ । ମୁଁ ତାକୁ କେବେ କେବେ ପାଠ ପଢ଼ାଉଥିବାରୁ ଏବଂ ସେତେବେଳକୁ ସେ କ୍ଲାସ ଟେନ୍ ଯାଏଁ ଆସିଯାଇ ଥିବାରୁ ମୋ ପାଖରେ ଟିକେ ଫ୍ରି ହେଇ ପାରିଥାଏ । ଛୁଟିରେ ଆସିଥିବା ସମୟରେ ମଧ୍ୟ ମୁଁ ପ୍ରାୟ ପ୍ରତିଦିନ ସ୍କୁଲକୁ ଯାଏ । ଖେଳେ, ତାପରେ ହେଡ଼ମାଷ୍ଟରଙ୍କ ଘର ଓ ନବ ବାବୁଙ୍କ ଘରଆଡ଼େ ବୁଲିଯାଏ । ସେଦିନ ସ୍କୁଲରେ ଭଲି ଖେଳିସାରି ଦେଖିଲି ମିନୁ ଠିଆ ହେଇଛି । ସେ ଲକ୍ଷ୍ମୀର ସାନ ଭଉଣୀ । ମୋତେ କହିଲା, 'ଆମ ଘରକୁ ଚାଲ । ଦିଦି ଡାକୁଛି' ।

ମୁଁ ଗଲି । ଅସ୍ୱାଭାବିକ ମନେ ହେଲା ।

ଦାଣ୍ଡ ପିଣ୍ଡାରେ ଲକ୍ଷ୍ମୀ ଠିଆ ହେଇଥିଲା ମୋତେ ଅପେକ୍ଷା କରି । ମୁଁ ପାଖକୁ ଆସିବା ମାତ୍ରେ ମୋତେ କହିଲା 'ମୁଁ ଡାକିନି, ମାଆ ଡାକିଛି । ସେ ଯାହା କହିବ ସେଥିରେ ମନା କରିବନି' । ତା' ଓଠରେ ଦୁଷ୍ଟାମିର ହସ ।

ଆଦେଶ ନା' ଅନୁରୋଧ ? କୈଶୋରର ଚପଳତା ନାରୀର ଶ୍ରେଷ୍ଠତମ ସୌନ୍ଦର୍ଯ୍ୟ । ମୁଁ କିଛି ଚିନ୍ତା କରିପାରୁ ନଥିଲି ।

ଭିତରକୁ ପଶିଯାଇ ଦେଖିଲି ମାଉସୀ ମୋ'ପାଇଁ ଜଳଖିଆ ରଖିଛନ୍ତି । ମୁଢ଼ି, ଦହି, ଆଚାର, ଏମିତି କିଛି । ମୋର ପ୍ରିୟ ଖାଦ୍ୟ । କିନ୍ତୁ ମିନୁ ଓ ଲଛି ମୋ ପାଖରେ ଠିଆ ହେଇଥା'ନ୍ତି । ମୁରୁକି ମୁରୁକି ହସୁଥା'ନ୍ତି । ଖାଇଲାବେଳେ ମାଉସୀ କହିଲେ, ''ଭଲ ଝିଅ, ଲଛିର ବଡ଼ ସାଙ୍ଗ । ସେମାନେ 'ସଙ୍ଗାତ' । ପ୍ରସ୍ତବଟା ମୋ ମନକୁ ପାଉଛି'' ।

ମୁଁ ତାଙ୍କୁ ଏଥିରେ କି ଉତ୍ତର ଦେବି ? ମୋ ମୁହଁ ତଳକୁ । କ'ଣ କିଛି ଶୁଭୁଛି ନା ନାହିଁ ? ଲଛି କହିଲା । ଆସିଲାବେଳେ ଲଛି ପୁଣି କହିଲା, 'ଖୁବ୍ ଭଲ ହେବ' । ସେଦିନ ମାଆ ମଧ୍ୟ ଯେତେବେଳେ ସେଇ କଥା ଉଠେଇଲା ମୁଁ ଚିନ୍ତାରେ ପଡ଼ିଗଲି ।

ବାହାଘର ? ପୁଣି ୨୩ ବର୍ଷ ବୟସରେ ? ମାଆ କହିଲା ତୋ'ସାନ ଭାଇ ବାହା ହେଇସାରିଲାଣି । ମୋତେ ସମସ୍ତେ ପଚାରୁଛନ୍ତି ମୁଁ ସେମାନଙ୍କୁ କିସ କହିମି ? ମୁଁ ତା' ମନକଥା ବୁଝୁଥିଲି । ମୋ ନିଜ ମଝିଆଁ ବାପାଙ୍କ ପୁଅ କୁଞ୍ଜର ବାହାଘର ଏବେଏବେ ସରିଛି । ସେ ମୋଠୁ ବର୍ଷେ ସାନ । ମେଟ୍ରିକ୍ ପାସପରେ ୧୮ ପରେ ଗୋଟିଏ ସ୍କୁଲରେ

ଟିଚର ଥାଏ । ଗୋଟିଏ ପରିବାର ଭିତରେ ସାନର ବାହାଘର ହେଇଯିବ, ବଡ଼ର ହେବନି । କୌଣସି ମାଆ ଏକଥା ସହ୍ୟ କରେ ନାହିଁ । ତା ଛଡ଼ା ସେବେଳର ମାନସିକତା ହେଲା ଯଦି ପାଖ ଗାଁ'ରେ ନିଜ ବନ୍ଧୁବାନ୍ଧବ ଭିତରେ ଝିଅ ମିଳୁଛି ତେବେ ସେଇଠି ପ୍ରଥମ ନଜର, ବାକି ସବୁ ପଛକୁ । କେଶପୁରା ଆମ ଗାଁ' ପାଖରେ । ମାଇଲିଏ ବି ନୁହେଁ । ଅଧର ବାବୁଙ୍କ ନାଁ' ଅଛି ସେ ଅଂଚଳରେ । ନାମଜାଦା ଧନାଢ଼୍ୟ ବ୍ୟକ୍ତି ବଂଶୀଧର ଦାସଙ୍କ ବଡ଼ ଝିଅର ଝିଅ ରାଧାରାଣୀ । ଯାଠାରୁ ବଡ଼ ଯୋଗ୍ୟତା ଆଉ କଅଣ ଅଛି । ବଂଶ ମର୍ଯ୍ୟାଦା ହିଁ ଥିଲା ସେତେବେଳେ ପ୍ରଥମ ମାପକାଠି । ମଧ୍ୟବିତ୍ତ କରଣ ପରିବାର ତାକୁ ଛାଡ଼ି ବାହାରକୁ ଯାଆନ୍ତିନି ।

ମାଆ କହିଲା, 'ମୁଁ ଝିଅର ମାଆକୁ ଜାଣେ, ଦେଖିଚି । ବହୁତ ଭଲ । ତାଙ୍କର ଝିଅକୁ ବାଛିବାର ନାହିଁ । ସୁନ୍ଦର ହେଇଥିବ ।'

ମୋର ଲଛି କଥା ମନେ ପଡ଼ିଲା । ତା'ର ସଙ୍ଗାତ ।

ମାଆ କହିଲା, 'ତୁ ଯଦି କହିବୁ କୋଷ୍ଠି ମଗାଇବା ।'

କେମିତି କେଜାଣି ପାଟିରୁ ବାହାରି ପଡ଼ିଲା 'ତୁ ପରା ଭଲ ଝିଅ କହୁଚୁ? ଘର ଭଲ, ବଂଶ ଭଲ । କୋଷ୍ଠି ଯଦି ନ ମିଳିଲା ?

ସେଇଟା ବି ଠିକ କଥା । ସେ ଉଠି ପଡ଼ିଲା ।

ମୁଁ ବୁଝିବାକୁ ସମୟ ପାଇଲି ନି । କଥାଟା ଏଇଠି ଫାଇନାଲ ହେଇଗଲା କି ? ମାତୃ ଭକ୍ତ ପୁତ୍ରର ଆଉ ଉପାୟ କଅଣ ଥିଲା ।

ଦାଣ୍ଡ ଘରେ ବାବା ବୋଧେ ବସି ଆମ କଥାକୁ କାନ ପାତି ଥିଲେ । ମାଆ ଯାଇ ତାଙ୍କୁ କହିଲା । ସବୁତ ଶୁଣିଲ ମୋତେ ଆଉ କିସ କହୁଚ ? ଆଜି ଖବର ପଠାଇ ଦିଅ । ଅକ୍ଷୟ ତୃତୀୟା ଭଲ ଦିନ । ଆଉ ଦିନ ବାଛିତେ ନାହିଁ ।

ବାବାତ ଶୁଣେଇ ଶୁଣେଇ ମୋତେ କହିଥିଲେ, ଆମର ଆଉ ବେଶୀ ବଡ଼ଘର ଦରକାର ନାହିଁ, ଜିନିଷ ପତ୍ର (ଯୌତୁକ)ବି ଦରକାର ନାହିଁ । ସମାନ ମଥା ଭଲ ।

ଏଇଟା ଗୋଟାଏ ସମୟ ଯେତେବେଳେ ପୁଅଯାଇ ଝିଅକୁ ତା'ଘରେ ଦେଖିବା ପ୍ରଥା ନଥିଲା । ତେଣୁ ଏପ୍ରକାର କଥାକୁ ଲୋକେ ପସନ୍ଦ କରୁ ନଥିଲେ । ବରଂ ଓଲଟି କହୁଥିଲେ ସୁନ୍ଦର ପଣରୁ କ'ଣ ପାଇବ? ଗୋଟାଏ ପିଲାହେଲେ ଗଲା । କାଳୀ ହେଉ, ମଣିଷ ଭଲହେଉ । ତେଣୁ ପ୍ରଥାଥିଲା ନିହାତି ଅଜଣା ପରିବାର ହେଇଥିଲେ ବରଘରୁ ଦୁଇ ତିନିଜଣ ଯାଇ ଝିଅକୁ ଦେଖି ଆସୁଥିଲେ । ବେଶୀଭାଗ ନିର୍ଭର କରୁଥିଲା ମଧ୍ୟସ୍ଥ ଉପରେ ।

ତା'ପର ଦିନ ମୁଁ ଯେତେବେଳେ ସ୍କୁଲକୁ ଖେଳିବାକୁ ଗଲି ଲଛି ସେତେବେଳକୁ କ୍ଲାସରୁ ବାହାରି ଆସୁଥାଏ । ମୋତେ ଦେଖି ପାଖକୁ ଆସିଲା । ମୁରୁକି ମୁରୁକି ହସୁଥାଏ ।

'କ'ଣ ଆଉ କିଛି କହିବାର ଅଛି ? ବାବା ବି ଶୁଣି ଖୁସି' ।

'ତୁ ଏ ସବୁ ଧନ୍ଦା କେବେଠୁ କଲୁଣି' ?

ମାସକ ପରେ ଅକ୍ଷୟ ତୃତୀୟା, ମେ ୧୦,୧୯୫୯ ।

ମୁଁ ସବାରି ଚଢ଼ି ବାହା ହେବାକୁ ଗଲି ।

# ପୋଲିସ ଚାକିରି ଛାଡ଼ିଲି

ସେହିବର୍ଷ ପୂଜା ସମୟରେ ମୁଁ ବୋଧେ ୧୦/୧୫ ଦିନ ଛୁଟିନେଇ ଘରକୁ ଆସିଥାଏ । ଗୋଟାଏ ଚିଠି ପାଇଲି ଇନଲେଣ୍ଡ ଲେଟରରେ । ଚିଠି ଲେଖିଥା'ନ୍ତି ହାଇସ୍କୁଲରେ ମୋର ଜୁନିଅର ବନ୍ଧୁ ପୂର୍ଣ୍ଣଚନ୍ଦ୍ର ଦାସ ମହାପାତ୍ର । ତାଙ୍କ ଘର ବାଇତପଡ଼ା । ସେ ମଧ୍ୟ ମୋର ସମ୍ପର୍କୀୟ ବନ୍ଧୁ । ମେଟ୍ରିକ ପାଶ କରି ନଥିଲେ ମଧ୍ୟ ନୀଳମଣି ରାଉତରାୟଙ୍କ (ସେ ସମୟର ହୋମ ମିନିଷ୍ଟର)ଠାରୁ ଚିଠିଟିଏ ନେଇ ରାଜଗାଙ୍ଗପୁର ସିମେଣ୍ଟ୍ କାରଖାନାରେ ଚାକିରି କରୁ ଥାଆନ୍ତି । ମଝିରେ ମଝିରେ ଆମର ଚିଠି ଦିଆନିଆ ହୁଏ । ସେ ଲେଖିଲେ ଏଠି ସିମେଣ୍ଟ୍ କାରଖାନାରେ କିଛିଲୋକ ନିଆଯିବ । କାରଖାନାରେ ଚାକିରି କରିବାରେ ଯଦି ଆପତ୍ତି ନଥାଏ ତେବେ ଥରେ ଚାଲି ଆସନ୍ତୁ, ଦରମା ମନ୍ଦନୁହେଁ ।

ମୁଁ ଖରାବେଳେ ଏ ଚିଠି ପାଇଲି । ରାଧାରାଣୀ ଥାଏ କେଶପୁରାରେ । ତା'ପର ଦିନ ଆଉ ସାତଦିନ ଛୁଟି ବଢ଼ାଇବାକୁ ବାଙ୍ଗିରିପୋଷି ଥାନା ଅଫିସରଙ୍କୁ ଦରଖାସ୍ତଟିଏ ଲେଖି ସେଇଦିନ ବାହାରି ପଡ଼ିଲି ରାଜଗାଙ୍ଗପୁର । ପୂଜା ସମୟ ହେଇଥିଲେ ମଧ୍ୟ ଜଳେଶ୍ୱର ରାସ୍ତା ବରାବର ସେମିତି । ପାଣି କାଦୁଅ । ନାଳ ପାରିହେଇ ଜଳେଶ୍ୱରରେ ପହଂଚି ଟିଉବୱେଲ୍‌ରେ ଗୋଡ଼ହାତ ଧୋଇ ଗାମୁଛା ବଦଳେଇ, ପେଣ୍ଟ ସାର୍ଟ ପିନ୍ଧି ଷ୍ଟେସନରେ ପହଂଚିଲା ବେଳକୁ ଆସାନସୋଲ ପାସେଞ୍ଜର ପାଇଁ ପ୍ରଥମ ଘଣ୍ଟା ବାଜିଲା । ସେତେବେଳେ ପୁରୀ ଆସାନସୋଲ ଟ୍ରେନ ଚାଲୁଥାଏ । ମୁଁ ଆସିଲି ଖଡଗପୁର । ସେଠୁ ଟ୍ରେନ ବଦଳେଇ ଡୋଙ୍ଗରଗଡ଼ ପାସେଞ୍ଜର ଚଢ଼ି ପରଦିନ ସକାଳ ଆଠଟାରେ ପହଂଚିଲି ରାଜଗାଙ୍ଗପୁରରେ । ମୋ ପାଇଁ ଏଇଟା ଥିଲା ମାରାଥନ ଯାତ୍ରା । ରିକ୍ସାରେ ପହଂଚିଲି ଓ.ସି.ଏଲ୍. କଲୋନୀରେ । ପୂର୍ଣ୍ଣବାବୁ ଅଫିସରୁ ଫେରିଲେ ୧୨ଟାରେ । ସେ ତ ସେଯାଏଁ ଅବିବାହିତ । ବାଇତିପଡ଼ାର ଜମିଦାରୀଆ ଢଙ୍ଗ । ଫିନ୍ ଫିନ୍ ଧଳାଧୋତି ଉପରେ ଫୁଲ୍‌ସାର୍ଟ ହାତ ମୋଡ଼ା ଯାଇଥିବା କହୁଣୀଯାଏଁ, ଗୋଲଡ୍ ଫ୍ରେମ ଚଷମା । କଥାରେ ବାତୁଳି

ବାଜେନି । କଥା ଅନର୍ଗଳ । ରାଜକୀୟ ଚେହେରା । ସମସ୍ତ ଓଡ଼ିଶାର ରାଜନୀତି ତାଙ୍କ ତୁଣ୍ଡରେ । ମୁଁ ଦେଖିଲି ସ୍କୁଲରେ ପଢୁଥିବାବେଳେ ଯାହା ଏଠିବି ସେଇଆ ।

ସେ ମୋତେ କହିଲେ, 'ଆପଣଙ୍କୁ ସେ ପୋଲିସ ଚାକିରି ପୋଷେଇବନି । ଏଇଠି ରହି ଯାଆନ୍ତୁ, ଭଲ ଲାଗିବ ।'

ଏଠି କ'ଣ ଚାକିରି ମିଳିବ ? ମୁଁ ପଚାରିଲି ।

ଆରେ, ମିଳିବ ମାନେ ? କାଲି ଇଣ୍ଟରଭିଉ । କାଲିବି ଆପଣ ଏପଏଣ୍ଟମେଣ୍ଟ ଚିଠି ପାଇବେ । ପଅର ଦିନ ଜଏନ୍ କରି ପାରିବେ ତ ? ଦରମା ୧୧୦ଟଙ୍କା । ମନ୍ଦ କ'ଣ ? କାରଖାନା ଚାକିରି । ଡିଉଟି ମାତ୍ର ଆଠ ଘଂଟା । ତାପରେ ଫୁର୍ତ୍ତି ଆଉ ମଉଜ ମଜଲିସ୍ ।

ମୁଁ ଭାବିଲି ପୃଥିବୀର ସବୁ ସୁଖ ଏଇଠି ଛିଡ଼ି ପଡ଼ିଛି । ଏମିତି ଚାକିରି କଅଣ କୋଉଠି ଥାଏ । ବାରିପଦାର ପୋଲିସ ଚାକିରି । କିନ୍ତୁ ସେ ଘୃଣ୍ୟ ପରିବେଶରୁ ବାହାରି ପାରିବି ତ ? ମୁଁ ଠିକ୍ କଲି, ଏଠି ଜଏନ କରିସାରି ଟେଲିଗ୍ରାମ ପଠେଇବି । ମାସେ ମେଡିକାଲ ଗ୍ରାଉଣ୍ଡରେ ଛୁଟିପାଇଁ ।



# ସିମେଣ୍ଟ୍‌କୁ ସାଥୀ କଲି

ତାହାହିଁ ହେଲା । ଟେଲିଗ୍ରାମ ପଠେଇ ଦେଇ ସିମେଣ୍ଟ୍ କାରଖାନାର 'ଟାଇମ କିପର' ପଦରେ ଜଏନ୍ କରିଦେଲି । ଗୋଟାଏ ଭରସାଥାଏ ଯେ ବାରିପଦା ଏସ୍.ପି. ମୋତେ ଭଲ ପାଆନ୍ତି ମୋର ଫୁଟବଲ ଖେଳ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ । ତେଣୁ ଅଘଟଣ କିଛି ଘଟିବନାହିଁ । ପୋଲିସ ଡିପାର୍ଟମେଂଟ୍‌ରେ ମଧ୍ୟ ଅନ୍ୟମାନେ ମୋ ପ୍ରତି ପ୍ରାୟ ଗୋଟିଏ ହାର୍ଦ୍ଦିକ ସହାନୁଭୂତି ଦେଖାନ୍ତି । ଏସ୍.ପି. କ'ଣ ଜାଣି ନାହାନ୍ତି ଆମର ଭବିଷ୍ୟତ ସେହି ମୁଦ୍ରିତ ଲଫାଫା ଭିତରେ ଆବଦ୍ଧ ?

ଘରକୁ ସବୁକଥା ଲେଖି ଜଣାଇଦେଲି । ଗୋଟିଏ ସ୍ୱସ୍ତିର ନିଃଶ୍ୱାସ ଏଇଥିପାଇଁ ଯେ ମୁଁ ପୋଲିସ ଛାଡୁଛି । ପୁଣି ଭୟ ଏଇଥିପାଇଁ ଯେ ମୁଁ ଭଲରେ ମୁକୁଳି ପାରିବି ତ ?

ଟାଇମ୍ ଅଫିସରେ ସିଫ୍ଟ ଡିଉଟି । ଏ, ବି, ସି ସିଫ୍ଟ । ସକାଳ ୬ରୁ ଦିନ ୨, ଦିନ ୨ ରୁ ରାତି ୧୦, ପୁଣି ରାତି ୧୦ରୁ ସକାଳ ୬ । ମନ୍ଦ ନୁହେଁ । ତାପର ସମୟ ମୁଁ ଆକାଶର ମୁକ୍ତ ବିହଙ୍ଗ । ମାସଟିଏ କାମ କରି ମୁଁ ୧୦ଦିନ ଛୁଟି ମାଗିଲି ମାଆର ଦେହ ଖରାପ କହି । ଛୁଟିନେଇ ସିଧା ପହଂଚିଲି ବାରିପଦାରେ । ସେଠି ରିଜର୍ଭ ଅଫିସରେ ମୋତେ କହିଲେ ତମର କଟକ କ୍ରାଇମ ବ୍ରାଂଚକୁ ବଦଳି ହେଇଛି । ମୁଁ କହିଲି ମୁଁ ତ ଇସ୍ତଫା

ଦେବାକୁ ଆସିଛି । ସେ କହିଲେ ତେବେ ତୁମେ ଏସ୍.ପି.ଙ୍କ ସହିତ ଦେଖାକର ।

ମୁଁ ଯାଇ ଏସ୍.ପି.ଙ୍କୁ ଭେଟିଲି ତାଙ୍କ ବାସ ଭବନରେ । କହିଲି ସବୁକଥା । ସେ ଖୁସିହେଲେ । ରିଜର୍ଭ ଅଫିସରଙ୍କୁ ଫୋନ୍‌କରି କହିଲେ ତାକୁ ଆଜି ଛାଡ଼ିଦିଅ ।

ପଦେ କଥାରେ କାମସରିଲା । ଦ୍ୱିପହର ବସ୍‌ରେ ଗଲି ଘରକୁ । ଗଲାବେଳେ କେମିତି ଗୋଟାଏ ଉଲ୍ଲାସ ଲାଗୁଥିଲା ।

ପୋଲିସ ଚାକିରି ସିନା ଛାଡ଼ିଦେଲି । କିନ୍ତୁ ସେଥିରୁ ଯୋଉ ଅଭିଜ୍ଞତାଟି ପାଇଥିଲି ତାକୁ ବ୍ୟବହାର କରୁଛି ଏବେ । ପୋଲିସ ଚାକିରି ଉପରେ, ମୁଁ ଏବେ ଦାବୀ କରୁଛି, ମୁଁ ସବୁଠାରୁ ବେଶୀ ଗପ ଲେଖି ପାରିଚି । ପୋଲିସ ଡିପାର୍ଟମେଂଟରେ ଲେଖକ ଅନେକ । ଦୁର୍ଗାମାଧବ ମିଶ୍ର, ବିପିନ ବିହାରୀ ମିଶ୍ର, ଅନାଦି ସାହୁ । କିନ୍ତୁ ତାକୁ ନେଇ ଏତେ ବେଶୀ ଗପ କିଏ ଲେଖିଚି ?

ଗୋଟିଏ ସମ୍ପୂର୍ଣ୍ଣ ଉପନ୍ୟାସ (ଗାନ୍ଧାରୀ) ମୁଁ କେବଳ ଲେଖି ପାରିଚି, ଯାହାକୁ ବିପିନ ବିହାରୀ ମିଶ୍ର ବହୁତ ପ୍ରଶଂସା କରିଛନ୍ତି । (ମୁଁ ଆଇ.ପି.ଏସ୍.ମାନଙ୍କ କଥା ପରେ କହିବି) ମୋ ସମୟରେ ପୋଲିସରେ ନାରୀମାନେ ନଥିଲେ । ଏବେ ତ ଭର୍ତ୍ତି । ଗୋଟିଏ ସମୟ ଥିଲା ଯେତେବେଳେ ପୋଲିସରେ ଥିବା ସୁନ୍ଦରୀ ନାରୀମାନେ ବିବାହ ନୁହେଁ, ପ୍ରେମପାଇଁ ମଧ୍ୟ ବିବେଚିତ ହେଉ ନଥିଲେ । 'ମୋ ବହିର ପ୍ରଥମ କେତୋଟି ପୃଷ୍ଠା' ମୋର ପ୍ରେମ ଗଳ୍ପ ସଙ୍କଳନର ଗୋଟିଏ ଚମତ୍କାର ଗଳ୍ପ । ବହୁ ପାଠକୀୟ ଶ୍ରଦ୍ଧା ପାଉଛି । ସେଥିରେ ମଧ୍ୟ ସବୁ ଚରିତ୍ର ପୋଲିସ । ସେଇଟା ମଧ୍ୟ ଏବେ ମୋର 'ନିର୍ବାଚିତ ଗଳ୍ପ' ସଙ୍କଳନରେ ସ୍ଥାନ ପାଇଛି ।

ଯୋଉ ବିଭାଗକୁ ମୁଁ ନିକୃଷ୍ଟତମ ବିଭାଗ ବୋଲି ମନେକରୁଥିଲି ସେଇ ବିଭାଗ ମୋତେ ଦେଇଛି ମହାର୍ଘ ଅଭିଜ୍ଞତା ଏବଂ ସେଥିରୁ ମୁଁ ଖୋଜି ପାଇଛି ବହୁତ ଉତ୍କୃଷ୍ଟ ଚରିତ୍ର । ସେଥିରେ ପୋଲିସର ଦୋଷ ଦୁର୍ବଳତା ଯେତିକି ଅଛି ମହନୀୟ ଭାବସତ୍ତା ମଧ୍ୟ ସେତିକି ।

ମହାଭାରତର 'ଗାନ୍ଧାରୀ' ନିଜେ ଅନ୍ଧ ନଥିଲେ । ତାଙ୍କ ସ୍ୱାମୀ କିଛି ଦେଖିପାରୁ ନଥିଲେ ବୋଲି ସେ ନିଜେ ମଧ୍ୟ କିଛି ଦେଖିବାକୁ ଚାହୁଁ ନଥିଲେ । ଗୋଟିଏ 'ପଲିଟିକାଲ ସେଟାୟାର' । 'ଗାନ୍ଧାରୀ' ଓଡ଼ିଆ ଭାଷାର ପ୍ରଥମ ଉପନ୍ୟାସ ଯାହା କେବଳ ପୋଲିସ ଚରିତ୍ରକୁ ନେଇ ଲେଖାଯାଇଛି ତା'ର ଦୁଃଖ ଯନ୍ତ୍ରଣାକୁ ନେଇ ।

ପୋଲିସ ବିଭାଗରେ ନଥିଲେ ଏ କଥା ଲେଖିପାରି ନଥା'ନ୍ତି । ପୋଲିସରେ ନଥିଲେ ମଧ୍ୟ ଷ୍ଟେଟ ଫୁଟବଲରେ ସ୍ଥାନ ପାଇପାରି ନଥା'ନ୍ତି କି ଦିନେ ସମ୍ବଲପୁରରୁ ହୀରାକୁଦ ଯାଏ କ୍ରସକଣ୍ଟ୍ରିରେ ଯୋଗ ଦେଇ ପ୍ରଶଂସିତ ହେଇପାରି ନଥା'ନ୍ତି ।

ସେଇ ବାରିପଦା ମଧ୍ୟ ଥିଲା ମୋର 'ପ୍ରଥମ ପ୍ରେମର ସହର' । ମୋ' ପ୍ରେମର ପ୍ରଥମ ରୋମାଂଚ ସେଇଠି ସୃଷ୍ଟି ହେଇଥିଲା । ବହୁ ଗଳ୍ପ ଓ କବିତା ଲେଖିଚି ତା ଉପରେ । କିଛି ଅଛି କିଛି ନାହିଁ । ସେଇଠିବି ପାଇଚି ପ୍ରଥମ ପ୍ରେମର ସ୍ପର୍ଶ ଏବଂ ସେଇଠି ଲେଖିଚି ପ୍ରଥମ ପ୍ରେମ ଚିଠି । ମୋ' ମନର ମହାର୍ଘ ଅନୁଭବର ପ୍ରଥମ ସହର ।

ମୋ ଜୀବନର ଗତିପଥ, ଜୀବନର ଧାରା ବଦଲେଇ ଦେଲା ସିମେଂଟ କାରଖାନା ରାଜଗାଙ୍ଗପୁର । ସ୍ୱାଧୀନତାର ପ୍ରଥମ ସ୍ୱାଦ ମିଳିଲା ସେଇଠି । ଦିନକୁ ମାତ୍ର ଆଠଘଣ୍ଟା କାମପରେ ଆଉ ପଚାରିବାକୁ କେହିନାହିଁ । ତାପରେ କାମ ପଡ଼ିଲେ ଓଭରଟାଇମ୍, ଘଣ୍ଟା ହିସାବରେ ମଜୁରୀ । ଭାବିଲି ଏ ପୃଥିବୀରେ ଶ୍ରମିକମାନେ ହିଁ ସବୁଠୁ ବେଶୀ ସ୍ୱାଧୀନ । ଏଇଠି ପୁଣି ଆରମ୍ଭ ହେଲା ସାହିତ୍ୟ । ସୁନ୍ଦର ପାଠାଗାର ଓ ରିଡିଙ୍ଗ ରୁମଟିଏ କମ୍ପାନୀର ଅଛି । ସବୁ ଖବରକାଗଜ, ପତ୍ରପତ୍ରିକା ଆସେ । ସକାଳ, ସନ୍ଧ୍ୟା ଖୋଲା ଥାଏ । ଯେତେବେଳେ ବସି ପଢ଼ିଲେ କ୍ଷତିନାହିଁ । କମ୍ପାନୀର ନିଜସ୍ୱ ମେସ୍ ଅଛି । ସେଠି ଖାଇବାରେ ଅସୁବିଧା ନାହିଁ ।

କିନ୍ତୁ ମୋଠୁ ଦୂରେଇ ଗଲା ମୋର ପ୍ରିୟ ଫୁଟବଲ । ଫୁଟବଲର ସୁବିଧା ନାହିଁ । ଭଲି, ବେଡ୍‌ମିଣ୍ଟନର ଅସୁବିଧା ନାହିଁ । ମଝିରେ ମଝିରେ ଯାଏ ।

ତଥାପି ଜୀବନଟା କେମିତି କେମିତି ଲାଗିଲା । ରାଧାରାଣୀ ଗାଁ'ରେ ଆଉ ମୁଁ ପାଂଚଶହ କିଲୋମିଟର ଦୂରରେ । ଚିଠି ଛଡ଼ା ଯୋଗାଯୋଗର ଅନ୍ୟ ଉପାୟ ନାହିଁ । ସେତେବେଳେ ରାଜଗାଙ୍ଗପୁରରୁ ଓଡ଼ିଶାର ପୂର୍ବାଂଚଳକୁ ଆସିବାକୁ କୌଣସି ସିଧା ଟ୍ରେନ୍ ନଥିଲା । ଘର, ଗାଁ, ପରିବାର ସହିତ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ପରି ଲାଗୁଥାଏ । ଏଇଠିବି ଆସି ମିଶିଲେ ଜୀବନ ପ୍ରଧାନ । ରତ୍ନେଶ୍ୱରୀର ସ୍ୱାମୀ । ଆମର ପୂର୍ବ ସମ୍ପର୍କରେ ମୁଁ ଥିଲି ତା'ର ଦାଦା । ମୁଁ ବି ତାକୁ ଟିଉସନ କରୁଥିଲି । ପିଲାକାଳୁ ତା'ର ବାପା ନଥିଲେ ବୋଲି ମୁଁ ତାକୁ ପଢ଼ାରେ କିଛି ସାହାଯ୍ୟ କରିଛି ।

ପୁରୁଣା ସମ୍ପର୍କ ପୁଣି ଗଢ଼ି ଉଠିଲା । ଆମେ ଦୁହେଁ ଷ୍ଟେସନ ପଛପଟେ ଗୋଟିଏ ଘରଭଡ଼ା ନେଇ ସେଇଠି କିଛିଦିନ ରହିଲୁ । ରାଧାରାଣୀ ଓ ରତ୍ନେଶ୍ୱରୀ ମଧ୍ୟ ରହିଲେ । କିନ୍ତୁ ଅସ୍ଥାୟୀ, କାରଖାନାଟା ଦୂରହେଲା । ପରେ ଟାଉନସିପ୍ ଭିତରେ ଅଲଗା ଅଲଗା ଘର ନେଇ ରହିଲୁ । ମୋର ସାହିତ୍ୟ ଚର୍ଚ୍ଚା ପରିବାର ପାଇଁ ବାଧକ ହେଲା । ସେତେବେଳକୁ ବିଷ୍ଣୁ ରାଉତରାୟ ଆସି ମିଶି ସାରିଥାଏ । ସେ କମ୍ପାନୀର ଜଣେ ଶିକ୍ଷା ନବୀସ । ମୋର ସାହିତ୍ୟର ନବ ଉନ୍ମେଷରେ ତା'ର ଭୂମିକା ଅଛି । କିନ୍ତୁ କେତେ ଦିନ ? ବର୍ଷକ ପରେ ସେ ରାଉରକେଲା ଷ୍ଟିଲ୍‌ପ୍ଲାଂଟ୍‌ରେ ଚାକିରୀ ପାଇ ରାଜଗାଙ୍ଗପୁର ଛାଡ଼ିଲା । ତା'ର ବର୍ଷକ ପରେ ମୁଁ ମଧ୍ୟ ଚାଲି ଆସିଲି ।

ଏଇ ରାଜଗାଙ୍ଗପୁରରେ ମଧ୍ୟ ମୋର ପୁଣିଥରେ ଦେଖାହେଲା ପୋଲିସ ସମୟର ବନ୍ଧୁ ବିଜୟ ପଟ୍ଟନାୟକ ଓ ହରିହର ପଣ୍ଡା । ଏମାନେ ଥିଲେ ପୋଲିସ ଡିପାର୍ଟମେଂଟର ଟେଲିଫୋନ୍ ଅପରେଟର । ସେତେବେଳେ ମୁଁ ଆଗରୁ କହିଛି, ମୟୂରଭଞ୍ଜରେ ରଜାଙ୍କ ଅମଳରୁ ଥିଲା ପୋଲିସ ବିଭାଗର ନିଜସ୍ୱ ଟେଲିଫୋନ୍ ଏକ୍ସଚେଞ୍ଜ୍ । ତା' ଛଡ଼ା ଖବର ପ୍ରେରଣ ପାଇଁ ଥିଲା ପ୍ରଚୁର ପାରା । ବିଜୟ ମୋ ବୟସର ହେଲେ ମଧ୍ୟ ହରିହର ପଣ୍ଡା ମୋ'ଠାରୁ ଅନେକ ବଡ଼ । କିନ୍ତୁ ସେ ଏତେ ମେଳାପୀ ଯେ ଆମର ପ୍ରଥମ ବନ୍ଧୁହେଇ ଯାଇଥିଲେ । ପ୍ରଚଣ୍ଡ ହାସ୍ୟ ରସିକ । ତାଙ୍କ ହାସ୍ୟରସ ମୋର ଏକଲା ଅବସ୍ଥାକୁ ଦୂର କରି ଦେଉଥିଲା । କାରଖାନାର ଡିଉଟି ପରେ ସେ ଥିଲେ ମୋର କିଛି ଚିନ୍ତାନାହିଁ । କିଛିଦିନ ଆମେ ଏକାଠି ଥିଲୁ । ଆମ ସହିତ ଥିଲେ ଆଉ ଜଣେ । ତାଙ୍କ ନାଁ ଟିକେଶ୍ୱର ପ୍ରଧାନ । ଆମ୍ଭେ ଏକାଠି ରନ୍ଧାରନ୍ଧି କରି ଖାଉଥିଲୁ । ହରିହର ବାବୁ ନିଜେ ଅନେକ କାମକରି ଦେଉଥିଲେ ।

ମୋର ବାରିପଦାର ସାଙ୍ଗ ବିଜୟ ଆସି ପୁଣି ରାଜଗାଙ୍ଗପୁରରେ ପହଂଚିବାରୁ ଆମ ବନ୍ଧୁତ୍ୱ ପୁଣି ଆରମ୍ଭ ହେଲା ସିନା କିନ୍ତୁ ଖୁବ୍ ବେଶୀ ଆନ୍ତରିକତା ନଥିଲା ।

ସେଇଠି ମୋର ପରିଚୟ ହେଲା ପୂର୍ଣ୍ଣ ପଟ୍ଟନାୟକ ସହିତ । କାରଖାନାର ଶିକ୍ଷା ନବୀସ । ତାଙ୍କ ସହିତ ସମ୍ପର୍କ ଏତେ ଗାଢ଼ ହେଇ ଉଠିଲା ଯେ ମୁଁ ଥରେ ଚିନ୍ତା କରୁଥିଲି ତାଙ୍କ ସହିତ ଆମ ପରିବାରର ବୈବାହିକ ସଂପର୍କ ପାଇଁ । କିନ୍ତୁ ତାହା ସମ୍ଭବ ହେଲାନି ।

ସେଇ ପୂର୍ଣ୍ଣ ପଟ୍ଟନାୟକ ସହିତ ମୁଁ ୧୯୬୧ରେ ଦିନେ ରାଜଗାଙ୍ଗପୁରରୁ ରାଉରକେଲା ଯାଇଥିଲି ପଣ୍ଡିତ ନେହେରୁଙ୍କ ଭାଷଣ ଶୁଣିବାପାଇଁ । ଆମେ ଦୁହେଁ ଦୁଇଟା ସାଇକେଲରେ ବାହାରିଲୁ ସକାଳ ଆଠଟା ବେଳେ । ଦଶଟାରେ ପହଂଚିଲୁ ନେହେରୁ ମୈଦାନ (ଆଇ.ଜି.ଏଚ୍.ସାମନା) ରେ ଏବଂ ସଭାପରେ ପୁଣି ସେଠୁ ବାହାରିଲୁ ୪ଟାରେ ଏବଂ ରାଜଗାଙ୍ଗପୁରରେ ପହଂଚିଲୁ ବୋଧେ ୬ଟାରେ ।

ଏ ସବୁ ବୋଧେ ସମ୍ଭବ ହେଇଥିଲା କେବଳ ମୋର ଖେଳ କସରତ ଯୋଗୁଁ ।



# ଏବେ ରାଉରକେଲା

ମୋ ଚିତ୍ତ ସବୁବେଳେ ଅସ୍ଥିର । କେଉଁ ଗୋଟାଏ ଜାଗାରେ ମୁଁ ସ୍ଥିର ହେଇ ରହି ପାରୁ ନଥାଏଁ । ସିମେଣ୍ଟ କାରଖାନା ଛାଡ଼ି ମୁଁ ଷ୍ଟିଲପ୍ଲାଂଟର ସିକ୍ୟୁରିଟି ବିଭାଗରେ ଯୋଗ ଦେଲି । ଏଥିପାଇଁ ମୋର ଭିଣେଇ ବିଷ୍ଣୁପଦ ମହାନ୍ତି ମୋତେ ଅନେକ ସାହାଯ୍ୟ କରିଛନ୍ତି ।

ତାଙ୍କ ବିନା ଏତକ ସମ୍ଭବ ହେଇ ନଥା'ନ୍ତା । ମୋତେ ପୁଣି ଖାକି ପୋଷାକ ପିନ୍ଧିବାକୁ ପଡ଼ିବ । ପୁଣି ଗୋଡ଼ ଯୋଡ଼ା ସାବଧାନ ପୋଜିସନରେ ସେଲ୍ୟୁଟ ମାରିବାକୁ ହେବ । ଖାକିଟା ମୋତେ ଛାଡୁ ନାହିଁ ଦେଖୁଛି । ଏଠାକୁ ଆସି ଦେଖିଲି ମୋର ପୋଲିସର ପୁରୁଣା ସ୍ୱାଙ୍ଗ ଆକୁଳାନନ୍ଦ ଦ୍ୱିବେଦୀ । ଆଉ କିଛି ପୁରୁଣା ପୁଲିସ ଅଫିସର - ଡେପୁଟେସନରେ ଆସିଥା'ନ୍ତି । ସେଇ ଅସୀମ ଚକ୍ରବର୍ତ୍ତୀ ଓ ଶରତ ମହାନ୍ତି ।

ନୂଆ ସ୍ଥାନ, ନୂଆ ପରିବେଶ, ନୂଆ ମୁହଁ ଭିତରେ ନୂଆ ସମ୍ପର୍କ ମଧ୍ୟ ଗଢ଼ି ଉଠିଲା । ରାଜଗାଙ୍ଗପୁର ଓ ରାଉରକେଲା ଭିତରେ ଫରକ ହେଲା ଗୋଟାଏ କ୍ଷୁଦ୍ର ପରିବେଶ, ଅନ୍ୟଟି ବୃହତ୍ ପରିବେଶ । ଗୋଟିଏ ହେଲା ପ୍ରାଇଭେଟ କମ୍ପାନୀ, ଅନ୍ୟଟି ହେଲା ପବ୍ଲିକ ସେକ୍ଟର । ପ୍ରଚୁର ସ୍ୱାଧୀନତା, ପ୍ରଚୁର ସୁଯୋଗ । ତା'ର କ୍ଷେତ୍ର ସଙ୍କୁଚିତ, ଏହାର କ୍ଷେତ୍ର ବିଶାଳ । ସିମେଣ୍ଟ କାରଖାନାରେ ଦୁଇ ବର୍ଷର ରହଣି ଭିତରେ ଥରେ ମାତ୍ର ଶ୍ରମିକ ଆନ୍ଦୋଳନ ଦେଖିଥିଲି । ଅଥଚ ଏଠି ପ୍ରାୟ ପ୍ରତିଦିନ । ନିରାପତ୍ତା ବିଭାଗ ପାଇଁ ବିରାଟ ସମସ୍ୟା । ନିଜର କିଛି କରିବାର କ୍ଷମତା ନାହିଁ । ପ୍ରତି କଥାରେ ପୋଲିସକୁ ଡାକ । ସିଏ ଯାହା କରିବ । ମୁଁ ଜଏନ କରିବାର (୧୫.୩.୧୯୬୨) କେଇମାସ ପରେ ମୋତେ ସାତନମ୍ବର ସେକ୍ଟରରେ ଇ/୨୯ ନଂ ଘରଟି ମିଳିଗଲା । ଭଲ ଘର । ପବ୍ଲିକ ସେକ୍ଟରରେ ଗୋଟିଏ ପ୍ରଧାନ କଥା ହେଲା କର୍ମଚାରୀ -ମାନଙ୍କ ସୁଖ ସୁବିଧା । ସେତେବେଳେ ପ୍ରାଇଭେଟ ସେକ୍ଟର ସହିତ ପ୍ରତିଯୋଗିତା ପାଇଁ ନେହେରୁଙ୍କ ଅମଳରେ ପ୍ରଥମେ ଆରମ୍ଭ ହେଲା ପବ୍ଲିକ ସେକ୍ଟର ଶ୍ରମିକଙ୍କ ସୁବିଧା ପ୍ରଥମେ । ଘରଟାଏ ମିଳିଗଲା ପରେ ମୁଁ ରାଧାରାଣୀକୁ ଗାଁ'ରୁ ନେଇ ଆସିଲି । ମୋର ପୁଅ ଲୁଲୁ ସେତେ -ବେଳେ ବର୍ଷକରୁ ବି କମ୍ । ଘରଟାତ ଫ୍ରି । ସିକ୍ୟୁରିଟି ଡିପାର୍ଟମେଂଟ ପାଇଁ ଫ୍ରି । ବଜାର ଦର ଏବେର ତୁଳନାରେ ସାମାନ୍ୟ କୁହା ଯାଉଥିଲେ ମଧ୍ୟ ସେତେବେଳେ ସେଇଟା ଥିଲା ଉତ୍କଟ । ମୋ ଜାଣିବାରେ ମୁଁ ଯୋଉ ଦୋକାନୀଠାରୁ ମାସିକ ସଉଦା ଆଣୁଥିଲି ତାକୁ ଦେଉଥିଲି ମାସକୁ ପ୍ରାୟ ୫୦ଟଙ୍କା । ସେଥିରେ ଚାଉଳ, ଡାଲି ଇତ୍ୟାଦି ସବୁ । ମନେଅଛି ଖଟାଲରୁ ଯାଇ କ୍ଷୀର ଆଣୁଥିଲି । ଏକ ଲିଟର ଏକ ଟଙ୍କା । ମୁଁ ଅଧ ଲିଟର ଆଣେ । ଚାଉଳ ମହଣ ଥିଲା କୋଡ଼ିଏ ଟଙ୍କା । ମାଛ ମାଂସ ମଧ୍ୟ ସେଇ ତୁଳନାରେ ପାଂଚ ସାତ ଟଙ୍କା ଭିତରେ । ତଥାପି ମାସ ସରିଲା ବେଳକୁ ପକେଟ ଖାଲି । ଧାର ଉଧାର ବି ହୁଏ ।

ଘରର କଥା ମୋ କାନକୁ ପ୍ରାୟ ଆସେନା । ବାପା ମାଆ ମୋ କଥା ଜାଣନ୍ତି । ମୁଁ ବି ସେମାନଙ୍କ କଥା ଇଚ୍ଛାକରି କାନ ଆଡ଼େଇଦିଏଁ । ଯେତେବେଳେ ଯେମିତି ସୁବିଧା ହୁଏ ପଠାଏଁ । ଭାଇ ଦୂରେଇ ଯିବାଠାରୁ ମୋର ଘର କଥା ଜାଣିବାରେ ଅସୁବିଧା ନଥାଏ । ତେବେ ବାପା ମାଆ ମୋଟା ମୋଟି ଚଳି ଯାଆନ୍ତି । ଅସୁବିଧା ହୁଏନି । ଚିଠିପତ୍ର

ଦିଆନିଆ ଚାଲିଥାଏ । ମୁଁ ମାସେ ଦି ମାସ ରାଧାରାଣୀକୁ ରଖିଲା ପରେ ଥରେ ନେଇ ଘରେ ଛାଡ଼ି ଆସେ ।

ତଥାପି ଅଭାବ ମୋତେ ବାଧୁ ନଥାଏ । ମୋର ମଧ୍ୟ ବ୍ୟସ୍ତ ହେବାର ପ୍ରଶ୍ନ ଉଠେନି । ସବୁ ଦେହ ସୁହା ହେଇ ଯାଇଥାଏ । ଅଭାବତ ମୋର ଚିର ସହଚର । ଏଥିରେ ଭାବିବାର କ'ଣ ଅଛି ? ଏବେ ମୁଁ ବେଳେ ବେଳେ ଭାବେଁ ମୁଁ ଯଦି ସେଇ ଅବସ୍ଥା ଭିତର ଦେଇ ଗତିକରି ନ ଥାଆନ୍ତି ତେବେ ମୋ'ପରି ଅନ୍ୟମାନଙ୍କୁ ଚିହ୍ନୁ ନ ଥାଆନ୍ତି । ଅନ୍ୟମାନଙ୍କୁ ଚିହ୍ନି ନଥିଲେ ମୋ ଗଳ୍ପର ଚରିତ୍ରମାନଙ୍କୁ କୋଉଠୁ ଖୋଜି ପାଆନ୍ତି ? ଗୋଟିଏ ହୃଦୟ ସହିତ ଆଉ ଗୋଟିଏ ହୃଦୟର ମିଳନ ହୁଏ ସେତିକି ବେଳେ ଯେତେବେଳେ ଜଣକର ଦୁଃଖ ଅନ୍ୟ ଜଣକୁ ଆକ୍ରାନ୍ତ କରେ ।

## ସାମ୍ପ୍ରଦାୟିକ ଦଙ୍ଗା - ମଣିଷରୁ ଅମଣିଷ

୧୯୬୪ ମସିହାରେ ମୁଁ ରାଉରକେଲାରେ ଥିବାବେଳେ ଏକ ଭୀଷଣ ସାଂପ୍ରଦାୟିକ ଦଙ୍ଗା ହୋଇଥିଲା ଯାହା ମୋ ଜୀବନର ଏକ ଲୋମ ଟାଙ୍କୁରା ଘଟଣା । ମୁଁ ଦେଖିଲି ହତ୍ୟାର ବିଭିଷିକା । ମୁଁ ଯୁଦ୍ଧ ଦେଖି ନାହିଁ ସତ, କିନ୍ତୁ ଯୁଦ୍ଧ କଥା ପଢ଼ିଚି ଓ ଶୁଣିଛି । ଖୁବ୍ ଛୋଟ ଥିଲାବେଳେ ମାଆ କୋଳରେ ବସି ସେ ମହାଭାରତ ପଢୁଥିବାବେଳେ ସେଥିରେ ଥିବା ଯୁଦ୍ଧର ଛବି ଦେଖିଛି । ସେଥିରେ ଥିବା କଟା ମୁଣ୍ଡର ଛବି ଦେଖିଛି, କିନ୍ତୁ ତାହା ଯେ ମଣିଷକୁ ମଣିଷ ମାରେ ଏବଂ ସେଥିରେ ଲୋକଟାର ମୃତ୍ୟୁ ହେଉଛି ଏ କଥା ବୁଝିବାର ବୟସ ମୋର ସେତେବେଳେ ହେଇ ନଥିଲା । ଛବିଟିକୁ ଛବି ହିସାବରେ ଗ୍ରହଣ କରି ନେଇଥିଲି । ଗୋଟାଏ ସ୍ୱାଭିବିକ ଅବସ୍ଥା ।

ମୁଁ ସେଇ ଛୋଟ ଥିଲାବେଳେ ଦ୍ୱିତୀୟ ବିଶ୍ୱ ଯୁଦ୍ଧର ସାମାନ୍ୟ କିଛି ଅଂଶ ଦେଖିଛି । ମୋ ଗାଁ ପାଖରୁ ମାତ୍ର (ସିଧା ରାସ୍ତାରେ) ୪/୫ କିଲୋମିଟର ଦୂରରେ ଅଛି ଭାରତର ଅନ୍ୟତମ ବିଶାଳ ଯୁଦ୍ଧ ବିମାନଘାଟି ରାସଗୋବିନ୍ଦପୁର ଯାହା ଏବେ ଅବଲୁପ୍ତ ପ୍ରାୟ । ସେଇ ବିମାନ ଘାଟିରେ ମାଟିତଳେ ଯୁଦ୍ଧ ବିମାନ ସବୁ ରହୁଥିଲା । ଅର୍ଥାତ୍ ଉପରୁ ଶତ୍ରୁ ବିମାନରୁ ବୋମା ବର୍ଷଣ ହେଲେ ମଧ ମାଟିତଳେ ଥିବା ବିମାନର କିଛି କ୍ଷତି ହେବନାହିଁ । ଏହି ବିମାନ ଘାଟିରେ ବୋଧେ ଏକା ସଂଗେ ୫୦/୬୦ ବିମାନ ରହି ପାରୁଥିଲା । କାରଣ ସେଉଠୁ ଆମେ ଦେଖିଛୁ ଏକ ସଂଗେ ୩୦ଟି ବିମାନ ଗୋଟିଏ ଭେଳାରେ ପୂର୍ବ ବଙ୍ଗଆଡ଼କୁ ଯାଇଛନ୍ତି । ଆମେ ସବୁ ଧୂଳିଖେଳ ଖେଳୁଥିବାବେଳେ ଅନୁଚ୍ଚ ଆକାଶରେ ଏହି ଭେଳାଗଲେ ପ୍ରବଳ ଶବ୍ଦ ସୃଷ୍ଟି ହେଉଥିଲା । ସେତେବେଳେ ଆମର କୌତୁହଳ ଯେ କିଏ ଠିକ୍ ଭାବରେ ଭେଳାରେ କେତେଟା ବିମାନ ଅଛି ତାକୁ ଗଣି ପାରିବ । ଆମ

ହିସାବ କେବେବି ଠିକ୍ ହେଉ ନଥିଲା । ତେବେ ୩୦ ସଂଖ୍ୟା ପର୍ଯ୍ୟନ୍ତ ଆମେ ପ୍ରାୟ ପହଂଚୁଥିଲୁ (ଆମ ଆକାଶ ଅତିକ୍ରମ କରିବା ସମୟ ଭିତରେ)।

ବିମାନ ସବୁ ବ୍ରହ୍ମଦେଶ ଆଡ଼କୁ ଯାଉଛନ୍ତି ବୋଲି ପରେ ଜାଣିଲୁ । ଜାପାନର ଆକ୍ରମଣ ଓ ସେଥିରେ ଆମ ସୁବାସ ବୋଷଙ୍କ ବାହିନୀ ମଧ୍ୟ ଅଛନ୍ତି ସେ କଥା ମଧ୍ୟ ପରେ ଜାଣିଲୁ । ଏହି ବିମାନଗୁଡ଼ିକ ଯେ ବୋମା ପକେଇ ମଣିଷ ମାରନ୍ତି ସେ କଥା ସେତେବେଳେ ବୁଝି ନ ଥିଲୁ । ପରେ ପଢ଼ି ଆଶ୍ଚର୍ଯ୍ୟ ହେଲି । ସେହି ସମୟରେ ମୁଁ ଦେଖିଥିବା ଏକ ବିମାନ ଦୁର୍ଘଟଣା ମୋର ଏବେବି ମନେ ଅଛି । ମୋର ସେହି ସମୟରେ ବୋଧେ ଚତୁର୍ଥ ଶ୍ରେଣୀ । ରାସଗୋବିନ୍ଦପୁରର ଗୋଟାଏ ଯୁଦ୍ଧ ବିମାନ ଅଭ୍ୟାସ ଉଡ଼ାଣ ସମୟରେ ହଠାତ୍ ବିକଟାଳ ଶବ୍ଦ କରି ମୋ ସ୍କୁଲଠାରୁ ପ୍ରାୟ ଏକ କିଲୋମିଟର ଦୂର ଏକତାଳି ଗାଁରେ ସୁବର୍ଣ୍ଣରେଖା ନଦୀ ବାଲିରେ ଖସି ପଡ଼ିବା ମୁଁ ନିଜେ ଦେଖିଛି । ବିମାନ ନଦୀବାଲି ସ୍ପର୍ଶ କରିବା ଠିକ୍ ପୂର୍ବରୁ ପାଇଲଟ୍ ବାହାରକୁ କୁଦି ପଡ଼ିଥିଲା । ବିମାନଟି ଖସିପଡ଼ିବା ମାତ୍ରେ ସ୍କୁଲର ସମସ୍ତ ପିଲା ଓ ଶିକ୍ଷକ କ୍ଲାସ୍ ଛାଡ଼ି ସେଇ ଆଡ଼କୁ ଦୌଡ଼ିଗଲେ । ସୌଭାଗ୍ୟକୁ ଇଂରେଜ ପାଇଲଟଙ୍କ କିଛି କ୍ଷତି ହୋଇନଥିଲା । ଅଳ୍ପ ସମୟ ପରେ ରାସଗୋବିନ୍ଦପୁର ଆଡୁ ଗୁଡ଼ାଏ ଏଆରଫୋର୍ସ ଜୀପ୍ ସହିତ ପୋଲିସ୍ ମଧ୍ୟ ଚାଲିଆସି ସ୍ଥାନଟିକୁ ଘେରାଉ କରିନେଲା । କିନ୍ତୁ ହେଡମାଷ୍ଟର ପୂର୍ଣ୍ଣାନନ୍ଦ ମିଶ୍ରଙ୍କ ବିଶେଷ ଅନୁରୋଧରେ ସମସ୍ତ ସ୍କୁଲ ପିଲାମାନଙ୍କୁ ବିମାନ ଦ୍ୱାର ମୁହଁରୁ ଭିତର ପଟ ଦେଖିବାକୁ ଅନୁମତି ମିଳିଥିଲା । ତାହାହିଁ ଥିଲା ମୋ ଜୀବନର ଅତି ନିକଟରୁ ପ୍ରଥମ ଉଡ଼ାଜାହାଜ ଦେଖା । ଯେଉଁ ସମୟରେ ସାଧାରଣ ଲୋକେ ପୋଲିସକୁ ଦେଖି ଛାନିଆଁ ହୋଇ ଲୁଚିଯାଉଥିଲେ, ସେତେବେଳେ ପୂର୍ଣ୍ଣାନନ୍ଦ ମିଶ୍ର ଗୋରା ସାମରିକ ଅଫିସରମାନଙ୍କୁ ମନାଇ ଛାତ୍ରମାନଙ୍କ ପାଇଁ ଏ ସୁଯୋଗ ସୃଷ୍ଟି କରାଇବା କମ୍ କଥା ନଥିଲା । ରାସଗୋବିନ୍ଦପୁର ଏୟାରଷ୍ଟ୍ରିପ୍ ସମ୍ବନ୍ଧରେ ବହୁ ବିବରଣୀ ବିଶିଷ୍ଟ ଗବେଷକ ଅନୀଲ୍ ଧୀର ସଂଗ୍ରହ କରିଛନ୍ତି । ଏହି ଦୁର୍ଘଟଣା ୧୩ ମେ ୧୯୪୪ ମସିହାରେ ହୋଇଥିଲା ବୋଲି ସେ କହନ୍ତି ।

ପୃଥିବୀ ଇତିହାସରେ ଯୁଦ୍ଧର ବହୁ ଇତିହାସ ରହିଛି । ପ୍ରଥମାବସ୍ଥାରେ ମଣିଷ ବଂଚିବା ପାଇଁ ଯୁଦ୍ଧ କରୁଥିଲା । ଖାଦ୍ୟ ସଂଗ୍ରହ ତାର ଏକମାତ୍ର ଚିନ୍ତା । ନାରୀ ପାଇଁ ଯୁଦ୍ଧ ମଧ୍ୟ ଇତିହାସରେ ବିରଳ ନୁହେଁ । ଏ ଯୁଦ୍ଧପାଇଁ କୌଣସି ଯୁକ୍ତି ଯୁକ୍ତ କାରଣ ଅଛି ବୋଲି ମୋର ମନେ ହୁଏନା । ଯୁଦ୍ଧ କରି, ଅସଂଖ୍ୟ ମଣିଷକୁ ହତ୍ୟାକରି ନାରୀଟିକୁ ନିଜ ଅକ୍ତିଆରକୁ ନେଇ ଆସିଲେ 'କେଉଁ ଯଶବାନା ଉଡ଼ାଇବ ହେ ।' ବଳପୂର୍ବକ ନାରୀକୁ ଦଖଲକଲେ ସେ ନିଜର ହେବ କି ? ଏହାକୁ ମଣିଷ ମନର ଆଦିମତା ଛଡ଼ା ଆଉ କଣ କୁହାଯିବ ?

କିନ୍ତୁ ସେହି ଆଦିମତାରୁ ମଧ୍ୟ ଯୁଦ୍ଧହୁଏ । କାମୁକତା ମଣିଷ ମନର ଘୋର ଅନ୍ଧକାରର ଜୀବନ୍ତ ଛବିଟିଏ । ସେଥିରୁ ଯୁଦ୍ଧ, ହତ୍ୟା ଓ ରକ୍ତପାତ ହୁଏ । ଆଉ ସେହି ବିଭୀସିକାରୁ ରାଜ୍ୟ ଓ ନିରୀହ ଲୋକମାନେ ସବୁଠାରୁ ବେଶି କ୍ଷତିଗ୍ରସ୍ତ ହୁଅନ୍ତି ।

ପରବର୍ତ୍ତୀ ଅବସ୍ଥାରେ ପୃଥିବୀରେ ଧର୍ମକୁ ନେଇ ବହୁ ଯୁଦ୍ଧ ହୋଇଛି । ଲକ୍ଷ ଲକ୍ଷ ଏପରିକି କୋଟି କୋଟି ଲୋକ ମରିଛନ୍ତି । ଏ ଧର୍ମଟାକୁ ବାସ୍ତବ ଅର୍ଥରେ ଧର୍ମ ବୋଲି କହି ହେବନାହିଁ । ଗୋଟିଏ ମତକୁ ଅନ୍ୟ ଉପରେ ଲଦି ଦେଲେ ଧର୍ମ ପ୍ରତିଷ୍ଠା ହୁଏନାହିଁ । ସଂଖ୍ୟା ବଢ଼େଇବା ଉଦ୍ଦେଶ୍ୟରେ ଯାହା ପ୍ରଚାର ହୁଏ ତାହା ଧାର୍ମିକ ବ୍ୟବସ୍ଥା ନୁହେଁ । ତଥାପି ଧର୍ମକୁ ନେଇ ଯୁଦ୍ଧ ଥିଲା ଓ ଅଛି । ତାକୁ ଏକ ପ୍ରକାରର ମାନସିକ ରୋଗ ନ କହି ଆଉ କ'ଣ କହିବା ?

୧୯୬୪ ଏପ୍ରିଲ ମାସରେ ରାଉରକେଲାରେ କୌଣସି କାରଣ ନଥାଇ ଏହିପରି ଗୋଟାଏ ଦଙ୍ଗା ହୋଇଗଲା, ଯେଉଁଥିରେ ଶହଶହ ସଂଖ୍ୟାରେ ସ୍ତ୍ରୀ, ପୁରୁଷ, ଶିଶୁ, କିଶୋର, ଯୁବକ ଓ ଯୁବତୀଙ୍କୁ ଅତି ବିଭତ୍ସ ଭାବରେ ହତ୍ୟା କରାଗଲା । ହଜାର ହଜାର ସଂଖ୍ୟାରେ ଗୃହଦାହ, ଲୁଟ୍‌ତରାଜ ହେଲା ଯାହାର କାରଣ ଏବେବି ମୁଁ ଖୋଜି ପାଇନାହିଁ ଯଦିଓ ମୁଁ ନିଜେ ତା'ର ପ୍ରତ୍ୟକ୍ଷଦର୍ଶୀ ଓ ପେଶାର ଆବଶ୍ୟକତା ଦୃଷ୍ଟିରୁ ନିଜେ ସତ୍ୟର ଅନୁସନ୍ଧାନ କରିଛି ।

ମୁଁ ସେତେବେଳେ ରାଉରକେଲା ଇସ୍ପାତ କାରଖାନାର ନିରାପତ୍ତା ବିଭାଗର ଜଣେ କର୍ମଚାରୀ । ମୋର ବି ସିଫ୍ଟ ଡିଉଟି ଥିଲା କାରଖାନାର ମେନ ଗେଟ୍‌ରେ । ଦିନ ୨ଟାରେ ମୁଁ ପହଂଚିଲି ଗେଟ୍‌ରେ ଏବଂ ମୋ ଅଧିନରେ ଥିବା ଅନ୍ୟ ୧୦/୧୨ ଜଣଙ୍କୁ ଯେଝା ଜାଗାରେ ରଖିଲା ପରେ ମୁଁ ବସିଲି ମୋ ଅଫିସରେ । ସେତେବେଳକୁ ଲୋକମୁଖରେ କେତେକ କଥା ଶୁଣିବାକୁ ମିଳିଲାଣି । କାରଣ ତା'ର ଯଥେଷ୍ଟ ପୂର୍ବରୁ ପୂର୍ବ ପାକିସ୍ଥାନରୁ ଦଙ୍ଗାଗ୍ରସ୍ତ ଶରଣାର୍ଥୀମାନେ ଭାରତକୁ ପଳାଇ ଆସିବାକୁ ଆରମ୍ଭ କରିଥିଲେ । ସେମାନଙ୍କୁ ଗୋଟାଏ ସ୍ୱତନ୍ତ୍ର ଟ୍ରେନ୍ କଲିକତାରୁ ରାଉରକେଲା ଦେଇ ଦଣ୍ଡକାରଣ୍ୟ ଯାଉଥିଲା । ସେଥିରେ କୁଆଡ଼େ ଦଙ୍ଗାରେ ଆଘାତପ୍ରାପ୍ତ ବହୁ ହିନ୍ଦୁ ଶରଣାର୍ଥୀ ଥିଲେ । ଏଇ ନିଆଁଟା ସ୍ୱାଭାବିକ ଭାବେ କିଛି ସମ୍ବେଦନା ସହିତ ଅସହିଷ୍ଣୁମାନଙ୍କ ଭିତରେ ଉତ୍ତେଜନା ସୃଷ୍ଟିକରି ଥିଲା । ଗୁଜବ ସୃଷ୍ଟିପାଇଁ ଏ ସବୁ ଯଥେଷ୍ଟ ଖୋରାକ ଯୋଗାଇ ଦେଲା । ରାଉରକେଲାରେ ଏ ଗୁଜବ ସୃଷ୍ଟି ପାଇଁ ଦୁଇଟି ଗୋଷ୍ଠୀ ସାହାଯ୍ୟ କଲେ । ପ୍ରଥମରେ ମୌଳବାଦୀ ଗୋଷ୍ଠୀ ; ଦ୍ୱିତୀୟରେ ଭାରତ ବିଭାଜନ ବେଳେ ପାକିସ୍ତାନରୁ ତିକ୍ତ ଅନୁଭୁତି ନେଇ ଭାରତ ପଳାଇଆସିଥିବା ଉଭୟ ପଂଜାବୀ ଓ ବଙ୍ଗାଳୀ ହିନ୍ଦୁ ଯେଉଁମାନେ ଅନେକ ସଂଖ୍ୟାରେ ରାଉରକେଲାରେ ଥିଲେ । ସେମାନେ ତାଙ୍କ ପ୍ରତ୍ୟକ୍ଷ ଅନୁଭୁତି ସହିତ ସତ୍ୟ ପ୍ରତୀତ

ହେଲାଭଳି କିଛି ଗପ ମଧ୍ୟ ମିଶେଇ ଦେଇ ନିଆଁରେ ଘିଅ ଢ଼ାଳିଲେ । ଦିନ ୧୨ଟା ବେଳକୁ ସବୁଠି ଉତ୍ତେଜନାର ନିଆଁ ଜଳିବାକୁ ଆରମ୍ଭ କଲା ।

ରାଉରକେଲା ଏକ ମିଶ୍ର ସଂସ୍କୃତିର ସହର । ରାଉରକେଲା ବଜାର ଠାରୁ ଆରମ୍ଭ କରି ସାରନଗରୀ ପର୍ଯ୍ୟନ୍ତ ମୁସଲମାନଙ୍କ ସଂଖ୍ୟା ବେଶୀ । ଏପଟେ ହମିରପୁର ପଟେ ଖ୍ରୀଷ୍ଟିଆନ ଏବଂ ମଝିରେ ଷ୍ଟିଲ ଟାଉନ ସିପରେ ହିନ୍ଦୁଙ୍କ ସଂଖ୍ୟା ଅଧିକ । ରାଉରକେଲା ମେନ ମାର୍କେଟରେ ଦୁଇଜଣ ବିଶିଷ୍ଟ ବ୍ୟବସାୟୀ, ଜଣେ ହିନ୍ଦୁ ଆଉ ଜଣେ ମୁସଲମାନ । ଉଭୟଙ୍କର ବିଦେଶୀ ମଦ ଦୋକାନ ଥିଲା । ଦୁଇଜଣ ମଧ୍ୟ ପ୍ରଚଣ୍ଡ ପ୍ରତାପଶାଳୀ । ଏମାନଙ୍କ ଛତ୍ର ଛାୟାତଳେ ଥାନ୍ତି ଅପରାଧର ଜନନେତା ବା ମାଫିଆ ଗୋଷ୍ଠୀ । ଇସ୍ପାତ କାରଖାନା ପ୍ରତିଷ୍ଠା ପରଠାରୁ ଏମାନଙ୍କ ବ୍ୟବସାୟ ବଢ଼ିଚାଲିଥିଲା । ବିଶିଷ୍ଟ ଔପନ୍ୟାସିକ ଲକ୍ଷ୍ମୀଧର ନାୟକ ତାଙ୍କ ଉପନ୍ୟାସ 'ମୋ ସ୍ୱପ୍ନର ସହର'ରେ ଏ କଥା ସ୍ଥାନିତ କରିଛନ୍ତି ।

ଦଙ୍ଗାର ଗୁଜବ ଯେତେ ବଢ଼ିଲା ଏମାନଙ୍କ କାର୍ଯ୍ୟକଳାପ ମଧ୍ୟ ସେତେ ବଢ଼ିଲା ।

ପୂର୍ବଦିନ ପୂର୍ବାହ୍ନରେ ଯେତେବେଳେ କଲିକତାରୁ ଶରଣାର୍ଥୀ ଟ୍ରେନ ଆସି ରାଉରକେଲାରେ ପହଂଚିଲା ସେତେବେଳେ ସେମାନଙ୍କୁ ଦେଖିବାକୁ ବହୁଲୋକ ଷ୍ଟେସନ୍ ଯାଇଥିଲେ । କିଛି ସ୍ୱେଚ୍ଛାସେବୀ ସେମାନଙ୍କ ପାଇଁ ଖାଦ୍ୟ ମଧ୍ୟ ନେଇ ଯାଇଥିଲେ । ଏହି ଖାଦ୍ୟଖାଇ ଜଣେ ଶରଣାର୍ଥୀ କୁଆଡ଼େ ଅଚେତ ହୋଇ ପଡ଼ିବାରୁ ହଠାତ ନୂଆ ଗୁଜବଟିଏ ପ୍ରଚାର ହୋଇଗଲା ଯେ ତାକୁ ଜଣେ ମୁସଲମାନ ଜାଣିଶୁଣି ବିଷାକ୍ତ ଖାଦ୍ୟ ଦେଇଥିଲା । ବାସ୍ ଏତିକିରେ ମୁସଲମାନ ବିରୋଧି ହାଓ୍ୱା ଚାରି ଆଡ଼କୁ ମାଡ଼ିଗଲା । ଦଙ୍ଗା ଆରମ୍ଭ ହେଇଗଲା । ମଣିଷ ଆଉ ମଣିଷ ହେଇ ରହିଲାନି । ସେମାନଙ୍କ ମଧ୍ୟରେ ଏଇ ଗୁଜବ ହିଁ ମାନବିକତାକୁ ଅପହରଣ କରିନେଲା । ହତ୍ୟା ଓ ଲୁଟତରାଜ ପ୍ରଚଣ୍ଡ ବେଗରେ ମାଡ଼ି ଚାଲିଲା । ତା' ସହିତ ଗୃହଦାହ ମଧ୍ୟ । ସବୁଠି ଲଙ୍କା କାଣ୍ଡ । ଦଙ୍ଗାକାରୀ ମହାବୀର ହନୁମାନମାନେ ଜୟଜୟ କହି ଆଗକୁ ମାଡ଼ି ଚାଲିଲେ ।

ଦିନ ପ୍ରାୟ ୩ଟା ବେଳେ ଦେଖାଗଲା ରାଉରକେଲା ମେନ ମାର୍କେଟ ଜଳି ନିଆଁ ଆକାଶକୁ ଉଠୁଛି । ଆମ ଭିତରେ ଆତଙ୍କ ସୃଷ୍ଟି ହେଲା । ଅନ୍ୟ ଦିଗରେ ଦେଖାଗଲା କାରଖାନା ଭିତରୁ ଦଳ ଦଳ ଶ୍ରମିକ ବାହାରକୁ ଆସୁଛନ୍ତି । ସେ ସମସ୍ତଙ୍କ ହାତରେ ଲୁହା ହତିଆର । ଜଣକେ ଦୁଇ ତିନିଟା ମଧ୍ୟ । ଆମେ ସେମାନଙ୍କୁ ଗେଟ୍‌ରେ ଅଟକାଇ ଦେଲୁ । କିନ୍ତୁ ସେମାନଙ୍କ ଯୁକ୍ତି ଅକାଟ୍ୟ । 'ଯେମିତି ଭାବରେ ଯାହାସବୁ ସେକ୍ଟର ମାନଙ୍କରେ ଘଟିଥିବା ଶୁଣିବାକୁ ମିଳୁଚି ସେଥିରେ ମୋ ପରିବାର ସୁରକ୍ଷିତ ଅଛନ୍ତି ତ ? ବେଶି ବିଳମ୍ବ ହେଲେ ମୁଁ ରାସ୍ତାରେ ନିରାପଦରେ ଯାଇପାରିବି ତ' ?

ଆମେ ଅଳ୍ପ କେତେଜଣ ଅଣସ୍ତ୍ର ସୁରକ୍ଷା କର୍ମୀ ଶହଶହ ସଂଖ୍ୟାର ସଶସ୍ତ୍ର କର୍ମଚାରୀଙ୍କୁ କେମିତି ଅଟକାଇବା ? ମୁଁ ମେନ୍‌ଗେଟ୍ ଦାୟିତ୍ୱରେ । ମୋର ପ୍ରଥମ କାମ ପୋଲିସକୁ ଖବର ଦେବା, କିନ୍ତୁ ଟେଲିଫୋନ ଅଚଳ । ଆଉ ସେତେବେଳେ ଥାନାରେ ବା ଅଛି କିଏ ? ସମଗ୍ର ରାଉରକେଲା ଜଳୁ ଥିବାବେଳେ ଥାନାରେ ଥିବା ଅଳ୍ପ ସଂଖ୍ୟକ ପୋଲିସ କ'ଣ କରିପାରିବେ ? ଅସହାୟ ସେମାନେ । ନିରବ ଦର୍ଶକ ହେବାକୁ ବାଧ୍ୟ । କେହିକେହି କୁଆଡ଼େ ନିଜଘରେ ନିଜ ପିଲାଛୁଆଙ୍କୁ ଜଗି ବସିଲେ । ତାର ଆଉ ଗୋଟାଏ କାରଣ ହେଲା ସେତେବେଳେ ସମଗ୍ର ରାଉରକେଲାରେ ଥାନା ସଂଖ୍ୟା ୨/୩ଟା ଏବଂ ପୋଲିସ୍ ସଂଖ୍ୟା ବୋଧେ ୫୦/୬୦ ରୁ ବେଶୀ ହେବ ନାହିଁ । ତେଣୁ କିଏ କାହାକୁ ସୁରକ୍ଷାଦେବ ?

ଫଳ ଏଇଆ ହେଲା ଯେ ସେଦିନ ପ୍ରାୟ ଅପରାହ୍ଣ ୪ଟା ସୁଦ୍ଧା ସଂପୂର୍ଣ୍ଣ ଇସ୍ପାତ କାରଖାନାରୁ 'ବି' ଓ 'ଜେନେରାଲ ସିଫ୍ଟି'ରେ କାମ କରୁଥିବା ଅନ୍ତତଃ ୩୦ ହଜାର ଲୋକ (ଠିକାଦାର କର୍ମଚାରୀ ସହ)ପଳେଇ ଆସିବାରୁ କାରଖାନା ପ୍ରାୟ ଖାଲି ହୋଇଗଲା । ସେମାନେ ଯେଉଁ ଅସ୍ତ୍ର ଶସ୍ତ୍ର ନେଇଗଲେ ସେଥିରେ ଟାଉନସିପ୍‌ରେ ହତ୍ୟା ଓ ଲୁଣ୍ଠନ କରିବାକୁ ସୁବିଧା ହେଲା ।

ରାତି ୧୦ଟା ବେଳେ ମୁଁ ଘରକୁ ଫେରିଲି । ମୁଁ ସେତେବେଳେ ସାତ ନମ୍ବର ସେକ୍ଟରରେ ରହୁଥାଏ । ସେତେବେଳେ ଲୁଲୁ ଏକମାତ୍ର ପିଲା । ୨/୩ ବର୍ଷରେ ହେଇଥିବ । ସେମାନେ କିନ୍ତୁ ଗାଁରେ ଥିଲେ । ମୁଁ ଓ ମୋ ସହିତ ଆଉ ଦୁଇଜଣ ମିଶି ଆମେ ରାତିରେ ଘରକୁ ଫେରୁଥିବାବେଳେ ଷ୍ଟାଡ଼ିୟମ ପାଖାପାଖି ରାସ୍ତାରେ ୩/୪ଟା ଶବ ପଡ଼ିଥିବାର ଦେଖିଲୁ । ମନରେ ପ୍ରଚଣ୍ଡ ଭୟ । ଈଶ୍ୱରଙ୍କୁ ଡାକି ଡାକି ଘରେ ପହଂଚିଲି । ପରଦିନ ଦେଖିଲି ବିଭତ୍ସ କାଣ୍ଡ । ମୋ ଘର ସାମନାରେ ଓ ପାଖ ଘରମାନଙ୍କରେ ଥାଆନ୍ତି ସିକ୍ୟୁରିଟି ବିଭାଗ କର୍ମଚାରୀ। ସେଥିରେ ତିନିଟି ମୁସଲମାନ ପରିବାର । ଆମଘର ପାଖକୁ ଲାଗି ଗୋଟିଏ ଲୋଅର ପ୍ରାଇମେରୀ ସ୍କୁଲ୍ । ସେଇଟା ସେତେବେଳେ ଥିଲା ସିକ୍ୟୁରିଟି ଟ୍ରେନିଂ ସ୍କୁଲ୍ । ସେଇଟାକୁ ସେତେବେଳେ ଶରଣାର୍ଥୀ କ୍ୟାମ୍ପ କରିବାକୁ ଅର୍ଡ଼ର ଆସିଲା । ଆମ ପାଖାପାଖି ଏରିଆରେ ଯେତେ ମୁସଲମାନ ଥିଲେ ସେ ସମସ୍ତଙ୍କୁ ସେଠି ଭର୍ତ୍ତିକରି ଦିଆଗଲା ।

ଯେତେବେଳକୁ ଅଧିକ ପୋଲିସ ଆସିଲେ, ବହୁ ସଂଖ୍ୟାର ମୁସଲମାନମାନଙ୍କୁ ଲୀଳା ସିନେମା ହଲ୍‌ରେ ଯାହାକୁ ଏବେ ସିଭିକ୍ ସେଣ୍ଟର କୁହାଯାଉଚି ସେଠାରେ ରଖି ତା ଚାରିପଟେ ସଶସ୍ତ୍ର ବାହିନୀଙ୍କୁ ଜଗେଇ ଦିଆଗଲା । ପରେ ଦଙ୍ଗା ନିୟନ୍ତ୍ରଣ ବାହାରକୁ ଯିବାରୁ ଆର୍ମି ଆସିଲେ । କିନ୍ତୁ ସେତେବେଳକୁ ଆଉ ଥିଲା କ'ଣ ? ଦଙ୍ଗା ସହର ଛାଡ଼ି ଗାଁ ଗଣ୍ଡାକୁ ମାଡ଼ି ଯାଉଥିଲା । ସହଜ ସୁନ୍ଦର ସହରାଂଚଳ ଏକ ପ୍ରକାର ଶ୍ମଶାନରେ

ପରିଣତ ହେଇ ଯାଇଥିଲା । ଦଙ୍ଗା ଯେ ମଣିଷକୁ ନିମିଷକେ ପଶୁରେ ପରିଣତ କରେ ସେକଥା ସେଦିନ ଦେଖିଲି । କେତେ ସହଜରେ ପାଶବିକତା ତାକୁ ଆକ୍ରମଣ କରେ ସେକଥା ଜଣେ ବିଶିଷ୍ଟ ଭଦ୍ରଲୋକଙ୍କ ଘରେ ଦେଖିଲି । ସେ ରହୁଥିଲେ ଅଠର ନମ୍ବର ସେକ୍ଟର ମାର୍କେଟ ବିଲିଡିଂର ଉପର ଘରେ ନିଜ ପରିବାର ସହ । ବେଶ ସଂଭ୍ରାନ୍ତ, ସହରରେ ତାକ ନାଁ ଅଛି । ଠିକ୍ ତାଙ୍କ ପାଖ ଘରେ ଜଣେ ମୁସଲମାନ ଅଫିସର । ତାଙ୍କ ସ୍ତ୍ରୀ ଓ ଝିଅ ଅତ୍ୟନ୍ତ ସୁନ୍ଦରୀ । ଦଙ୍ଗାକାରୀମାନେ ଯେତେବେଳେ ତାଙ୍କ ଘର ଉପରେ ଆକ୍ରମଣ ଯୋଜନା କଲେ, ସେତେବେଳେ ତାଙ୍କ ସ୍ତ୍ରୀ ଓ ଝିଅ ଏଇ ବିଶିଷ୍ଟ ଭଦ୍ରବ୍ୟକ୍ତିଙ୍କୁ ବିଶ୍ୱାସ କରି ତାଙ୍କ ଘରେ ଆଶ୍ରୟ ନେଇଥିଲେ ଏବଂ ସେମାନଙ୍କ ସମସ୍ତ ଗହଣା ତାଙ୍କୁ ଦେଇ ଦେଇଥିଲେ । କିନ୍ତୁ ହଠାତ୍ ସେ ଦୁଇଜଣଙ୍କୁ ହତ୍ୟା କରାଯାଇଥିବା ଖବର ମିଳିଲା । ଦଙ୍ଗା ପରେ ପୋଲିସ ତଦନ୍ତବେଳେ ଜଣାପଡ଼ିଲା ଯେ ଉକ୍ତ ହିନ୍ଦୁ ଭଦ୍ରବ୍ୟକ୍ତି ହିଁ ଦଙ୍ଗାକାରୀମାନଙ୍କୁ ଖବର ଦେଇ ମହିଳା ଦୁଇଜଣଙ୍କୁ ହତ୍ୟା କରାଇଥିଲେ । ମହିଳା ଦୁଇଜଣଙ୍କ ଗହଣା ତାଙ୍କଘରୁ ତଦନ୍ତ ବେଳେ ମିଳିଥିଲା ।

ଦଙ୍ଗା ଶେଷହେଲା । ଆରମ୍ଭ ହେଲା ତଦନ୍ତ ଓ ଥଇଥାନ । ମୁସଲମାନ ମାନଙ୍କୁ ଗୋଟାଏ ସ୍ୱତନ୍ତ୍ର ସେକ୍ଟର ମିଳିଲା । ଏଥିରେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ ମଧ୍ୟସ୍ଥତା କରିଥିଲେ । ଗୋଟାଏ ପବ୍ଲିକ ସେକ୍ଟରରେ ଦଙ୍ଗା କାରଣରୁ ଏତେ ପରିମାଣରେ ମୃତାହତ ହେବାରେ ତାହା ଥିଲା ପ୍ରଥମ, ଯାହାର କାରଣ ବୋଲି କିଛି ନାହିଁ ।

ସରକାରୀ ତଦନ୍ତ କେନ୍ଦ୍ରସରକାର ତରଫରୁ ହେଲା । ପୋଲିସର ଦୁର୍ବଳତା ସହିତ ଗୋଟାଏ ପବ୍ଲିକ୍ ସେକ୍ଟରରେ ସୁରକ୍ଷା ବ୍ୟବସ୍ଥା ମୋଟେ ନଥିବା କଥା ଜଣାପଡ଼ିଲା । ପରେ ସରକାର ସ୍ଥିରକଲେ ପବ୍ଲିକ ସେକ୍ଟରମାନଙ୍କ ପାଇଁ ସ୍ୱତନ୍ତ୍ର ବାହିନୀ ଗଠନହେବ ଏବଂ ତାକୁ ଆଇନ ଗତ କ୍ଷମତା ମଧ୍ୟ ମିଳିବ ।

ସେଇଠୁ ଜନ୍ମହେଲା ସେଂଟ୍ରାଲ ଇଣ୍ଡଷ୍ଟ୍ରିଆଲ ସିକ୍ୟୁରିଟି ଫୋର୍ସ (CISF) ଯାହା ଆଜିକାଲି କେବଳ ପବ୍ଲିକ ସେକ୍ଟର ନୁହେଁ କେନ୍ଦ୍ର ସରକାରୀ ଅନୁଷ୍ଠାନକୁ ମଧ୍ୟ ସଫଳତାର ସହିତ ସୁରକ୍ଷା ଯୋଗାଇ ଆସୁଛି ।

ଗୋଟାଏ କଥା ଏଇଠି କହିବାର ଆବଶ୍ୟକତା ଅଛି ବୋଲି ମୁଁ ଭାବୁଛି । ମଣିଷ ଉପରେ ମଣିଷର ଅତ୍ୟାଚାର ଓ ତା'ର ନ୍ୟାଯ୍ୟ ମାନବିକ ଅଧିକାର ଅପହରଣ ମୋତେ ସବୁବେଳେ ବ୍ୟଥିତ କରିଥାଏ । ଏହା ଏକ ସାଧାରଣ ପ୍ରକ୍ରିୟା । ଏଇଟା ଯେ କେବଳ ମୋତେ ବାଧେ ତା' ନୁହେଁ, ମୋ ଭଳିଆ ଅନ୍ୟମାନଙ୍କୁ ମଧ୍ୟ ବାଧୁଥିବ । ତେବେ ଏ ଜଘନ୍ୟ ଅମାନୁଷିକ ହତ୍ୟାକାଣ୍ଡ କିପରି ଘଟିଲା ? ମଣିଷ ଭିତରେ ପଶୁଟିଏ କିପରି ସବାର ହେଲା ? ପଡୋଶୀ ହିସାବରେ ଦୀର୍ଘଦିନ ଧରି ଚଳି ଆସୁଥିବା ସ୍ନେହ ସରାଗରେ

ନିତିଦିନ ସୁଖ ଦୁଃଖ ବାଣ୍ଟୁଥିବା ମଣିଷଟି ହଠାତ୍ କେମିତି ପଶୁ ପାଲଟିଲା ଏବଂ ସେଇ ଆତ୍ମୀୟ ପଡୋଶୀଟିକୁ ହତ୍ୟାକରି ତା'ର ସର୍ବସ୍ୱ ଅପହରଣ କଲା ? ଏ ବିପରୀତ ମାନସିକତାର ଦୁର୍ଭେଦ୍ୟ ଦୁର୍ଗ ଭିତରକୁ କିଏ ବା ପଶି ପାରିଛି ?

ମୁଁ ତା ଉପରେ ଗଳ୍ପଟିଏ ଲେଖିଛି । ବିଶେଷକରି ରାଉରକେଲାର ଏ ଦଙ୍ଗା ଉପରେ ଲିଖିତ ଗପ 'ଅରଣ୍ୟ ଉତ୍ସବ' ପ୍ରଥମେ ନବପତ୍ରରେ ପ୍ରକାଶ ପାଇଲାପରେ ଏ ଯାଏ ବହୁ ପତ୍ରିକାରେ ବାରମ୍ବାର ପୁନଃମୁଦ୍ରିତ ହେଇ ଏବେ ମୋର ନିର୍ବାଚିତ ଗଳ୍ପ (୧ମ ଭାଗ)ରେ ସ୍ଥାନିତ ହେଇଛି । ପରେ ତାହା ମୋର ଇଂରାଜୀ ବହି M.K. Gandhi and other stories ଏବଂ ହିନ୍ଦୀ ଓ ବଙ୍ଗଳା ସଙ୍କଳନରେ ମଧ୍ୟ ସ୍ଥାନିତ ହୋଇଛି । ମୁଁ ନିରସ୍ତ୍ର ସୈନିକଟିଏ ହେଲେ ମଧ୍ୟ ସାହିତ୍ୟ ହିଁ ମୋର ବଡ଼ଅସ୍ତ୍ର ।



# ପୁରୁଣା ପାଣିରେ

ହଠାତ୍ ମୋର ବଦଳି ହେଲା ପୁରୁଣାପାଣି ଲାଇମ ଷ୍ଟୋନ କ୍ୱାରିକୁ । ରାଉରକେଲାରୁ ପ୍ରାୟ ୩୦ କିଲୋମିଟର ଦୂର । ଚୁନପଥର ଖଣି । ସେଇଟା ବି ରାଉରକେଲା ଷ୍ଟିଲପ୍ଲାଂଟ୍ ଅଧିନରେ ।

ପୁରୁଣାପାଣି ଖଣି ଜାଗାକୁ ବଦଳିକୁ ମୋର ବନ୍ଧୁମାନେ ସହଜରେ ଗ୍ରହଣ କରି ପାରିଲେନି । ସେମାନଙ୍କ ମନରେ ସନ୍ଦେହଟିଏ ସୃଷ୍ଟି ହେଇଥିବ ।

ମୋ ବିରୁଦ୍ଧରେ ଗୋଟିଏ ଅଭିଯୋଗ ହେଲା ଯେ ମୁଁ ଦିନେ 'ବି' ସିଫ୍ଟ ଡିଉଟିରେ ଥିଲାବେଳେ ଜଣେ ପଦସ୍ଥ ଅଫିସର(ଜେନେରାଲ ଫୋରମେନ୍) ତାଙ୍କ କାର୍‌ରେ କିଛି ମୂଲ୍ୟବାନ ଜିନିଷ ବାହାରକୁ ନେବାକୁ ଚେଷ୍ଟା କରୁଥିବାବେଳେ ତାଙ୍କୁ ଗେଟ୍‌ରେ ବିନା ଚେକିଙ୍ଗ୍‌ରେ ଛାଡ଼ିଦିଆ ଯାଇଥିଲା । ପ୍ରକୃତ କଥାଟା ହେଲା ତାଙ୍କ ଗାଡ଼ିର ଡିକି ଖୋଲି ନଥିଲା । ଅଫିସର କହିଲେ ଡିକିର ଚାବି ଅଫିସରେ ଛାଡ଼ି ଆସିଛନ୍ତି । ଜଣେ ପଦସ୍ଥ ଅଫିସର । ତାଙ୍କୁ ଅବିଶ୍ୱାସ କରିବା ସମ୍ଭବ ନୁହେଁ । ନିୟମ ଅନୁସାରେ ବିଶ୍ୱାସ କରିବା ମଧ୍ୟ ଉଚିତ ନୁହେଁ । ମୁଁ ଦ୍ୱନ୍ଦ୍ୱରେ ପଡ଼ିଲି । ମୁଁ ମୋର ଅଫିସର ଇନ୍‌ଚାର୍ଜଙ୍କୁ ଖବର ଦେଲି । ସେ ଆସିଲେ । ଅଫିସରଙ୍କ ସହ କଥାହେଲେ, ତାପରେ ତାଙ୍କୁ ଅଫିସକୁ ଫେରିଯାଇ ଚାବି ଆଣିବାକୁ କହିଲେ । ସେ ତାହାହିଁ କଲେ । ଆମେ ଗାଡ଼ି ଚେକ୍ କରି ଛାଡ଼ିଲୁ । ଏ ସମ୍ପର୍କରେ ମୋର ଅଫିସର ଇନଚାର୍ଜ ଆମ ଜେନେରାଲ ଡାଇରିରେ ନିଜେ ସବୁ କଥା ଲେଖିଲେ ।

କିନ୍ତୁ ପରଦିନ କେହି ଜଣେ ଟେଲିଫୋନ କରି କହିଲେ, ସେହି ଅଫିସର ତାଙ୍କ ଗାଡ଼ିରେ ଗୋଟାଏ 'ପିତଳ ଇନଗଟ' ନେଇ ଯାଉଥିଲେ । କିନ୍ତୁ ଗେଟରେ ନ ଛାଡ଼ିବାରୁ ଫେରି ଆସି ସେ ଇନଗଟକୁ ଯଥା ସ୍ଥାନରେ ରଖି ପୁଣି ଚାଲିଗଲେ ।

ଏଇ କଥାଟା ଆମର ଦୋଷ ଦୁର୍ବଳତା ଓ ଅସାଧୁତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରେ । ମୁଁ ଚମକି ପଡ଼ିଲି । ଇନଗଟର ଦାମ କୁଆଡ଼େ ଦଶ ହଜାର ହେବ । ଏତେ ବଡ଼ ଅଫିସର କ'ଣ ଏପରି ଚୋରି କରିପାରେ ? ଗୋଟିଏ ତଦନ୍ତ ଅବଶ୍ୟ ହେଲା । କାରଖାନାର ଉଚ୍ଚ କର୍ତ୍ତୃପକ୍ଷ ମଧ୍ୟ ବିସ୍ମିତ ହେଲେ । ଗୋଟାଏ ଚହଳ ସୃଷ୍ଟିହେଲା । ତାଙ୍କର ଯୁକ୍ତିହେଲା ତୁମେ ମଧ୍ୟ ଜଣେ ଦାୟିତ୍ୱବାନ୍ ଅଫିସର । ତଦନ୍ତବେଳେ ମୁଁ କହିଲି ଗାଡ଼ିକୁ ଫେରେଇବା ନିଷ୍ପତ୍ତି ମୋର ଅଫିସର ଇନଚାର୍ଜଙ୍କର । ତାଙ୍କ ଲିଖିତ ନିର୍ଦ୍ଦେଶ ଡାଏରିରେ ଅଛି । ମୁଁ ତାଙ୍କୁ ଅମାନ୍ୟ କିପରି କରି ଥା'ନ୍ତି ? କିନ୍ତୁ ସେ ଯୁକ୍ତି ଗ୍ରହଣୀୟ ହେଲାନାହିଁ । ଫଳରେ ଦୁହେଁ ବଦଳି ହେଲୁ । ମୋର ପୁରୁଣାପାଣି ଓ ଅଫିସର ଇନଚାର୍ଜଙ୍କର ସତନା (ମଧ୍ୟ ପ୍ରଦେଶ) ବଦଳି ହେଲା । ମୁଁ ମାନି ନେଲି । ବିଚାରର ଭୁଲ ଯେ ଭୁଲ ଏକଥା ସ୍ୱୀକାର କରିବାକୁ ହେବ । ସିନିଅର ମେନେଜମେଂଟ୍‌ର ଅଫିସରଙ୍କୁ 'ଗୁଡ ଫେଥ'ରେ ବିଶ୍ୱାସ କରି ଛାଡ଼ିଲୁ ଏଇଟା ଗ୍ରହଣୀୟ ହେଲାନାହିଁ । ଆଇନର ଏ ଶବ୍ଦଟା ସେ କ୍ଷେତ୍ରରେ କାମ କଲାନାହିଁ ।

ମୋ ଜୀବନର ପ୍ରଥମ କଳଙ୍କର ଦାଗ ମୋ ଦେହରେ ଲାଗିଲା । ସାମାନ୍ୟ ବିଚାରର ଭୁଲ ଯେ କେତେ ଦାମିକା ହେଇ ପାରେ ମୁଁ ସେଇ ଦିନ ଜାଣିଲି । ଚାରି ବର୍ଷ ପୋଲିସରେ ଚାକିରି କଲି । ଥାନା ଓ ଫାଣ୍ଡିରେ (ଆଉଟ ପୋଷ୍ଟ) କାମ କରିଚି । ଫାଣ୍ଡି ଇନଚାର୍ଜ ଥାଇ ସବାଇ ଘାସ କାଟୁଥିବା ଗରିବ ଆଦିବାସୀମାନଙ୍କୁ ଆରେଷ୍ଟ ନକରି ଛାଡ଼ି ଦେଇଛି । କିନ୍ତୁ ମୋତେ କେହି ଦୋଷ ଦେଇ ନଥିଲେ କି ଅସାଧୁ କହି ନଥିଲେ । କିନ୍ତୁ ଆଜି ?

୧୯୬୫ରେ ମୁଁ ପୁରୁଣାପାଣି ଚାଲି ଗଲି । ଲୁଲୁ ବୋଧେ ତିନି ବର୍ଷର ଓ ଝିଅ ସୁମି ୬/୭ ମାସର । ତାକୁ କାନ୍ଧରେ ପକେଇ ମୁଁ ଯାଇ ପହଂଚିଲି ପୁରୁଣାପାଣିରେ । ମାତ୍ର ୧୪/୧୫ ଜଣ ସିକ୍ୟୁରିଟି ଷ୍ଟାଫ । କାମ ବୋଲି କିଛିନାହିଁ । ପ୍ରାୟ ସବୁବେଳେ ଧର୍ମଘଟ । ଗୋଳମାଳ କିନ୍ତୁ ମୋତେ ନଥାଏ । ଚୋରିର ପ୍ରଶ୍ନ ନାହିଁ ।

ସେତେବେଳେ ପୁରୁଣାପାଣି ଯିବାକୁ ହେଲେ ଏବେ ଯେଉଁଠି ଅଛି ବିଗ୍‌ବଜାର ସେଇଠି ଥିଲା ବସ୍‌ଷ୍ଟାଣ୍ଡ । ସେଇଠୁ ଗୋଟିଏ ସରକାରୀ ବସ୍ ଯାଏ ଦିନ ଆଠଟାରେ । କୁଆଁରମୁଣ୍ଡାରୁ ହାତୀବାଡ଼ି ହେଇ ପୁରୁଣାପାଣି ଯାଏ । ସେ ରାସ୍ତା ଖରାପ ଥିଲେ ବୀରମିତ୍ରପୁର ହେଇଯାଏ । ଆଉ ଗୋଟିଏ ରାସ୍ତା ଅଛି । ଟ୍ରେନରେ ନୂଆଗାଁ ଯାଇ ସେଠୁ ତିନି କିଲୋମିଟର ଚାଲିଚାଲି ଯିବାକୁ ହୁଏ । ରାସ୍ତାରେ ଛୋଟ ନଈଟିଏ ପଡ଼େ ।

ଲୁଲୁର ସେଠି ପାଠ ଆରମ୍ଭ । ତାକୁ ସ୍କୁଲରେ ଭର୍ତ୍ତି କରାଇ ଦେଲି । ଜଣେ ଶିକ୍ଷକଙ୍କୁ ଡାକିଲି ତା'ର ଟିଉସନ ପାଇଁ । ସେ ସନ୍ଧ୍ୟାରେ ଆସନ୍ତି । ମାସ ଶେଷରେ ପଚାରିଲି କେତେ ଦେବି ?

ଦିଅନ୍ତୁ ଯାହା ଦେବେ ।

ମୁଁ ପାଂଚ୍‌ ଟଙ୍କିଆ ନୋଟଟିଏ ବଢ଼ାଇ ଦେଲି ।

ସେ ତାକୁ ନେବାକୁ ନାରାଜ । କହିଲେ କମ ହେଇଗଲା ।

ମୁଁ ଆଉ ପାଂଚ ଟଙ୍କା ଦେଲି ।

ସେ ଖୁସି ହେଇ ଚାଲି ଗଲେ ।

ସପ୍ତାହକୁ ଥରେ ହାଟପାଳି । ଟିସ୍‌କୋ କେମ୍ପରେ ଶନିବାର ଦିନ ହାଟ ବସେ । ଟିସ୍କୋ କେମ୍ପ ମାନେ ସେଥିରେ ମଧ୍ୟ ଟାଟା କମ୍ପାନୀର ଗୋଟାଏ ଖଣିଅଛି । ଚୂନପଥର ସରିବା ଉପରେ । ତା'ର ଦୁଇ ତିନି ଶହ କର୍ମଚାରୀ । ଆମେ ସବୁ ସେହି ହାଟରୁ ପରିବା ଆଣୁ । ଆଦିବାସୀ ଅଂଚଳ । ପରିବା ପ୍ରଚୁର ଥିଲେ ମଧ କିଣିବା ଲୋକ କମ୍ । ଦଶ ଟଙ୍କାର ପରିବା ଦୁଇଟା ବେଗ୍‌ରେ ଭର୍ତ୍ତି ହୋଇ ଯାଉଥିଲା ।

ରମେଶ ମହାନ୍ତି ଥିଲେ ପୁରୁଣାପାଣି ଖଣିର ମେନେଜର । ଜଣେ ଅତ୍ୟନ୍ତ କର୍ମଠ ବ୍ୟକ୍ତି । ଭଲ ସୋସିଆଲ ଏକ୍ଟିଭିଷ୍ଟ । ପୁରୁଣାପାଣିକୁ ବହୁ ପ୍ରକାର ଶ୍ରମିକ ଆନ୍ଦୋଳନ ସତ୍ତ୍ୱେ ନୂଆ ରୂପ ଦେଇ ପାରିଛନ୍ତି । କୁଆଁରମୁଣ୍ଡାରୁ ହାତୀବାଡ଼ି ରାସ୍ତାଟା ବର୍ଷା ଦିନରେ ଅଗମ୍ୟ ହେଇପଡ଼େ । ନିଜ ମାଇନ୍‌ସରୁ ମୋରମ ଶହେ ଖଣ୍ଡେ ଟ୍ରକ ନେଇ ସେଠି ପକାଇ ରାସ୍ତାଟାକୁ ନୂଆ କରିଦେଲେ । ପୁରୁଣାପାଣିରେ ନୂଆ ହାଟ ବସାଇଲେ । ବନ୍ଦଥିବା ରିକ୍ରେସନ ସେଂଟରକୁ ଚାଲୁକଲେ । ଗୋଟେ ପାଠାଗାର (ଗୋପବନ୍ଧୁ ପାଠାଗାର)ନୂଆ ଖୋଲାହେଲା ଏବଂ ମାସକୁ ଥରେ ରାଉରକେଲାରୁ ଟୁରିଂ ସିନେମା ନେଇ (ଆର୍‌.ଏସ୍‌.ପି.ର) ପ୍ରଦର୍ଶନ କରାଗଲା । ମୁଁ ତାଙ୍କର ଏ ଅବଦାନକୁ ସ୍ୱୀକାର କରିବି, ଯେଉଁଥିରେ ମୋର ସହଯୋଗ ଥିଲା ବେଶି । କାମ ନଥିଲେ ଆଉ କଅଣ କରିଥାଆନ୍ତି ।

ପୁରୁଣାପାଣି ଟାଉନସିପର ମାଲିକ କିନ୍ତୁ ଆଉ ଜଣେ । ଦାମ ଆଚାର୍ଯ୍ୟ । ନାମଜାଦା ମଦୁଆ ଓ ଗୁଣ୍ଡା । ଭାଟିମାନଙ୍କର ପ୍ରଭୁ । ଟାଉନସିପର କୌଣସି କାର୍ଯ୍ୟକ୍ରମ ତା' ଦେଇ ହେଇ ପାରେନା । ହାତୀବାଡ଼ି ଆଉଟ ପୋଷ୍ଟ ଇନ୍‌ଚାର୍ଜ ରାୟ ମୋତେ କହିଲେ ଶୃଙ୍ଖଳା ରକ୍ଷାପାଇଁ ଆପଣ ଯାହା କରିବେ ମୁଁ ସମର୍ଥନ କରିବି । ମୁଁ ଦୃଢ଼ ହସ୍ତରେ ଠିଆହେଲି । ଥରେ ଦାମକୁ ନିର୍ଦ୍ଧୁମ ପିଟିଲି । ସିନେମା ଜାଗାରେ ଅଶ୍ଳୀଳ ଭାଷାରେ ପାଟିତୁଣ୍ଡ କରୁଥିଲା ।

ଗୋପବନ୍ଧୁ ପାଠାଗାରରେ ଏବେ ମଧ୍ୟ ଗୋପବନ୍ଧୁ ଜୟନ୍ତୀ ହେଉଛି । ଟାଉନ୍‌ସିପ୍‌ରେ ବେଶ କିଛି ପରିବର୍ତ୍ତନ ଆସିଲା । ଦାମ ଆଚାର୍ଯ୍ୟ ସେଠାକାର ଡମ୍ପର ଅପରେଟର । କିନ୍ତୁ ଦିନେ ବୋଲି ଖଣି ଭିତରକୁ ଯାଏନି । ଏ ଅଭ୍ୟାସ ରାଉରକେଲାରେ ମଧ୍ୟ ଅନେକଙ୍କର ଅଛି । ବିଶେଷକରି କିଛିନେତା ଏମିତି କରି ଥାଆନ୍ତି । ସେମାନେ ଗାଁକୁ ଯାଇଥିଲେ ମଧ୍ୟ ମାସକର ଏଟେନଡେନସ୍ ପାଇଯାନ୍ତି । ଅଖଣ୍ଡ ସ୍ୱାଧୀନତା ପବ୍ଲିକ ସେକ୍ଟରକୁ ଧ୍ୱଂସ ଆଡ଼କୁ ଟାଣି ନେଇଛି । ଏମାନଙ୍କ ପାଇଁ କର୍ମ ସଂସ୍କୃତି ବୋଲି କିଛି ନଥାଏ । ମୋ ଜୀବନରେ ତ ଅନେକ ଗୁଡ଼ିଏ ପବ୍ଲିକ ସେକ୍ଟର ଦେଖିଲି । ସବୁଠି ସେ ଅବସ୍ଥା କେବଳ ତାମିଲନାଡୁକୁ ଛାଡ଼ି । ତା' କଥା ପରେ କହିବି । । ପୁରୁଣାପାଣିରେ ହିଁ ଜନ୍ମହେଲା ସାନଝିଅ ରୁମି ।

ଫେର୍ ସଂଖ୍ୟା ବଢ଼ିଗଲା । ସେଇ ଅନୁସାରେ ସରକାର ଦରମା ବଢ଼ାନ୍ତେ କି ? ଚୀନ ତା'ର ୱାନ ଚାଇଲଡ଼୍ ନର୍ମ କରି ଦେଇଚି । ଏକରୁ ଅଧିକ ହେଲେ ରକ୍ଷା ନାହିଁ । ଏ ଯାଏ ସେଇ ନୀତି ଚାଲିଛି । ଫଳରେ ଦେଶଟା ଏବେ ପୃଥିବୀରେ ପ୍ରଥମ ଶକ୍ତିଶାଳୀ ଦେଶ ହୋଇ ସାରିଲାଣି । ସବୁ କ୍ଷେତ୍ରରେ ସେମାନେ ଆଗୁଆ । ଆଉ ଆମର ଗୋଟିଏ ଦେଶ ଯୋଉଠି ବେଶୀ 'ବାରବାଟୀ' ଚାଷ ହୁଏ । ଯୋଉ ମହାତ୍ମା ଶାସନକୁ ଆସନ୍ତୁ ନା କାହିଁକି ପ୍ରଥମେ କହନ୍ତି "ଏଥର ଆମେ ଚୀନକୁ ଟପିବୁ" ।

ମୁଁ ସେଇ ତିନରେ ହିଁ ରହିଗଲି । କିନ୍ତୁ ଗୋଟିଏ ସୁଖି ପରିବାର । ଅଭାବ ଭିତରେ ମଧ୍ୟ ସୁଖର ସଂସାରଟିଏ ଗଢ଼ି ହୋଇ ପାରେ । ଏଥିପାଇଁ ମୁଁ କାହାକୁ ପ୍ରଶଂସା କରିବି ? ରାଧାରାଣୀ । ଆପତ୍ତି ନାହିଁ, ଅଭିଯୋଗ ନାହିଁ, ମାନ ନାହିଁ କି ଅଭିମାନ ନାହିଁ । ଶୁଖୁଆ ଥିଲେ ଚଳିବ, ମାଛ ଥିଲେ ଚଳିବ । ପ୍ରଥମେ ପ୍ରଥମେ ମୋର ବାଧ୍ୟ ବାଧକତାରେ ମାଂସ ଖାଉଥିଲେ । ଏବେ ସଂପୂର୍ଣ୍ଣ ମାଂସତ୍ୟାଗୀ । ଜଗନ୍ନାଥ ଧର୍ମୀ ହୋଇଗଲେ । ନବ କଳେବରରେ ଶାସ୍ତ୍ର ନୀତି ଅନୁସାରେ ଜଗନ୍ନାଥଙ୍କ ପାଖରେ ମାଛ ବଳିପଡ଼େ । ଅର୍ଥାତ୍ ବାରବର୍ଷରେ ଥରେ । ରାଧାରାଣୀ ସପ୍ତାହରେ ତିନିଥର ମାଛ ଖାଆନ୍ତି । ବୁଧବାର, ଶୁକ୍ରବାର, ରବିବାର ।

ମୁଁ ଭାବୁଚି ମୁଁ ପୁରୁଣାପାଣିରେ ହିଁ ଭଲରେ ଦିନ କଟେଇଚି । ଦୁଇବର୍ଷ ଖଣ୍ଡେ ଥିଲି । ସାହିତ୍ୟ ଚର୍ଚ୍ଚା ଭଲହେଲା । ସେଇଠି ଭେଟିଲି ସପନ ଦେଙ୍କୁ । ଚଟ୍ଟଗ୍ରାମ ନିବାସୀ । ଅସ୍ତ୍ରାଗାର ଲୁଣ୍ଠନ କଥା ବାପାଙ୍କଠାରୁ ଶୁଣିଥିବା କଥା କହିବାବେଳେ ମୁଁ ମୁଗ୍ଧହୋଇ ଶୁଣୁଥାଏ । ଅନେକ ସିନେମା ହୀରୋ ହୀରୋଇନଙ୍କ ନାମଥାଏ ତାଙ୍କ ଜିଭ ଅଗରେ । ତାଙ୍କ ବାପାଥିଲେ ସେତେବେଳେ ପୋଲିସ ଇନସପେକ୍ଟର । ୧୯୪୭ର ଘମାଘୋଟ ଦଙ୍ଗାବେଳେ କେମିତି ସେ ସୀମା ପାରହେଲେ ଅନ୍ୟମାନଙ୍କ ସାଥିରେ ତା'ର ଇତିହାସ ମୋ ପାଇଁ ଗୋଟିଏ ଗୋଇନ୍ଦା ଗପ । ଦେହ ଶୀତେଇ ଉଠେ ।

ସେଇଠି ବି ଭେଟିଲି ଲେଖକ ଓ ନାଟ୍ୟକାର ଦେବାଶିଷ ବେନାର୍ଜୀଙ୍କୁ ଯିଏ ବଲାଇ ମୁଖୋପାଧ୍ୟାୟଙ୍କ (ବନଫୁଲ) ଗପ ସହିତ ମୋତେ ପରିଚିତ କରାଇଥିଲେ । ଗଳ୍ପ ଓ ବଙ୍ଗଳା ନାଟକ ବିଷୟରେ ଆଲୋଚନାରେ ମୋର ଏଇଠି ମନେପଡ଼େ ମହାନ୍ ବିପ୍ଲବି କବି ନଜରୁଲଙ୍କୁ । ଗୋଟାଏ ବିରାଟ ପ୍ରତିଭା । ସେ ଲେଖିଥିଲେ -

ହେ ଦାରିଦ୍ର୍ୟ, ତୁମେ ମୋତେ କରିଛ ମହାନ୍
ତୁମେ ମୋତେ ଦେଇଅଛ ଖ୍ରୀଷ୍ଟର ସମ୍ମାନ ।
କଣ୍ଟକ ମୁକୁଟ ଶୋଭା ଦେଇଛ ତାପସ !
ଅସଂକୋଚ ପ୍ରକାଶର ଦୁରନ୍ତ ସାହସ,
ଉଦ୍ଧତ ଉଲଙ୍ଗ ଦୃଷ୍ଟି, ବାଣୀ କ୍ଷୁରଧାର,
ବୀଣା ମୋର ଶାପେ ତବ ହେଲା ତରବାର ।

\+ + + +

(ନଜରୁଲ ସଂଚୟନ । ପୃଷ୍ଠା-୯୧
ଅନୁବାଦ -ନଳିନୀ ଦେବୀ ରାଉତରାୟ)

ସୁଖର ଘର ହେଉ ବା ଦୁଃଖର ହେଉ ଘର ଚଳାଇବାର ଗୋଟାଏ ଅସାଧାରଣ ଦକ୍ଷତା ଥାଏ ନାରୀମାନଙ୍କ ପାଖରେ । ଗୋଟାଏ 'ମେଜିକେଲ ହେଣ୍ଡ' ଈଶ୍ୱର ତାଙ୍କୁ ଦେଇଥାଆନ୍ତି । ଗୋଟାଏ ସବୁ ସମର୍ପି ଦେବାର ମନ ମଧ୍ୟ ଥାଏ ସେମାନଙ୍କର । ନିଜର ପଛେ ପେଟ ପୋଡୁଥାଉ । ରାଧାରାଣୀଙ୍କୁ ଏଇ କେଟେଗୋରିକୁ ନିଆଯାଇ ପାରେ । ମୁଁ ନଜରୁଲଙ୍କ ଜୀବନୀକୁ ବାରମ୍ବାର ପଢ଼ିଛି । ଯେତେଥର ପଢ଼ିଛି ସେତିକି ଆଶ୍ୱାସନା ପାଇଛି । ସନ୍ଧ୍ୟା କଟୁଥିଲା ଦେବାଶୀଙ୍କ ଘରେ । ସେ ହିଁ ମୋତେ ଆଣି ଦେଇଥିଲେ ବନଫୁଲର 'ଶହେ ଗଳ୍ପ ସଙ୍କଳନ' । କିଏ ନେଇଗଲା କେଜାଣି । ଅମୂଲ୍ୟ ଗ୍ରନ୍ଥଟିଏ । ମୁଁ ସେଥିରୁ କେତୋଟି ଗପକୁ ଅନୁବାଦ କରିଥିଲି । ତାଙ୍କ ଧାରାକୁ ଅନୁସରଣ କରିବାକୁ ଚେଷ୍ଟା କରିଥିଲି । ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ଉପରେ ଦୁଇ ତିନିଟି ଗପ ମଧ୍ୟ ଲେଖିଛି । ପୁରୁଣାପାଣିକୁ ବଦଳି ମୋର ଆଶୀର୍ବାଦ ହେଲା । ଯୋଉମାନେ ଅଭିଶାପ ବୋଲି ଭାବିଥିବେ, ତାଙ୍କୁ କ'ଣ କହିବା ?

ମୁଁ ସେଠୁ ଫେରିବାକୁ ଇଚ୍ଛାକରି ନଥିଲେ ମଧ୍ୟ ଫେରିଲି ଦୁଇ ବର୍ଷରୁ କମ୍ ସମୟ ଭିତରେ । ପୁଣି ସେହି ଏକା କଥା । ପୁଣି ସେହି ସିଫ୍ଟ ଡ୍ୟୁଟି ।

# ଗୋଇନ୍ଦା ବିଭାଗରେ କାମ - ମିଛ ଓ ସତ ମଝିରେ

ମୋର ଯୋଉଦିନ ଇଣ୍ଟେଲିଜେନ୍‌ସ ଉଇଙ୍ଗକୁ ବଦଳି ହେଲା, ମୁଁ ସେତେବେଳେ ଅର୍ଡ଼ର ଦେଖି ଆଶ୍ଚର୍ଯ୍ୟ ହେଲି । ସେତେବେଳେ ଚିତ୍ତରଞ୍ଜନ ପଟ୍ଟନାୟକ ଥିଲେ ସିନିଅର ସିକ୍ୟୁରିଟି ଅଫିସର। ସେ ହିଁ ଡ଼ିପାର୍ଟମେଂଟ୍ ମୁଖ୍ୟ । ତାଙ୍କ ପୂର୍ବରୁ ସବୁବେଳେ ଜଣେ IPS ଅଫିସର ଓଡ଼ିଶା ସରକାରଙ୍କ ଠାରୁ ଡ଼େପୁଟେସନ୍‌ରେ ଆସି ଡ଼ିପାର୍ଟମେଂଟ୍ ମୁଖ୍ୟ ଭାବରେ ଥାଆନ୍ତି । ସବୁ ପବ୍ଲିକ ସେକ୍ଟରରେ ତାହାହିଁ ବ୍ୟବସ୍ଥା । ଦୁର୍ଗାପୁର, ଭିଲାଇ ପ୍ରଭୃତି ସବୁଠି ସେଇ ବ୍ୟବସ୍ଥା । ଚିତ୍ତବାବୁ ସିକ୍ୟୁରିଟି ମୁଖ୍ୟ ହେବାଦ୍ୱାରା କିଛି ସିନିଅର ଅଫିସର ଆପତ୍ତି କଲେ ଏବଂ ଏ ଅଭିଯୋଗ ସେତେବେଳ HSL (ଏବେ ଯୋଉଟା SAIL)ର ହେଡ଼ ଅଫିସକୁ ଗଲା । ମିନିଷ୍ଟ୍ରିକୁ ମଧ୍ୟ ଗଲା । ଫଳରେ ସେଠି ଏହା ଏକ ନୀତିଗତ ପ୍ରଶ୍ନ ହେଇଉଠିଲା ।

ଏଇଟା ହେଉଛି ସେଇ ସମୟ ଯେତେବେଳେ କେନ୍ଦ୍ର ସରକାର ପବ୍ଲିକ ସେକ୍ଟରମାନଙ୍କ ସିକ୍ୟୁରିଟି ବିଭାଗ ପାଇଁ ସଶସ୍ତ୍ର ବାହିନୀଟିଏ ଗଠନ କରିବା କଥା (୧୯୬୪ର ସାମ୍ପ୍ରଦାୟିକ ଦଙ୍ଗା ପରିପେକ୍ଷୀରେ) ଚିନ୍ତା କରୁଥିଲେ । ବିଲ୍‌ଟିଏ ପାର୍ଲାମେଣ୍ଟରେ ପାଶ ହେଲା ୧୯୬୮ ରେ । କିନ୍ତୁ ବିରୋଧିଦଳ କୋର୍ଟକୁ ଯିବାରୁ ତାହା କାର୍ଯ୍ୟକାରୀ ହେଇପାରିଲା ନାହିଁ । ସାଧାରଣରେ ଗୋଟାଏ ଧାରଣା ସୃଷ୍ଟିହେଲା ଯେ ହୁଏତ ତାହା ବାତିଲ ହେଇଯିବ । ଅନ୍ୟଦିଗରେ ସେତିକିବେଳେ ଓଡ଼ିଶାରୁ କୌଣସି ସିନିଅର IPS ଅଫିସର ରାଉରକେଲା ଷ୍ଟିଲପ୍ଲାଂଟ୍‌କୁ ଡ଼େପୁଟେସନରେ ଆସିବାକୁ ରାଜି ନଥିଲେ । ଫଳରେ ଚିତ୍‌ତବାବୁ ସେ ସୁବିଧା ନେଇ ସିନିଅର ସିକ୍ୟୁରିଟି ଅଫିସର ହେଇଗଲେ, ଅନ୍ୟ ଚାରି ପାଂଚ ଜଣଙ୍କୁ ସୁପରସିଡ୍ କରି । ଚିତ୍ତବାବୁଙ୍କ ସମୟରେ ହିଁ ତାଙ୍କ ଭିଣୋଇ ସଚ୍ଚିଦାନନ୍ଦ ପଟ୍ଟନାୟକ କେନ୍ଦ୍ର ସରକାରଙ୍କ Asst. Central Intelligence Officer (ACIO) ପଦ ଛାଡ଼ି RSP ରେ ସିନିଅର ଇନସିପେକ୍ଟର ପଦରେ ଯୋଗଦେଲେ । ଇତି ମଧ୍ୟରେ ଜଣେ ପୋଲିସ ଇନ୍‌ସପେକ୍ଟରଙ୍କ ପୁଅ ମଧ୍ୟ ବିନା ଇଣ୍ଟରଭିଉରେ ସିଧା ଇନ୍‌ସିପେକ୍ଟର ପଦରେ ଜଏନ୍ କଲେ । ଫଳରେ ଡ଼ିପାର୍ଟମେଂଟ୍ ଭିତରେ ଅସନ୍ତୋଷ କୁହୁଳିବାକୁ ଲାଗିଲା । ଠିକ୍ ଏଇ ସମୟରେ ୧୯୬୯ ଅଧାଅଧି ବେଳକୁ ମୁଁ ଓ ଆଉ ୩/୪ ଜଣ ଇଣ୍ଟେଲିଜେନ୍ସ ଉଇଙ୍ଗକୁ ବଦଳି ହେଲୁ ।

ମୁଁ ଗୋଟିଏ ଦିଗରୁ ଖୁସି ହେଲି ଯେ ମୋତେ ଆଉ ପୋଷାକ ପିନ୍ଧିବାକୁ ପଡ଼ିବ ନାହିଁ କି ସିଫ୍ଟ ଡ଼ିଉଟି ମଧ୍ୟ କରିବାକୁ ପଡ଼ିବ ନାହିଁ । କାମରେ ସାଧାରଣ ଜନତାଙ୍କ ସହ ମିଶି ହେବ । ମୁଁ ଏଥିରେ ଖୁସି ହେଲି ସତ, କିନ୍ତୁ ଦେଖିଲି ଏ କାମରେ ଡିଉଟି ଆୱାରର

ସୀମା ନାହିଁ, କାରଣ ୧୯୬୯ ବେଳକୁ କାରଖାନାରେ ଶ୍ରମିକ ସମସ୍ୟା କ୍ରମାଗତ ବଢୁଥାଏ । କାରଖାନା ଭିତରେ ଓ ବାହାରେ ଶ୍ରମିକ ଅଶାନ୍ତି ପ୍ରାୟ ଲାଗିଥାଏ। ଖାଲି ରାଉରକେଲାରେ ନୁହେଁ, ସବୁ ପବ୍ଲିକ ସେକ୍ଟରରେ ଏକା ଅବସ୍ଥା । ଦେଶର ରାଜନୈତିକ ଅସ୍ଥିରତା ସହିତ ଏହା ସଂପୃକ୍ତ। ଅନେକ ସମୟରେ ଶ୍ରମିକ ଅଶାନ୍ତି ସହିତ 'ଘେରାଓ' ଓ ବେଳେବେଳେ ହିଂସାକାଣ୍ଡ ମଧ୍ୟ ଘଟେ । ଏସବୁ ଆମକୁ ଅସୁବିଧାରେ ପକାଏ। କାରଣ ଆମର ଆଇନଗତ କ୍ଷମତା ନଥାଏ । ତେଣୁ ସବୁବେଳେ ପ୍ରତ୍ୟେକ କଥାରେ ପୋଲିସ ଉପରେ ନିର୍ଭର କରିବାକୁ ପଡ଼େ ।

ଆମ ଇଣ୍ଟେଲିଜେନ୍ସ ଉଇଙ୍ଗର ସେ ଦାୟିତ୍ୱ ନଥିଲେ ମଧ୍ୟ ଆମକୁ ସବୁବେଳେ ସ୍ପେସାଲ ବ୍ରାଂଚ୍, ଡ଼ି.ଆଇ.ବି. ଓ ସେଣ୍ଟ୍ରାଲ୍ ଇଣ୍ଟେଲିଜେନ୍ସ ଅଫିସ ସହିତ୍ ସମ୍ପର୍କ ରଖିବାକୁ ପଡ଼େ । ଏ କାମରେ ରାଜନେତା, ୟୁନିୟନ ନେତା, ସମ୍ବାଦପତ୍ର ପ୍ରତିନିଧି ଏବଂ ବିଶେଷ କରି ଷ୍ଟିଲ୍‌ପ୍ଲାଂଟର ଅଫିସର ଓ କର୍ମଚାରୀଙ୍କ ସହିତ ସମାନ ସମ୍ପର୍କ ଜରୁରୀ । ପ୍ରଥମ ପଦକ୍ଷେପରେ ମୁଁ ଦୁଇଟା କଥା ଦେଖିଲି - ପ୍ରଥମରେ ସମସ୍ତଙ୍କ ଭିତରେ ମୋର ପଦ ମର୍ଯ୍ୟାଦା ଅନେକ ବଢ଼ି ଯାଇଥିବା ଅନୁଭବ କଲି, କିନ୍ତୁ ଅନ୍ୟ ଦିଗରେ ମୋର ଯେଉଁମାନଙ୍କ ସହ ଲେଖକ ହିସାବରେ ବା ଅନ୍ୟ କୌଣସି ବିଷୟରେ ଘନିଷ୍ଠ ବନ୍ଧୁତା ଥିବା ମନେ ହେଲା ସେମାନେ ଯେମିତି ମୋତେ ଦେଖି ସଂକୁଚିତ ହେଇଯାଉଛନ୍ତି । ଗୋଟାଏ ଭୟମିଶା ସମ୍ପର୍କ, ଯାହାମୋତେ ମୋଟେ ଭଲ ଲାଗୁ ନ ଥିଲା । କିନ୍ତୁ ଉପାୟ କିଛି ନ ଥିଲା । ମୋର କଲଚରାଲ ଏକାଡ଼େମୀର ବନ୍ଧୁମାନେ ପ୍ରାୟତଃ ବାମପନ୍ଥୀ ଚିନ୍ତାଧାରା ପୋଷଣ କରନ୍ତି । ବାଣୀପଦ ଦାଶ, ବ୍ରଜ ବଲ୍ଲଭ ପ୍ରଧାନ SUCI ର ସମର୍ଥକ । କିନ୍ତୁ ଏମାନେ ବାମପନ୍ଥୀ ସାହିତ୍ୟ ଭଲଭାବରେ ଆଲୋଚନା କରି ପାରୁ ଥିଲେ । କଲ୍‌ଚରାଲ ଏକାଡ଼େମୀ ପ୍ରଥମେ ସାପ୍ତାହିକ ସାହିତ୍ୟ ଆସରରୁ ଆରମ୍ଭ ହେଇଥିଲା । ପ୍ରତି ରବିବାର ସନ୍ଧ୍ୟାରେ ବନ୍ଧୁମାନଙ୍କ ଘରେ ତଳେ ମସିଣା ପକେଇ ବସିଯାଉ । ବାଣୀପଦ ଓ ବ୍ରଜବଲ୍ଲଭ ଭଲ ଥିଓରିଟିସିଆନ । ତାଙ୍କ ସହିତ ହରେକୃଷ୍ଣ ଦାସ ମଧ୍ୟ । ମୁଁ ଯେ ଏମାନଙ୍କ ଦ୍ୱାରା ପ୍ରଭାବିତ ହେଇଛି ଏ କଥା ଅସ୍ୱୀକାର କରି ହେବ ନାହିଁ । ପରବର୍ତ୍ତୀ ଅଧ୍ୟାୟରେ ମୁଁ ଏକଥା ଭଲ ଭାବରେ ଲେଖିବି ।

ଗୋଇନ୍ଦା ବିଭାଗକୁ ଆସିଲା ପରେ ଯେତେବେଳେ ଡ଼ିୟୁଟି ଡ଼ିଷ୍ଟ୍ରିବ୍ୟୁସନ ହେଲା ମୋତେ ସେତେବେଳେ ବାମପନ୍ଥୀ ଟ୍ରେଡ୍ ଇଉନିଅନ ଦଳର ଦାୟିତ୍ୱ ଦିଆଗଲା । ମୁଁ ଏଥିପାଇଁ ଚିନ୍ତାରେ ପଡ଼ିଲି । ବନ୍ଧୁମାନଙ୍କ ସହିତ ମୋର ସମ୍ପର୍କ ଛିନ୍ନ ହେବ କି ? ସେମାନେ ସବୁ ଦୂରେଇ ଯିବେ କି ? ସ୍ୱାଭାବିକ ଭାବେ ଏକାଡ଼େମୀ ସହିତ ମୋର

ସମ୍ପର୍କ ବାଧା ପାଇବ କି ? ସେଇଟା ମୋତେ ବେଶୀ ବାଧିଲା । ତାର କାରଣ ମୁଁ ସେତେବେଳକୁ ବୁଝିଯାଇଥିଲି ଯେ ସାମାଜିକ ବାସ୍ତବବାଦର ସାହିତ୍ୟ ହିଁ ପ୍ରକୃତ ସାହିତ୍ୟ । ତାର ବିକଳ୍ପ ନାହିଁ । ମୁଁ ଏ ପରିବର୍ତ୍ତିତ ପରିସ୍ଥିତିରେ ଦୁଇଟି ଭିତରେ ଭାରସାମ୍ୟ ରକ୍ଷା କରିବାକୁ ଚେଷ୍ଟା କଲି । ବନ୍ଧୁମାନଙ୍କ ସାଥିରେ ଦେଖାହେଲେ ମୁଁ ମୋର ପେଷାଗତ କଥା ମୋଟେ ଆଣେ ନାହିଁ । କିନ୍ତୁ ସେତେବେଳେ ମୋତେ ସାହାଯ୍ୟରେ ହାତ ବଢ଼େଇଲେ ବାଣୀପଦ ଦାଶ । ସେ କହିଲେ ମୁଁ ସାଧାରଣ ଭାବେ ଯେତିକି ଖବର ଦେବାର କଥା ସେତିକି ଦେବି । ତା'ଠୁ ବେଶୀ ନୁହେଁ । ମୋ ଜାଣିବାରେ ସେ ସେତେବେଳେ ପାର୍ଟିର ସଦସ୍ୟ । ଏପରି ପାର୍ଟି ପାଇଁ ଉତ୍ସର୍ଗୀକୃତ ମଣିଷ ମୁଁ ଦେଖି ନାହିଁ । ତାଙ୍କର ସମଗ୍ର ପରିବାର ଏବେ ପୂର୍ଣ୍ଣ ସମୟ ବ୍ୟୟ କରି ପାର୍ଟିର କାମ କରୁଚନ୍ତି । କିନ୍ତୁ ତାଙ୍କ ସହିତ ସମ୍ପର୍କ ବାଧା ପାଇବା ଭୟରେ ମୁଁ ତାଙ୍କୁ ଦିନେ ବୋଲି କିଛି ପଚାରି ନାହିଁ । ସୁଖର କଥା ସେ ବନ୍ଧୁତା ଏବେ ମଧ୍ୟ ଅତୁଟ ଅଛି, କେବଳ ଲେଖକ ହିସାବରେ କ୍ୱଚିତ ଦେଖା ହୁଏ । ମୁଁ ମୋ କାମ ପାଇଁ ଭିନ୍ନ ବ୍ୟବସ୍ଥା କଲି । ଯାହା ଦିନେ ଏକାନ୍ତ ଗୋପନୀୟ ଥିଲା ତାକୁ ଏବେ ମଧ୍ୟ ପ୍ରକାଶ କରି ହେବ ନାହିଁ ।

ନିରାପତ୍ତା ବିଭାଗରେ ଗୋଏନ୍ଦା ବିଭାଗର ପ୍ରଧାନ କାମ ହେଲା ଶ୍ରମିକ ସଂସ୍ଥାର କାରଖାନା ବିରୋଧି ଯାହା ଉତ୍ପାଦନରେ ବାଧା ସୃଷ୍ଟି କରିବ ସେ ଖବର ସଂଗ୍ରହ କରିବା । ରାଜନୀତି ସହିତ ତାର ସମ୍ପର୍କ ଅତି ସାମାନ୍ୟ । ଗୋଟାଏ ଆପେକ୍ଷିକ ସମ୍ପର୍କ ମାତ୍ର । ତେଣୁ ଟ୍ରେଡ଼୍ ୟୁନିୟନର (ବାମପନ୍ଥୀ) ଖବର ସଂଗ୍ରହ ମୁଁ ଭିନ୍ନ ଉପାୟରେ କରେ । ଏସବୁ ବିଷୟରେ ଆମର ତାଲିମ୍ ନ ଥିଲା । କେବଳ ଦୁଇଜଣ ଅଭିଜ୍ଞ ଅଫିସର ଗଗନ ପଟ୍ଟନାୟକ ଓ ନୂଆ ଯୋଗ ଦେଇଥିବା ସଚ୍ଚି ପଟ୍ଟନାୟକଙ୍କ କିଛି ଶିକ୍ଷାକୁ ଆମେ ପାଥେୟ କରିଥିଲୁ ।

ଆମ ଇଣ୍ଟେଲିଜେନ୍ସ ବିଭାଗ ବାସ୍ତବରେ କେବଳ ଟ୍ରେଡ଼୍ ୟୁନିଅନ କି ତା'ର ପଲିଟିକେଲ ଖବର ସଂଗ୍ରହ କରୁ ନ ଥିଲା। ତା ସହିତ କ୍ରାଇମ ଇଣ୍ଟେଲିଜେନ୍ସ କାମ ମଧ୍ୟ ଦେଖୁଥିଲା। ତେଣୁ ବସ୍ତୁତଃ ଆମର କାମ ଦୁଇ ଭାଗରେ ବିଭକ୍ତ ଥିଲା। କାରଖାନା ଭିତରେ ଦୁର୍ଘଟଣା ଓ ତାର କାରଣ ଅନୁସନ୍ଧାନ ମଧ୍ୟ ତା ଭିତରେ ଆସୁଥିଲା। କାରଣ ଦୁର୍ଘଟଣା ଅବହେଳା ଜନିତ କି ଇଚ୍ଛାକୃତ (sabotage ଅର୍ଥରେ) ତାର ଅନୁସନ୍ଧାନ ମଧ୍ୟ ତା ଭିତରେ ଆସୁଥିଲା। ଏଥିରେ ବୈଷୟିକ ଜ୍ଞାନର ଆବଶ୍ୟକତା ମଧ୍ୟ ଥିଲା। କେବଳ ଅଭିଜ୍ଞତାରୁ ମୁଁ ଆଗେଇ ଯାଇଥିଲି ।



# ଦେଶୀ ମଦ ଭାଟିରେ କେତୋଟି ଘଣ୍ଟା

ମୁଁ ଇଣ୍ଟେଲିଜେନ୍ସ ଉଇଙ୍ଗରେ ଜଏନ କଲା ପରେ ମୋତେ ସାହାଯ୍ୟ କରିବାପାଇଁ ଜଣେ ସିନିଅର ଗାର୍ଡ୍‌କୁ ଦିଆଯାଇଥିଲା । ତାଙ୍କ ନାମ କାହ୍ନୁଚରଣ ରାୟ । ସେ ଡ଼ିପାର୍ଟମେଂଟରେ ଦଶବର୍ଷ ହେଲା ଅଛନ୍ତି । ଜଣେ ପୋଖତ ବ୍ୟକ୍ତି । ଆଙ୍ଗୁଳି ଟିପରେ କହି ଦେଇପାରନ୍ତି ସାରା କାରଖାନାର ଖବର । କେଉଁଠି କ'ଣ ହେଉଚି ବା ହେବାକୁ ଯାଉଛି । ଆମେ ଆଶ୍ଚର୍ଯ୍ୟ ହେଉ । ସେ କୁଆଡ଼େ ଘରେ ବସି ଯୁଦ୍ଧକ୍ଷେତ୍ର ଦେଖିପାରନ୍ତି ଏବଂ ସେ ସବୁ ଅନ୍ଧ ମହାରାଜାଙ୍କୁ କହି ପାରନ୍ତି । ଆମ କାହ୍ନୁ ରାୟଙ୍କ ଠାରେ ସେଇ କ୍ଷମତା ଥିବାର ମୁଁ ଦେଖିଲି ।

ମୁଁ କାହ୍ନୁ ରାୟକୁ ନେଇ କାରଖାନା ବୁଲି ବାହାରିଲି । ଦୁହେଁ ଦୁଇଟି ସାଇକେଲରେ । ମୁଁ ଦେଖିଲି ଅଫିସର ଠାରୁ ସାଧାରଣ କର୍ମଚାରୀ ଯାଏ ସମସ୍ତେ ତାକୁ ନମସ୍କାର କରୁଛନ୍ତି । ବୋଧେ କାରଖାନାର ଜଣେ ବଡ଼ ଅଫିସର ମଧ୍ୟ ରାସ୍ତା ଘାଟରେ ଏତେ ସମ୍ମାନ ପାଏ ନାହିଁ । କାହ୍ନୁ ମୋତେ ସେମାନଙ୍କ ସହିତ ପରିଚୟ କରାଇ ଦେଉଥାଆନ୍ତି । ଆମେ ଯାଇ ଗୋଟାଏ କେଣ୍ଟିନରେ ପହଂଚିଲୁ । ସେତେବେଳେ କାରଖାନା ଭିତରର ସବୁ କେଣ୍ଟିନ କମ୍ପାନୀର । କେଣ୍ଟିନ୍‌ରେ ବରା, ଆଳୁଚପ, ସିଙ୍ଗଡ଼ା ଓ ଚା ପ୍ରତ୍ୟେକର ଦାମ ୫ ପଇସା । ଲଂଚ୍ ସମୟରେ ଯୋଉ ମିଲ୍ ମିଳେ, ଭାତ, ଡ଼ାଲି, ତରକାରୀ ମାତ୍ର ୫୦ ପଇସା । ଆଗେ କୁପନଟିଏ କିଣିବାକୁ ପଡ଼େ । ତାକୁ କାଉଣ୍ଟରରେ ଦେଲେ ଯାହା ଚାହିଁବ ତାହା ମିଳିବ ।

କାହ୍ନୁ ମୋତେ ପଚାରିଲେ ସାର୍ କ'ଣ ଖାଇବେ ?

ଖାଲି ଚା ଖାଇବା, ମୁଁ କହିଲି - ନାଇଁ ନାଇଁ କିଛି ଜଳଖିଆ ଦରକାର । ସେ ମୋତେ ଗୋଟାଏ ରୁମ ଭିତରକୁ ନେଇ ବସିବାକୁ କହିଲା ପରେ ସେ କାଉଣ୍ଟରକୁ ଯାଇ ଜଣକୁ କଅଣ କହିଲା । ସେଥିରୁ ଜଣେ ଦୁଇଟା ପ୍ଲେଟରେ ଗରମ ବରା ଓ ଆଳୁଚପ ୨ଟା ଲେଖାଏଁ ଓ ଚା' ନେଇ ଆସିଲା ।

ସାର ଖାଆନ୍ତୁ ।

ଖାଇ ସାରିଲା ପରେ କହିଲେ ଚାଲନ୍ତୁ ।

ମୁଁ କାବା । ତାଙ୍କୁ ଅନେଇଲି ।

ସେ କହିଲେ, ଚାଲନ୍ତୁ । ତାର ହିସାବ ପରେ ହେବ ।

ଆଉ ଦିନକର କଥା ।

ସନ୍ଧ୍ୟା ଆଗତ ପ୍ରାୟ, କାରଖାନାରୁ ବାହାରି ମୋର ଘରକୁ ଯିବାର କଥା । ସେ କହିଲେ ଚାଲନ୍ତୁ ଗୋଟେ ଯାଗାକୁ ଯିବା । ଚୋର ଗୁଣ୍ଡାଙ୍କ ଖବର ସେଠୁ ମିଳିବ । ଏକାନ୍ତ ବଶମ୍ବଦ ପରି ମୁଁ ଚାଲିଲି । ନୂଆ ଗୋଏନ୍ଦା କାମ । ସେ ମୋର ଗୁରୁ ।

ଏଇଠି ମୁଁ ମୋର ଏଇ ପ୍ରିୟ ବନ୍ଧୁ ହୁଅନ୍ତୁ ବା କନିଷ୍ଠ ସହକର୍ମୀ ହୁଅନ୍ତୁ କାହ୍ନୁ ରାୟଙ୍କ ସହିତ ଘନିଷ୍ଠ ସମ୍ପର୍କକୁ ଟିକିଏ ତଳକୁ ଖସେଇ ଆଣିବି । ମୋ ଜୀବନର ଏଇ ମହାର୍ଘ ସମୟରେ ତାଙ୍କ ଭିତରେ ଯୋଉ ବିଶେଷ ଚରିତ୍ରଟି ଦେଖିଲି ସେ ବିଷୟରେ ଅନେକ କିଛି ଲେଖିବାର ଥିଲେ ମଧ୍ୟ ମୁଁ ସାମାନ୍ୟ କିଛି ଏଠି ଲେଖୁଚି ମାତ୍ର । ତେଣୁ ମୁଁ ତାଙ୍କ ସମ୍ପର୍କରେ 'ତୁମେକୁ' ଉହ୍ଲେଇ ଆସୁଚି ।

ଆମେ ଯାଇ ପହଂଚିଲୁ ସେକ୍ଟର ଛଅରେ ଥିବା ସେତେବେଳର 'ବସ୍ ଅପରେସନ' ଯୋଉଠି କାରଖାନାର କର୍ମଚାରୀମାନଙ୍କୁ ନେବାଆଣିବା କରିବା ପାଇଁ ପ୍ରାୟ ୨୦/୨୫ ଖଣ୍ଡ ବସ ଥାଏ । ତାକୁ ଗେରେଜ କହିବା ଭଲ, (ସେ ବ୍ୟବସ୍ଥା ଏବେ ଉଠି ଗଲାଣି) ଠିକ୍ ତା'ରି ପଛପଟେ ଗୋଟାଏ ଗଛମୂଳରେ ଝୁମ୍ପୁଡ଼ି, ଅର୍ଦ୍ଧାଲୋକିତ ସ୍ଥାନରେ । ଗୋଟାଏ କାଠ ପଟାର ବେଞ୍ଚ୍ ତିଆରି ହେଇଚି । ଦି'ଜଣ ଲୋକ ବସିଚନ୍ତି । ଗୋଟାଏ ଚୁଲିରେ କିଛି ଛଣା ଯାଉଚି । ଗୋଟାଏ ପ୍ରକାର ଦୁର୍ଗନ୍ଧ ବେଳେବେଳେ ଆସୁଚି । ଲୋକଟାଏ ଆମକୁ ଦେଖିଲା ଏବଂ କାହ୍ନୁକୁ ନମସ୍କାର କଲା । ମୁଁ ଆଶ୍ଚର୍ଯ୍ୟ ।

କାହ୍ନୁ ତାକୁ କହିଲା ସାର୍ ଆସିଛନ୍ତି । କିଛି ଭଲ ଖାଇବାକୁ କର । ମୁଁ ତାକୁ ଅନେଇଲି । ସେ ମୋତେ ଆଖିଠାରରେ ଚୁପ୍‌ଚାପ୍ ବସିବାକୁ କହିଲା ।

କାହ୍ନୁ ତା' ସହିତ ଆଉ କ'ଣ କଥା ହେଲା । ସେ ଲୋକଟି ଦୁଇଟି ଗ୍ଲାସରେ ମଦ ଓ ଦି'ଟା ଶାଳପତ୍ର ଠୁଙ୍ଗାରେ ଗରମ ପକୋଡ଼ି ଓ ସିଝା ଲଙ୍କା ଆଣିଲା । ମୁଁ କାହ୍ନୁକୁ ସେଇ ଠାରରେ କହିଲି ମୋତେ ଏଥିରୁ କ୍ଷମା ଦିଅ । ତେବେ ପକୋଡ଼ି ଠୁଙ୍ଗାଟା ନେଲି । ମୋ ଗ୍ଲାସ୍ ଫେରିଗଲା । ଦେଖିଲି କାହ୍ନୁ ଚଟାପଟ ତାକୁ ପିଇ ଦେଲା, ତା'ପରେ କହିଲା ଚାଲନ୍ତୁ ଯିବା ।

ରାସ୍ତାକୁ ଆସି ସେ ମୋତେ କହିଲା ଏଇଟା ହେଉଚି ଅପରାଧିମାନଙ୍କ ପ୍ରଧାନ ସ୍ଥାନ । କମ୍ପାନୀ ବସ୍‌ର କିଛି ଡ୍ରାଇଭର ସବୁପ୍ରକାର ଅପରାଧ କରିପାରନ୍ତି । ଡ୍ରାଇଭର ଓ ମଦ ଏସବୁକୁ ଅଲଗା କରି ହୁଏନି । ଏବଂ ମଦ ପାଇଁ ଗାଡ଼ିରୁ ତେଲ, ଗାଡ଼ିର ଟାୟାର ଓ ଅନ୍ୟାନ୍ୟ ପାର୍ଟସ ବିକ୍ରୀ ଏଇ ଭାଟି ମାଧ୍ୟମରେ ହୁଏ । ତେଣୁ ଆମ ପାଇଁ ଏଇଟା ଗୋଟାଏ ତୀର୍ଥ କ୍ଷେତ୍ର ! ସେ କହିଲା ଏଇଠି ପାଖରେ ସେ ନାଳ ପାଖ ଝୁମ୍ପୁଡ଼ିରେ ମଧ୍ୟ ଅଛନ୍ତି କିଛି ପେଶାଦାର ବେଶ୍ୟା ।

ମୁଁ ଚମକି ପଡ଼ିଲି । ମୋର ପୋଲିସ ଚାକିରୀର ଗୋଟାଏ ମଜା କଥା ମନେ ପଡ଼ିଲା । ବାରିପଦା ଥାନାରେ ଜଣେ ଏ.ଏସ.ଆଇ ଥାଆନ୍ତି । ବୟସ ତାଙ୍କର ୪୦/୫୦ ହେବ । ସେ ମଝିରେ ମଝିରେ ବେଶ୍ୟାଳୟକୁ ଯାଆନ୍ତି, ସେଠାକୁତ ଦାଗୀ, ଅପରାଧିମାନେ ନିୟମିତ ଆସନ୍ତି । କିନ୍ତୁ ଏ.ଏସ୍.ଆଇ. ବାବୁ ଦୁଇଟି କାମ ପାଇଁ ସେଠାକୁ ଯାଆନ୍ତି । ଚୋର ଡକାୟତଙ୍କ ଖବର ସଂଗ୍ରହ ସହିତ ନିଜର ଯୌନ କ୍ଷୁଧା ମଧ୍ୟ ମେଣ୍ଟାନ୍ତି । ନିର୍ଦ୍ଧାରିତ ହାରରେ ତାକୁ ପଇସା ମଧ୍ୟ ଦିଅନ୍ତି । କିନ୍ତୁ ସବୁବେଳେ ତ ପକେଟରେ ପଇସା ନ ଥାଏ । ତେଣୁ ଗୋଟାଏ ନୂଆ ପ୍ରକାର ସିଷ୍ଟମ ସେ ବାହାର କରି ଥାଆନ୍ତି, ପ୍ରତିଥର ପାଇଁ ନିଜର ତାରିଖ ଓ ଦସ୍ତଖତ ଥିବା ସ୍ଲିପ୍‌ଟିଏ ତାକୁ ଦିଅନ୍ତି । କହନ୍ତି ମାସ ଶେଷରେ ଦରମା ମିଳିଲେ ସବୁ ଶୁଝା ଯିବ । ଥରେ ଏମିତି ହେଲା, ଦରମା ପାଇଲା ପରେ ସେ ଆଉ ଦେଖା ଦେଲେ ନାହିଁ । ତାଙ୍କର ଅନ୍ୟତ୍ର ବଦଳି ହେଇ ଯାଇଥିଲା । ସର୍ଭିସ୍ ପ୍ରଭାଇଡ଼ର ଏଥିରେ କ୍ଷୁବ୍ଧ ହେଇ ସବୁ ସ୍ଲିପକୁ ଏକାଠି କରି ଖଣ୍ଡେ ଚିଠି ସହ S.P ଙ୍କ ଠାକୁ ପଠାଇ ଦେଲା । ସେତେବେଳେ ଏଇଟା ପୋଲିସ ମହଲରେ ଗୋଟାଏ ଚହଳ ସୃଷ୍ଟି କରିଥିଲା । କାରଣ S.P ଅଫିସରଙ୍କ ମିଟିଂରେ ଏକଥା କହିଥିଲେ । ତେଣୁ ସାଧାରଣରେ ଏକଥା କୁହାଯାଏ ଯେ ନାରୀ, ନିଶା ଓ ପୋଲିସ୍ ଏମାନେ ଅଲଗା ନୁହଁନ୍ତି, ଅଲଗା ହେଇପାରେନା ।

କାହ୍ନୁ ହୁଏତ ବେଶ୍ୟାସକ୍ତ ନଥିଲା, କିନ୍ତୁ ତା'ର ପେଶାଗତ କାମରେ ତାକୁ କେହି ଟପି ପାରିବନି । ତା'ର ବୃତ୍ତିରେ ସେ ଧୁରନ୍ଧର, ସିନ୍‌ସିଅର ଓ ସଚ୍ଚୋଟ । ଡ଼ିପାର୍ଟମେଂଟ୍ ଏମାନଙ୍କ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ କରିପାରେ । ମଣିଷର ଚରିତ୍ର ବୋଲି ଆମେ ଯେଉଁ କଥାଟି ସାଧାରଣ ଭାବେ କହିଥାଉ ସେଥିରେ ବୃତ୍‌ତିଗତ କର୍ମରେ ତାକୁ ଭିନ୍ନ ଭାବରେ ବିଚାର କରିବାର କଥା । ଆମେ ଯେତେବେଳେ ବେଶ୍ୟା ଓ ମଦ ପ୍ରତି ଆସକ୍ତିକୁ ଚରିତ୍ର ଶବ୍ଦ ସହିତ ଯୋଡ଼ି ଥାଉ ଓ ନାକ ଟେକୁ ସେତେବେଳେ ଦେଶ ଓ ସରକାର ସ୍ୱାର୍ଥରେ କାମ କରୁଥିଲା ବେଳେ ତାହା କୋଉ ସୀମା କେତେବେଳେ ଅତିକ୍ରମ କରିବ ସେ କଥା କହି ହେବନାହିଁ ବୋଲି ଟ୍ରେନିଂ କଲେଜରେ ଆମକୁ ଶିକ୍ଷା ଦିଆ ଯାଇଥାଏ । ଏପରିକି ଦେଶରକ୍ଷା ବିଭାଗରେ ଜଣେ ଗୁପ୍ତ ଖବର ସଂଗ୍ରହ ପାଇଁ ଯଦି ଅନ୍ୟ ଗୋଟିଏ ସ୍ତ୍ରୀକୁ ବିବାହର ଛଳନା କରେ ଏବଂ ତା ସହିତ ରହିଯାଏ ତାହା ଦୋଷାବହ ନୁହେଁ ।

କାହ୍ନୁ ରାୟ ଠାରୁ ସେ ଦିନ ମୁଁ ଅନେକ ଅଭିଜ୍ଞତା ହାସଲ କଲି, ମୋ ଜୀବନରେ ମୁଁ କେବେବି ମଦ ସ୍ପର୍ଶ କରି ନାହିଁ । ସେଥିପାଇଁ ଗର୍ବ କରୁଥିଲେ ମଧ୍ୟ ମୁଁ ଜଣେ ସଫଳ ଗୋଏନ୍ଦା ଅଫିସର ହେଇଚି ବୋଲି କହି ପାରିବି ନାହିଁ, ଯଦିଓ ସେ ଡ଼ିପାର୍ଟମେଂଟ୍‌ରେ ମୁଁ ଦୀର୍ଘ ୧୦ ବର୍ଷ କାମ କରି ସୁନାମ ଅର୍ଜିଚି ।

ପରବର୍ତ୍ତୀ ଅବସ୍ଥାରେ ବୋଧହୁଏ ୧୯୬୯ ବେଳକୁ ଓଡ଼ିଶା ପୋଲିସରୁ ଗୋବିନ୍ଦ ଚନ୍ଦ୍ର ସେନାପତି ରାଉରକେଲା ଷ୍ଟିଲ୍ ପ୍ଲାଂଟକୁ ଚିଫ୍ ସିକ୍ୟୁରିଟି ଅଫିସର ପଦରେ ଡେପୁଟେସନରେ ଆସିଲେ । ସେ ଜଣେ ସିନିଅର ଆଇ.ପି.ଏସ୍. ଅଫିସର ଏବଂ ତାଙ୍କର ସ୍ପେସିଆଲ ବ୍ରାଂଚରେ ବେଶୀଦିନ କାମ କରିବାର ଅଭିଜ୍ଞତା ଥିଲା । ସେ ଆସିଲା ପରେ ଆମ ଡ଼ିପାର୍ଟମେଂଟ୍‌ରେ ଟିକିଏ ହଲଚଲ ସୃଷ୍ଟି ହେଲା । ଜଣେ ସିନିଅର ଆଇ.ପି.ଏସ୍. ଅଫିସର ସିକ୍ୟୁରିଟି ମୁଖ୍ୟ ପଦରେ ରହିବା ଦ୍ୱାରା ଯେଉଁ କେତେଜଣ ଦୀର୍ଘଦିନଧରି ସେଠି ନିଜକୁ ସର୍ବେସର୍ବା ମନେକରୁଥିଲେ ସେମାନଙ୍କ ସ୍ଥିତି ବିଗିଡ଼ିଗଲା । ସେମାନଙ୍କୁ ଆଉ ଡ଼ିପାର୍ଟମେଂଟ୍ ଭଲଲାଗିଲା ନାହିଁ । ଠିକ୍ ଏତିକିବେଳେ କେନ୍ଦ୍ର ସରକାର ସି.ଆଇ.ଏସ୍.ଏଫ୍. ଆକ୍ଟ ଲାଗୁ କରିବାକୁ ନିଷ୍ପତ୍ତି ନେଲେ ଓ ଦୁର୍ଗାପୁର ଓ ଭିଲାଇ ପରି କେତେକ ପବ୍ଲିକ ସେକ୍ଟରରେ ପ୍ରଥମେ ସି.ଆଇ.ଏସ୍.ଏଫ୍.ର induction ଆରମ୍ଭ ହେଲା । ସେ ରାଉରକେଲାକୁ ଆସିବାର ବର୍ଷକପରେ କାରଖାନାରେ ସି.ଆଇ.ଏସ୍.ଏଫ୍. ଲାଗୁହେଲା । କାରଖାନା କର୍ତ୍ତୃପକ୍ଷ ଘୋଷଣା କଲେ ଯୋଉମାନେ ସି.ଆଇ.ଏସ୍.ଏଫ୍. ରେ ଜଏନ ନ କରିବେ ସେମାନଙ୍କୁ କାରଖାନାରେ ରଖାଯିବ । ଫଳରେ ଚିତ୍ତରଞ୍ଜନ ପଟ୍ଟନାୟକ ଓ ସଚ୍ଚି ପଟ୍ଟନାୟକ ସମେତ ବହୁ ଅଫିସର ଓ କର୍ମଚାରୀ ପ୍ଲାଂଟ୍ ଚାକିରୀକୁ ଗଲେ । ସି.ଆଇ.ଏସ୍.ଏଫ୍. ସମ୍ପୂର୍ଣ୍ଣ ଅଲଗା ହେଲା ।

ମୋର ସେତେବେଳେ ସି.ଆଇ.ଏସ୍.ଏଫ୍. ରେ ଯୋଗଦାନ ବିଷୟରେ ଚିନ୍ତା ଥିଲା । ମୋର ଆନ୍ତରିକ ଇଚ୍ଛାଥିଲା ରାଉରକେଲାରେ ସ୍ଥାୟୀ ଭାବେ ରହିବାକୁ । କଲଚରାଲ ଏକାଡ଼େମୀ ସହିତ ସମ୍ପର୍କ ତୁଟେଇବା ମୋ ପକ୍ଷେ ସମ୍ଭବ ନଥିଲା । ସି.ଆଇ.ଏସ୍.ଏଫ୍.ରେ ଯୋଗଦେଲେ ବଦଳି ଅନିବାର୍ଯ୍ୟ, ପୁରୁଣା ସିକ୍ୟୁରିଟି ବିଭାଗରେ ଥିବା ସମସ୍ତଙ୍କର ସେଇ ଗୋଟିଏ ଚିନ୍ତା ସମସ୍ତଙ୍କୁ ବ୍ୟସ୍ତ ବିବ୍ରତ କରୁଥିଲା । ମୋର ପାରିବାରିକ ସମସ୍ୟା ଥିଲା ଯଥେଷ୍ଟ ବେଶୀ । ତା ସତ୍ତ୍ୱେ ମୁଁ ସି.ଆଇ.ଏସ୍.ଏଫ୍. ରେ ଯୋଗଦେଲି । କାରଣ ଆର୍ଥିକ ଦୃଷ୍ଟିରୁ କେନ୍ଦ୍ର ସରକାରୀ ଚାକିରୀ ଯେ ଲାଭ ଦାୟକ ଏଥିରେ ସଂଦେହ ନାହିଁ, ଅବସର ପରେ ପେନସନ୍ ଖାଲି ନୁହେଁ ଅନ୍ୟାନ୍ୟ ଅନେକ ସୁବିଧାଅଛି । ଗୋବିନ୍ଦ ସେନାପତି ମହାଶୟ ହିଁ ମୋତେ ଏ ସବୁକଥା ବୁଝେଇ ଦେଇଥିଲେ । ଆଜିବି ମୁଁ ସେଇକଥା ଭାବେ ମୁଁ ଯଦି ସେତେବେଳେ ସି.ଆଇ.ଏସ୍.ଏଫ୍. କୁ ଯାଇ ନ ଥାଆନ୍ତି ତେବେ ଆଜି କେଉଁଠି ଥାଆନ୍ତି ? କମ୍ପାନୀ ଚାକିରୀରେ ତ ପେନସନ ନ ଥାଆନ୍ତା । ମୋର ସେଇ ବନ୍ଧୁମାନଙ୍କୁ ତ ମୁଁ ଏବେ ଦେଖୁଛି । ସରକାର ଅବଶ୍ୟ ପ୍ରତିଶ୍ରୁତି ଦେଇଥିଲେ ପବ୍ଲିକ ସେକ୍ଟରରେ ପେନସନ୍ ବ୍ୟବସ୍ଥା ହେବ । କିନ୍ତୁ କାହିଁ ସେ ପ୍ରତିଶ୍ରୁତି ? ମୋର ନିୟମିତ କ୍ରମ ବର୍ଦ୍ଧମାନ ପେନସନ୍ ଛଡ଼ା ଭଲ ଚିକିତ୍ସା ସୁବିଧା

ଯୋଗୁଁ ମୁଁ ଆଜି ଅବସର ନେବାର ୨୫ ବର୍ଷ ପରେ ମଧ୍ୟ ବେଶ ସନ୍ତୋଷ ଜନକଭାବେ ଶାନ୍ତିରେ ବସବାସ କରୁଛି । ଈଶ୍ୱରଙ୍କୁ ଧନ୍ୟବାଦ ।



# ଏମାରଜେନ୍ସି

୧୯୭୫ ରେ କେନ୍ଦ୍ର ସରକାର ଦେଶରେ ଅଭୂତପୂର୍ବ ଏମାରଜେନ୍‌ସି ଘୋଷଣା କଲେ । ଏମାରଜେନ୍ସିର ଅର୍ଥହେଲା ଜରୁରୀ କାଳୀନ ଅବସ୍ଥା । ଗୋଟାଏ ଦେଶର କଅଣ ହେଇପାରେ ଜରୁରୀକାଳୀନ ଅବସ୍ଥା । ସାମ୍ବିଧାନିକ ସଙ୍କଟ, ଆର୍ଥିକ ଦୁରବସ୍ଥା, ରାଜନୈତିକ ସଙ୍କଟ, ଯୁଦ୍ଧ ଓ ସେ ସମୟ ଛଡ଼ା ଆଉ କେଉଁ କାରଣ ପାଇଁ ଜରୁରୀ କାଳୀନ ଅବସ୍ଥା ଘୋଷଣା ହେଲା ? ଇନ୍ଦିରା ଗାନ୍ଧୀ ଥିଲେ ପ୍ରଧାନମନ୍ତ୍ରୀ, ସେତେବେଳେ ବିଶିଷ୍ଟ ଗାନ୍ଧୀବାଦୀ ନେତା ଜୟପ୍ରକାଶ ନାରାୟଣ ଇନ୍ଦିରା ଗାନ୍ଧୀଙ୍କ କୁଶାସନ ବିରୋଧରେ ଯେଉଁ ସମ୍ପୂର୍ଣ୍ଣକ୍ରାନ୍ତି ଆନ୍ଦୋଳନର ଡାକରା ଦେଇଥିଲେ ଏବଂ ତାହା ଯେପରି ଅତିଶୀଘ୍ର ସମଗ୍ର ଦେଶକୁ ମାଡ଼ିଯାଇ ଇନ୍ଦିରାଙ୍କ କ୍ଷମତାକୁ ଧମକ ଦେଉଥିଲା ଏମାରଜେନ୍ସି ଥିଲା ତା ବିରୁଦ୍ଧରେ । ଜୟପ୍ରକାଶଙ୍କୁ ଆରେଷ୍ଟ କରି ଜେଲରେ ରଖାଗଲା । ତା ସହିତ ସାରା ଦେଶରେ ବିରୋଧି ଦଳର ନେତାଙ୍କୁ ମଧ୍ୟ ଆରେଷ୍ଟ କରି ଜେଲରେ ରଖାଗଲା । ଯେଉମାନେ ପ୍ରଶାସନ ବିରୋଧରେ ସ୍ୱର ଉଠେଇଲେ ସେମାନେ ଆରେଷ୍ଟ ହେଲେ । ସାରା ଦେଶରେ ଭୟ ସୃଷ୍ଟି ହେଲା ।

ପ୍ରାୟତଃ ସମ୍ପୂର୍ଣ୍ଣ କ୍ଷମତା ପୋଲିସ ହାତରେ । ପୋଲିସ ଯେତେବେଳେ ଯାହାକୁ ଇଛା ଆରେଷ୍ଟ କଲା । ଓଡ଼ିଶାରେ ସେତେବେଳେ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ । ସେ ଇନ୍ଦିରାଙ୍କ ପ୍ରଧାନ ଭକ୍ତ । ସେ ହରେକୃଷ୍ଣ ମହତାବଙ୍କ ସମେତ ବହୁ କଂଗ୍ରେସ ବିରୋଧି ନେତାଙ୍କୁ ଆରେଷ୍ଟ କଲେ । ସମ୍ବାଦପତ୍ର ଉପରେ ଅଂକୁଶ ଜାରୀହେଲା । ସେମାନେ ସରକାର ବିରୋଧି କଥା କହିପାରିଲେ ନାହିଁ । କୁହାଗଲା ସମ୍ପୂର୍ଣ୍ଣ ଅନୁଶାସନର ଆବଶ୍ୟକତା ରହିଛି ।

ଏମାରଜେନ୍ସି ଘୋଷଣା ହେବା ଦିନ ମୁଁ ଥିଲି ହାଇଦ୍ରାବାଦ ଟ୍ରେନିଂ କଲେଜରେ । ଡିପାର୍ଟମେଂଟ୍ ତରଫରୁ ମୋତେ ସେଠାକୁ ତିନିମାସ ଟ୍ରେନିଂପାଇଁ ପଠା ଯାଇଥିଲା । ସକାଳେ ଉଠି ପି.ଟି.ଓ ଡ୍ରିଲ୍ କ୍ଲାସ ପରେ ଚା' ଖାଉଥିଲାବେଳେ ଜଣେ ବନ୍ଧୁ କହିଲେ ଗତକାଲି ରାତିରେ ଏମାରଜେନ୍ସି ଘୋଷଣା କରା ହେଇଛି । ସେତେବେଳେ ଆମପାଖରେ ଟି.ଭି. ନଥିଲା । କେତେଜଣଙ୍କ ପାଖରେ ଛୋଟ ଟ୍ରାନଜିସଟର ଥିଲା ।

ଆମେ କେତେଜଣ ପ୍ରଥମେ ଏମାରଜେନ୍ସି କଅଣ ବୁଝିପାରିଲୁ ନାହିଁ । ଏମାରଜେନ୍ସିରେ ଲୋକଙ୍କ ନାଗରିକ ଅଧିକାର କ୍ଷୁର୍ଣ୍ଣ କରାଯାଏ ଏକଥା ମଧ୍ୟ ମୋତେ

ଜଣା ନ ଥାଏ । ସାମ୍ବିଧାନିକ ନିୟମ କ'ଣ ଅଚଳ ହେଇପାରେ ? ଏସବୁ କଥା ମୋ ମୁଣ୍ଡକୁ ପଶୁ ନଥିଲା ।

ଏମାରଜେନ୍ସି ପାଇଁ ଆମ ଟ୍ରେନିଂ ଅଳ୍ପରେ ଶେଷହେଲା ଏବଂ ଆମେ ସବୁ ଯେଝା ଜାଗାକୁ ଫେରିଲୁ । ମୁଁ ଏଥିରେ ଖୁସି । ଏମାରଜେନ୍ସି ହେଇ ନଥିଲେ ଆମକୁ ହୁଏତ ଆହୁରି ଦୁଇମାସ ଖଣ୍ଟେ ସେଠି ରହିବାକୁ ପଡ଼ିଥାଆନ୍ତା ।

ମୁଁ ଆଗରୁ କହିଚି ଯଦିଓ ଆମ ସେକ୍‌ସନର ନାଁ ଥିଲା ଇଣ୍ଟେଲିଜେନ୍ସ ଉଇଙ୍ଗ, ପ୍ରକୃତରେ ଆମକୁ ଇଣ୍ଟେଲିଜେନ୍ସ କାମ ସହିତ କ୍ରାଇମ ଇଣ୍ଟେଲିଜେନ୍ସ କାମ୍ ମଧ୍ୟ ଦେଖିବାକୁ ପଡୁଥିଲା । ଟ୍ରେନିଂରୁ ଫେରିଲା ପରେ ଡ଼ିଆଇଜି ସେନାପତି ସାହେବ ଆମ ସମସ୍ତ କାମକୁ ସିଷ୍ଟମେଟିକ କରିଦେଲେ । ଦିଲ୍ଲୀରୁ ଆସୁଥିବା ଅର୍ଡ଼ର ଅନୁସାରେ ସେପରି କରାଗଲା । ଯଦିଓ ଆମ ଡିପାର୍ଟମେଂଟ୍‌ରେ ଦୁଇଜଣ କମାଣ୍ଡାଣ୍ଟ ଥା'ନ୍ତି, ଡି.ଆଇ.ଜି. କିନ୍ତୁ ଇଣ୍ଟେଲିଜେନ୍‌ସ ସେକ୍‌ସନର ପ୍ରତ୍ୟକ୍ଷ ଦାୟିତ୍ୱରେ ଥା'ନ୍ତି ।

ମୋତେ ଯୋଉ କାମର ଦାୟିତ୍ୱ ଦିଆ ଯାଇଥିଲା ତାହା ମୋର ବନ୍ଧୁ ରାମଚନ୍ଦ୍ର ସାମନ୍ତରାୟଙ୍କ ଅପେକ୍ଷା ଅଧିକ ଓଜନଦାର ବୋଲି ମୋର ମନେହୁଏ । ତା' ସହିତ କ୍ରାଇମ ବିଭାଗ ମଧ୍ୟ ମୋ ଦାୟିତ୍ୱରେ ଥିଲା । ଦୁର୍ନୀତି ଶବ୍ଦଟାକୁ ତ ମୋର ପ୍ରଥମରୁ ପ୍ରଚଣ୍ଡ ଘୃଣା ଥିଲା ବୋଲି ମୋ ଜୀବନର ପ୍ରଥମ ଗଳ୍ପ ସ୍ଥାନୀୟ MLA ଙ୍କ ବିରୁଦ୍ଧରେ ଲେଖି (ଦଶମ ଶ୍ରେଣୀରେ ପଢୁଥିବା ବେଳେ) ବେଶ ଚର୍ଚ୍ଚିତ ଓ ସମାଲୋଚିତ ହୋଇଥିଲି । ସେ ନୀତିରୁ ଶେଷ ଯାଏ ପଛକୁ ହଟିନାହିଁ ବୋଲି ଭାବେ ।

ଷ୍ଟିଲପ୍ଲାଣ୍ଟରେ ଯୋଗ ଦେବାବେଳେ ମୁଁ ପ୍ରଥମରେ କେତେ ବର୍ଷ ଗେଟ୍ ମାନଙ୍କରେ କାମ କରୁଥିଲି । ସେତେବେଳେ ଜଣେ କର୍ମଚାରୀ ଚତୁରତାର ସହିତ ସବୁଠାରୁ ମୂଲ୍ୟବାନ ଥର୍ମୋକ୍‌ପଲ ତାର ଗୋଟିଏ ଫିଉଜ ଟିଉବ ଲାଇଟ ଭିତରେ ରଖି ନେଇ ଯାଉଥିଲା ଓ ତାକୁ ସନ୍ଦେହରେ ଧରିଥିଲି ଏବଂ ପୁରସ୍କୃତ ହୋଇଥିଲି । ଷ୍ଟିଲପ୍ଲାଣ୍ଟରେ ଏଇଟା ମୋର ପ୍ରଥମ ଘଟଣା ।

ପରବର୍ତ୍ତୀ ଅବସ୍ଥାରେ ଅର୍ଥାତ ସି.ଆଇ.ଏସ୍.ଏଫ୍.କୁ ଆସିଲା ପରେ ବେଶ କେତେଗୁଡ଼ିଏ ଘଟଣାରେ ମୁଁ ପ୍ରଶଂସିତ ହେଇଚି । ଏସବୁ କାମରେ ମୋର କେତେକ ବନ୍ଧୁ ମୋତେ ବହୁତ ସାହାଯ୍ୟ କରିଛନ୍ତି । ସେମାନଙ୍କ ଭିତରେ ଅଛନ୍ତି ସେ ସମୟର ବିଶିଷ୍ଟ ଶ୍ରମିକ ନେତା ଜାନକୀ ବଲ୍ଲଭ ପଟ୍ଟନାୟକ । ସେ ମୋତେ ଷ୍ଟୋର ଓ ପରଚେଜ ଡ଼ିପାର୍ଟମେଂଟ୍ ରେ ଅନେକ ଦୁର୍ନୀତିମୂଳକ କାମର ଗୁପ୍ତ ତଥ୍ୟ ଯୋଗାଇ ଦେଇଥିଲେ । ଏଥିରେ କେଇଁକିଛି ଜୁନିଅର ଅଫିସର ଓ କର୍ମଚାରୀ ଦଣ୍ଡିତ ହେଇଥିଲେ । ବସନ୍ତ ମହାପାତ୍ର

ଥିଲେ ସିଭିଲ ମେଣ୍ଟେନାନ୍ସର ଓଭରସିଅର । ସେ ଡ଼ିପାର୍ଟମେଂଟ୍‌ର କେତେକ ଘଟଣାର ଗୁପ୍ତ ଖବର ଦେଇଥିଲେ । ଏଥିରେ ମଧ୍ୟ କିଛି ଅଫିସର ଓ କର୍ମଚାରୀ ଦଣ୍ଡିତ ହେଇଥିଲେ ।

ସେ ସମୟରେ କର୍ମଚାରୀମାନଙ୍କୁ ପ୍ରଚୁର ଓଭରଟାଇମ ଦିଆ ଯାଉଥିଲା । ଓଭର ଟାଇମରେ ଜଣକୁ ଦିନକର ମଜୁରିର ଦୁଇଗୁଣ ମିଳୁଥିଲା । ଏ କାମରେ କିଛି ଅଫିସର ଶସ୍ତା ଲୋକପ୍ରିୟତା ପାଇଁ ଆଖିବୁଜି କର୍ମଚାରୀମାନଙ୍କୁ ଓଭରଟାଇମ ଦେଇଥିଲେ । ଏହା ଏକ ରାକେଟରେ ପରିଣତ ହେଇଥିଲା । ତରକେରା ପମ୍ପ ହାଉସରେ କାମ କରୁଥିବା କିଛି କର୍ମଚାରୀ ଓଭର ଟାଇମରେ ଥାଇ ଘରେ ରହୁଥିଲେ । ତାଙ୍କୁ ଧରିବା ଦ୍ୱାରା ସେତେବେଳେ ଚହଳ ସୃଷ୍ଟି ହେଲା । ଏଥିରେ ମାସକୁ କୋଟି କୋଟି ଟଙ୍କା ବରବାଦ ହେଉଥିଲା । ଆଉ ଗୋଟିଏ ଘଟଣାରେ ମିଛ ଗେଟପାସ ଦେଇ ସେଣ୍ଟ୍ରାଲ ଷ୍ଟୋରରୁ ଦାମିକା 'ଇଲେକଟ୍ରୋଡ' ନେଉଥିଲା ବେଳେ ଛଦ୍ମବେଶରେ ଯାଇ ତାଙ୍କୁ ଧରିଥିଲି । ପରେ ଦେଖିଲାବେଳକୁ ସେ ଗୋଟିଏ ବାମପନ୍ଥୀ ସମର୍ଥିତ ୟୁନିଅନର ମଧ୍ୟମବର୍ଗର କର୍ମଚାରୀ । ମୁଁ ଆଶ୍ଚର୍ଯ୍ୟ ହେଲି । ମୋର ଧାରଣା ଥିଲା ବାମପନ୍ଥୀ ମାନଙ୍କର ଚାରିତ୍ରିକ ଦୁର୍ବଳତା କିଛି ନ ଥିବ । ମୁଁ ମୋର ଜଣେ ବନ୍ଧୁଙ୍କୁ ଏକଥା ପଚାରିଲି । ସେ କହିଲେ ଏଥିରେ ନୂଆକଥା କିଛି ନାହିଁ । କାରଣ ସେ ଜଣେ ସାଧାରଣ କର୍ମଚାରୀ। ଗୋଟିଏ ଶ୍ରମିକ ସଂଘର ସାଧାରଣ ସଦସ୍ୟ ମାତ୍ର । ସେଠି ବ୍ୟକ୍ତିଚରିତ୍ର ସହିତ ଆମର ସମ୍ପର୍କ ନ ଥାଏ ଏବଂ ନ ରହିବା ସ୍ୱାଭାବିକ ମଧ୍ୟ। କଥାଟା ମୋ ମନକୁ ପାଇଲା । ମହାତ୍ମା ଗାନ୍ଧୀଙ୍କ ନୀତି ଓ ଆଦର୍ଶ ଯାହା କଂଗ୍ରେସର ଅନ୍ୟମାନଙ୍କ ଠାରେ ନ ଥିଲା ବୋଲିତ ଗାନ୍ଧୀ ସ୍ୱାଧୀନତା ପରେ କଂଗ୍ରେସକୁ ଭାଙ୍ଗି ଦେବାକୁ କହୁଥିଲେ । ଦେଶ ଓ ଜାତି ଅପେକ୍ଷା ବ୍ୟକ୍ତି ସ୍ୱାର୍ଥ ଉପରକୁ ଉଠିପାରେନା। କିନ୍ତୁ ସେ କଥା ହେଲା ନାହିଁ, ଏବେ ବ୍ୟକ୍ତି ସ୍ୱାର୍ଥ କୋଉସ୍ତରକୁ ଯାଇଚି ତାକୁ ଆମେ ସମସ୍ତେ ଦେଖୁଚେ ।

ମୋର ଇଣ୍ଟେଲିଜେନ୍ସ କାମରେ ଆଉ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ହେଲା କମ୍ପାନୀର ଗେଷ୍ଟହାଉସ 'ରାଉରକେଲା ହାଉସ' ରୁ ଜଣେ ଠକଙ୍କୁ ଧରିବା । ଏଇ ଗେଷ୍ଟହାଉସକୁ କିଏ କିଏ ଆସୁଚନ୍ତି ଓ କେଉଁ କାମରେ ଆସୁଛନ୍ତି ଏସବୁ ବିଷୟ ଜାଣିବା ଆମର ଦରକାର । ମୁଁ ଥରେ ଖବର ପାଇଲି ଜଣେ VIP ସେଠାକୁ ଆସିଚନ୍ତି। ଦୁଇଦିନ ରହିବେ। କେନ୍ଦ୍ରର କୌଣସି ବିଶିଷ୍ଟ ନେତାଙ୍କ ସୁପାରିଶରେ ଆସିଚନ୍ତି ଓ ସେ ଜଣେ ସାମ୍ବାଦିକ। କିଏ, କଅଣ ଓ କାହିଁକି ଜାଣିବା ଆମର କାମ । ମୁଁ ଯେତେବେଳେ ରାଉରକେଲା ହାଉସର ମେନେଜରଙ୍କୁ (ମିଃ ବାହାଦୂର) ଏ କଥା ପଚାରିଲି ସେ ଯାହା କହିଲେ ସେଥିରେ ମୋର ଟିକିଏ ସନ୍ଦେହ ହେଲା । ଭାବିଲି ସେ ବୋଧେ ମୋତେ କଥାଟା ଲୁଚଉଛନ୍ତି। ମୁଁ ନିଜକୁ ଜଣେ ସାମ୍ବାଦିକ କହି ସେ VIP ଙ୍କୁ ଭେଟିଲି । ତାଙ୍କର

ସବୁ କାମରେ ସାହାଯ୍ୟ କରିପାରିବି କହିଲି । ଶେଷରେ ଜାଣିଲି ସେ କେହି ନୁହେଁ- ଜଣେ ବିଶିଷ୍ଟ ଠକ । ପୋଲିସକୁ କୁହାଗଲା । ତାଙ୍କୁ ଆରେଷ୍ଟ କରି ଜେଲକୁ ପଠାଗଲା । ପରଦିନ ଏହା 'ସମାଜ'ରେ ମୋ ନାଁ ସହିତ ପ୍ରକାଶ ପାଇଲା । ସମଗ୍ର ରାଉରକେଲାରେ ହଇଚଇ ସୃଷ୍ଟିହେଲା । ପରେ ଜଣାପଡ଼ିଲା ଭାରତର ଅନେକ ଜାଗାରେ ତାଙ୍କ ନାଁରେ ଅନେକ କେସ୍ ରହିଛି । ଏଥିରେ ମଧ୍ୟ ମୁଁ ପୁରସ୍କୃତ ହେଲି । ମୋର ଇଣ୍ଟେଲିଜେନ୍ସ କାମରେ ଆଉ ଗୋଟିଏ ଉଲ୍ଲେଖ ଯୋଗ୍ୟ କଥା କହିବି । ତାହା ଅବଶ୍ୟ ଏମାରଜେନ୍‌ସିର ଠିକ ପରର କଥା । ସେତେବେଳେ ଡ଼କ୍ଟର ଏନ୍.ସି. ଦତ୍ତାର ଥିଲେ ଜେନେରାଲ୍ ସୁପରିଟେଣ୍ଡେଣ୍ଟ ବା କାରଖାନାର ଉପମୁଖ୍ୟ । ଠିକ ଜେନେରାଲ୍ ମ୍ୟାନେଜରଙ୍କ ତଳେ । ସେ ସମୟରେ ଶ୍ରମିକ ଅଶାନ୍ତି ଥାଏ ପ୍ରବଳ । ଯଦିଓ ଘେରାଓ ସଂସ୍କୃତି ପଶ୍ଚିମବଙ୍ଗରୁ ନୂଆ ନୂଆ ଆସିଥାଏ ପ୍ରାୟ ପ୍ରତିଦିନ କୋଉଠି ନା କୋଉଠି ଘେରାଓ ହୁଏ । ପୋଲିସ ଓ ସି.ଆଇ.ଏସ୍.ଏଫ୍. ନାକେଦମ ହୁଅନ୍ତି ।

ହଠାତ୍ ଦିନେ ଡ଼. ଦତ୍ତାରଙ୍କୁ ପ୍ଲାଂଟ୍ ଭିତରେ ଥିବା ତାଙ୍କ ଅଫିସରେ ଘେରାଉ କରାଗଲା । ମୁଁ ସେଠି ଉପସ୍ଥିତ ଥିଲି । କିଛି ଶ୍ରମିକ ଦତ୍ତାରଙ୍କ ଅଫିସ ପଛପଟ ଦ୍ୱାରଦେଇ ପଶିଗଲେ । ସେ ସେତେବେଳେ ଅଫିସରେ ଏକୁଟିଆ । ପୋଲିସ ଏକଥା ଜାଣିପାରି ନ ଥିଲା । ଶ୍ରମିକଙ୍କ ପଛେ ପଛେ ମୁଁ ମଧ୍ୟ ପଶିଗଲି । ଦେଖିଲି ସେମାନେ ଦତ୍ତାରଙ୍କ ଉପରକୁ ପେପରୱେଟ୍, ପେନ୍‌ଷ୍ଟେଣ୍ଡ, ଟେବୁଲ ଲେମ୍ପ ଇତ୍ୟାଦି ଫୋପାଡ଼ିବାକୁ ଆରମ୍ଭ କଲେ । ସାମନା ଦରଜାରେ ବାକି ଶ୍ରମିକ । ମୁଁ ଦତ୍ତାରଙ୍କୁ ସୁରକ୍ଷା ଦେବା ଉଦ୍ଦେଶ୍ୟରେ ତାଙ୍କ ସାମନାରେ ଠିଆ ହେଇଗଲି । ସେମାନେ ମୋତେ ଦେଖି ଜଣେ ମୋ ପେଟରେ ଘୁସିଟିଏ ମାରିଲା । ମୁଁ ଅସହ୍ୟ ଯନ୍ତ୍ରଣାରେ ତଳେ ପଡ଼ିଗଲି । ମୋତେ ସେମାନେ ଘୋସାରି ନେଇ ବାହାରକୁ ନେଇଗଲେ । ପରେ ମୋତେ ଆମ୍ବୁଲାନ୍ସରେ ଆଇ.ଜି.ଏଚ୍. କୁ ନିଆଗଲା। ଦୁଇଦିନ ପରେ ସୁସ୍ଥହେଇ ସେଠୁ ଫେରିଲି । ଏଥିରେ ଅବଶ୍ୟ ମୋତେ ମ୍ୟାନେଜମେଂଟ୍ ତରଫରୁ ଏବଂ ଡ଼ି.ଆଇ.ଜି.ଙ୍କ ତରଫରୁ ପ୍ରଶଂସାପତ୍ର ସହ ୧୦୦ ଟଙ୍କାର ପୁରସ୍କାର ମିଳିଲା ।

ପରେ ଶୁଣିଥିଲି ଡ଼ଃ ଦତ୍ତାର ମଧ୍ୟ ଆଘାତ ପାଇ ହସପିଟାଲରେ ଭର୍ତ୍ତି ହୋଇଥିଲେ । ମୁଁ ଆଘାତ ପାଇ ବାହାରକୁ ଟଣା ହେଲା ପରେ ପୋଲିସ ଖବର ପାଇ ଭିତରକୁ ପଶିଲା ଏବଂ ଦତ୍ତାରଙ୍କୁ ଉଦ୍ଧାର କରିଥିଲା । ପରେ ମୋର ଡ଼ି.ଆଇ.ଜି. ଓ ଅନ୍ୟ ବନ୍ଧୁମାନେ କହିଲେ 'ଆପଣଙ୍କର ଏକୁଟିଆ ସେଠାକୁ ଯିବା ଉଚିତ ନ ଥିଲା ।' ସେ ସମୟରେ ପ୍ରଫୁଲ୍ଲ ରଥ ଡି.ଆର.ଜି. ଥା'ନ୍ତି ।

ମୁଁ ମାନୁଚି । କିନ୍ତୁ ହଠାତ ଜଣେ ନିରସ୍ତ୍ର ସାଧାରଣ ଲୋକ ଉପରେ ଅତର୍କିତ ଆକ୍ରମଣକୁ ଜଣେ ନିରାପତ୍ତା ଅଧିକାରୀ ଭାବରେ ମୁଁ ସହ୍ୟ କରିପାରିଲି ନାହିଁ । ଏବେ



ଭାବୁଚି ତଥାପି ଭୁଲ ହେଲା । ମୋ ଉପରେ ଆକ୍ରମଣ ଆହୁରି ଖରାପ ଆଡ଼କୁ ଯାଇପାରି ଥାଆନ୍ତା । ସମ୍ମିଳିତ ଜନତାର କ୍ରୋଧକୁ ଏକୁଟିଆ ଓ ବିନା ଅସ୍ତ୍ରରେ ସମ୍ମୁଖୀନ ହେବା ଉଚିତ ନ ଥିଲା । ଡି.ଆଇ.ଜି. ମୋତେ ଏକାଯିବା ଉଚିତ ନଥିଲା ବୋଲି କହିଥିଲେ ମଧ୍ୟ ଗୋଟାଏ ନୋଟରେ ମୋର ଏହି ପଦକ୍ଷେପକୁ ମୋର examplary bravery ବୋଲି ଲେଖିଥିବା ମୁଁ ଜାଣିବାକୁ ପାଇଲି ।

ଏମାରଜେନ୍ସି ସମୟରେ ଆମର ଫିଲ୍ଡ୍ କାମ ସହିତ କାଗଜପତ୍ରର କାମ ବହୁତ ବଢ଼ିଗଲା । ଏସବୁ ଆମପାଇଁ ନୂଆ ହେଲେ ମଧ୍ୟ ଗୋବିନ୍ଦ ଚନ୍ଦ୍ର ସେନାପତି ଥିଲେ ପ୍ରକୃତରେ ସେନାପତି । ସେ ଓଡ଼ିଶା ପୋଲିସର ଜଣେ ଦକ୍ଷ ଓ ଅଭିଜ୍ଞ ଅଫିସରଙ୍କୁ ନେଇ ଆସିଲେ । ସେ ହେଲେ ଗୋପିନାଥ ଦାଶ । ଗୋପିନାଥ ଦାଶ ଥିଲେ ସ୍ପେଶାଲ ବ୍ରାଞ୍ଚର ଅବସରପ୍ରାପ୍ତ ଡି.ଏସ.ପି. । ସ୍ପେଶିଆଲ ବ୍ରାଞ୍ଚ କାମରେ ସେ ଆମର ଏକପ୍ରକାର ଗୁରୁ ହେଇଗଲେ । ସେ ଆମ ଇଣ୍ଟେଲିଜେନ୍ସ ଉଇଙ୍ଗର ମୁଖ୍ୟ ଭାବରେ ଅବସ୍ଥାପିତ ହେଲେ । ତାଙ୍କଦ୍ୱାରା ଆମର ପୋଲିସ, ସ୍ପେଶାଲ ବ୍ରାଞ୍ଚ, ସେଂଟ୍ରାଲ ଇଣ୍ଟେଲିଜେନ୍ସ, ସି.ବି.ଆଇ. ଓ ଡି.ଆଇ.ବି. ସହିତ ସମ୍ପର୍କ ଓ ସହଯୋଗ ବଢ଼ିଲା । ସମସ୍ତେ ଗୋଟିଏ ପରିବାର ପରି କାମ କଲେ ।

ଏମାରଜେନ୍ସିରେ ପ୍ରଥମେ ଘୋଷଣା କରାଗଲା banned organisation ବା ବେଆଇନ ଘୋଷିତ ଅନୁଷ୍ଠାନର ସଦସ୍ୟମାନଙ୍କୁ ଆରେଷ୍ଟକର । ବିରୋଧି ଦଳଙ୍କୁ ନିପାତ କରିବା ଇନ୍ଦିରାଙ୍କ ଉଦ୍ଦେଶ୍ୟ । ଯୋଉ ବିରୋଧୀ ଦଳକୁ ନେଇହେରୁ କହୁଥିଲେ ଗଣତନ୍ତ୍ରର ମେରୁଦଣ୍ଡ ସେଇ ମେରୁଦଣ୍ଡକୁ ଭାଙ୍ଗିବାକୁ ଆରମ୍ଭ କଲେ ଇନ୍ଦିରା । ଅତ୍ୟନ୍ତ ପ୍ରତିଶୋଧ ପରାୟଣ ହେଇ ଉଠିଲେ । ସେତେବେଳକୁ ବିରୋଧୀ ଦଳର ଅଧିକାଂଶ ବଡ଼ ବଡ଼ ନେତା ଆରେଷ୍ଟ ହେଇଗଲେଣି । ଜର୍ଜ ଫର୍ଣ୍ଣାଡ଼େସଙ୍କ ପରି କିଛି ଆତ୍ମ ଗୋପନ କରିଥିଲେ । ଅଧିକାଂଶ ବାମପନ୍ଥୀ ନେତା କେବଳ ସି.ପି.ଆଇର ଏସ୍.ଏ. ଡାଙ୍ଗେଙ୍କ ବ୍ୟତୀତ ଅନ୍ୟମାନେ ଜେଲରେ । ଡାଙ୍ଗେ ସେତେବେଳେ ସି.ପି.ଆଇ ର ମୁଖ୍ୟ କିନ୍ତୁ ଏମାରଜେନ୍ସିକୁ ସମର୍ଥନ କରିବା ସହିତ ଇନ୍ଦିରାଙ୍କୁ ମଧ୍ୟ ପ୍ରଶଂସା କରୁଥିଲେ ବୋଲି ଆମେ ସି.ପି.ଆଇ ପ୍ରତି ଟିକେ କୋହଳ ମନୋଭାବ ପୋଷଣ କରୁଥିଲୁ । ସି.ପି.ଆଇ ନେତା ନିତ୍ୟାନନ୍ଦ ପଣ୍ଡାଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ଭଲଥିଲା ଏଇଥିପାଇଁ ଯେ ବାମପନ୍ଥୀମାନେ କଲଚରାଲ ଏକାଡ଼େମୀ ସହିତ ବନ୍ଧୁଭାବ ପୋଷଣ କରୁଥିଲେ । ସେମାନଙ୍କ ପ୍ରଭାବ ଯଦି ପଡ଼ି ନ ଥାଆନ୍ତା ତେବେ ରାଉରକେଲାରେ ପ୍ରଗତିଶୀଳ ସାହିତ୍ୟ ଜନ୍ମଲାଭ କରିପାରି ନ ଥାଆନ୍ତା ଓ କଲ୍‌ଚରାଲ ଏକାଡ଼େମୀ ଗୋଟିଏ ଭଲ ସାହିତ୍ୟାନୁଷ୍ଠାନ ହିସାବରେ ଓଡ଼ିଶାରେ ସୁନାମ ଅର୍ଜିପାରି ନ ଥାଆନ୍ତା ।

ଓଡ଼ିଶାରେ ସେତେବେଳେ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ । ନନ୍ଦିନୀ ଜଣେ ପ୍ରଗତିଶୀଳ ଲେଖିକା ବୋଲି ସମସ୍ତେ ଜାଣନ୍ତି । କିନ୍ତୁ ତାଙ୍କ ସମୟରେ ରାଜନୀତିରେ ସକ୍ରୀୟ ନଥିବା ହରେକୃଷ୍ଣ ମହତାବଙ୍କୁ ଅସମ୍ମାନଜନକ ଭାବରେ ଆରେଷ୍ଟ କରିବା ସମସ୍ତଙ୍କୁ ବ୍ୟଥିତ କରିଥିଲା ।

ମୁଁ ମହତାବଙ୍କୁ ବହୁତ ସମ୍ମାନ ଦେଉଥିଲି ଏଇଥିପାଇଁ ଯେ କେତେକ କ୍ଷେତ୍ରରେ ତାଙ୍କ ସହିତ ମୋର ସମ୍ପର୍କ ଯୋଡ଼ି ହୋଇଯାଇଥିଲା । 'ପ୍ରଜାତନ୍ତ'ର ମୀନାମଣ୍ଡଳୀରୁ ହିଁ ମୋର ଲେଖକୀୟ ସତ୍ତାର ଜନ୍ମ । ଦଶମ ଶ୍ରେଣୀରେ ପଢୁଥିବାବେଳେ ମୁଁ ଆଉ କେତେଜଣଙ୍କୁ ନେଇ ମୀନାମଣ୍ଡଳୀ ଗଢ଼ିଥିଲି । ଏହି ସମ୍ବାଦ ଓ ମୋ ନାମ ପ୍ରଜାତନ୍ତ୍ରରେ ପ୍ରକାଶ ପାଇଲା ପରେ ମୁଁ ଯଥେଷ୍ଟ ଉତ୍ସାହିତ ହୋଇଥିଲି । ମୋ ସାଥିରେ ଥିଲେ ରାମଚନ୍ଦ୍ର ଦେଓ, ଶିଶୁସାହିତ୍ୟିକ । ତା'ର ଯଥେଷ୍ଟ ପୂର୍ବରୁ ଅର୍ଥାତ ମୁଁ ୭ମ ଶ୍ରେଣୀରେ ପଢୁଥିବାବେଳେ ଥରେ ମହତାବ ମୁଖ୍ୟମନ୍ତ୍ରୀ ଭାବରେ ଆମ୍ ସ୍କୁଲକୁ ଆସିଥିଲେ ଏବଂ ଆମେ କେତେଜଣ ସେ ମଂଚରେ ବସିଥିଲାବେଳେ ତାଙ୍କ ବେକରେ ଫୁଲମାଳ ଦେଇଥିଲୁ । ମହତାବଙ୍କୁ ଦେଖିବା ସେଇଟା ମୋର ପ୍ରଥମ । ଗୋଟାଏ ଭକ୍ତିଭାବ ମୋର ସେଇଠୁ ଆରମ୍ଭ ।

ମୁଁ ରାଉରକେଲାରେ ରହିବାପରେ ଥରେ ମହତାବ ଆସିଥିଲେ ଓ ରାଉରକେଲା ହାଉସ ପାଖ ଗେଷ୍ଟ ହାଉସରେ ଥିଲେ । ସେତେବେଳେ ମୋତେ ଅମୃତ ବଜାରର ସାମ୍ବାଦିକ ଏବଂ କଲଚରାଲ ଏକାଡ଼େମୀର ସଦସ୍ୟ ଗୋଲକ ବିହାରୀ ଦାସ ସାଥିରେ ନେଇ ତାଙ୍କ ପାଖକୁ ଗଲେ । ପରିଚୟ କରାଇ ଦେଲେ । ମୁଁ ମୋ ପିଲାବେଳ କଥା ଓ ମୋ ପିଉସା ପ୍ରିୟନାଥ ଦାସଙ୍କ କଥା କହିବାରୁ ଖୁସି ହେଲେ । ସେ ଏକୁଟିଆ ଥିଲେ । ଆମେ ପ୍ରାୟ ଘଂଟାଏ କାଳ ବସି ମୋର ଲେଖାଲେଖି, କଲଚରାଲ ଏକାଡ଼େମୀ ଓ ନବପତ୍ର ଇତ୍ୟାଦି ବିଷୟରେ କଥା ହେଲୁ । ପରବର୍ତୀ ଅବସ୍ଥାରେ ମୁଁ ଯେତେଥର କଟକ ଯାଇଚି ସବୁଥର ମୁଁ ପ୍ରଜାତନ୍ତ୍ର ଅଫିସକୁ ଯାଇ ତାଙ୍କ ଦରବାରରେ ଭେଟିଚି । ସେଇଠି ବିଶିଷ୍ଟ ପ୍ରାବନ୍ଧିକ ଗୋବିନ୍ଦ ଚନ୍ଦ୍ର ଦାସ ଓ କବି ସରୋଜ ମହାନ୍ତିଙ୍କ ସହିତ ପରିଚୟ ହେଲା । ସେତିକିବେଳେ ମୁଁ ମୀନାବଜାର ଛାଡ଼ି ଆସିଲି ଝଂକାରକୁ ଓ ସେଥିରେ ମୋର ପ୍ରଥମ ଗଳ୍ପ 'ଭଙ୍ଗା ଘରର ଭୂତ' ପ୍ରକାଶ ପାଇଲା ମହାପାତ୍ର ନୀଳମଣି ସାହୁଙ୍କ ସମ୍ପାଦନାରେ ଡିସେମ୍ବର ୧୯୬୮ରେ । ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ ମହତାବଙ୍କ ଦାନ ଅତୁଳନୀୟ ଏକଥା ସମସ୍ତେ ସ୍ୱୀକାର କରିବେ । ଏବର ସମସ୍ତ ପ୍ରତିଷ୍ଠିତ ସାହିତ୍ୟିକ ତାଙ୍କରି ହାତର ତିଆରି । ଓଡ଼ିଆ ଆଜି ସେଇମାନଙ୍କୁ ନେଇ ଗର୍ବ କରେ ।

ସେଦିନ ସେଇ ମହତାବଙ୍କୁ ଆରେଷ୍ଟ କରି ଯେତେବେଳେ ଜେଲକୁ ନିଆଗଲା ବୋଲି ଖବର କାଗଜରେ ପ୍ରକାଶ ପାଇଲା, ମୋତେ ବହୁତ ଖରାପ ଲାଗିଲା । ମୋ

ପରି ଅନ୍ୟମାନଙ୍କୁ ମଧ୍ୟ ଖରାପ ଲାଗିଥିଲା । ଏଥିପାଇଁ ନନ୍ଦିନୀଙ୍କୁ ଯେ ସମାଲୋଚନା କରାଯାଇ ନ ଥିଲା ତା ନୁହେଁ, ତେବେ ସାଧାରଣ ଭାବେ ଇନ୍ଦିରାଙ୍କୁ ଓ ପ୍ରଦେଶ ମାନଙ୍କରେ ଥିବା କଂଗ୍ରେସ ସରକାରଙ୍କୁ ପ୍ରଚୁର ସମାଲୋଚନାର ଶିକାର ହେବାକୁ ପଡ଼ିଥିଲା । ଏଇଟା ସ୍ୱାଭାବିକ ।

ଆମ କାରଖାନା ଭିତରେ ବେଆଇନ ଘୋଷିତ ଅନୁଷ୍ଠାନର କିଛି ଲୋକ ଥିଲେ । କିଛି ମୁସଲିମ ଅନୁଷ୍ଠାନ ହିନ୍ଦୁ ମୌଳବାଦୀ ଅନୁଷ୍ଠାନ ଓ ନକ୍ସଲାଇଟ ମଧ୍ୟ ଥିଲେ । କାରଖାନା କର୍ତ୍ତୃପକ୍ଷ ୩ଟା ଲିଷ୍ଟ ଆମକୁ ଦେଲେ । ସେମାନଙ୍କ ନାଁରେ ଥିବା ଅଭିଯୋଗର ବିବରଣୀ ମାଗିଲେ । ଏମାନେ ମୁଖ୍ୟତଃ ଶ୍ରମିକ ଆନ୍ଦୋଳନ ବେଳେ ଅଫିସରମାନଙ୍କୁ ଗାଳିଗୁଲଜ କରୁଥିବା ବ୍ୟକ୍ତି । ଏଇ ମୌକାରେ ସେମାନଙ୍କୁ ଚାକିରୀରୁ ବାହାର କରିହେବ ବୋଲି ସେମାନଙ୍କ ଇଚ୍ଛା । ଡ଼ିଆଇଜିଙ୍କ ଅଫିସରେ ଏ ତାଲିକା ଉପରେ ଆଲୋଚନା ହେଲା । ଆମ ତରଫରୁ ଯୁକ୍ତି ହେଲା ଯେ ସି.ଆଇ.ଏସ୍.ଏଫ୍. ରାଜନୈତିକ ନେତାଙ୍କର ଗୁପ୍ତ ଚରିତ୍ର ରଖେନାହିଁ । କାରଖାନା କର୍ମଚାରୀଙ୍କ ବିଷୟରେ ଯାହାଅଛି ତାହା ଶ୍ରମିକ ଆନ୍ଦୋଳନ ସମ୍ପର୍କିତ । ସେ ସବୁକୁ ବେଆଇନ ଘୋଷଣା କରାଯାଇ ନାହିଁ ।

ଗୋଟାଏ ବଡ଼କଥା ମୁଁ ଦେଖିଲି ଯେ ତାଲିକାରେ ଦୁର୍ନୀତି ସଂକ୍ରାନ୍ତରେ ଯେଉଁମାନେ ମୋତେ ଗୁପ୍ତ ତଥ୍ୟ ଦେଇଥିଲେ ସେମାନଙ୍କ ନାଁ ସେଥିରେ ଅଛି । ମୁଁ ଡି.ଆଇ.ଜି. ଙ୍କୁ କହିଲି ଯେଉଁମାନେ ଆମର ଦୁର୍ନୀତି ନିବାରଣ କାର୍ଯ୍ୟକ୍ରମରେ ସାହାଯ୍ୟ କରିଚନ୍ତି ସେମାନଙ୍କୁ ଆମେ ଦଣ୍ଡ କେମିତି ଦେବା ? ଏହାତ ଅନ୍ୟାୟ ହେବ । ତାଛଡ଼ା ତଦନ୍ତପରେ ଅଭିଯୁକ୍ତମାନେ ଦଣ୍ଡିତ ହେଇଥିବାବେଳେ ଏବେ କୋଉ କାରଣରୁ ଆମେ ଆମର source ମାନଙ୍କୁ ଦଣ୍ଡିତ କରାଇବା ? ଡି.ଆଇ.ଜି. ଏକଥା ମାନିଲେ ଏବଂ ସେଇ ଚାରିଜଣଙ୍କ ନାମ ସେ ତାଲିକାରୁ ବାଦ ଦିଆଗଲା ।

ଏମାରଜେନ୍ସି ସରକାରଙ୍କୁ ବିଶେଷକରି ବୁରୋକ୍ରେସିକୁ ଯଥେଷ୍ଟ ବେଶୀ କ୍ଷମତା ପ୍ରଦାନ କରିବାରୁ ସେମାନେ ଅତି ମାତ୍ରାରେ କ୍ଷମତାର ଅପ ବ୍ୟବହାର କଲେ । ଫଳରେ ସବୁଠି ଗୋଟାଏ କୋକୁଆ ଭୟ ସୃଷ୍ଟି ହେଇଥିଲା । ମୁଁ ଆଗରୁ କହିଛି ଏଇ ସମୟରେ ଆମର କାଗଜ କାମ ଅନେକ ବଢ଼ିଗଲା । ପ୍ରତିଦିନ ଗୋଟାଏ ସିଚ୍ୟୁଏସନ ରିପୋର୍ଟ ଆମ ଫୋର୍ସ ହେଡ୍ କ୍ୱାର୍ଟରକୁ ଗଲା । ସେତେବେଳେ କମ୍ୟୁନିକେସନ ସିଷ୍ଟମ ସେତେ ଭଲ ନଥିଲା । ମେନେଜମେଂଟର ଟେଲିପ୍ରିଂଟର ମାଧ୍ୟମରେ କେଉଁ ଗୁପ୍ତ କଥା ପଠେଇ ହେବ ? ତେଣୁ ଆମେ ସବୁବେଳେ nil ରିପୋର୍ଟ ପଠାଉଥିଲୁ । ଗୋଟାଏ ହାସ୍ୟାସ୍ପଦ କଥା ଯେ ସରକାର ସେତେବେଳେ ଗୋଟାଏ ଅଜବ '୨୦ ପଏଣ୍ଟ ପ୍ରୋଗ୍ରାମ' ଘୋଷଣା କଲେ ଏବଂ ତାର କାର୍ଯ୍ୟକାରିତା ଉପରେ ମାସିକ ରିପୋର୍ଟ ମାଗିଲେ । ସେଥିରେ

ଦୁଇଟା କଥା ଥିଲା । ଦୁର୍ନୀତି ନିବାରଣ ଓ ଯୌତୁକ ବିରୋଧି ଆନ୍ଦୋଳନ । ଏ ସମ୍ପର୍କିତ ସର୍କୁଲାର ଦେଖି ଅଫିସରେ ଆମେ ଖୁବ ହସିଲୁ । ଏସବୁ ବିଷୟରେ ଯୁବକମାନଙ୍କୁ ଶପଥ ନେବାକୁ ହେବ ବା କୁହାଯିବ ଏବଂ ସେସବୁ ଜଣେ କେତେ କରିଛି ତା ଉପରେ ରିପୋର୍ଟ ଯିବ । ଦୁର୍ନୀତି ନିବାରଣ ଉପରେ ବୋଧେ ସେଇ ସମୟକୁ ଅଫିସମାନଙ୍କରେ ଗୋଟାଏ ସାଇନ ବୋର୍ଡ଼ ଲେଖାଯାଇଛି ଯେ "ଲାଂଚ ନିଅନାହିଁ, ଲାଂଚ ଦିଅନାହିଁ ।" କିନ୍ତୁ ଏସବୁ ଯେ ସବୁବେଳେ ପ୍ରବଳ ହାସ୍ୟରୋଳ ସୃଷ୍ଟି କରୁଥିଲା ଏଥିରେ ସନ୍ଦେହ ନାହିଁ ।

ଆମ ଅଫିସରେ ସେତେବେଳେ କିଛି ଯୁବକ କାମ କରୁଥିଲେ । ସେମାନେ ବିବାହ କରି ନ ଥିଲେ । ମଜା କରିବାକୁ ମୁଁ ସେମାନଙ୍କୁ କହିଲି ବିବାହ ବେଳେ ତୁମେମାନେ କେହି ଯୌତୁକ ନେବ ନାହିଁ । ସେମାନଙ୍କ ଭିତରୁ ଜଣେ କହିଲେ ଯୌତୁକ କାହିଁ ? କିଏ ଦଉଚି ନା ନଉଚି ? କିନ୍ତୁ ଗିଫ୍‌ଟ ନେବାକୁତ ମନାନାହିଁ । ମୁଁ କିନ୍ତୁ ସେମାନଙ୍କୁ ଯୌତୁକ ବିରୋଧରେ ସତର୍କ କରାଉଛି ଓ ଶପଥ କରାଉଛି ବୋଲି ସେ ମାସ ରିପୋର୍ଟରେ ଲେଖି ପଠାଇଲି । ଆମର ସବୁ ରିପୋର୍ଟତ 'କନଫିଡ଼େନ୍ସିଆଲ' । ତେଣୁ ତାକୁ ଦେଖୁଚି କିଏ ?

ସେକଥା ଏବେବି ମନେ ପଡ଼ିଲେ ହସେ । ସେ ସମୟରେ ବହୁ ସରକାରୀ ରିପୋର୍ଟ ଯେ ଏମିତି ଭାଣ୍ଡାମିରେ ପରିଣତ ହେଇ ନ ଥିବ ସେକଥା କିଏ କହିବ । ସ୍ତାବକତା ପୋଲିସର ଗୋଟାଏ ବିଶେଷ ଚରିତ୍ର । ସେ ସମୟରେ ପୋଲିସ ରିପୋର୍ଟ ସବୁବେଳେ ଏମାରଜେନ୍ସିକୁ ସମର୍ଥନ କରି ଯାଉଥିଲା । ସେଥିରେ ଲେଖା ଯାଉଥିଲା ଯେ ସାଧାରଣ ଲୋକେ ଏହାକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରୁଛନ୍ତି କାରଣ ଗୋଟାଏ ସମ୍ପୂର୍ଣ୍ଣ ଅନୁଶାସନର ଯୁଗ ଆରମ୍ଭ ହେଇଛି । ଦୁର୍ନୀତିର ମୂଳ ଉତ୍ପାଟିତ ହେଉଛି । କେହି କେହି ଚତୁର ଅଫିସର, ରାଜନେତା ଓ ବିଶିଷ୍ଟ ନାଗରିକ ଇନ୍ଦିରା ଓ ନନ୍ଦିନୀଙ୍କ ଉଚ୍ଚ ପ୍ରଶଂସା କରୁଛନ୍ତି ବୋଲି ମଧ ଲେଖି ଥିଲେ । ସରକାରୀ ଅତ୍ୟାଚାର ଯେ କେତେ ବଢ଼ିଥିଲା ସେକଥା ମୁଁ ଜାଣେ । ଅଦ୍ୱୈତ ପ୍ରସାଦ ବିଶ୍ୱାଳ ଜଣେ ସାମ୍ବାଦିକ। ସେ ପ୍ରଗତିବାଦୀରେ ଲେଖିଲେ ବଜାର ଦର ବହୁତ ବଢ଼ିଚି । ଦୋକାନୀମାନେ ଜିନିଷ ଲୁଚାଉଛନ୍ତି । ତା' ପରଦିନ ସେ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଠାରୁ ଚିଠି ପାଇଲେ ଯେ ଏହା ମୋଟେ ସତ ନୁହେଁ । ବଜାର ଦର ବରଂ ଏମାରଜେନ୍ସି ଯୋଗୁଁ ଖସିଛି ଏବଂ ସର୍ବସାଧାରଣ ଏଥିରେ ଖୁସି ଅଛନ୍ତି । ତାଙ୍କୁ ଏକଥା ମଧ କୁହାଯାଇଥିଲା ଯେ ଏଣିକି ସମ୍ବାଦ ପଠାଇବା ପୂର୍ବରୁ ଆମ ଠାରୁ ପ୍ରକୃତ କଥା ବୁଝି ଲେଖିବେ ।

ଏମାରଜେନ୍ସିର ଅର୍ଥ ଯେ ଗଣମାଧମର କଣ୍ଠରୋଧ କରିବା ଏ କଥା ସେତିକିବେଳେ ଜଣାପଡ଼ିଥିଲା । ବିରୋଧ ଦଳ ନେତାଙ୍କୁ ଆରେଷ୍ଟ କରି ସେତେବେଳେ ଗଣମାଧମକୁ

ଖବର ଦିଆ ଯାଉ ନ ଥିଲା । କେତେକ ପ୍ରମୁଖ ସମ୍ବାଦ ପତ୍ରକୁ ସାବଧାନତାର ସହିତ ଖବର ଛାପିବାକୁ ସ୍ପଷ୍ଟ ଭାବେ କୁହାଯାଇଥିଲା ।



# କବି ମନମୋହନ ମିଶ୍ର

ମନମୋହନ ମିଶ୍ର ଥିଲେ ଖ୍ୟାତନାମା କବି ଓ ସଂଗ୍ରାମୀ ବାମପନ୍ଥୀ ନେତା । ଅବଶ୍ୟ ସେ କୌଣସି ବାମପନ୍ଥୀ ଦଳରେ ସେତେବେଳେ ନ ଥିଲେ । ସେ ଥିଲେ କଲଚରାଲ ଏକାଡ଼େମୀର ପରମ ବନ୍ଧୁ । ସେ ପ୍ରାୟ ଏକାଡ଼େମୀକୁ ଆସୁଥିଲେ ଏବଂ ଯେତେବେଳେ ସାହିତ୍ୟ ଉପରେ କିଛି କହୁଥିଲେ ଆମେ ତାଙ୍କ ଚାରିପଟେ ଘେରି ଯାଉ ଥିଲୁ ଏବଂ ତାଙ୍କ କଥାକୁ ଯେମିତି ପିଇ ଯାଉଥିଲୁ । କି ଅଗାଢ଼ ଜ୍ଞାନ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଠାରୁ ଚୀନ ଓ ଋଷିଆର ସାହିତ୍ୟ ଉପରେ ସେ ଅନର୍ଗଳ କହି ପାରୁଥିଲେ । ତାରି ଭିତରେ ଆସୁଥିଲା ମାର୍କ୍ସ, ଲେନିନ ଓ ମାଓ ସମେତ ଗର୍କୀ, ପୁସକିନ ଠାରୁ କାଫ୍‌କା ଓ ଶରତଚନ୍ଦ୍ର, ଟାଗୋର ଓ ପ୍ରେମଚନ୍ଦ ପର୍ଯ୍ୟନ୍ତ । ସେମିତିବି କବିତା ଆବୃତ୍ତି କରି ପାରୁଥିଲେ । କୋଟେସନ ସବୁ ମୁହଁରେ । ସମାଜବାଦୀ ସାହିତ୍ୟର ଚମତ୍କାର ବିଶ୍ଳେଷଣ । ରାଜନୀତି କଥା ମୋଟେ ଆଲୋଚନା ହେଉ ନ ଥିଲା । ଧୋତି ସାଧାସିଧା । ସାଧାରଣ ଧୋତି ଓ ପଂଜାବୀଟାଏ ।

ମୋ ଗଳ୍ପକୁ ସେ ଭଲ ପାଉଥିଲେ ବୋଲି କେତେଥର କହିଛନ୍ତି । ସେଇ ମନମୋହନ ମିଶ୍ର ଏମାରଜେନ୍ସି ଘୋଷଣା ହେଲାପରେ ଅଣ୍ଡରଗ୍ରାଉଣ୍ଡ ହେଇଗଲେ । ମାସାଧିକ କାଳ ସେ ଆଉ କଲଚରାଲ ଏକାଡ଼େମୀକୁ ଆସିଲେନି କି ଆମେ ତାଙ୍କ ଖବର ପାଇଲୁନି ।

ସେ ସେତେବେଳେ ବୀରମିତ୍ରପୁର ଲେବର ୟୁନିଅନର ନେତୃତ୍ୱ ନେଉଥିଲେ । ଖଣି ଶ୍ରମିକଙ୍କ ପ୍ରତି ଥିଲା ତାଙ୍କର ପ୍ରବଳ ଶ୍ରଦ୍ଧା । ସେଠି ସେ ବାରମ୍ବାର ଧର୍ମଘଟ କରାଉଥିଲେ । ରାଉରକେଲା ସହିତ ତାଙ୍କର ସମ୍ପର୍କ ନ ଥିବାରୁ ଆମ CISF ଟାରଗେଟରେ ସେ ନ ଥିଲେ । ଏମାରଜେନ୍ସିର ଅନେକ ଦିନପରେ ଥରେ ଶ୍ରୀଧର ମିଶ୍ର (ଆମ ଏକାଡ଼େମୀର ଜଣେ ଆଗଧାଡ଼ିର ସଦସ୍ୟ) ମୋତେ କହିଲେ ମନମୋହନ ବାବୁ କାଲି ଆସିବେ । ସେତ ଆପଣଙ୍କ କଥା ପ୍ରାୟ ପଚାରନ୍ତି । ମୁଁ ଆଶ୍ଚର୍ଯ୍ୟ ହେଲି । ମନ ମୋହନ ବାବୁ ମୋ କଥା ପଚାରନ୍ତି ? କୋଉ ହିସାବରେ ? ମୁଁ ଗୋଏନ୍ଦା ବିଭାଗର ବୋଲି ନା ମୁଁ ଭଲ ଗପ ଲେଖେ ବୋଲି । ଶ୍ରୀଧର ବାବୁ ଆହୁରି କହିଲେ ମନମୋହନ ବାବୁ ଏମାରଜେନ୍ସି ସମୟରେ କେତେଥର ରାଉରକେଲା ଆସି ମୋ ଘରେ ରହୁଥିଲେ । ମୁଁ ସେଥିରେ ଆଶ୍ଚର୍ଯ୍ୟ ହେଇଥିଲେ ମଧ୍ୟ ଆଗ୍ରହ ପ୍ରକାଶ କରି ନ ଥିଲି । ଆବଶ୍ୟକତା ନ ଥିଲା । ଉଭୟ ଶ୍ରୀଧର ଓ ମନମୋହନ ମିଶ୍ର ଥିଲେ ବାଣପୁର ଅଂଚଳର । ତେଣୁ ଦୁହିଁଙ୍କ ମଧ୍ୟରେ ବହୁ ପୂର୍ବରୁ ଆତ୍ମୀୟତା ରହିଥିଲା ।

୧୯୭୬ରେ କଲ୍‌ଚରାଲ୍ ଏକାଡେମୀ ତରଫରୁ ଆରମ୍ଭ ହେଲା ଲୋକ ନାଟକ ମହୋତ୍ସବ । ସେତେବେଳେ ମନମୋହନ ବାବୁ ପ୍ରାୟ ଆସୁଥିଲେ ଏବଂ ଲେଖକ ଓ କଳାକାରଙ୍କ ଶହଶହ ଭିଡ଼ ଭିତରେ ଦିନେ ଦି ଦିନ ସେଇଠି ରହୁଥିଲେ । ମୁଁ ଥିଲି ତାଙ୍କର ଜଣେ ପ୍ରିୟ ସ୍ତାବକ । ୧୯୭୯ରେ ମୁଁ ରାଉରକେଲା ଛାଡ଼ିବା ପରଠାରୁ ତାଙ୍କ ସହିତ ଆଉ ଭେଟ ହେଲା ନାହିଁ କି ତାଙ୍କ ଖବର ମଧ ରଖି ନ ଥିଲି । ୧୯୮୫ରେ ମୁଁ ଯେତେବେଳେ ପାରାଦ୍ୱୀପ ପୋର୍ଟକୁ ଆସିଲି ସେତେବେଳେ ପାରାଦୀପରୁ କଟକ ଯିବା ଆସିବା ବାଟରେ କେତେଥର ତାଙ୍କ ଘରକୁ ଯାଇଚି । ପୁଣି ସେଇ ଆତ୍ମୀୟତା ଯୋଡ଼ି ହେଇଗଲା ପରେ ମୁଁ ଥରେ ତାଙ୍କୁ କହିଲି ମୋର ଆସନ୍ତା ଗଳ୍ପ ବହିର ମୁଖବନ୍ଧଟିଏ ଆପଣ ଲେଖିବେ । ସେ ସଂଗେ ସଂଗେ ରାଜି ହେଲେ । କହିଲେ ନବପତ୍ରରେ ପ୍ରକାଶିତ ପ୍ରତ୍ୟେକ ଗଳ୍ପ ମୁଁ ତୁମର ପଢ଼ିଚି । ତେଣୁ ସେ ବହିର ମୁଖବନ୍ଧ ମୁଁ ନିଶ୍ଚୟ ଲେଖିବି ।

କିନ୍ତୁ ମୋର ଦୁର୍ଭାଗ୍ୟ ଯେ ବହି ପ୍ରକାଶ ପାଇଲା ବେଳକୁ ସେ ଆମେରିକା ଭ୍ରମଣରେ ଚାଲି ଯାଇଥିଲେ । ମୋର ସେ ଇଚ୍ଛା ଅପୂର୍ଣ୍ଣ ରହିଗଲା । ୧୯ ନଭେମ୍ବର ୨୦୦୦ରେ ତାଙ୍କର ମୃତ୍ୟୁ ହୁଏ । ହାୟ, ଏ ପ୍ରକାର ମହାନ ପ୍ରତିଭାଟିକୁ ଓଡ଼ିଶା ଚିହ୍ନିଲା ନାହିଁ । ତାଙ୍କ କୃତି ସବୁ ଓଡ଼ିଆ ସାରସ୍ୱତ ଜଗତର ଅମୂଲ୍ୟ ଗ୍ରନ୍ଥ । କିନ୍ତୁ କିଏ ବା ସେଥିରେ ଆଗ୍ରହ ପ୍ରକାଶ କରୁଚି । ଆମର ସାହିତ୍ୟ ଏକାଡ଼େମୀ ସଦସ୍ୟମାନେ ଏଥିରେ କେବେବି ଚିନ୍ତା କରିନାହାନ୍ତି । ଓଡ଼ିଶା ସାହିତ୍ୟ ଏକାଡ଼େମୀତ ଜନ୍ମରୁ ହାତରେ ବେଡ଼ିବାନ୍ଧି ଠିଆ ହେଇଛି । ସଚ୍ଚି ରାଉତରାୟଙ୍କ ସମୟ ଛଡ଼ା ଆଉ କେବେ ମୁହଁ ଖୋଲି ପାରି ନାହିଁ । ତାହା ସବୁବେଳେ ପରାଧୀନ । ଆମର ସେ ପରାଧୀନତାରୁ ମୁକ୍ତି ପାଇଁ ମଧ ଆମେ କେବେ ଚେଷ୍ଟା କରିନୁ । ଗୋଟାଏ ଅଭିଶପ୍ତ ଦେଶରେ ଜନ୍ମ ଆମର ?

ଏଇ ମହାନ ବିପ୍ଳବୀ କବିଙ୍କ ଜନ୍ମଜୟନ୍ତୀ ଏବେ ରାଉରକେଲା ପ୍ରେସ କ୍ଲବ ହିଁ ପାଳନ କରି ଆସୁଚି । ମୋର ସୌଭାଗ୍ୟ ମୁଁ ସେଥିରେ ଯୋଗ ଦେବାର ସୁଯୋଗ ପାଏ ବୋଲି ସେଠି ତାଙ୍କ ଫଟୋ ଚିତ୍ରରେ ଫୁଲଟିଏ ଦେଇଥାଏ ଓ ତାଙ୍କୁ ମୋର ଭକ୍ତିର ପ୍ରଣାମଟିଏ ଜଣେଇ ଥାଏ । ପରେ ତାହା ପୁଣି ବନ୍ଦ ହେଇଗଲା ।

ସୁଖର କଥା ଏହି ସାରସ୍ୱତ ସାଧକଙ୍କ ସମଗ୍ର କୃତୀକୁ ନେଇ ଅନ୍ୟ ଜଣେ ବିଶିଷ୍ଟ ଲେଖକ ଆଶିଷ ମହାପାତ୍ର (ତାଙ୍କ ଭଣଜା) ତାଙ୍କର ବ୍ୟକ୍ତିଗତ ଚେଷ୍ଟାରେ ଏବଂ କିଛି ଲେଖକ ସାହିତ୍ୟିକ ଯଥା ବ୍ରଜନାଥ ରଥ, ବିଭୂତି ପଟ୍ଟନାୟକ ପ୍ରଭୃତିଙ୍କ ସହାୟତାରେ 'ମନମୋହନ ମିଶ୍ର ଗ୍ରନ୍ଥାବଳୀ' ଏବଂ 'କୋଟି କଣ୍ଠର ସ୍ପନ୍ଦନ' ପ୍ରଭୃତି ଏବେ ପ୍ରକାଶ ପାଉଚି ଓ ଆହୁରି ପ୍ରକାଶ ପାଇବ ମଧ । ମନମୋହନ ବାବୁଙ୍କର ଶେଷ ଜୀବନ ବେଳକୁ

ତାଙ୍କୁ ସ୍ମୃତିଭ୍ରମ ରୋଗ ଆକ୍ରମଣ କରିଥିଲା । ସେ କିଛି ମନେ ପକେଇ ପାରୁ ନ ଥିଲେ । ହାୟ, ତାଙ୍କ ପଛରେ ରହିଥିବା ବିରାଟ ଇତିହାସଟିଏ ଲୁଚିଗଲା ।

୧୯୬୯ ମସିହାର ଗୋଟାଏ ଖରାବେଳ । ଏଇ ମହାନ କବିଙ୍କୁ ମୁଁ ଭେଟିଥିଲି ରାଉରକେଲା ମେନ ମାର୍କେଟର ଫୁଟ୍‌ପାଥ୍ ଉପରେ । ସେ ହାତରେ ଧରିଥିଲେ ବିଡ଼ାଏ ଚଟି ବହି । ମୋତେ କହିଲେ ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ ଗଫର ଖାଁ, ଏବକୁ ଏ ନାଁ ସମସ୍ତେ ଭୁଲି ଯିବେଣି । ସେ ଆସୁଚନ୍ତି ରାଉରକେଲା ପରା ? ଏଇ ନିଅ, ତାଙ୍କ ପାଇଁ ଏ ବହି । ସେ ବହି ବିକୁଥିଲେ । ମୁଁ ମଧ ନେଲି । ମନେ ନାହିଁ କେତେ ପଇସା ଦେଇଥିଲି । ସେଇ ମନମୋହନ ମଧ ରାଉରକେଲା ବିଧାନସଭାରୁ ଥରେ ନିର୍ବାଚନ ଲଢୁଥିଲେ, କମ୍ୟୁନିଷ୍ଟମାନଙ୍କ ସମର୍ଥନରେ । ଘର ଘର ବୁଲି ପ୍ରଚାର କରୁଥିଲେ ଓ ଚାନ୍ଦା ମଧ ସଂଗ୍ରହ କରୁଥିଲେ । ମୋ ଘର ସାତ ନମ୍ବର ସେକ୍ଟର E/29 ଘରେ ପହଞ୍ଚିଲେ । ମୋତେ ତାଙ୍କ ପ୍ରଚାର ପତ୍ର ଦେଲେ ଏବଂ କହିଲେ ଯାହା ଚାନ୍ଦା ଦଉଚ ଦିଅ । ମୁଁ ତାଙ୍କୁ ଭିତରକୁ ଡ଼ାକିଲି । ମନା କରି କହିଲେ ବେଳ ନାହିଁ । ମୁଁ କିଛି ଚାନ୍ଦା ଦେଲି, ତେବେ ମନେ ନାହିଁ କେତେ ଟଙ୍କା ।

ଅସଲ କଥା ହେଲା ମୁଁ କେବେବି ତାଙ୍କୁ ଜଣେ ରାଜନେତା କି କମ୍ୟୁନିଷ୍ଟ ବୋଲି ଭାବୁ ନ ଥିଲି କି ସେ ମଧ ମୋତେ କେବେ ଗୁଏନ୍ଦା ବିଭାଗ କର୍ମଚାରୀ ବୋଲି ଭାବୁ ନ ଥିଲେ । ତେଣୁ ମୋ ସରକାରୀ କଲମରେ ମୁଁ ଥରେ ବୋଲି ତାଙ୍କ ନାଁ ଲେଖି ନାହିଁ । ସଦାବେଳର ପ୍ରଣମ୍ୟ ଲୋକଟିକୁ ମୁଁ ସରକାରୀ ଫାଇଲ ଭିତରେ ପୂରେଇ ନଥିଲି ।



# ଏମାରଜେନ୍ସିରେ ଲାଭ କ୍ଷତି

ଜଣେ ସଚେତନ ନାଗରିକ ଭାବରେ ହେଉ ବା ଜଣେ ପ୍ରଗତିଶୀଳ ଲେଖକ ଭାବରେ ହେଉ ଏମାରଜେନ୍ସି ଯେ ଲୋକଙ୍କ ମଙ୍ଗଳ କଥା ଚିନ୍ତା କରିପାରେ ଏହା କେବେବି କେହି ଚିନ୍ତା କରେନି । ଏମାରଜେନ୍ସି କିପରି ଲୋକଙ୍କ ଉପରେ ଅତ୍ୟାଚାର କରିଛି, ସମ୍ବିଧାନକୁ ଦଳିମକଚି ଦେଇଛି ଏବଂ ସର୍ବୋପରି ପ୍ରଶାସନକୁ ସମ୍ପୂର୍ଣ୍ଣ ହାତ ମୁଠାରେ ରଖି ନିଜ ଇଚ୍ଛାନୁସାରେ ପରିଚାଳନା କରିଛି ତାକୁ ଦେଖିଛି । ସାହିତ୍ୟ ଓ କଳା ମଧ ସେ ଅତ୍ୟାଚାରରୁ ବର୍ତ୍ତିନାହିଁ, କିମ୍ବା 'କିଶାକୁର୍ଣିକା' ପରି ଲୋକପ୍ରିୟ ସିନେମାକୁ ମୁକ୍ତି ମିଳି ନଥିଲା । ସ୍ଥିତାବସ୍ଥା ବିରୋଧି ବହୁ ଲେଖକ ସେତେବେଳେ ପ୍ରମାଦ ଗଣୁ ଥିଲେ । ଲେଖିବେ କି ନାହିଁ ? କ'ଣ ଲେଖିବେ ? ପ୍ରଶାସନର ଖଡ଼୍‌ଗ ସବୁବେଳେ ସମସ୍ତଙ୍କ ଯୋଗୁଁ ପାରି ନ ଥିଲେ ।

ଏବେ ଘୋଷିତ ଏମାରଜେନ୍ସି ନାହିଁ ସତ କିନ୍ତୁ ସମୟ ଭିନ୍ନ ଅଛି କି ? ବିନା ଏମାରଜେନ୍ସିରେ ଏବେ ନ୍ୟାୟପାଳିକାକୁ ହାତକୁ ନେବାକୁ ଚେଷ୍ଟା କରାଯାଉ ନାହିଁ କି ? ଯା ହେଉ ଏବେ ଏଠି ସେ ସବୁର ଆଲୋଚନା ଆମର ଉଦ୍ଦେଶ୍ୟ ନୁହେଁ ? ସେତେବେଳେ ଉତ୍ତର ଭାରତର କେତେକ ଅଂଚଳ ଯଥା ବିହାର, ୟୁପି, ରାଜସ୍ଥାନ ପ୍ରଭୃତି ରାଜ୍ୟରେ ପୋଲିସ ଜୁଲମ ସୀମା ଅତିକ୍ରମ କରିଥିଲା ବେଳେ ଦକ୍ଷିଣ ଭାରତରେ ଏତେ ବେଶୀ ଜୁଲମ ହେଇ ନ ଥିଲା। ତେଣୁ ପୋଲିସର ସମସ୍ତ ଇଣ୍ଟେଲିଜେନ୍ସ ରିପୋର୍ଟରେ ପରବର୍ତ୍ତୀ ନିର୍ବାଚନରେ ଇନ୍ଦିରା ନିଶ୍ଚୟ ଜିତିବେ ବୋଲି କୁହାଯାଇଥିଲେ ମଧ୍ୟ ତାଙ୍କର ଚରମ ବିପର୍ଯ୍ୟୟ ଘଟିଥିଲା।

ଏମାରଜେନ୍ସିରେ ସବୁଠାରୁ ବିଚିତ୍ର ଘଟଣା ଘଟିଥିଲା ଯେ ମନ୍ତ୍ରୀ ମୁଖ୍ୟମନ୍ତ୍ରୀଙ୍କ ପ୍ରିୟ ଲୋକମାନେ ହିଁ ଶାସନର ଡ଼ୋର ହାତରେ ଧରିଥିଲେ। ଯୋଗ୍ୟତା ସେତେବେଳେ ମାପକାଠି ନ ଥିଲା ଏବଂ ଏହି ଲୋକମାନେ ସେତେବେଳେ କ୍ଷମତା ବଳରେ ଲୋକଙ୍କ ଉପରେ ଜୁଲୁମ ତ କରିଥିଲେ ଅଧିକନ୍ତୁ ଅନୁଚିତ ପ୍ରଶଂସା ପାଇ ପ୍ରମୋଶନ ସହିତ ପଦକ ମଧ୍ୟ ପାଇଲେ। ଶ୍ରମିକ ସମସ୍ୟାକୁ ନିୟନ୍ତ୍ରଣ ଓ ସାମୟିକ ଭାବରେ ପ୍ରତିରୋଧ କରାଯାଇଥିବାରୁ ପବ୍ଲିକ ସେକ୍ଟର ମୁଖ୍ୟମାନେ ସେହି ସମୟରେ ଉତ୍ପାଦନ ଯଥେଷ୍ଟ ବଢ଼ିଚି କହି ସରକାରକୁ ମିଛ ରିପୋର୍ଟ ଦେଲେ। ସେଇ ଅନୁସାରେ ପ୍ରମୋଶନ ସହିତ ରାଷ୍ଟ୍ରୀୟ ପୁରସ୍କାର ମଧ୍ୟ ହାତେଇଲେ । ଏସବୁ ତଳ ଶ୍ରେଣୀରେ ପ୍ରଚଣ୍ଡ ଅସନ୍ତୋଷ ସୃଷ୍ଟି କଲା। କିନ୍ତୁ ମୁହଁ ଖୋଲିବ କିଏ ? ଗୋଟିଏ କୋଇଲା କମ୍ପାନୀର ମୁଖ୍ୟ ଏମାରଜେନ୍ସି ପରେ ସରକାରଙ୍କୁ ମିଛ ରିପୋର୍ଟ ଦେଇ ପ୍ରଚୁର କ୍ଷତି କରାଇଛନ୍ତି ବୋଲି CBI ଦ୍ୱାରା ଆରେଷ୍ଟ ହେଇଥିବା ପରେ ଜଣାପଡ଼ିଲା। ଏସବୁ ସାଧାରଣ କଥା। ଇଂରାଜୀରେ କଥାଟିଏ ଅଛି Power courrupts absolute power corrupts absolutely। ଜଣକ ହାତରେ ଯେତେବେଶୀ କ୍ଷମତା ରହିବ ସେ ସେତେ ବେଶୀ ଦୁର୍ନୀତି କରିବ।

ରାଉରକେଲାରେ କିନ୍ତୁ ଗୋଟିଏ କଥା ମୁଁ ସ୍ୱୀକାର କରିବି। ଏମାରଜେନ୍ସି ଘୋଷିତ ହେବା ପରେ ଶ୍ରମିକ ଅଶାନ୍ତି ହଠାତ୍ କମିଗଲା । ସବୁଠି ଗୋଟାଏ ଶାନ୍ତ ବାତାବରଣ। କୋଉଠି ଟିକିଏ ବୋଲି ଗୋଳମାଳ ନାହିଁ। କାମବନ୍ଦ, ଅଫିସର ବିରୋଧି ସ୍ଲୋଗାନ, ଘେରାଓ, ଧାରଣା ଯାହା କାରଖାନା ଭିତରେ ଦୈନନ୍ଦିନ କାର୍ଯକ୍ରମ ଥିଲା ଏବଂ ପୋଲିସ ସହିତ ଆମେ ଝାଳନାଳ ହେଇ ଯାଉଥିଲୁ ସେସବୁ ପ୍ରାୟ ବନ୍ଦ ହେଇଗଲା। ଆମେ ସବୁ ଶାନ୍ତିରେ ବସି ଗପସପ କରୁ। ତେଣୁ ଏଇ ସମୟରେ ଆମର ଦୈନିକ, ସାପ୍ତାହିକ ବା ମାସିକ ରିପୋର୍ଟରେ ଆଉ ମିଛ ଓ ଅବାନ୍ତର କଥା ଲେଖା ଗଲା ନାହିଁ। ଆମେ ବି ଏମାରଜେନ୍ସିକୁ ପ୍ରଶଂସା କଲୁ।

ସୁଖର କଥା ସେତେବେଳେ ଟ୍ରେନ ଗୁଡ଼ିକ ଏକଦମ ଠିକ ସମୟରେ ଚାଲିଲା। ଟ୍ରେନର ଅନିୟମିତତାକୁ ଦେଖି ଜଣେ ବ୍ୟଙ୍ଗକାର ସେତେବେଳେ କହିଥିଲେ "ଜଣେ ଯାତ୍ରୀ ଷ୍ଟେସନ ମାଷ୍ଟରଙ୍କୁ କହିଲେ 'ଆଜି କଅଣ ଟ୍ରେନଟା ଘଂଟାଏ ପୂର୍ବରୁ ଆସିଲାଣି ? ଷ୍ଟେସନ ମାଷ୍ଟର କହିଲେ ଏଇଟା କାଲିର ଟ୍ରେନ।"

ଏମାରଜେନ୍ସି ସମୟରେ ଏଇଟା ସାଧାରଣ ଜନତା ପାଇଁ ଗୋଟାଏ ଶୁଭ ଆଶୀର୍ବାଦ। ଠିକ ସେମିତି ମଧ୍ୟ କାରଖାନାକୁ ଶ୍ରମିକମାନଙ୍କ ଆସିବାରେ ଗୋଟାଏ ମିନିଟ ମଧ୍ୟ ଡ଼େରି ହେଉ ନ ଥିଲା। ହଠାତ କେମିତି ଏତେ ସୁଧାର ପାଲଟିଲେ କେଜାଣି। ଅଫିସରମାନଙ୍କ ମଧ୍ୟରେ ଏ ସମୟାନୁବର୍ତ୍ତିତା ଆହୁରି ଭଲଭାବରେ ଦେଖା ଯାଇଥିଲା। ତାର କାରଣ ଗୋଟାଏ ଅଜଣା ଭୟ ସମସ୍ତଙ୍କୁ ଆକ୍ରାନ୍ତ କରି ରଖିଥିଲା। ଏଇ ସମୟରେ ବିଶେଷ କରି ବେଶ କିଛି ଶ୍ରମିକଙ୍କୁ ଛଟେଇ ଓ ଅନ୍ୟ ଦଣ୍ଡ ବିଧାନ କରାଯାଇଥିବାରୁ ଏବଂ ସେ ସବୁରେ ଆମର ପ୍ରଚ୍ଛନ୍ନ ହାତ ଅଛି ବୋଲି ଲୋକଙ୍କ ଧାରଣା ଥିବାରୁ ସମସ୍ତଙ୍କର ଆମ ପ୍ରତି ଅଜଣା ଭୟ ମାଡ଼ି ଗୋଡ଼ାଉ ଥିଲା । ଭୟର ସମ୍ମାନ ଆମକୁ ଆମୋଦିତ କରୁଥିଲା। କିନ୍ତୁ ମୋ ଭିତରେ ଥିଲା ଆଉ ଗୋଟିଏ ଭୂପେନ ମହାପାତ୍ର। ତାର ସ୍ୱାଭିମାନ ଭିନ୍ନ। ସେ କିନ୍ତୁ ଏ ମିଛ ସମ୍ମାନକୁ ମୋଟେ ପସନ୍ଦ କରୁ ନ ଥିଲା । କିନ୍ତୁ ବନ୍ଧୁ ସାଙ୍ଗରେ ଯେତେ ଆନ୍ତରିକତାର ସହିତ ମିଶିବାକୁ ଚାହିଁଲେ ମଧ୍ୟ ସେତକ ହେଇ ପାରୁ ନ ଥିଲା। ଏମାରଜେନ୍ସି ଆଗର ସମ୍ପର୍କ ଓ ପରର ଚା ଜଳଖିଆର ସମ୍ପର୍କ ଭିତରେ ଥିବା ପାର୍ଥକ୍ୟ ଫିଟି ହେଇ ପଡୁଥିଲା।



# ରାଞ୍ଚି ହେଭି ଇଞ୍ଜିନିୟରିଂ କର୍ପୋରେସନ୍

ସି.ଆଇ.ଏସ୍.ଏଫ୍. କୁ ଆସିବା ପରେ ମୋର ପ୍ରଥମ ବଦଳି ହୋଇଥିଲା ଏଚ୍.ଇ.ସି. ରାଞ୍ଚିକୁ । ସେଠାରେ ମୁଁ ଜଏନ୍ କଲି ନେତାଜୀଙ୍କ ଜନ୍ମ ଦିନରେ - ୨୩ ଜାନୁଆରୀ ୧୯୭୯ରେ । ଜଣେ ଇନ୍ସପେକ୍ଟର ମୋତେ ସାଥିରେ ନେଇ ଗଲେ । ପ୍ରଥମ ପୋଷାକ ପିନ୍ଧିଲି ସେଇଠି । ଇନ୍ସିପେକ୍ଟର ପୋଷାକ ଠିକରେ ପିନ୍ଧି ପାରୁ ନଥିଲି ବୋଲି ରାଉରକେଲାର ପୁରୁଣା ବନ୍ଧୁ ନକୁଳ ସାମଲ ମୋର ଭୁଲ ସୁଧାରି ଦେଇଥିଲେ ।

ରାଞ୍ଚିରେ ସି.ଆଇ.ଏସ୍.ଏଫ୍. ୟୁନିଟ ଓ ହେଭି ଇଞ୍ଜିନିଅରିଙ୍ଗ କାରଖାନା ଦେଖି ଆଶ୍ଚର୍ଯ୍ୟ ହେଲି । ଜଣେ ଆଇ.ପି.ଏସ୍. କମାଂଣ୍ଡାଟ୍ ଥିଲାବେଳେ ଆଉ ଜଣେ ଆଇ.ପି.ଏସ୍. ଡି.ଆଇ.ଜି. । ଜଣେ ବିହାର ପ୍ରଦେଶର ତ ଆଉ ଜଣେ ପଞ୍ଜାବର । କେହି କାହାକୁ ଦେଖି ପାରନ୍ତିନି ।

ବ୍ରହ୍ମାଙ୍କର ଚାରିଟା ମୁଣ୍ଡ । କିନ୍ତୁ ସମଗ୍ର ମଣିଷ ସମାଜ ପାଇଁ କାମ କରେ । ସି.ଆଇ.ଏସ୍.ଏଫ୍. ୟୁନିଟର ମାତ୍ର ଦୁଇଟା ମୁଣ୍ଡ, କିନ୍ତୁ ଜଣେ ଅନ୍ୟକୁ ମୁହଁ ଟେକି ଦେଖେ ନାହିଁ । ଫଳରେ ଡିପାର୍ଟମେଂଟର ଅବସ୍ଥା ଅନୁମାନ କରି ହେଉଥିବ । ଚାରିଜଣ ସହକାରୀ କମାଂଣ୍ଡାଟ୍ । କିନ୍ତୁ କାହାରି ସହ କାହାରି ସମ୍ପର୍କ ନାହିଁ । ହୁଏତ ସାତ ଦିନକୁ ଥରେ ଦେଖା ହେଉ ନଥିବ । ପ୍ଲାଂଟ୍‌ର ଅବସ୍ଥିତି ସେମିତି । ସମଗ୍ର ଏଚ୍.ଇ.ସି.ଟା ତିନି ଭାଗରେ ବିଭକ୍ତ । ତିନିଟାର ସ୍ଥିତି ଅଲଗା ଅଲଗା ଜାଗାରେ । କମାଂଣ୍ଡାଟ୍ ଓ ଡି.ଆଇ.ଜି.ଙ୍କ ଅଫିସ ମଧ୍ୟ । ଫଳରେ କେହି ଫୋର୍ସଙ୍କ କଥା ବୁଝି ପାରନ୍ତି ନାହିଁ । ସବୁଠାରୁ ଆଶ୍ଚର୍ଯ୍ୟର କଥା କନେଷ୍ଟବଲ୍‌ଠାରୁ ଇନ୍ସପେକ୍ଟର ପର୍ଯ୍ୟନ୍ତ କାହାରି ଯିବା ଆସିବା ପାଇଁ ଗାଡ଼ିର ବ୍ୟବସ୍ଥା ନାହିଁ, ଯାହା ପ୍ରଥମ ଆବଶ୍ୟକତା ଗୋଟାଏ ଫୋର୍ସ ପାଇଁ । ଏ କଥା କମାଂଣ୍ଡାଟ୍ କିମ୍ବା ଡି.ଆଇ.ଜି.ଙ୍କୁ ପଚାରିଲେ ସେମାନେ କହନ୍ତି ଏଚ୍.ଇ.ସି.ତ ଭୟଙ୍କର କ୍ଷତିରେ ଚାଲୁଚି, ଗାଡ଼ି ଯୋଗାଇ ପାରିବନି ।

ଆଶ୍ଚର୍ଯ୍ୟ, ପଚାଶ ଦଶକରେ ଯୋଉ ହେଭି ଇଞ୍ଜିନିଅରିଂ କାରଖାନା କେବଳ ବୃହତ୍ ପବ୍ଲିକ ସେକ୍ଟରକୁ ମେସିନ ଯୋଗାଇବାକୁ ତିଆରି ହେଇଥିଲା ଏତେ ଶୀଘ୍ର ସେ ମରଣ ଶଯ୍ୟାକୁ ଗଲା କାହିଁକି ? ତା'ର ଉତ୍ତର କିଏ ଦେବ ? ଦିଲ୍ଲୀ କେବଳ କହିପାରିବ । ଆମ ନେତାମାନେ କହିପାରିବେ- ଯେଉଁମାନେ ସ୍ୱାଧୀନତାଠାରୁ ଏଯାବତ କେବଳ 'ଶାଗୁଣା ବିଲୁଆ'ର କାମକରି ଆସୁଛନ୍ତି ।

ଏ ବିଷୟରେ ମୋର ବେଶ କିଛି ଅଭିଜ୍ଞତା ଅଛି । ବେଶ କିଛି ଲେଖିଚି ମଧ୍ୟ, ସେ କଥା ପରେ ।

ଦୋଷ ଆମ ସି.ଆଇ.ଏସ୍.ଏଫ୍.ର ମଧ୍ୟ କମ୍ ନୁହେଁ । ୧୯୬୯ରୁ ସି.ଆଇ.ଏସ୍.ଏଫ୍. ର ଜନ୍ମ ହେଇଥିଲେ ମଧ୍ୟ ଉପରେ ଥିବା ବାବୁମାନେ ଫୋର୍ସର ଆବଶ୍ୟକତା ଉପରେ ନିୟମଟିଏ ତିଆରି କରି ପାରିଲେ ନି । ଅନେକ ଦିନ ଯାଏ ଡେପୁଟେଶନରେ ଆସୁଥିବା ବାବୁମାନେ ଏଇଟାକୁ ଗୋଟାଏ ଆମୋଦ ପ୍ରମୋଦର ରଙ୍ଗମଂଚ ଭାବେ ବ୍ୟବହାର କଲେ । ଏଇଟା ଯେ କେବଳ ସି.ଆଇ.ଏସ୍.ଏଫ୍.ରେ ହେଲା ତା' ନୁହେଁ ଅନ୍ୟ ଫୋର୍ସରେ ଅର୍ଥାତ୍ ସି.ଆର୍.ପି., ବି.ଏସ୍.ଏଫ୍.ରେ ମଧ୍ୟ ହେଉଥିଲା । ଫଳରେ ପୁଞ୍ଜିଭୂତ ଅସନ୍ତୋଷ କେତେ ଦିନ ଚାପିହେଇ ରହନ୍ତା ? ଆରମ୍ଭ ହେଲା ଉଦ୍‌ଗୀରଣ । ସାରା ଭାରତ କମ୍ପିଲା । 'ଅଲ୍ ଇଣ୍ଡିଆ ପୋଲିସ ଷ୍ଟ୍ରାଇକ୍' ଅଭୂତ ପୂର୍ବ । ସରକାରଙ୍କ ନିଦ ଭାଙ୍ଗିଲା । କିନ୍ତୁ ସେତେବେଳେକୁ ନେଡ଼ିଗୁଡ଼ କହୁଣୀକୁ ବହି ଯାଇଥିଲା । ସି.ଆର.ପି., ସି.ଆଇ.ଏସ୍.ଏଫ୍. ପ୍ରଭୃତି ଫୋର୍ସ ଯେ ରାଜ୍ୟରୁ ବିତାଡ଼ିତମାନଙ୍କର ଡମ୍ପିଂ ୟାର୍ଡ଼ ହେବା ଉଚିତ ନୁହେଁ ଏ କଥା ସରକାର ବୁଝିଲେ ।

ରାଞ୍ଚିର ଗୋଟିଏ କାମ ଅବଶ୍ୟ ମୋର ବରାବର ମନେ ରହିବ । କି ଉକ୍ରଟ ଜାତି ପ୍ରଥା ଏ ରାଜ୍ୟରେ ! କି ବିକୃତ ମାନସିକତା ! ଦିନେ ସକାଳେ ଆମ ଅଫିସର ଜଣେ ସୁଇପର, ଯିଏ କି ଘରଦ୍ୱାର ଓ ପାଇଖାନା ସଫା କରେ ଆସି ପହଂଚିଲା । କାନ୍ଦ କାନ୍ଦ ଅବସ୍ଥା । ବିହାରର ଲୋକ । ସେତେବେଳେ ବିହାର ଅବିଭକ୍ତ ।

'କ'ଣ କିରେ ?' ମୁଁ ପଚାରିଲି ।

ସେ ଭୋ କିନା କାନ୍ଦି ପକାଇଲା । ପାଖକୁ ଗଲି । କାନ୍ଧରେ ହାତ ଦେଲି । କହ କଅଣ ହେଇଚି ?

ସେ କହିଲା, 'ମୋ ସ୍ତ୍ରୀ ବେମାର । ହସ୍ପିଟାଲରେ ପଡ଼ିଚି । ଡାକ୍ତର କହିଲେ ରକ୍ତ ଦରକାର । ମୁଁ ପାଉନି । ସମସ୍ତଙ୍କୁ କହି ସାରିଲିଣି ।

ମୁଁ ଆଶ୍ଚର୍ଯ୍ୟ ହେଲି । ଏଇଟା କିମିତି ସମ୍ଭବ ? ବାରଶ ଫୋର୍ସ । ସମସ୍ତେ ଯୁଆନ । ରକ୍ତ କାହିଁକି ମିଳୁନି ?

ସମସ୍ତେ ମନା କରୁଛନ୍ତି ସାର । ଛୋଟ ଜାତିକୁ ରକ୍ତ କିଏ ଦେବ ?

ମୁଁ ଥମ ହେଇଗଲି । ଜାତି ପ୍ରଥାଟା କ'ଣ ମାନବିକତା ଉପରେ ? ମୁଁ କହିଲି ତୁ ଚିନ୍ତା କରନା । ମୁଁ ରକ୍ତ ଦେବି ତୁ ଯାଆ । ମୁଁ ଦଶଟା ବେଳକୁ ହସ୍ପିଟାଲ ଯିବି ।

ମୁଁ ଗଲି ଏବଂ ରକ୍ତ ଦେଇ ଆସିଲି । ମୋ ବ୍ଲଡ୍‌ଗ୍ରୁପ୍ ତା ସହିତ ମିଶିବାରୁ ମୁଁ ରକ୍ତ ଦେଇଦେଲି ।

ପ୍ରାୟ ୧୨ଟାରେ ମୁଁ ଅଫିସରେ ଥିବା ବେଳେ ଫୋନ ଆସିଲା ।

ଆପ୍ ଖୁନ୍ ଦେ ଦିଆ ?

ଜୀ । ଲେକିନ ଆପ୍ ? ମୁଁ ପଚାରିଲି ।

ଆପ୍ ଛୋଟା ଜାତ୍ ହେ କ୍ୟା ?

ତାଙ୍କ କଣ୍ଠରୁ କ୍ରୋଧର ମାତ୍ରା ବୁଝି ପାରୁଥିଲି । ମୁଁ ବି ଉତ୍ତର ତାଙ୍କୁ ଦେଇ ଥାଆନ୍ତି ? କିନ୍ତୁ ଆବଶ୍ୟକତା ମନେ କଲିନାହିଁ ।

ଲଂଚ୍ ପିରିଅଡ୍‌ରେ କମାଂଣ୍ଡାଟ୍ ମୋତେ ଡକେଇଲେ । ମୋତେ ପଚାରିଲେ ବିହାରର କଥା ବୋଧେ ତୁମେ ଜାଣିନ । କଥାଟା ଏଠି ଭଲ ଭାବରେ ଯାଉନି । ଭଲ ହେବ ଦରଖାସ୍ତଟିଏ ଲେଖି ଆଣ । ମୁଁ ସ୍ପେସିଆଲ କେଜୁଆଲ ଲିଭ ମଞ୍ଜୁର କରି ଦେଉଚି । ଯାଇ ଟିକେ ରାଉରକେଲାରୁ ବୁଲି ଆସ । ଟିକେ ଥଣ୍ଡା ପଡ଼ିଯାଉ । ମୋ ପରିବାର ସେ ପର୍ଯ୍ୟନ୍ତ ରାଉରକେଲାରେ ଥାନ୍ତି ।

କଥାଟା ଯେ ଏତେ ଦୂର ଯାଇ ପାରେ ଏହା ମୋର ଚିନ୍ତାର ବାହାରେ । ସେ ଦିନ ଚାରଟା ବେଳେ ଦୁଇ ଜଣ ଜୱାନ ମୋତେ ନେଇ ହାତିଆ ଷ୍ଟେସନରେ ଗାଡ଼ିରେ ବସେଇ ଦେଇ ଆସିଲେ ।

କଥାଟା ମୋର ବରାବର ମନେ ରହିବ । ମଣିଷ ମନରୁ ଏ ବିକାର କେବେ ଯିବ ? କେବେ ମଣିଷଟିଏ ସବୁ ମଣିଷକୁ ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ଭଲ ପାଇ ପାରିବ ।

ମୁଁ ବେଶ ଦୁଇ ଚାରିଟି ଗଳ୍ପ ଯା ଭିତରେ ଲେଖିଲା ପରେ ମନ ମାନିଲାନି । ମୋର ପ୍ରଥମ ଉପନ୍ୟାସ 'ପ୍ରଥମ ପୃଥିବୀ' ଜାତି ପ୍ରଥା ବିରୁଦ୍ଧରେ ହିଁ ଲିଖିତ । ବହିଟି ଛାପିଛନ୍ତି ଆଶା ପୁସ୍ତକାଳୟ, ବ୍ରହ୍ମପୁର (୧୯୯୮) । ବହିଟି ଭଲ ବିକ୍ରି ହେଉଚି ବୋଧେ । ପ୍ରାୟ ୨୦୧୦ରେ ରାଉରକେଲା ପୁସ୍ତକ ମେଳାରେ ଦେଖିଲି ସେ ବହିର ଦ୍ୱିତୀୟ ପେପର ବେକ ସଂସ୍କରଣ  ଷ୍ଟଲରେ ଅଛି । ନିଜର ପରିଚୟ ନଦେଇ ଖଣ୍ଡେ କପି କିଣିଲି ।

ସେ ଯା ହେଉ, ୧୯୮୦ ମସିହାରେ ଏଚ୍. ଇ. ସି. ରେ ସି.ଆଇ.ଏସ୍.ଏଫ୍. ଆନ୍ଦୋଳନ ଏତେ ତେଜିଲା ଯେ ତାହା ନିୟନ୍ତ୍ରଣ ବାହାରେ ଚାଲିଗଲା । ଶେଷରେ ୟୁନିଟକୁ ପୂରା ଡିସ୍‌ବେଣ୍ଡ କରିବାକୁ ପଡ଼ିଲା । କିଛି ଆରେଷ୍ଟ ହେଇ ଜେଲ ଗଲେ । ବାକୀ ସମସ୍ତଙ୍କୁ ଦୂର ଜାଗାକୁ ବଦଳି କରାଗଲା ।

ରାଞ୍ଚିରେ ରହଣିକାଳ ଭିତରେ ଗୋଟାଏ କାମ ମୁଁ କରି ପାରିଥିଲି । ସେଠି ଥିଲେ ମୋର ପୁରୁଣା ବନ୍ଧୁ ମନ୍ମଥ ଦାସ ମହାପାତ୍ର ଓ ସିଦ୍ଧେଶ୍ୱର ଦାସ ମହାପାତ୍ର । ମୋର ଦୂର ସଂପର୍କୀୟ । ସେମାନେ ମେକନର୍(ତତ୍କାଳୀନ ଏଚ୍.ଏସ୍.ଏଲ୍.ର ଗୋଟିଏ ସଂସ୍ଥା)କର୍ମଚାରୀ । ସେଇଠି ମଧ୍ୟ ଥିଲେ ଶ୍ୟାମସୁନ୍ଦର ପରିଡ଼ା, ଆଗରୁ ରାଉରକେଲାରେ ପର୍ସନାଲ ମେନେଜର । ମୋର ସେମାନଙ୍କ ସହିତ ଯୋଗାଯୋଗ ହେଲାପରେ ଆମେ ଠିକ କଲୁ କଟକରୁ 'ସମାଜ' ମଗେଇବୁ । ସେତକ କଲୁ । ଦୈନିକ ବସରେ ୧୦ଖଣ୍ଡ ପତ୍ରିକା ଆସିଲା । ନିଜେ ନିଜେ ବାଣ୍ଟି ନେଲୁ । କିଛି ଜୟନ୍ତୀ ଉତ୍ସବ ମଧ୍ୟ ଆୟୋଜନ କଲୁ । ଓଡ଼ିଆଙ୍କ ଭିତରେ ପିକ୍‌ନିକ୍ ମଧ୍ୟ ହେଲା । କିନ୍ତୁ ବର୍ଷକ ପରେ ଆମ ୟୁନିଟ ଡିସ୍‌ବେଣ୍ଡ୍ ହେଲା ପରେ ମୋର ବଦଳି ହେଲା ଶ୍ରୀହରିକୋଟାର ଏସ୍.ଏଚ୍.ଏ.ଆର(SHAR) ସେଣ୍ଟରକୁ, ଭାରତର ଅନ୍ୟତମ 'ରକେଟ୍ ଲଞ୍ଚ ସେଣ୍ଟର' ।

ଏଥିରେ ମାଆର ମନ କ'ଣ ହେଇଥିବ ? ସେ ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଲା । ସେ ଭାବିଥିବ, ମୋର ଶେଷବେଳେ ମଧ୍ୟ ମୋ ପାଟିରେ ସେ ପାଣି ଟୋପେ ମଧ୍ୟ ଦେଇପାରିବ ନାହିଁ । ତା'ର ଚିନ୍ତା ଅମୂଳକ ନୁହେଁ । ସେଇ ମାନସିକତା ବୋଧହୁଏ ତାକୁ ଅଧିକ ରୋଗାକ୍ରାନ୍ତ କରିଦେଲା । ସେତେବେଳକୁ ବାପା ତ ନଥିଲେ,ମା ଏକୁଟିଆ ଥାଏ ଗାଁରେ । ତାର ଏକୁଟିଆ ରହିବାର ଦମ୍ଭ ଥିଲା ।



# ଗୋଟାଏ ଉପଗ୍ରହ କ୍ଷେପଣ କେନ୍ଦ୍ରରେ

ଶ୍ରୀହରିକୋଟା ମାନ୍ଦ୍ରାଜ ପୂର୍ବରୁ ପଡ଼ିବ । ସମୁଦ୍ର କୂଳରେ । ସୁଲୁରୁପେଟା ଷ୍ଟେସନରୁ ଓହ୍ଲାଇ ସେଠାକୁ ଯିବାକୁ ହେବ । ଗୋଟାଏ ଦ୍ୱୀପ । ଗୋଟାଏ ଲେକ୍ (ପୁଲିକଟ୍ ଲେକ୍) ପାର ହେଇ ସେଠାକୁ ଯିବାକୁ ହୁଏ । ଭାବିଲି ମୋତେ 'କଳାପାଣି' ପଠାହେଲା କି ଆଉ ? ପ୍ରକୃତ କଳାପାଣି କଥା ମନେ ପଡ଼ିଲା । ଯୋଉଠି ବହୁ ନେତାଙ୍କ ସଲିଳ ସମାଧି ଘଟି ଥିଲା, ଅଜ୍ଞାତ ମୃତ୍ୟୁ ମଧ୍ୟ ହେଇଥିଲା ସେଠି । ତାଙ୍କ ଅପରାଧ ? ଦେଶର ସ୍ୱାଧୀନତା ପାଇଁ ଲଢ଼େଇ କରିଥିଲେ

ଆଉ ମୁଁ ? ମୋର ଅପରାଧ ? ଗୋଟାଏ ପାରାମିଲିଟାରୀ ଫୋର୍ସରେ ବିଶୃଙ୍ଖଳାର ସ୍ଥାନ ନାହିଁ ସତ କିନ୍ତୁ ଫୋର୍ସଠାରୁ ସର୍ଭିସ ପାଇବାକୁ ହେଲେ ସେମାନଙ୍କ ସୁଖସୁବିଧା ଓ ଆବଶ୍ୟକତା ମଧ୍ୟ ପ୍ରଥମେ ବୁଝିବା ଦରକାର । କାମ କରିବାର ସୁବିଧା ନଥିଲେ କାମ ମିଳିବ କେମିତି ? ଖଣ୍ଡାଟିଏ ନଦେଇ ଯୁଦ୍ଧକର ବୋଲି କହିବାପରି ହେବ । ଏହିସବୁ କଥା ମୁଁ ନିର୍ଭୀକ ଭାବରେ ମୋ ଉପର ଅଫିସରଙ୍କୁ କହୁଥିଲି । ତାଙ୍କୁ ସମ୍ଭବତଃ ତାହା ଭଲ ଲାଗିନଥିଲା ବୋଲି ମୋତେ କଳାପାଣି ପଠାଇଦେଲେ ।

ଗୋଟିଏ ସି.ଆଇ.ଏସ୍.ଏଫ୍. ଜିପରେ ମୁଁ ଯାଇ ଯେତେବେଳେ ପୁଲିକାଟ ଲେକ୍ ଉପରେ ପହଂଚିଲି ମୁଁ ଭାବିଲି ମୋର ଅଭିଶପ୍ତ ଜୀବନ ସାର୍ଥକ ହେଇଗଲା । ମନେମନେ ମୋ ଭିତରେ ଉଚ୍ଚାରି ଆସିଲା-

'ରହ ରହ କ୍ଷଣେ ବାଷ୍ପୀୟ ଶକଟ,
ଦେଖିବି ଚିଲିକା ଚାରୁ ଚିତ୍ରପଟ' ।

ପୁଲିକାଟ ଲେକ୍ ଛାତି ଉପର ଦେଇ ଗୋଟିଏ ସରୁ ସଡ଼କ ଯାଇଚି ଶ୍ରୀହରିକୋଟା ଦ୍ୱୀପ ଭିତରକୁ । ଚିଲିକାର ଦୃଶ୍ୟ ତା'ଠୁ ମୋଟେ ଅଲଗା ନୁହେଁ । ରାସ୍ତାର ଦୁଇପାଖେ ସୀମାହୀନ ଜଳରାଶି ଏବଂ ନୀଳ ଜଳରାଶି ସେଠାରେ ଆତ୍ମଗୋପନ କରିଛି ଅସଂଖ୍ୟ ସାଇବେରିଆନ ପକ୍ଷୀଦ୍ୱାରା । ମଝିରେ ମଝିରେ ସେମାନଙ୍କ କଳରବ ବିମୁଗ୍ଧ ମୂର୍ଚ୍ଛନା ସୃଷ୍ଟି କରୁଥାଏ । ମୁଁ ଏଥିରେ ବିମୋହିତ ହୋଇ ପଡୁଥାଏ ।

ଆମଗାଡ଼ି ଗୋଟାଏ ଗୁଆ, ନଡ଼ିଆ ଓ ଆମ୍ବ ପଣସର ଘଂଚ ଜଙ୍ଗଲ ଭିତରେ ପଶିଗଲା । ତାପରେ କାଜୁ ବଗିଚ୍ଚ ।

ତେବେ ଉପଗ୍ରହ ପ୍ରେରଣ ଘାଟି କାହିଁ ? ଗୋଟିଏ ବୋଲିଘର କୋଉଠି ଦେଖା ଯାଉନି । ଏଇଠୁ କୁଆଡ଼େ ଶହଶହ କିଲୋମିଟର ଦୂରରେ ଥିବା ଶତ୍ରୁକୁ ମାରିବାର ଶର ଯାଇପାରିବ ।

ଭାରତ ମାଟି ଉପରେ ଥାଇ ରାମ ଛାଡ଼ିଦେଲେ ମନ୍ତ୍ରିତ ବାଣ ଯାହା ଲଙ୍କାରେ ଥିବା ଲଙ୍କେଶ୍ୱରଙ୍କ ଛାତିରେ ବାଜିଥିଲା । ସେଇ କ୍ଷେପଣାସ୍ତ୍ର ଏଠି ତିଆରି ହେଉଛି ?

ମୁଁ ଏବେ ଗୋଟାଏ ନିର୍ଜନ ଦ୍ୱୀପରେ? ଆମ ଅଫିସରେ ଟଙ୍ଗା ଯାଇଥିବା ଶ୍ରୀହରିକୋଟାର ମେପ ସାମନାରେ ଛିଡ଼ା ହେଇ ଭାବୁଥିଲି ଆଖପାଖରେ କୋଉଠି କିଛି ନଥିଲାବେଳେ ଏଠି କୋଉ କ୍ଷେପଣାସ୍ତ୍ରକୁ ଜଗୁଚି ଆମ ସି.ଆଇ.ଏସ୍.ଏଫ୍. ? ଏଠି ମୋର କାମ କ'ଣ? କେମିତି ତାକୁ ନିର୍ବାହ କରିବି?

ପ୍ରଥମେ ସାକ୍ଷାତ ହେଲା ଆସିଷ୍ଟାଂଟ କମାଂଣ୍ଡାଟ୍ ପି.ପି.ଜନ ଆଲେକ୍ସଙ୍କ ସହିତ । ଅମାୟିକ କେରଳୀ ଭଦ୍ରଲୋକ । ବସେଇଲେ, ଚା ଦେଲେ କାଜୁ ଓ ବିସ୍କୁଟ ସହିତ । କଥାବାର୍ତ୍ତାରେ ପେଟ ପୂରିଗଲା । ଗପ ଚାଲିଲା ରାଞ୍ଚିରେ କେମିତି କଅଣ ହେଲା ସେ ବିଷୟରେ । ଜଣେ ପୂର୍ବତନ ଆର୍ମି ଅଫିସର ଯେ ଏତେ ଭଦ୍ର ହେଇ ପାରନ୍ତି ଏହାଥିଲା ମୋ ଚିନ୍ତା ବାହାରେ । ମୁଁ ପୁଣି ତାଙ୍କର ଅଧସ୍ତନ କର୍ମଚାରୀ ।

କଥା ପ୍ରସଙ୍ଗରେ ସେ ଯେତେବେଳେ ଜାଣିଲେ ମୁଁ ଲେଖାଲେଖି କରେଁ ସେ କହିଲେ, 'ଆପଣ ଜଣେ ଲେଖକ? ତେବେ ଚାକିରି କାହିଁକି କରନ୍ତି?'

ମୁଁ ଥମ ହେଇଗଲି ।

ସେ କହିଲେ, କେରଳରେ ଚାକିରି କରୁଥିବା ଲେଖକ ଖୁବ୍ କମ ଅଛନ୍ତି । ସେମାନେ ଲେଖା ଲେଖିରୁ ଭଲ ରୋଜଗାର କରନ୍ତି ।

ମୁଁ ଭାବିଲି, ହେପ୍ରଭୁ! ମୁଁ କୋଉଠି ଅଛି? ଲେଖା ଲେଖିରୁ ଲେଖକମାନେ ଭଲ ରୋଜଗାର କରନ୍ତି? ମୁଁ ଏକଥା ପ୍ରଥମେ ସେଇଠି ଶୁଣିଲି । ଅବଶ୍ୟ ବଙ୍ଗଳା ଓ ହିନ୍ଦୀରେ କିଛି ନାମଜାଦା ଲେଖକ ଲେଖାଲେଖିରୁ ପଇସା ପାଆନ୍ତି । ଓଡ଼ିଶାରେ ବୋଧେ ଦୁଇ ଚାରି ଜଣ ଏମିତି ଲେଖାଲେଖିରୁ ରୋଜଗାର କରନ୍ତି । ଓଡ଼ିଆ ସାହିତ୍ୟକୁ ଏଇଥିରୁ ବିଚାର କରାଯାଇପାରେ । ଅଳ୍ପ କେତେ ଜଣଙ୍କୁ ଛାଡ଼ି ଦେଲେ ଓଡ଼ିଶାରେ ଲେଖକମାନେ ଯେ ପ୍ରକାଶକଙ୍କ ସାମନାରେ ବସିବାର ସୁଯୋଗ ପାଆନ୍ତିନି ଏକଥା ଅନେକ କମ୍ ଜାଣନ୍ତି । କିନ୍ତୁ ସାହିତ୍ୟ ସେବା ପାଇଁ ଚାକିରିକୁ ଗୋଡ଼ରେ ଆଡ଼େଇ ଦେଇହୁଏ ଏ କଥା ଜାଣି ନଥିଲି ।

ସେଇଦିନ ସନ୍ଧ୍ୟାରେ ମୁଁ କମାଂଣ୍ଡାଟ୍ ମେଜର ରାମେୟାଙ୍କୁ ଭେଟିଲି ତାଙ୍କ ଘରେ । ଦିନବେଳେ ସେ ନଥିଲେ । ସନ୍ଧ୍ୟାରେ ସେଠି ଇନ୍ସପେକ୍ଟର ଗାନ୍ଧୀ ଓ ଜନ ଆଲେକ୍ସ ମଧ୍ୟ ଥିଲେ । କୋଲ୍ଡ ଡ୍ରିଙ୍କସ୍ ଭିତରେ କଥାବାର୍ତ୍ତାବେଳେ ସେ ଯେତେବେଳେ ଜାଣିଲେ ଯେ ମୁଁ ସୁରାପାନଠାରୁ ଦୂରରେ ସେ କହିଲେ ଆପଣ ଯାଇ ଘରେ ବିଶ୍ରାମ ନିଅନ୍ତୁ । କାଲି

ସକାଳେ ମାଡ୍ରାସ ଯିବେ । ପରେ ଜାଣିଲି ସେମାନେ ସେଠି ତାସ୍ ଖେଳନ୍ତି । ସମସ୍ତେ ତ ପୂର୍ବତନ ସାମରିକ କର୍ମଚାରୀ । ତାଙ୍କ ସଂସ୍କୃତି ମୋ ପାଇଁ ଅପସଂସ୍କୃତି ।

ପରଦିନ ଆଲେକ୍ସ ସହିତ ତାଙ୍କ କାର୍‌ରେ ମୁଁ ଗଲି ମାଡ୍ରାସ ବୁଲିବାକୁ । ପ୍ରକୃତ କଥା ହେଲା ରାଞ୍ଚିରୁ ମୋତେ ସେଠାକୁ ଟେମ୍ପୋରାରୀ ଏଟାଚମେଣ୍ଟରେ ପୋଷ୍ଟିଂ କରାଯାଇଥିଲା । ତେଣୁ କାମ ନଥିଲା । ପ୍ରଥମରୁ ଆଲେକ୍ସ ବୋଧେ ମୋତେ ଭଲ ପାଇ ବସିଥିଲେ । ବନ୍ଧୁର ବ୍ୟବହାର କଲେ । ତାଙ୍କ ସହିତ ତାଙ୍କ ସ୍ତ୍ରୀ ମଧ୍ୟ ଥିଲେ । ପ୍ରାୟ ୧୦୦ କିଲୋମିଟର ସମସ୍ତେ ଗପି ଗପି ଗଲୁଁ । ତାଙ୍କ ସ୍ତ୍ରୀ ମଧ୍ୟ ସରଳ ଓ ମେଳାପି । ଉଭୟଙ୍କର କଥାବାର୍ତ୍ତା ବେଶ ରଚିପୂର୍ଣ୍ଣ । ଦେଖିଲି ଉଭୟଙ୍କର ମଧ୍ୟ ସାହିତ୍ୟରେ ରଚି ଅଛି ।

କେରଳୀମାନେ ଯେ ସାହିତ୍ୟିକଙ୍କୁ ଏତେ ସମ୍ମାନ ଦିଅନ୍ତି ସେ କଥା ସେଇଠି ଜାଣିଲି । ଏଇଟା ହିଁ ସେମାନଙ୍କ ସଂସ୍କୃତି । ପରେ ଜାଣିଲି କେରଳରେ ସାହିତ୍ୟିକମାନଙ୍କୁ 'ଏଲିଟ୍'ର ମାନ୍ୟତା ଦିଆଯାଏ । ତାଙ୍କ ସାହିତ୍ୟ ସଭାରେ କୁଆଡ଼େ ମନକୁ ମନ ଶ୍ରୋତା ଭର୍ତ୍ତି ହେଇ ଯାଆନ୍ତି ।

ଶ୍ରୀହରିକୋଟାରେ ଥିଲି ତିନି ମାସ । ତାଆରି ଭିତରେ ଚିଠି ଆସିଲା ଦିଲ୍ଲୀ ଯାଇ ଡି.ପି.ସି.ରେ ଯୋଗ ଦେବାକୁ । ମନେମନେ ଭାବିଲି କି ପ୍ରମୋଶନ ହେବ ଯେ? ରାଉରକେଲାର ଶେଷ ବର୍ଷ ଏବଂ ରାଞ୍ଚିର ସମୟ ଭିତରେ ମୁଁ ଯେ କ୍ଲିନ ଚିଟ୍ ପାଇଥିବି ଏ ବିଶ୍ୱାସ ମୋର ନଥିଲା । ରାଉରକେଲାରେ ଗୋବିନ୍ଦ ସେନାପତିଙ୍କର ମୁଁ ଅତ୍ୟନ୍ତ ନିକଟବର୍ତ୍ତୀ ଥିଲି ବୋଲି ମୋ ପ୍ରତି କିଛି ଈର୍ଷାପରାୟଣ ହେଇଥିଲେ । ସେ ଈର୍ଷାପରାୟଣତା ଓ ଅସହିଷ୍ଣୁତା ପଦସ୍ଥ ବ୍ୟୁରୋକ୍ରେଟ ମାନଙ୍କ ଭିତରେ ମଧ୍ୟ ଥାଏ । ତେଣୁ ମୁଁ ସେଠି ଖୁବ୍ ଭଲରେ ଥିଲି ବୋଲି କହି ପାରିବିନି । ବିଶେଷ କରି ମୋତେ ଲାଗୁଥିଲା ଏକା ରାଜ୍ୟରୁ ଆସିଥିବା ପ୍ରଫୁଲ୍ଲ ରଥ ଓ ଜି.ସି. ସେନାପତିଙ୍କର ବୋଧେ ପୂର୍ବରୁ ଭଲ ସମ୍ପର୍କ ନଥିଲା । ତେଣୁ ପ୍ରଫୁଲ୍ଲ ରଥ ମୋତେ ବିଶ୍ୱାସକୁ ନେଉ ନଥିଲେ । ମୋର ବନ୍ଧୁମାନେବି ତ ବେଶୀ ଅସହିଷ୍ଣୁ ନ ଥିଲେ କି? ସେ ଯା ହେଉ, ରାଞ୍ଚିର ଅବସ୍ଥା ତ ଦୟନୀୟ ଥିଲା । ସେଠିତ ମୋ ଭଳିଆ ସିନିଅର ଇନ୍ସପେକ୍ଟରମାନେ ମଧ୍ୟ ସହକାରୀ କମାଂଣ୍ଡାଟ୍‌ଙ୍କ ଅଫିସ୍‌ରେ ବସିପାରୁ ନଥିଲେ । ସେମାନଙ୍କର ଗୋଟିଏ ବାଦଶାହୀ ମାନସିକତା ଥିଲା । ତେଣୁ ସେଠି ମଧ୍ୟ ମୋର ଚରିତ୍ର ଲିପି ଭଲହେଇ ନଥିବ । ଏ ଅବସ୍ଥାରେ ଦିଲ୍ଲୀ ଯାଇ ହାସ୍ୟାସ୍ପଦ ହେବାକୁ ଇଚ୍ଛା ହେଉ ନଥିଲା ।

ତଥାପି ଗଲି ଆଉ ଦୁଇ ଜଣ ଇନ୍ସପେକ୍ଟରଙ୍କ ସହିତ । ବୋର୍ଡ଼ରେ ଥିଲେ ଡି.ଜି. ସୁରେନ୍ଦ୍ର ନାଥ, ମୁଁ ଯାହାଙ୍କୁ ସି.ଆଇ.ଏସ୍.ଏଫ୍.ର ସର୍ବୋତ୍କୃଷ୍ଟ ଅଫିସର ବୋଲି କହିଥାଏଁ ଏବଂ ହୋମ୍ ମିନିଷ୍ଟ୍ରିର ଜଣେ ଏଡିସିନାଲ ସେକ୍ରେଟେରୀ (ବୋଧେ) ।

'କ'ଣ ହେଲା ରାଞ୍ଚିରେ ?' ପ୍ରଶ୍ନ ହେଲା ଡି.ପି.ସି.ରେ ।

'ବହୁ ଅବ୍ୟବସ୍ଥା । ତାକୁ ସୁଧାରିବାକୁ ମୋଟେ ଚେଷ୍ଟା ହେଲା ନାହିଁ' ବୋଲି କହିଲି ।

'ଗୋଟାଏ ନୋଟ୍ କହୁଛି ତମେ ଜଣେ ଲେଖକ', ଡି.ଜି. ପଚାରିଲେ ।

ଚମକି ପଡ଼ିଲି । ଟିକିଏ ଭାବିଲି ଏ ପ୍ରଶ୍ନଟା ମୋ ସପକ୍ଷରେ ଯାଉଛି, ନା ବିପକ୍ଷରେ । କାରଣ ସାଧାରଣ ଭାବେ ମୁଁ ଜଣେ ବ୍ୟବସ୍ଥା ବିରୋଧୀ ଲେଖକ । ଉତ୍ତର ଥିଲା 'ଆଇ ଆମ୍ ନଟ ଏ ରାଇଟର ସାର, ବଟ୍ ଆଇ ଡୁ ରାଇଟ୍ ଏଟ୍ ଟାଇମ୍ ।

ବ୍ୟୁରୋକ୍ରେଟମାନେ ଖୁସି ହେଲେ କି ନା ସେ କଥା ସେମାନଙ୍କ ମୁହଁରୁ ଜଣା ପଡ଼େ ନାହିଁ । କୁରୁକ୍ଷେତ୍ର ଯୁଦ୍ଧ ପୂର୍ବରୁ ଦୁର୍ଯ୍ୟୋଧନ ଯାଇଥିଲେ ଶ୍ରୀକୃଷ୍ଣଙ୍କ ପାଖକୁ ସମର୍ଥନ ଓ ସାହାଯ୍ୟ ପାଇବା ଆଶାରେ । ଶ୍ରୀକୃଷ୍ଣ ଶୋଇଥିଲେ । ଦୁର୍ଯ୍ୟୋଧନ ତାଙ୍କ ମୁଣ୍ଡ ପାଖରେ ବସିଲେ । ଶ୍ରୀକୃଷ୍ଣ ତାଙ୍କ କଥା ଶୁଣିଲେ ଓ ମୁଣ୍ଡ ଟୁଙ୍ଗାରିଲେ ।

କିଏ କହିବ ସେ କଅଣ କହିଲେ ? ସମର୍ଥନ ଦେଲେ ? ମୁଁ ସେଲ୍ୟୁଟ ମାରି ଚାଲି ଆସିଲି କକ୍ଷ ଭିତରୁ । ମନ ଭିତରେ ଅବସାଦର ପାହାଡ଼ ।

ଫେରି ଆସି ଶ୍ରୀହରିକୋଟାରେ ପହଂଚିବାର ଆଠ/ଦଶ ଦିନ ପରେ ପ୍ରମୋଶନ ଅର୍ଡ଼ର ଆସି ପହଂଚିଲା । ଯିବି ମାଡ୍ରାସ ପୋର୍ଟକୁ । ଆନନ୍ଦରେ ମୋ ମନ କୂଳ ମାନୁ ନଥାଏ । ପରେ ଜାଣିଲି ମୋ ଉପରେ ଗୋଟିଏ ସମ୍ପୂର୍ଣ୍ଣ ନୋଟ କମାଂଣ୍ଡାଟ୍ ମେଜର ରାମେୟାଙ୍କ ତରଫରୁ  ପଠା ଯାଇଥିଲା । ରାଞ୍ଚିରେ ଅବଶ୍ୟ ଆନ୍ଦୋଳନ ସହିତ ମିଶିବାର କୌଣସି ଅଭିଯୋଗ ମୋ ବିରୁଦ୍ଧରେ ନଥିଲା । ସେଇଥିରେ ମଧ୍ୟ ଥିଲା ମୁଁ ଜଣେ ପ୍ରତିଷ୍ଠିତ ଲେଖକ ।

୧୯୮୦ ବେଳକୁ ନୂଆ ଡି.ଜି. ସୁରେନ୍ଦ୍ର ନାଥଙ୍କଦ୍ୱାରା ସି.ଆଇ.ଏସ୍.ଏଫ୍.ର ଅନେକ କିଛି ନୂଆ ନିୟମ(ସଂସ୍କାରଗତ) ପ୍ରବର୍ତ୍ତନ ହେଲା । ଏଥିରେ ସର୍ଭିସ କଣ୍ଡିସନଠାରୁ ମେନେଜମେଂଟ ସହିତ ସମ୍ପର୍କର ନୀତି ନିର୍ଦ୍ଧାରଣ ମଧ୍ୟ ହେଲା । ଫୋର୍ସ ଭିତରେ ଥିବା ଅଶାନ୍ତି ଦୂର ହେଲା । ପ୍ରମୋଶନ ପଲିସି ମଧ୍ୟ ସ୍ଥିର ହେଲା । ଏ ସବୁ ନୂଆ ଫୋର୍ସରେ କିଛି ସେ ଯାବତ୍ ନ ଥିବାରୁ ବହିରାଗତ ଅଫିସରମାନେ ଯଥେଚ୍ଛା ବ୍ୟବହାର କରୁଥିଲେ ।

ସେ ଦିନ ଅଫିସରେ ଗୋଟାଏ ଛୋଟ ବିଦାୟ ସମ୍ବର୍ଦ୍ଧନା ଅନୁଷ୍ଠିତ ହେଲା ।

ଏତେ ଛୋଟ ଜାଗାରେ ଏବଂ ସ୍ୱଳ୍ପ କାଳ ରହଣୀ ଭିତରେ ଏପରି ଉଲ୍ଲେଖନୀୟ ଘଟଣା ମୋ ପାଇଁ ସ୍ମରଣୀୟ ହେଇ ରହିବ ଏ ଧାରଣା ମଧ୍ୟ ମୋର ନଥିଲା । ମୁଁ ସେ ଦିନ ମାଆକୁ ଚିଠିଟିଏ ଲେଖିଲି 'ତୋ ଆଶୀର୍ବାଦରୁ ସିନା ପ୍ରମୋଶନଟିଏ ହେଇଗଲା

କିନ୍ତୁ ସେଥିରେ ମୁଁ ତୋ ପାଇଁ କିଛି କରି ପାରୁନାହିଁ । ତେବେ ମାଡ୍ରାସରେ ଜଏନ କଲା ପରେ ଛୁଟି ନେଇ ମୁଁ ଶୀଘ୍ର ଗାଁ'କୁ ଯିବି ।'

କଥାଟା ଯେତେ ଶୀଘ୍ର କହିଦେଲି ସେତେ ଶୀଘ୍ର କଅଣ କିଛି କରି ହୁଏ ? ଅନ୍ୟ ଦିଗରୁ ବାରମ୍ବାର ରାଉରକେଲା ଘର ଛାଡ଼ିବାକୁ ଚିଠି ଆସୁଥାଏ । ଲୁଲୁର ବି.ଏ. ରେଜଲ୍ଟ ବାହାରି ସାରିଥାଏ । ସେ ଇକୋନୋମିକ୍ସରେ ଅନର୍ସ ରଖି ପାଶ କରିଥାଏ । ଏମ୍.ଏ. ପାଇଁ ଚେଷ୍ଟା କରୁଥାଏ । ସୁମି ଆଇ.ଏ.ରେ ଓ ରୁମି ଷଷ୍ଠ କି ସପ୍ତମରେ । ଗୋଟାଏ ସଂଗୀନ ଅବସ୍ଥା ।

ଏ ସବୁ ସତ୍ତ୍ୱେ ଶ୍ରୀହରିକୋଟା ମୋର ମନେରହିବ । ଏଇଠି ମୁଁ ବିଶାଳ ରକେଟ୍ ପ୍ରକ୍ଷେପଣ ଦେଖିଲି । ତା'ର ନାମ ଥିଲା ପି.ଏସ୍.ଏଲ୍.ଭି-୩ । ସେଇଟା କୁଆଡ଼େ ପାଣି ପାଗର ଗବେଷଣା ପାଇଁ । ସେଇଠି ମଧ୍ୟ ମୁଁ ପ୍ରଥମ କରି ଦେଖିଲି ଟି.ଭି.ରେ ସିନେମା । ସନ୍ଧ୍ୟା ହେଲା ମାତ୍ରେ ପିଲାପିଲି ଧରି ମୁକ୍ତ ଆକାଶ ତଳେ ଜମାହୋଇ ଯାଆନ୍ତି । ବେଶ ମଜାଲାଗେ । ଟି.ଭି.ଟା ଗୋଟାଏ ଉଚ୍ଚ ଜାଗାରେ ଥାଏ । ରାତି ନଅଟା ଯାଏ ସିନେମା ଚାଲେ । ମୁଁ ବେଶୀଦିନ ହୋଟେଲରେ ଖାଉଥାଏଁ । ଅନ୍ୟ ସମୟରେ ଖାଦ୍ୟ ସି.ଆଇ.ଏସ୍.ଏଫ୍. ଅଫିସର୍ସ ମେସ୍‌ରୁ ଆସେ ।

ଏଠାରେ ଦି ପଦ ଶ୍ରୀହରିକୋଟା କଥା କହିବା ଦରକାର । ଆଗରୁ କହିଚି ଶ୍ରୀହରିକୋଟା ଗୋଟାଏ ଦ୍ୱୀପ ଭଳିଆ । ସମୁଦ୍ର ଭିତରକୁ ପଶି ଯାଇଚି ସ୍ଥଳ ଭାଗ । ତେଣୁ ଚାରି ପାଖରେ ଜଳ । ରେଳ ଷ୍ଟେସନରୁ ଗୋଟିଏ ପକ୍କା ରାସ୍ତା ଦ୍ୱୀପ ଭିତରକୁ ଯାଇଚି । ଦ୍ୱୀପଟା ଘଂଚ କାଜୁ, ନଡ଼ିଆ ଓ ପଣସ ଗଛରେ ଭର୍ତ୍ତି । ତା'ରି ଭିତରେ ଅଫିସ, କଲୋନୀ, ବିଜ୍ଞାନାଗାର ପ୍ରଭୃତି । ଭାରତର ବିଶିଷ୍ଟ ବିଜ୍ଞାନୀମାନେ ସେଇଠି ।

ଗୋଟାଏ ଜାଗାରେ ଦେଖିଲି ପାଖାପାଖି ତିନିଟା ମନ୍ଦିର ପରି ଘର । ଗୋଟିଏ ହିନ୍ଦୁ ମନ୍ଦିର, ଅନ୍ୟଟି ଗୀର୍ଜା, ଖ୍ରୀଷ୍ଟାନମାନଙ୍କ ପାଇଁ ଓ ଅନ୍ୟଟି ମସଜିଦ୍ । ବାଃ ସୁନ୍ଦର ସହାବସ୍ଥାନ ଏଠି ଈଶ୍ୱରମାନଙ୍କର । ଏକାଠି ମିଳିତ ହେଇ ସମଗ୍ର ପୃଥିବୀର ସବୁ ମଣିଷଙ୍କ କଥା ଚିନ୍ତା କରୁଥିବେ- ସେମାନଙ୍କୁ ଗୋଟିଏ କରିବା ପାଇଁ, ଗୋଟିଏ ରାସ୍ତାରେ ଆଗେଇ ନେବା ପାଇଁ, ଯୋଜନା ପ୍ରସ୍ତୁତ କରୁଥିବେ । ଡଃ କଲାମ ଏଠି ଥିବାବେଳେ ସବୁ ଈଶ୍ୱରଙ୍କୁ ଏକାଠି କରିବା ପାଇଁ ପରି କଳ୍ପନା କରିଥିଲେ । ଯେଉଁଠି ବିଜ୍ଞାନର ଜୟ ଯାତ୍ରା ଚାଲିଚି ସେଠି ଈଶ୍ୱରମାନେ ସେ ଯାତ୍ରାରେ ସାମିଲ ହେବାକୁ ବାଧ୍ୟ । ତାଙ୍କ ବିନା ବିଜ୍ଞାନ ଆଗେଇ ପାରିବ ?



# ମୋର ପ୍ରିୟ ସହର

ମାନ୍ଦ୍ରାଜ ପୋର୍ଟରେ ମୁଁ ଜଏନ କଲି ୧୯୮୧ ମାର୍ଚ୍ଚ ୨୦ । ଏହା ଏପରି ସମୟ ଯେତେବେଳେ ସେଠି ମଧ୍ୟ ଫୋର୍ସ ପାଇଁ ସୁବିଧା ସୁଯୋଗ ନଥିଲା । ଜୱାନମାନଙ୍କ ପାଇଁ ବେରେକ ନ ଥିଲା, କମାଣ୍ଡାଣ୍ଟଙ୍କ ପାଇଁ ଅଫିସ ମଧ୍ୟ ନଥିଲା । ଗୋଟିଏ ଗୋଟିଏ ଗୋଦାମ ଘରେ ସେମାନେ ରହୁଥିଲେ । ଅଫିସରମାନଙ୍କ ପାଇଁ ମଧ୍ୟ ଘର ନାହିଁ କି ଗାଡ଼ି ନାହିଁ, ବିଷମ ପରିସ୍ଥିତି । ସବୁଠାରୁ ବଡ଼ ସମସ୍ୟା ହେଲା ଭାଷାର ସମସ୍ୟା । ସାଧାରଣ ଭାବେ ତାମିଲିଆନମାନେ ହିନ୍ଦୀ ବିରୋଧୀ । ହିନ୍ଦୀ ଶୁଣିବାକୁ ସେମାନଙ୍କୁ ଭଲ ଲାଗେନି ।

କିଛି ଦିନ ପୋର୍ଟ୍‌ଟ୍ରଷ୍ଟ ଗେଷ୍ଟ୍‌ହାଉସରେ ରହିଲା ପରେ ମୋତେ ଘରଟିଏ ମିଳିଲା ୩, କାସିମୋଡ, ରୟାପୁରମ୍‌ରେ । ଏଥର ଅର୍ଡ୍ରଲି ଟିଏ ମଧ୍ୟ ମିଳିଲା । ଖାଇବାରେ ଆଉ ଅସୁବିଧା ହେଲାନି । ଗୋଟିଏ ଜୀପରେ ତିନିଜଣ ଆସିଷ୍ଟାଣ୍ଡ କମାଂଣ୍ଡାଟ୍ ଯିବା ଆସିବା କଲୁ । ଏଥିରେ ସବୁଠୁ ଅସୁବିଧା ହେଲା ଗୋଟିଏ ଦରକାରୀ କାମରେ ଯିବାକୁ ହେଲେ ଗାଡ଼ି ମିଳେନା । ସରକାରୀ ନର୍ମ ଯାହା ଧାର୍ଯ୍ୟ ହେଇଛି ତାକୁ କାର୍ଯ୍ୟକାରୀ କରାଯାଉନି ।

ମୋ ବେଳକୁ କମାଂଣ୍ଡାଟ୍‌ଣ୍ଟଥିଲେ ଏସ୍. ଆଇ. ଜାଫର ଅଲ୍ଲୀ, ତାମିଲନାଡୁ କେଡର୍‌ର ଆଇ.ପି.ଏସ୍.। ଜଣା ପଡୁଥିଲେ ଜଣେ ଅସନ୍ତୁଷ୍ଟ ବ୍ୟକ୍ତି -ବୋଧେ ଇଛା ବିରୁଦ୍ଧରେ ଆସିଥିଲେ ସି.ଆଇ.ଏସ୍.ଏଫ୍.କୁ । ଫଳରେ କୌଣସି କାମରେ ବିଶେଷ ମନ ଦେଉ ନଥିଲେ । ଦଶଟାରେ ଅଫିସ ଆସି ଠିକ୍ ପାଂଚଟାରେ ଘରକୁ ଯାଉଥିଲେ । ଗୋଟିଏ ବିରାଟ ଆନ୍ଦୋଳନ ପରେ ଯୋଉ ପରିବର୍ତ୍ତନ ହେଲା ସେ ସବୁ ପ୍ରତି ଆନ୍ତରିକତା ନଥିଲା । ଇଛା ନଥିବା ଲୋକଠାରୁ କି କାମ ଆଶା କରିହେବ ?

ମୁଁ ଯୋଉ ସମୟରେ ପହଂଚିଲି (ମାର୍ଚ୍ଚ୨୦, ୧୯୮୧) ସେତେବେଳେ ମାଡ୍ରାସ ପୋର୍ଟର ଜନ୍ମ ଶତବାର୍ଷିକୀ ଆରମ୍ଭ ହେଇଥିଲା । ୧୮୮୦ରେ ତା'ର ଜନ୍ମ ଇଂରେଜମାନଙ୍କ ସମୟରେ । ୧୯୮୦ ବେଳକୁ ଭରତରେ ୧୧ଟି ମେଜର ପୋର୍ଟ ହେଇ ସାରିଲାଣି । ତା ଭିତରେ କଲିକତା, ପାରାଦ୍ୱୀପ, ଭାଇଜାଗ୍ ପ୍ରଭୃତି ଅଛି । ମାଡ୍ରାସ ପୋର୍ଟରେ ସେତେବେଳେ ଭି.ସିଲଭରାଜ, ଆଇ.ଏ.ଏସ୍. ଥିଲେ ଚେୟାରମେନ - ଜଣେ ଦକ୍ଷ ଅଫିସର ବୋଲି ନିଃସନ୍ଦେହରେ କୁହାଯିବ । ଯେ କୌଣସି ବିଷୟରେ ସଙ୍ଗେ ସଙ୍ଗେ ସିଦ୍ଧାନ୍ତ ନିଅନ୍ତି ଏବଂ କାର୍ଯ୍ୟକାରୀ ମଧ୍ୟ ସଙ୍ଗେ ସଙ୍ଗେ କରାନ୍ତି ।

ମୋର ପାରିବାରିକ ସମସ୍ୟା ସେତେବେଳେ ଶୀର୍ଷରେ । ପିଲାମାନେ ରାଉରକେଲାରେ ଓ ମା ଗାଁରେ । ଘର ଛାଡ଼ିବାକୁ ନୋଟିସ୍ ଆସୁଛି । କେମିତି କ'ଣ କରିବି ସ୍ଥିର କରିପାରୁ

ନଥିବାବେଳେ ହଠାତ୍ ଫୋନରେ ଖବର ଆସିଲା ମାଆ ଦେହ ବହୁତ ଖରାପ । ସେ ଆଉ ବେଶୀଦିନ ସେଠି(ଗାଁରେ) ରହି ପାରିବ ନାହିଁ ଭାବି ମୋ ଶଳା ଅପର୍ତ୍ତି ସହିତ ପରାମର୍ଶ କଲି । ଅପର୍ତ୍ତି ସେତେବେଳକୁ ରାଉରକେଲା ଷ୍ଟିଲ୍‌ପ୍ଲାଂଟ୍‌ରେ ଚାକିରି କରୁଥିଲା । ସେ ତାକୁ କୌଣସି ପ୍ରକାରରେ ରାଉରକେଲା ନେଇଆସି ଇସ୍ପାତ୍ ଜେନେରାଲ୍ ହସ୍ପିଟାଲ୍‌ରେ ଏଡ୍‌ମିଟ୍ କରାଇଦେଲା । ମୁଁ ବ୍ୟସ୍ତ ହୋଇପଡ଼ିଲି । ସଙ୍ଗେ ସଙ୍ଗେ ଛୁଟିନେଇ ରାଉରକେଲା ଯାଇ ଦେଖିଲି ତାକୁ ହସପିଟାଲରେ । ଡାକ୍ତରମାନଙ୍କ ସହିତ ପରାମର୍ଶରେ ଜାଣିଲି ଲିଭର କ୍ୟାନ୍‌ସର ।

ମାଆ ପ୍ରଚୁର ଗୁଣ୍ଡିପାନ ଖାଉଥିଲା । ଦିନକୁ ୧୪/୧୫ ଖଣ୍ଡରୁ କମ୍ ନୁହେଁ । ରାତିରେ ପାଟିରେ ନ ଜାକିଲେ ତାକୁ ନିଦ ହୁଏନି । ପାନ ଛେଚିବା ପାଇଁ ସବୁବେଳେ ହେମାଦସ୍ତା ପାଖରେ ଥାଏ । ପାନ ଦୁଇ ଚାରି ଖଣ୍ଡ ଖାଇ ସେ ଦିନ ଯାକ ଉପବାସ ମଧ୍ୟ ରହିଯାଏ । ଏହା ଯେ ରୋଗ ଆକ୍ରମଣର କାରଣ ସେ କଥା ସେ ବୁଝି ନଥାଏ ।

ଡାକ୍ତରଙ୍କ ପରାମର୍ଶ ଅନୁସାରେ ତାକୁ ରକ୍ତ ଦିଆଗଲା । ମୁଁ ତାକୁ ଘରକୁ ଆଣିଲି । ମୋର ଇଚ୍ଛା ମୁଁ ତାକୁ ମାଡ୍ରାସ ନେଇ ଆସିବି । ଭଲ ହସପିଟାଲ ଓ ବଡ଼ ବଡ଼ ଡାକ୍ତର ଅଛନ୍ତି । ଥରେ ଚେଷ୍ଟା ତ କରିବା । ଡାକ୍ତର କହିଲେ ଯେତିକି ରକ୍ତ ଦିଆ ଯାଇଚି ସେଥିରେ ମାଡ୍ରାସ ପର୍ଯ୍ୟନ୍ତ ଆରାମରେ ଯାଇ ପାରିବେ ।

ଲୁଲୁ ସେତେବେଳେ ଭୁବନେଶ୍ୱରରେ ରହି ଏମ୍.ଏ.ରେ ଏଡ୍‌ମିଶନ ପାଇଁ ଚେଷ୍ଟା କରୁଥାଏ । ବଡ଼ ଭାଇ ଆସି ପହଂଚିଲେ । ସେ କହିଲେ ତୁ ମାଆକୁ ତ୍ରିନାଥ (ଆମ ସମ୍ପର୍କୀୟ) ଘରେ ଛାଡ଼ି ଦେଇ ପିଲାମାନଙ୍କୁ ନେଇ ଚାଲିଯା । ମୁଁ ପରେ ଆସି ମାଆକୁ ଭୁବନେଶ୍ୱର ନେଇ ଯିବି । କଥାଟା ମୋତେ ମୋଟେ ଭଲ ଲାଗିଲାନି । ମାଆ ନିଜେ ମଧ୍ୟ ରାଜିହେଲାନି । ସେ କହିଲା ମୁଁ ଭୁବନେଶ୍ୱର ଯିବିନି । ତୁ ମୋତେ ମାଡ୍ରାସ ନେଇଚାଲ । ମୁଁ ତାହା ହିଁ ଚାହୁଁଥିଲି । ଜିନିଷପତ୍ର ପ୍ୟାକ୍ କରିବାକୁ ଲାଗିଲି । ଅପର୍ତ୍ତି, ଓ ମୋର ଆଉ କିଛି ସଂପର୍କୀୟ ମୋତେ ସାହାଯ୍ୟ କଲେ । ସେମାନେ ଲାଗି ପଡ଼ିଲେ ।

ଗୋଟାଏ ବଡ଼ ସୁବିଧା ହେଲା ସୁମି ପାଇଁ । ତ୍ରିନାଥର ଝିଅ ବିଜୁ ସେତେବେଳେ ସୁମି ସାଙ୍ଗରେ ଏକା କଲେଜରେ (ଡି.ଏ.ଭି.ରେ) ବି.ଏ. ପଢୁଥାଏ । ରାଉରକେଲାରେ ଆମ ଦୁଇ ଜଣଙ୍କ ଘର ମଧ୍ୟ ପାଖାପାଖି । ବିଜୁ ଓ ସୁମି ଦୁହେଁ ପିଲାବେଳର ସାଥୀ । ସେ ବନ୍ଧୁତା ତାଙ୍କର ଏବେ ମଧ୍ୟ ଅଛି । ତ୍ରିନାଥ ମୋର ସଢୁ ସମ୍ପର୍କ । ଆମର ଭଲ ସମ୍ପର୍କ । ସେ ସୁମିକୁ ରଖିବାକୁ ରାଜିହେଲା । ରୁମିକୁ ନେଇ କୁଞ୍ଜ ଘରେ ନୀଳଗିରିରେ ଛାଡ଼ିଲି । କୁଞ୍ଜ ନିଜ ବଡ଼ ବାପାଙ୍କ ପୁଅ । ହାଇସ୍କୁଲରେ ଶିକ୍ଷକ । ତା' ସାନ ଝିଅ ରୁମି ବୟସର ଓ ସେ ମଧ୍ୟ ସପ୍ତମ ଶ୍ରେଣୀରେ ପଢ଼େ । ଏମାନେ ଯେ ସେମାନଙ୍କର ସବୁ ପ୍ରକାର ଅସୁବିଧା

ସତ୍ତ୍ୱେ ମୋ ସହିତ ସହଯୋଗ କରିଛନ୍ତି ଏଇଟା କମ୍ କଥାନୁହେଁ । ସେତେବେଳେ ଏମିତି ଅବସ୍ଥା ଯେ ତା ଭିତରେ ବିକଳ୍ପ ବ୍ୟବସ୍ଥା ଚିନ୍ତା କରିବାକୁ ସମୟ ନଥିଲା । ମାଆକୁ ସେଇ ଅବସ୍ଥାରେ ନେଇଆସିଲି । ସାଥିରେ ରାଧାରାଣୀ । ମାଡ୍ରାସରେ ପହଂଚି ମାଆକୁ ପୋର୍ଟ ହସ୍ପିଟାଲରେ ଭର୍ତ୍ତିକଲି । କିନ୍ତୁ କିଛି ଲାଭ ହେଲାନାହିଁ । ଡାକ୍ତରମାନଙ୍କ ସମସ୍ତ ଚେଷ୍ଟାସତ୍ତ୍ୱେ ୧୦/୧୨ ଦିନ ପରେ ସେ ଚାଲିଗଲା । ଡାକ୍ତର କହିଲେ ଲିଭର ପୂରା ନଷ୍ଟ ହୋଇ ଯାଇଥିଲା । ତା'ର ଯିବା ଦିନ ୧୯୮୧ ଅଗଷ୍ଟ ୧୭ ତାରିଖ ସୋମବାର ସକାଳ ୮.୪୫ । ତା ଆଗ ଦିନ ରାତିରେ ଲୁଲୁ ଭୁବନେଶ୍ୱରରୁ ଆସିଥାଏ । ସେ ରାତିଟା ମାଆ ପାଖରେ ରହିଲା । ମାଆ ତାକୁ ବହୁତ ଭଲ ପାଉଥିଲା । ତେଣୁ ସେ ଶାନ୍ତିରେ ଯାଇଥିବ ବୋଲି ଭାବୁଚି । ଗୋଟାଏ ବିରାଟ ଅଧ୍ୟାୟର ପରିସମାପ୍ତି ଘଟିଲା । ମୋର ଆତ୍ମ ସନ୍ତୁଷ୍ଟି ଯେ ମୁଁ ତା'ପାଇଁ ସାମାନ୍ୟ କିଛି କରି ପାରିଛି ।

ବାବାଙ୍କ ସମୟର ଦୁଃଖ ମୋର ଯାଇନାହିଁ । ସେ ଥିଲେ ଗାଁ'ରେ । ହଠାତ୍ ଟଳି ପଡ଼ିଲେ । ମୋ ପାଖକୁ ଟେଲିଗ୍ରାମ ଗଲା ବେଳକୁ ତିନି ଦିନ ହେଇ ଯାଇଥିଲା । ଥିଲି ରାଉରକେଲାରେ । ତାଙ୍କ ଚିକିତ୍ସା ପାଇଁ କିଛି ବି ସୁବିଧା ନଥିଲା । ସେ ଅଚେତ ଅବସ୍ଥାରେ ରହିଲେ ଦଶ ଦିନ । ଜଣେ ଡାକ୍ତର ସାଇକେଲରେ ଜଳେଶ୍ୱରରୁ ଆସି ଦୁଇଥର ଇନ୍‌ଜେକ୍‌ସନ୍ ଦେଇଥିଲେ । ଗାଁ'ରେ ସବାରିଟିଏ ଠିକ୍ କରି ତାଙ୍କୁ ଜଳେଶ୍ୱର ଆଣିବାକୁ ଚେଷ୍ଟା କରିବା ପୂର୍ବରୁ ସେ ଚାଲିଗଲେ ।

ମାଆ ବିଷୟରେ ମୋର ସେ ଦୁଃଖ ଅବଶ୍ୟ ନଥିଲା ।

ମାନ୍ଦ୍ରାଜ ସମୁଦ୍ର କୂଳରେ ତା'ର ଶବଦାହ ହେଲା । ମୋ ଡିପାର୍ଟମେଂଟ୍‌ର ପ୍ରାୟ ଶହେ ଖଣ୍ଡେ ଲୋକ ଯାଇଥିଲେ । କମାଂଣ୍ଡାଟ୍ ନିଜେ ଥିଲେ । ସବୁ ଆସିଷ୍ଟାଂଟ୍ କମାଂଣ୍ଡଟ୍‌ଣ୍ଟ ମଧ୍ୟ ଥିଲେ । ଗୋଟାଏ ଅଜଣା ଜାଗାରେ ଯେ ଏତେ ସହାନୁଭୂତି ଓ ସହଯୋଗ ମୁଁ ପାଇବି ତାହାଥିଲା ମୋ କଳ୍ପନା ବାହାରେ ।

କିନ୍ତୁ ଆଶ୍ଚର୍ଯ୍ୟ ହେଲି । ଶବ ପୋଡ଼ା ହେଲା କାଠରେ ନୁହେଁ, ଗୋବର ଘସିରେ । ଶ୍ମଶାନ ଘାଟରେ ଗୋବର ଘସି ବିକ୍ରି ହୁଏ । ମୁଁ ଦେଖିଲି ମାତ୍ର ଘଂଟାକ ଭିତରେ କାମ ସରିଗଲା । ଧୂଆଁ ବି ସେମିତି କିଛି ନୁହେଁ । ଭଲ ସିଷ୍ଟମ ତ । ଏପଟେ ଶବ ପୋଡ଼ାର ତିକ୍ତ ଅଭିଜ୍ଞତା ଆମ ସମସ୍ତଙ୍କର ଅଛି । ପରେ ଗାଁ'କୁ ଯାଇ ଦଶାହ କାମ ଶେଷ କଲି ।

କିନ୍ତୁ ମୋର ସମସ୍ୟାର ଶେଷ ନାହିଁ । ଲୁଲୁ ସେ ବର୍ଷ ବାଣୀବିହାରରେ ପି.ଜି.ରେ ସିଟ୍ ନ ପାଇବାରୁ ଇକୋନୋମିକ୍ସରେ ଓଡ଼ିଶାରେ ଆଉ କେଉଁଠି ପି.ଜି. କରିବ ନାହିଁ ବୋଲି ସ୍ଥିର କରି ମୋ ପାଖରେ ବସି ରହିଲା । ଅବଶ୍ୟ ସେ ଓଡ଼ିଶା ବାହାରେ ଆଉ କେଉଁଠି apply କରି ନଥିଲା । ମାଡ୍ରାସରେ ମଧ୍ୟ ବିଭିନ୍ନ କଲେଜରେ ତା'ପାଇଁ ଚେଷ୍ଟା

କରିଥିଲି, କିନ୍ତୁ ସେମାନେ ଅଣତାମିଲ୍‌ମାନଙ୍କୁ ପ୍ରାଧାନ୍ୟ ଦିଅନ୍ତିନାହିଁ । ସ୍ୱାଭାବିକ କଥା । ରାଧାନାଥ ଶତପଥୀ ଥିଲେ ତାମିଲନାଡୁ କେଡାରର ଓଡ଼ିଆ ଆଇ.ଏ.ଏସ୍. । ତାଙ୍କ ଘର ବାଲେଶ୍ୱର । ତାଙ୍କ ସହିତ ପରିଚୟ ହେବାପରେ ସେ କହିଲେ ଏମ୍.ଏ. ପଢ଼ି କ'ଣ ହେବ ? ସେ ଏମ୍.ବି.ଏ ପଢୁ । ଇକୋନୋମିକ୍ସରେ ଅନର୍ସ ଅଛି । ମେନେଜମେଂଟ୍ ପାଠ ଭଲହେବ । ତେଣୁ ତାଙ୍କ ପରାମର୍ଶରେ ଗୋଟାଏ ଜଣାଶୁଣା ପ୍ରାଇଭେଟ୍ ମେନେଜମେଂଟ୍ କଲେଜରେ ଏଡ଼୍‌ମିଶନ କରାଇଦେଲି । କିନ୍ତୁ ଚାରିଟା ସେମିଷ୍ଟାର ସଫଳତାର ସହିତ କ୍ଲିୟାର୍ କଲାପରେ ମଧ୍ୟ ତା'ପର ବର୍ଷ ତା'ର ଇଚ୍ଛାହେଲା ସେ ଇତିହାସରେ ପି.ଜି. କରିବ । ଶେଷରେ ତାହା ହିଁ ହେଲା । ସେ ଶାନ୍ତିନିକେତନକୁ ଯାଇ ଏଡମିଶନ ନେଇଗଲା । ଇତିହାସ ପ୍ରତି ତାର ମୂଳରୁ ଗୋଟାଏ ଦୁର୍ବଳତା ରହିଥିଲା ।

ଏବେ ଚିନ୍ତା ରହିଲା ସୁମି ରୁମିଙ୍କ ପାଇଁ । ସୁମି ରାଉରକେଲାରେ ଆଇ.ଏ. ପାଶ କଲା । ତାକୁ ଓ ରୁମିକୁ ଏବେ ଗୋଟାଏ ଜାଗାରେ ରଖି ପଢ଼ାଇବାକୁ ସ୍ଥିର କଲି । ସେତେବେଳେ ସୀତା ସାହୁ ଥିଲେ ବାରିପଦା ୱିମେନ୍‌ସ କଲେଜର ପ୍ରିନ୍ସିପାଲ । ଝିଅ ଦୁଇଟାଙ୍କୁ ନେଇ ତାଙ୍କ ପାଖରେ ପହଂଚିଲି । ଅମାୟିକ ମହିଳା । କହିଲି ଆପଣ ମୋର ମାଉସୀ ଶାଶୁ ଚନ୍ଦ୍ରପ୍ରଭାଙ୍କ ସାଙ୍ଗ । ଝିଅ ଦୁଇଟିକୁ ଆଣିଚି । ଜଣେ ବି.ଏ. ପଢ଼ିବ ଆଉ ଜଣେ ଅଷ୍ଟମରେ । ମୁଁ ଅଛି ମାନ୍ଦ୍ରାଜରେ । ଝିଅ ଦୁଇଜଣଙ୍କ ଦାୟିତ୍ୱ ଆପଣଙ୍କୁ ଦେବି ।

ସଙ୍ଗେ ସଙ୍ଗେ କହିଲେ ଆପତ୍ତି ନାହିଁ । ପାଂଚଶହ ଝିଅଙ୍କ ଦାୟିତ୍ୱ ନେଇଛି । ଆଉ ଦୁଇ ଜଣଙ୍କର ନେଇ ପାରିବିନି ? ଆପଣ ନିଶ୍ଚିନ୍ତରେ ଯାଆନ୍ତୁ । ଏଇଠି ଭବାନୀ(ବୁଢ଼ିଆ) କଥା ମଧ୍ୟ ଟିକିଏ କହିବା ଦରକାର । ସେ ଥିଲା ରାଧାରାଣୀର ନିଜ ମାମୁଁ ଝିଅ ଭଉଣୀ, ଗାର୍ଲସ୍ ହାଇ ସ୍କୁଲର ଶିକ୍ଷୟିତ୍ରୀ । ବାରିପଦାରେ ମହିଳା କଲେଜ ଓ ବାଳିକା ହାଇସ୍କୁଲ ଗୋଟାଏ ବିଲଡିଂରେ । ଗୋଟାଏ ହଷ୍ଟେଲ ମଧ୍ୟ । ବାକୀ ଦାୟିତ୍ୱ ବୁଢ଼ିଆକୁ ଦେଇ ଫେରିଲି ମାଡ୍ରାସ ।

ଆର୍ଥିକ ଅବସ୍ଥା ପୁଣି ଟାଣଟୁଣ । ଦୁଇ ଝିଅ ବାରିପଦାରେ ହଷ୍ଟେଲରେ ଏବଂ ଲୁଲୁ ଶାନ୍ତିନିକେତନରେ । ସେ ସମୟରେ ନା ଟେଲିଫୋନ ନା ମୋବାଇଲ ନା banking ସୁବିଧା । ସେତିକି ବେଳେ ବି ଆରମ୍ଭ ହେଇଗଲା ରାଧାରାଣୀର ଗଲବ୍ଲାଡର ଷ୍ଟୋନର ପ୍ରବ୍ଲେମ । ତା'ର ଏ ରୋଗ ଆଗରୁ ମଧ୍ୟ ଥିଲା । କିନ୍ତୁ ଏତେ ଉଗ୍ର ନଥିଲା । ପୋର୍ଟ ହସ୍ପିଟାଲରେ ଅପରେସନ ହେଲା । ସେତେବେଳେ ଲାପାରୋସ୍କୋପିକ ସିଷ୍ଟମ ନଥିଲା । ପେଟପୂରା ଚିରା ହେଲା । କିନ୍ତୁ ସଫଳ ହେଲା ନାହିଁ । ଦୁଇଟା ଷ୍ଟୋନ କୁଆଡ଼େ ଅନ୍ତଭିତରେ ଲୁଚିଗଲେ, ଡାକ୍ତର ପାଇଲେ ନାହିଁ ।

ଘରକୁ ଆସିଲା ପରେ ସେଇ ଅବସ୍ଥା । ଯନ୍ତ୍ରଣା ବଢ଼ିଲା ।

ସେତେବେଳେ ଡାକ୍ତର କବି ପ୍ରସାଦ ମିଶ୍ର ମାଡ୍ରାସରେ ଥିଲେ । ତାଙ୍କ ସହିତ ମୋର ସମ୍ପର୍କ ରାଉରକେଲାରୁ । ଆସିଲେ ରାଧାରାଣୀକୁ ଦେଖିବାକୁ । ପୋର୍ଟ ଡାକ୍ତରମାନଙ୍କ ସହିତ ପରାମର୍ଶ କଲେ । ତାପରେ ରାଧାରାଣୀକୁ ଗୋଟାଏ ପ୍ରାଇଭେଟ ହସପିଟାଲକୁ ରେଫର କରାଗଲା । ସେଠି ନୂଆ ନୂଆ ଲାପାରୋସ୍କୋପିକ ସିଷ୍ଟମ ଆରମ୍ଭ ହେଉଥିଲା । ଦ୍ୱିତୀୟ ଅପରେସନ ସେଇଠି ହେଲା । ପରେ ସେ ଠିକ୍ ହେଲା ।

ଏ ପେଟ ବେମାରି କାହିଁକି ? ମୁଁ ଡାକ୍ତରଙ୍କୁ ପଚାରିଲି । ସେ କହିଲେ ଖିଆପିଆ ଠିକ୍ ସମୟରେ ନ ହେଲେ ଏମିତି ହୁଏ ।

ହେଇପାରେ । କିନ୍ତୁ ପୃଥିବୀର କେଉଁ ଲୋକଟା ଠିକ୍ ସମୟରେ ଖାଇ ପାରେ ? ପଶୁମାନେ ଖାଉଥିବେ । କାରଣ ସେମାନେ ସବୁବେଳେ ଖାଉଥା'ନ୍ତି । ପ୍ରକୃତରେ ରାଧାରାଣୀର ପେଟ ରୋଗର ପ୍ରଧାନ କାରଣ ହେଲା ଅତି ମାତ୍ରାରେ ଠାକୁର ସେବା । ମାଆ ତାକୁ ଯୋଉ ଖଟୁଲୀ ଧରେଇଚି ତା'ର ସେବା ନ କରି ସେ ପାଟିକୁ ଆହାର ନେବ କିମିତି ?

ଏଇଟାତ ସବୁ ନାରୀଙ୍କର । ବାହାଘର ପର ଦିନଠୁ ନାରୀ ଯେଉଁ ଦୀକ୍ଷାଟି ଗ୍ରହଣ କରିଥାଏ ତା' ପ୍ରତି ଥାଏ ଅହେତୁକ ଶ୍ରଦ୍ଧା । ନଚେତ୍ ଘରେ ବାହାରେ କହିବେ କ'ଣ ? ଧର୍ମ କି ସଂସ୍କୃତିକୁ ମାନୁନାହିଁ । ଅଲକ୍ଷଣୀ ବହୂଟାଏ ।

ନାରୀର ଏଇଟା ଯୁଗ ଯୁଗର ଅଭ୍ୟାସ । ତାକୁ ବଦଳାଇବ କିଏ ? ଜଣେ କିଛି ନ ବୁଝୁ । ଗୀତା, ହନୁମାନ ଚାଳିଶା ସହିତ ଆଜିକାଲି ସାଇବାବାଙ୍କ ପୋଥି ମଧ୍ୟ ଅନିବାର୍ଯ୍ୟ ହେଇ ପଡ଼ିଲାଣି ।

ରାଧାରାଣୀର ଦେହ ଟିକିଏ ଭଲ ହେଇ ସାରିଲା ପରେ ସେ ନିଜେ ମଧ୍ୟ ପିଲାଙ୍କ ଅନୁପସ୍ଥିତିକୁ ଚିନ୍ତା କରିବାକୁ ଲାଗିଲା । ସ୍ନେହ ପ୍ରବଣ ମାଆଟିଏ ଏ କଥା ସହ୍ୟ କରି ପାରେନା । ଶେଷରେ ଆମେ ଠିକ୍ କଲୁ ବାରିପଦାରେ ଘରଟିଏ ଭଡ଼ାନେଇ ସେଠି ସୁମି ରୁମିକୁ ନେଇ ରାଧାରାଣୀ ରହିବ । ତାହାହିଁ ହେଲା । ସେ ଘରଟା ବୁଢ଼ିଆ ଘର ପାଖରେ । ଭଲ ମନ୍ଦରେ ସେ ଓ ତା ସ୍ୱାମୀ ସୁବୋଧ ବାବୁତ ଅଛନ୍ତି । ଚିନ୍ତା କ'ଣ ? ଏବକୁ ସୁମି ଟିକିଏ ବଡ଼ ହେଇ ଗଲାଣି । ସେ ସାଇକେଲରେ କଲେଜ ଯା ଆସ କରୁଚି । ତା'ର ଦାୟିତ୍ୱ ଜ୍ଞାନ ବଢ଼ିଲାଣି । ତା'ଉପରେ ବିଶ୍ୱାସ ରଖି ହେବ ।

ମୁଁ ମାଡ୍ରାସରେ ଏକୁଟିଆ । ଏଣିକି ଟିକିଏ ସାମାଜିକ କାମରେ ମନ ଦେଲି । ଦେଲି କଅଣ, ଆପେ ଆପେ ଟାଣି ହେଇ ଯାଏ । ଏ ଅଭ୍ୟାସ ବରାବର ଅଛି ।



# ଉତ୍କଳ ଏସୋସିଏସନ୍ ଗଠନ

ଯୋଉଦିନ ପ୍ରଥମ କରି ମାଡ୍ରାସ ପୋର୍ଟରେ ଜଏନ କରିବାକୁ ଆସିଲି ସେତେବେଳେ କିଛିଦିନ ପୋର୍ଟ ଗେଷ୍ଟହାଉସରେ ରହିଥିଲି । ବୋଧେ ତିନିଚାରି ଦିନ ପରେ ଗୋଟାଏ ରବିବାର ଖରାବେଳେ ମୁଁ ଖାଇ ପିଇ ଶୋଇଛି, ହଠାତ୍ ଦୁଇ ଜଣ ଯୁବକ ମୋ ରୁମକୁ ପଶି ଆସିଲେ । ମୁଁ ଆଶ୍ଚର୍ଯ୍ୟ ହେଲି । ଚିହ୍ନି ଥିବା ପରି ମନେ ହେଉନି ।

ଆମେ ଏଠି ଗୋଟିଏ କଲେଜରେ ଏ.ଏମ୍.ଆଇ.ଇ. ପଢୁଚୁ ।

ମୁଁ ଏକଥା ଜାଣିଥିଲି । ସେତେବେଳେ ମାଡ୍ରାସରେ ପ୍ରଚୁର ଓଡ଼ିଆ ପିଲା ଏ.ଏମ୍.ଆଇ.ଇ. ପଢୁଥିଲେ ।

ଆମେ ଶୁଣିଲୁଁ ଆପଣ ଏଠାକୁ ଆସିଚନ୍ତି ବୋଲି । ତେଣୁ ଦେଖା କରିବାକୁ ଆସିଲୁଁ । ସେମାନେ କହିଲେ ।

କୋଉଠୁ ଜାଣିଲ ?

ଭୁବନେଶ୍ୱର ମୁଁ ଯାଇଥିଲି । ସେଠି ଲେଖକମାନଙ୍କ ସାଥିରେ ଦେଖା ହେବାରୁ ସେମାନେ କହିଲେ ଆପଣଙ୍କ କଥା । ତାପରେ କହିଲେ ଆମ ଛାତ୍ରମାନଙ୍କ ଭିତରେ ଗୋଟାଏ ସାହିତ୍ୟ ଅନୁଷ୍ଠାନ ଅଛି । ତା' ନାଁ 'ସୃଜନୀ' । ପ୍ରତି ମାସ କବିତା ପାଠ ହୁଏ । ଆପଣ ଥରେ ଚାଲନ୍ତୁ ।

ଏବେ ଯାଇ ହେବ ? କେତେ ବାଟ ?

ବେଶୀ ନୁହେଁ । ଲୋକାଲ ଟ୍ରେନରେ ଅଧ ଘଂଟା ଲାଗିବ ।

ରବିବାର । କିଛି କାମ ନଥିଲା । ସଙ୍ଗେ ସଙ୍ଗେ ବାହାରି ପଡ଼ିଲି । ଗେଷ୍ଟ ହାଉସଟା ଏମିତି ଗୋଟାଏ ଜାଗା ଯେ ଏକୁଟିଆ ବୁଲିବାକୁ ଭଲ ଲାଗିବ । ତଳକୁ ଓହ୍ଲାଇଲେ ଖୁବ ପାଖରେ ପଡ଼େ ମାଡ୍ରାସ୍ ବିଚ୍ ରେଲଷ୍ଟେସନ । ସବୁ ଲୋକାଲ ଟ୍ରେନ ସେଠାକୁ ଆସେ । ଠିକ୍ କଲିକତାର ଟ୍ରାମ୍ ସର୍ଭିସ ପରି । ସେଇ ବିଚ୍ ଷ୍ଟେସନ ପାଖରେ ମଧ୍ୟ 'ବର୍ମା ବଜାର'। ଯୋଉଠି ସବୁ ଫରେନ ଗୁଡସ୍ ମିଳେ । ନାଁ ଟା ବର୍ମା ବଜାର କାହିଁକି ହେଇଚି କେଜାଣି ? ପାଖରେ ମଧ୍ୟ 'ପାରିସ କର୍ନ୍ନର' । ସବୁଠୁ ବେଶୀ ବ୍ୟସ୍ତ ବହୁଳ ବଜାର । ଗୋଟାଏ ଦର୍ଶନୀୟ ସ୍ଥାନ । ପାରିସ କର୍ନ୍ନର ଶେଷରେ ଅଛି 'ଫ୍ଲାୱାର ମାର୍କେଟ'। ଫୁଲ ବଜାର । ସାଉଥ ଇଣ୍ଡିଆନମାନେ ସବୁଠୁ ବେଶୀ ଫୁଲ ପ୍ରିୟ । ତେଣୁ ସେଠି ଫୁଲ ବ୍ୟବସାୟ ଗୋଟିଏ ବଡ଼ ବ୍ୟବସାୟ । ଥରେ ବୁଲି ଆସିଲେ ସେଠି ପେଟ ପୁରି ଯାଏ । ସେଠୁ ଫୁଲ ବିଦେଶ ଯାଏ ।

ଏଇ ସବୁ ବିଷୟରେ ଗପ ହେଉ ହେଉ ଆମେ ଯାଇ ବିଚ ଷ୍ଟେସନରେ ପହଂଚିଲୁଁ । ବାସ, ମାତ୍ର ଅଧ ଘଂଟା ଭିତରେ ଆମେ ଯାଇ ତାଙ୍କ ହଷ୍ଟେଲରେ ପହଂଚିଲୁଁ । ଦେଖିଲି ସମଗ୍ର ହଷ୍ଟେଲଟାରେ ଖାଲି ଓଡ଼ିଆ ପିଲା । ସଙ୍ଗେ ସଙ୍ଗେ ମୋ ପାଖରେ ୧୫/୨୦ଜଣ ଜମିଗଲେ । ସେମାନେ ଲେଖାଲେଖି କରନ୍ତି । ଏମାନଙ୍କ କବିତା ମଧ୍ୟ କିଛି ଶୁଣିଲି । ଭଲ ଲାଗିଲା ଯୁବକ ଏମାନେ । ପ୍ରେମତ ରହିବ । କିନ୍ତୁ ଜୀବନ ମଧ୍ୟରେ କିଛି ସଂଘାତ ଓ ସଂଘର୍ଷ ମଧ୍ୟ ଅଛି । ସେମାନଙ୍କ ମଧ୍ୟରେ ଥିଲେ ଜେନାମଣି ଭାରତ ଭୂଷଣ ଆଗ ଧାଡ଼ିର । ଖୁବ ଭଲ କବିତା ସେ ଲେଖନ୍ତି ।

ଉତ୍କଳ ଏସୋସିଏସନ କଥା ହେଲା । ସମସ୍ତଙ୍କ ମନ ଭିତରେ କ୍ଷୋଭ । କହିଲେ କେତେ ଥର ଗଢ଼ା ହେଲାଣି । କିନ୍ତୁ ତିଷ୍ଠି ପାରୁନି । ମୁଁ ଡା: କବି ପ୍ରସାଦ ମିଶ୍ରଙ୍କ କଥାକହିଲି । ତାଙ୍କୁ ମୁଁ ରାଉରକେଲାରୁ ଜାଣିଥାଏଁ । ସେମାନେ କହିଲେ ବଡ଼ ବଡ଼ିଆଙ୍କ ଭିତରେ ଠିକ୍ ଭାବରେ ସହଯୋଗ ରହୁନି । ଭାବିଲି ଏଇଟା ବୋଧେ ଠିକ୍ ହେଇଥିବ । ଯୋଗାଯୋଗ ପାଇଁ ମଧ୍ୟମ ବର୍ଗର ଜଣେ ଉତ୍ସାହୀ ମଣିଷ ଆବଶ୍ୟକ ।

ମୁଁ ଏଥିପାଇଁ ଯୋଗାଯୋଗ ଆରମ୍ଭ କରିଦେଲି । ତା ସହିତ ସେହି ପିଲାମାନଙ୍କୁ ନେଇ ଛୋଟ କାଟର କବିତା ପାଠ ଓ ସାହିତ୍ୟ ଆସର ଛୁଟିଦିନ ମାନଙ୍କରେ କରୁଥାଏ । ଡଃ. କବିପ୍ରସାଦ ମିଶ୍ରଙ୍କ ସହିତ ପୁନଃ ସଂପର୍କ ସ୍ଥାପିତ ହୋଇ ସାରିଥିଲା । ତା ସହିତ ମାଡ୍ରାସ ବିଶ୍ୱବିଦ୍ୟାଳୟର ନୃତତ୍ତ୍ୱ ବିଭାଗର ରିଡ଼ର ଡକ୍ଟର ଉମାକାନ୍ତ ମହାନ୍ତି, ସଂଗୀତ ନିର୍ଦ୍ଦେଶକ ଉପେନ୍ଦ୍ର କୁମାର ଓ ଡେପୁଟୀ କମିଶନର ରାଧାନାଥ ଶତପଥୀଙ୍କ ସହିତ ମଧ ପରିଚୟ ହେଲା । ଏ ସମସ୍ତଙ୍କ ସହଯୋଗରେ ସ୍ଥିର ହେଲା ଯେ ଆଗାମୀ ଏପ୍ରିଲ ପହିଲାରେ ଅର୍ଥାତ୍ ୧ ଏପ୍ରିଲ୍ ୧୯୮୨ରେ ଉତ୍କଳ ଦିବସ ପାଳନ କରାଯିବ । ୧୯୮୨ ଫେବୃଆରୀ କିମ୍ୱା ମାର୍ଚ୍ଚ ମାସରେ ମୁଁ ଏକ ଅଫିସ କାମରେ ପଣ୍ଡିଚେରୀ ଯାଇଥିଲି । ସେଠାରେ ମନୋଜ ଦାସଙ୍କ ସହିତ ସାକ୍ଷାତ କରି ଆମ ଉତ୍କଳ ଦିବସ ପାଳନର ଯୋଜନା କଥା ତାଙ୍କୁ ଜଣାଇଲି ଓ ଉତ୍ସବରେ ମୁଖ୍ୟବକ୍ତା ହେବାପାଇଁ ତାଙ୍କୁ ଅନୁରୋଧ କଲି । ସଂଗେ ସଂଗେ ସେ ରାଜି ହୋଇଗଲେ । କିନ୍ତୁ ମାଡ୍ରାସ ଯିବାପାଇଁ ତାଙ୍କ ଗସ୍ତଖର୍ଚ୍ଚ କିମ୍ୱା ସେଠି ରହିବା ଦାୟିତ୍ୱ ଆମକୁ ନ ନେବାପାଇଁ କହିଲେ । ଯେହେତୁ ସେ 'ଚନ୍ଦାମାମା' କାମରେ ମଝିରେ ମଝିରେ ମାଡ୍ରାସ୍ ଆସନ୍ତି, ତେଣୁ ଏହି ଗସ୍ତ କାର୍ଯ୍ୟକ୍ରମକୁ ସେ ସେହି ସମୟରେ ରଖିବେ ବୋଲି କହିଲେ । ମାଡ୍ରାସ ଆସିଲେ ଚନ୍ଦାମାମା ତରଫରୁ ତାଙ୍କୁ ହୋଟେଲ୍ 'ସଭେରା'ରେ ରହିବାର ବ୍ୟବସ୍ଥା କରାଯାଉଥିଲା, ଯାହା ଥିଲା ସେ ସମୟରେ ନଗରୀର ସବୁଠାରୁ ଦାମୀ ଓ ରଚିପୂର୍ଣ୍ଣ ହୋଟେଲ ।

ଯାହା ହେଉ ସୃଜନୀ ଆନୁକୂଲ୍ୟରେ ୧୯୮୨ ଏପ୍ରିଲ୍ ପହିଲାରେ ରସିକ ରଞ୍ଜନୀ ସଭାରେ ଏକ ନିରାଡ଼ମ୍ବର ପରିବେଶରେ ଉତ୍କଳ ଦିବସ ପାଳିତ ହେଲା । ପ୍ରାୟ ଶହେ ଓଡ଼ିଆ ସେଥିରେ ଯୋଗ ଦେଇଥିଲେ । ମନୋଜ ଦାସ ଏକ ଓଜସ୍ୱିନୀ ବକ୍ତୃତା ଦେଲେ । ସଭାକାର୍ଯ୍ୟ ପରେ ନୃତ୍ୟଗୁରୁ ରମଣୀରଞ୍ଜନ ଜେନାଙ୍କ ଜଣେ ତାମିଲ୍ ଶିଷ୍ୟା ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ, ଯାହାକି ସମସ୍ତଙ୍କୁ ମନମୁଗ୍‌ଧ କରିଥିଲା । ଉତ୍କଳ ଦିବସର ସଫଳ ଆୟୋଜନ ଆମମାନଙ୍କୁ ଉତ୍କଳ ଏସୋସିଏସନ୍ ଗଠନ କରିବାକୁ ପ୍ରେରଣା ଦେଇଥିଲା ।

ବିଧିବଦ୍ଧ ଭାବେ ଏସୋସିଏସନ ଗଠନ କରିବାକୁ କେତୋଟି ମିଟିଙ୍ଗ ହେଲା । ସେତେବେଳେ ଯେଉଁମାନେ ଆଗେଇ ଆସିଲେ ସେମାନେ ହେଲେ ଡା: କବିପ୍ରସାଦ ମିଶ୍ର, ପ୍ରଫେସର ୟୁ.କେ. ମହାନ୍ତି, ମାଡ୍ରାସ ୟୁନିଭରସିଟିର ପି.ଏଚ୍.ଡି. ଛାତ୍ର ଗୋଦାବରୀଶ ମିଶ୍ର ଯିଏକି ବୋଧେ ପରେ ଜାତୀୟ ସଂସ୍କୃତ ପ୍ରତିଷ୍ଠାନର ସଭାପତି ହେଲେ, ପ୍ରଫେସର ଏସ.ଏନ.ମାଝି, ପ୍ରଫେସର ଜଗବନ୍ଧୁ ମାଝି, ଉଭୟ ମାଡ୍ରାସ ଆଇ.ଆଇ.ଟି.ର ପ୍ରଫେସର, ଇଣ୍ଡିଆନ୍ ଅଏଲ୍ କର୍ପୋରେସନର ମି. ରଥ,ତାଙ୍କ ପତ୍ନୀ ମିସେସ୍ ରଥ, କଷ୍ଟମ ବିଭାଗର ରମେଶ ମିଶ୍ର ଓ ରାଧାନାଥ ଶତପଥୀ ପ୍ରମୁଖ କେତେ ଜଣ । ପ୍ରାରମ୍ଭିକ କାମର ଦାୟିତ୍ୱ ମୁଁ ନେଲି । ମାଡ୍ରାସର ଗୋଟାଏ ଭଲ ଓ ବଡ଼ କଥା ଦେଖିଲି ସେଠି ପ୍ରତି ବର୍ଷ ନୂଆ ଟେଲିଫୋନ ଡାଇରେକ୍ଟରୀ ତିଆରି ହୁଏ । ସେଥିରୁ ଓଡ଼ିଆ ନାମ ଓ ଠିକଣା ବାହାର କରି ଖଣ୍ଡେ ଖଣ୍ଡେ ପୋଷ୍ଟ କାର୍ଡ଼ ସମସ୍ତଙ୍କୁ ଲେଖିଲି । ଏସବୁ କାମ ମୋର ଓଡ଼ିଆ କନେଷ୍ଟବଳ ଦ୍ୱାରା କରାଇଲି ।

ପ୍ରଥମ ମିଟିଂ ସଫଳ ହେଲା । ୩୦/୪୦ ଉପସ୍ଥିତ ଥିଲେ । ଡା. କବିପ୍ରସାଦ ମିଶ୍ର ସଭାପତି, ମିସେସ୍ ରଥ ଉପସଭାପତି ଓ ମୁଁ ସାଧାରଣ ସମ୍ପାଦକ ଭାବରେ ନିର୍ବାଚିତ ହେଲୁ । କାମ ଆରମ୍ଭ ପାଇଁ ଚାନ୍ଦା ମଗାଗଲା । ଯାହା ପାଖରେ ଯାହାଥିଲା ଦେଲେ । ମନେ ହେଉଛି ୩୦୦/୪୦୦ ଟଙ୍କା ସଂଗ୍ରହ ହେଲା । ମୁଁ ସଙ୍ଗେ ସଙ୍ଗେ ତାକୁ ନେଇ ମାଡ୍ରାସ ପୋର୍ଟ ଭିତରେ ଥିବା ଏସ.ବି.ଆଇ. ବ୍ରାଂଚ୍‌ରେ ଗୋଟିଏ ଏକାଉଣ୍ଟ୍ ଖୋଲି ଦେଲି । ଏଇଟାକୁ ଆରମ୍ଭ ବୋଲି ଧରାଯାଇ ପାରେ । କାରଣ ତା' ପୂର୍ବରୁ ପିଲାମାନଙ୍କ କହିବା ଅନୁସାରେ ଦୁଇ ତିନି ଥର ଏସୋସିଏସନ ଗଢ଼ିବା ପାଇଁ ଉଦ୍ୟମ ହେଇଥିଲେ ମଧ୍ୟ ତାହା ସମ୍ଭବ ହେଲାନାହିଁ । ଏଥର ଏହା ସମ୍ଭବ ହେଲା ସେଇ ପିଲାଙ୍କପାଇଁ । ମୁଁ ତ ନୂଆ । କାହାକୁବି ଚିହ୍ନି ନଥାଏ । ସେହିମାନେହିଁ ମୋତେ ବାଟ କଢ଼ାଉ ଥାଆନ୍ତି । ଅଫିସ କାମ ପରେ ମୁଁ ପ୍ରାୟ ପ୍ରତି ଦିନ ବାଛି ବାଛି ଓଡ଼ିଆଙ୍କ ଘରକୁ ଯାଇ ସେମାନଙ୍କୁ ଏସୋସିଏସନ ଗଢ଼ିବାର ଆବଶ୍ୟକତା ଉପରେ କହୁଥାଏ । ସେତେବେଳକୁ ମାଡ୍ରାସରେ

ବଙ୍ଗାଳୀମାନଙ୍କର ଗୋଟାଏ ଏସୋସିଏସନ ଗଢ଼ା ସରିଥାଏ । ଗୋଟିଏ ଜାଗା ନେଇ ସେମାନେ ବଡ଼ ହଲଟିଏ ତିଆରି କରି ସାରିଥାଆନ୍ତି । ଥରେତ ଏମିତି ହେଲା ପିଲାମାନେ ଗୋଟାଏ ଗଣେଶ ପୂଜା କରିବାକୁ ଚାହିଁଲେ । ଏପରି ଜାଗାରେ ହେବ ଯୋଉଠି ସବୁ ଓଡ଼ିଆ ପିଲା ଯୋଗ ଦେବେ । ଆଗରୁ ପିଲାମାନେ ନିଜ ନିଜ ହଷ୍ଟେଲରେ ସ୍ୱତନ୍ତ୍ର ଭାବରେ କରୁଥିଲେ । ଏଥର ଗୋଟିଏ ଜାଗାରେ କରିବାର ପ୍ରସ୍ତାବହେବାରୁ ସେମାନେ ବେଙ୍ଗଲୀ ଏସୋସିଏସନ ହଲ କଥା କହିଲେ । ମୁଁ ମନା କଲି । କହିଲି, ଆମର ଯେ ନିଜସ୍ୱ ଜାଗାଟିଏ ନାହିଁ ଏକଥା ତାଙ୍କୁ କହିବାକୁ ପଡ଼ିବ । ଗଣେଶ ପୂଜା ସେଥର ଅନ୍ୟ ଜାଗାରେ ହେଲା । ଅନେକ ଲୋକ ଆସିଥିଲେ । ଦେଖିଲି ଆସ୍ତେ ଆସ୍ତେ ଲୋକଙ୍କ ଉତ୍ସାହ ବଢ଼ୁଚି ।



# ପୋର୍ଟର ସୁରକ୍ଷା

ଏ ଦିଗରେ ପୋର୍ଟରେ ମୋ କାମ ବଢ଼ିଲା । ମୁଁ ଜଏନ କରିବାର ଅଳ୍ପ ଦିନ ପରେ, ପୋର୍ଟର ସବୁଠୁ ଗୁରୁତ୍ୱପୂର୍ଣ୍ଣ ପାସ ସେକ୍ସନର ଦାୟିତ୍ୱରେ ଥିବା ଆସିଷ୍ଟାଂଟ୍ କମାଂଣ୍ଡାଟ୍ ଏ.ଏସ୍. ଆର୍.ରେଡ୍ଡିଙ୍କର ବଦଳି ହେଲା । ତାଙ୍କ ଜାଗାରେ ମୋତେ ଅବସ୍ଥାପିତ କରାଗଲା । ମୁଁ ଚିନ୍ତାରେ ପଡ଼ିଗଲି । ଏତେ ବଡ଼ ଗୁରୁଦାୟିତ୍ୱ ସମ୍ଭାଳି ପାରିବି ? ଏଯାବତ୍ ପାସ ସେକ୍ସନର ମୁଖ୍ୟ କେବେବି ଭଲରେ ଯାଇ ନାହାନ୍ତି । ସବୁବେଳେ ସେକ୍ସନଟା ସମସ୍ୟା ସୃଷ୍ଟି କରୁଥିଲା ଓ ଦୁର୍ନାମ ମଧ୍ୟ ଅର୍ଜନ କରୁଥିଲା । ଏ ସେକ୍ସନ ଗୋଟାଏ ବିରାଟ ଅଫିସ । ସେଠି ଆଠ ଦଶ ଜଣ କ୍ଳର୍କ ଓ ଜଣେ ସେକ୍ସନ ଅଫିସର । ସମସ୍ତେ ପୋର୍ଟର ଷ୍ଟାଫ ଓ ସମସ୍ତେ ତାମିଲ ଭାଷୀ । ସି.ଆଇ.ଏସ୍.ଏଫ୍. ତରଫରୁ ମଧ୍ୟ ଜଣେ ଏସ୍.ଆଇ. ଓ ପାଂଚ ଛଅ ଜଣ ଷ୍ଟାଫ ଥାଆନ୍ତି । ଗୋଟାଏ ଫଟୋ ସେକ୍ସନ । କେମେରାମେନ ପ୍ରଭୃତି । ସାଧାରଣତଃ ଏଯାଏଁ ପାସ ସେକ୍ସନର ଦାୟିତ୍ୱରେ ଜଣେ ତାମିଲ କିମ୍ବା ଦକ୍ଷିଣ ଭାରତୀୟ ରହି ଆସୁଥିଲେ । ସ୍ୱଭାବିକ ମଧ୍ୟ । ଭାଷା ସମସ୍ୟା ରହିବନି । କିନ୍ତୁ ମୋର ସେଠାକୁ ପୋଷ୍ଟିଂ ହେବାରୁ ମୁଁ ଚିନ୍ତାରେ ପଡ଼ିଲି । ଏଇଟା କୁଆଡ଼େ ଡି.ଆଇ.ଜି.ଙ୍କ ପ୍ରସ୍ତାବ ଥିଲା । ସାଉଦେର୍ଣ୍ଣ ଜୋନ ଡି.ଆଇ.ଜି.ଙ୍କ ହେଡ୍‌କ୍ୱାଟର ସେହି ମାଡ୍ରାସରେ । ରେଡ୍ଡିର ବଦଳି ବେଳେ ଡି.ଆଇ.ଜି.ଙ୍କ ପରାମର୍ଶ କ୍ରମେ ମୋତେ ପାସ ସେକ୍ସନର ଦାୟିତ୍ୱ ଦିଆଗଲା । ମୋର ଚିନ୍ତା ହେଲା ମୋର ଭାଷା ସମସ୍ୟା । ପାରିବି ତ ? ଅନ୍ୟପକ୍ଷରେ ଅପାରଗ କହି ତଡ଼ି ଦେବେନି ତ? ଅପାରଗତା ଯେତିକି ଲଜ୍ଜା ଜନକ ଦୁର୍ନୀତିର 'ଅପବାଦ' ତା'ଠୁ ଅଧିକ ବେଦନା ଦାୟକ । ତଥାପି ନିଜ ଉପରେ ବିଶ୍ୱାସ ଥିଲା । ରାସ୍ତା ଛୁଡ଼ିବି ନାହିଁ ଏ ବିଶ୍ୱାସ ଥିଲା ।

ପୋର୍ଟ ଏକ ବ୍ୟବସାୟ କେନ୍ଦ୍ର, 'ଦାତବ୍ୟ ଚିକିତ୍ସାଳୟ' ନୁହେଁ । ପୋର୍ଟ ଯଦି ଭଲ କାମକରିବ ସମଗ୍ର ରାଜ୍ୟର ସ୍ୱାସ୍ଥ୍ୟ ଭଲରହିବ । ଆର୍ଥିକ ଉନ୍ନତି ହେବ । ପୋର୍ଟର ଭଲ କାମ ନିର୍ଭର କରୁଚି କେତେ ଶୀଘ୍ର ବିଦେଶାଗତ ଜାହାଜଗୁଡ଼ିକ ଆଣିଥିବା ମାଲ ଖଲାସ କରି ପୁଣି ଏଠିକା ମାଲ ବୋଝେଇକରି ଫେରିବ । ଏକ୍ସପୋର୍ଟ ଓ ଇମ୍ପୋର୍ଟ କଥା । ସମ୍ପର୍କ ସମଗ୍ର ଦେଶ ସହିତ ରହିଛି । ମାଲ ଖଲାସ ଓ ବୋଝେଇ ଯଦି ଡେରିହୁଏ ପୋର୍ଟର କ୍ଷତି ତଥା ଜାହାଜ କମ୍ପାନୀର ମଧ୍ୟ କ୍ଷତି । ତାଛଡ଼ା ଆମ ପାଖରେ ଜିନିଷ ଠିକ୍ ସମୟରେ ନ ପହଂଚିଲେ ଦରବୃଦ୍ଧି ଅବଶ୍ୟମ୍ଭାବୀ । ସରକାର ସମାଲୋଚିତ ହୁଅନ୍ତି । ତେଣୁ ଠିକ୍ ସମୟରେ ମାଲ ବୋଝେଇ/ ଖଲାସ ପୋର୍ଟର ଗୁରୁ ଦାୟିତ୍ୱ ଏବଂ ସେ ଦାୟିତ୍ୱ ଶ୍ରମିକମାନଙ୍କ ଉପରେ । ସେମାନେ ଠିକ୍ ସମୟରେ ପାସ ନେଇ ପୋର୍ଟ ଭିତରକୁ ପଶିବାର ଅଛି । ଅନେକ ସମୟରେ ଆମର ଅସାଧୁତା ବା ଅଜ୍ଞତା ଯୋଗୁଁ ପାସ ଅସାମାଜିକ ଓ ଅପରାଧୀମାନଙ୍କ ହାତରେ ପଡ଼େ, ଅପରାଧ ବଢ଼େ । ଏଥିରେ ଆମକୁ କୈଫିୟତ ଦେବାକୁ ହୁଏ ।

ଗୋଟାଏ ପୋର୍ଟରେ ମୋର ପ୍ରଥମ ଚାକିରି । ଏ ଯାଏ ଷ୍ଟିଲ ପ୍ଲାଂଟ୍ ଓ ଭାରୀ ଶିଳ୍ପରେ କାମ କରୁଥିଲି । ତା'ର ସୁରକ୍ଷା ବିଷୟରେ କିଛି ଅଭିଜ୍ଞତା ଥିଲା । ପୋର୍ଟର ସୁରକ୍ଷା ମୋ ପାଇଁ ନୂଆ ହେଲେ ମଧ ଜଣେ ସାଧାରଣ ପୋଲିସ ଅଫିସର ଅପେକ୍ଷା ମୁଁ ଯେ ଅଧିକ ଅଭିଜ୍ଞତା ସମ୍ପନ୍ନ ଏଥିରେ ସନ୍ଦେହ ନାହିଁ ।

ମାଡ୍ରାସ ପୋର୍ଟର ଏଇ ସବୁ ଅଭିଜ୍ଞତାକୁ ଗଳ୍ପରେ ରୂପ ଦେବାକୁ ମୋର ବହୁ ଦିନୁ ଇଚ୍ଛା ଥିଲେ ମଧ୍ୟ ପାରୁ ନଥିଲି । ଅନେକ ଦିନ ପରେ ସେଥିରେ ସଫଳ ହେଲି । ଗଳ୍ପ 'ରୂପ ପ୍ରତିରୂପ'ରେ ସମସ୍ତ କଥା ନିଖୁଣ ଭାବେ ଲେଖିଲି । ଝଙ୍କାରରେ ପ୍ରକାଶ ପାଇଲା ପରେ ତାହା ଏବେ ମୋର 'ନିର୍ବାଚିତ ଗଳ୍ପ'ସଙ୍କଳନର ଦ୍ୱିତୀୟ ଭାଗରେ ସ୍ଥାନ ପାଇଛି । ଜାହାଜ ଓ ତା'ର ନାବିକକୁ ନେଇ ଏଇଟା ବୋଧେ ପ୍ରଥମ ଓଡ଼ିଆ ଗଳ୍ପ ବୋଲି ଅନେକେ ମତ ଦିଅନ୍ତି ।

ନିଛକ ଅଭିଜ୍ଞତାର ସଫଳ ତଥା ନିର୍ଭିକ ରୂପାୟନ ହିଁ ସତ୍ୟାଶ୍ରୟୀ ଗଳ୍ପ ଗୋଟାଏ ସଠିକ ସନ୍ଦେଶ ଦେଉଥିବ ପାଠକକୁ ।

ପୋର୍ଟର ପାସ ସେକ୍ସନରେ ମୋତେ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ପ୍ରଥମେ ପଚାରନ୍ତି ତାମିଲରେ । ମୁଁ ହସିଲେ ପଚାରନ୍ତି, 'ତାମିଲ ତରିଆଦା ?'(ତାମିଲ ଜାଣିନ ?)

ମୁଁ କୁହେଁ, 'ଇଲେ'(ନାହିଁ) । ସେମାନେ ହସରେ ଫାଟି ପଡ଼ନ୍ତି । ତାପରେ ବେଶ୍ ଆତ୍ମୀୟତା ଆମକୁ ଘେରିପକାଏ ।

ସେମାନେ ମୋ ନାଁ ଦେଇଚନ୍ତି 'ମି: ମହାଭାରତ'। ମହାପାତ୍ର ତାଙ୍କ ପାଟିରେ ପଶେ ନାହିଁ। ମୁଁ ମଧ୍ୟ ତାଙ୍କ ନାଁ ଦେଇଚି 'ମି: ରାମାୟଣ', ମୋ ପାଟିରେ ରାମାନୁଜମ୍ ବି ସହଜରେ ପଶେ ନାହିଁ। ମୋତେ ବୋଧେ ଭଲ ମୁଡକୁ ଆଣିବା ପାଇଁ ସେମାନେ ରୁମକୁ ପଶି ଆସି କହନ୍ତି, 'ଜୟ ଜୁଗରନାଥ'। ମୋ ଛାତି କୁଣ୍ଢେମୋଟ ହେଇଯାଏ ।

ଆମ ପାସ ସେକ୍ସନ ମାଧ୍ୟମରେ ଯେ ପୋର୍ଟ ଭିତରେ ବେଶ୍ୟାବୃତ୍ତି ପରି କେତୋଟି ଅସାମାଜିକ କାମ ହେଉଚି ଏ ଖବର ଦିନେଜାଣିଲା ପରେ ମୋର ଚିନ୍ତା ପଶିଲା । ଏଇଟାତ ନିହାତି ଖରାପ କଥା । ବେଶ୍ୟାମାନେ ଗେଷ୍ଟ ହିସାବରେ ଭିତରେ ପଶି ଗୋଟିଏ ରାତି ଜାହାଜରେ ରହି ଭଲ ପାରିଶ୍ରମିକ ନେଇ ଘରକୁ ଯାଉଚନ୍ତି । ମୋର ସେଥିରେ ଅବଶ୍ୟ କିଛି କରିବାର ନାହିଁ । କିନ୍ତୁ ସେହି ବାହାନାରେ କେହି ଜଣେ ଯାଇ ଯଦି ପୋର୍ଟ ଭିତରେ କିଛି ସେବୋଟେଜ କରେ? ଏ ବିଷୟରେ ଥରେ ସିପିଂ ଏଜେଂଟମାନଙ୍କ (ଯୋଉମାନଙ୍କ ସୁପାରିଶରେ ତଥାକଥିତ ଗେଷ୍ଟମାନେ ଭିତରକୁ ଯାଆନ୍ତି) ସହିତ ଆଲୋଚନା ହେଲା । ସେମାନେ କହିଲେ ଏହା ଏକ ସଂବେଦନଶୀଳ ପ୍ରଶ୍ନ ହେଲେ ମଧ୍ୟ ମାନବିକ ଦୃଷ୍ଟି କୋଣରୁ ଦେଖିବାକୁ ହେବ, ଯେଉଁ ନାବିକମାନେ ବର୍ଷରେ/ଛଅ ମାସରେ ଥରେ ଘରକୁ ଫେରୁଛନ୍ତି ତାଙ୍କ ପାଇଁ ଏ ପ୍ରଥା କୋଉ ଯୁଗରୁ ସବୁ ଦେଶରେ ଚଳିଆସୁଚି । ତାକୁ ଅଟକାଇ ଦେଲେ ସେମାନଙ୍କ କାର୍ଯ୍ୟ ଦକ୍ଷତା ଉପରେ ଆଂଚ ଆସିବ । ଆମ ବ୍ୟବସାୟରେ ବାଧା ସୃଷ୍ଟି ହେବ । ନାବିକମାନଙ୍କୁ ଭଲ ମୁଡରେ ରଖିବା ଆମର ପ୍ରଧାନ ଦାୟିତ୍ୱ । ସୁରା ସାକୀ ବ୍ୟତୀତ ଏହା ସମ୍ଭବ ନୁହେଁ । ମୁଁ କହିଲି କିନ୍ତୁ ଦେହ ବିକ୍ରିତ ଭଲ କଥା ନୁହେଁ । ମୋ ପାଖରେ ଆଗରୁ ଖବର ଥିଲା ଯେ ଭଲ ଘରର ଝିଅ ବୋହୂମାନେ, ବିଶେଷ କରି ଛାତ୍ରୀମାନେ(ବିଦେଶାଗତ ମଧ୍ୟ) ଏ କାମରେ ନିଜକୁ ନିୟୋଜିତ କରନ୍ତି । ଗୋଟାଏ ରାତ୍ରୀର ରୋଜଗାର ଅଭାବି ଲୋକ ପାଇଁ ଯଥେଷ୍ଟ । ଉଚ୍ଚତର ଶିକ୍ଷାରେ ସାହାଯ୍ୟ କରେ ।

କୋଉଟା ଭଲ କଥା ସାର? ଆପଣ ଚିତ୍ରଶିଳ୍ପୀମାନଙ୍କ କଥା ଜାଣିଛନ୍ତି? ମୁଁ ତାଙ୍କ ମୁହଁକୁ ଅନାଇଲି । ସେ କହିଲେ, 'ଭଲ ଚିତ୍ରଟିଏ ଆଙ୍କିବାକୁ ନାରୀମାନଙ୍କୁ ମଧ୍ୟ ଭଡ଼ାରେ ଅଣାଯାଏ । ଘଂଟା ପ୍ରତି ବା ଦିନ ପ୍ରତି ମୂଲ୍ୟ ହିସାବ ହୁଏ । କିନ୍ତୁ ଆମ ଏ କ୍ଷେତ୍ରରେ ଆମେ ତାଙ୍କୁ ଫଟୋ ଆଲବମ ଦେଖାଉଁ । ଫଟୋରେ ଉଚ୍ଚତା, ଓଜନ, ରଙ୍ଗ ଓ ବୟସ ସବୁ ଲେଖାଥାଏ । ଗ୍ରାହକ ଯାହାକୁ ପସନ୍ଦ କରିବେ, ଆମ ପାଖରେ ସେମାନଙ୍କ ଫୋନ ଓ ଠିକଣା ଥାଏ । ତାଙ୍କ ଘରକୁ ଗାଡ଼ି ଯାଇ ନେଇଆସେ ।

ମୋର ପାସ ସେକ୍ସନରେ ଯେ ଦୁର୍ନୀତି ହେଉଚି ଏକଥା ମୁଁ ଜାଣିଥିଲି । ପାସ, ପରମିଟ ଓ ଲାଇସେନ୍ସରୁ ଦୁର୍ନୀତି ସୃଷ୍ଟି । ତାକୁ ଭଗବାନ ନିଜେବି ରୋକି ପାରିବେନି । ମୁଁ ଥରେ ଗୋଟିଏ ପରୀକ୍ଷା ହାତକୁ ନେଲି । 'ଡେରି' ହେଉଛି ଦୁର୍ନୀତିର ମୂଳ କଥା । ମୁଁ

ନିୟମ କରି ଦେଲି ପାସପାଇଁ । ୧୦ଟା ସୁଧା ଯୋଉ ଦରଖାସ୍ତ ଆସିବ ସେ ସବୁ ଦିନ ଗୋଟାଏ ଭିତରେ ଇସୁ ହେବ । ଯଦି କିଛି ଅବଜେକ୍‌ସନ ଥାଏ ତେବେ ମୋ ପାଖକୁ ଆସିବ । ସେକ୍ସନ ଅଫିସରଙ୍କୁ ଏ ଅର୍ଡ଼ର ଧରେଇ ଦେଲି । ଅଫିସ ନୋଟିସ ବୋର୍ଡ଼ରେ ମଧ୍ୟ ଝୁଲାଇ ଦେଲି । ଏହାକୁ ସମସ୍ତେ ପସନ୍ଦ କଲେ । ଠିକ୍ ସମୟରେ ପାସ ମିଳିଲେ ଜାହାଜର କାମରେ ଅସୁବିଧା ସୃଷ୍ଟି ହେବ ନାହିଁ । ମୁଁ ମଧ୍ୟ ଇନଷ୍ଟାଂଟ(ତତ୍କାଳ) ଫଟୋର ବ୍ୟବସ୍ଥା କଲି । ପାସର ମୂଲ୍ୟ ଅବଶ୍ୟ ବଢ଼ିଲା । ଏହାକୁ ପୋର୍ଟ କର୍ତୃପକ୍ଷ ମଞ୍ଜୁର କରିଥିଲେ । ଏଥିରେ ସେମାନଙ୍କ ଆୟ ବଢ଼ିଲା । କିନ୍ତୁ ପାସଟା ସୁବିଧା ଓ ଶୀଘ୍ର ମିଳିବାରୁ ସମସ୍ତେ ଖୁସି । ଅନ୍ୟ ଦିଗରେ ଫଟୋ ପାସ ଦ୍ୱାରା ସିକ୍ୟୁରିଟି ସିଷ୍ଟମ ମଧ୍ୟ ଦୃଢ଼ ହେଲା ।

ପୋର୍ଟ ଚେଆରମେନ ତାଙ୍କ ବୋର୍ଡ଼ ମିଟିଂରେ ସିଷ୍ଟମକୁ ପ୍ରଶଂସା କଲେ ଓ ମୋଠାକୁ ଗୋଟିଏ ଏପ୍ରିସିଏସନ ଲେଟର ପଠାଇଲେ । ପରେ ପୋର୍ଟ ଜର୍ଣ୍ଣାଲରେ ଏକଥା ପ୍ରକାଶ ପାଇଲା ପରେ ତୁତିକୋରିନ ପୋର୍ଟରୁ ଜଣେ ଅଫିସର ଆସି ମୋଠୁ ସିଷ୍ଟମ ବିଷୟରେ ବୁଝି ଗଲେ । ପରେ ଅନ୍ୟ କେତେକ ପୋର୍ଟରେ ମଧ୍ୟ ଏଇ ସିଷ୍ଟମ ଲାଗୁ ହେଲା । ୧୯୯୫ରେ ମୁଁ ପାରାଦ୍ୱୀପ ପୋର୍ଟକୁ ଆସି ତାକୁ ପ୍ରଚଳନ କରାଇଲି ।

ମୋର ଦୃଢ଼ ବିଶ୍ୱାସ ଯେ କୌଣସି ସ୍ଥାନରେ ଉପର ମହଲ ଯଦି ଇଚ୍ଛା କରନ୍ତି ଦୁର୍ନୀତି ଅନେକାଂଶରେ ଦୂର ହେଇ ପାରିବ । ଦୃଢ଼ ଇଚ୍ଛାଶକ୍ତି ଉପରେ ତାହା ନିର୍ଭର କରେ ।



# ଶ୍ରୀମତୀ ଜର୍ଜଙ୍କ ସହିତ ପରିଚୟ

ସେଦିନ ପାଂଚଟାବେଳେ ଅଫିସରୁ ଆସି ଗୋଟାଏ ହାଲୁକା ମୁଡରେ ବାରଣ୍ଡାରେ ବସିଚି । ଜଣେ ଭଦ୍ର ମହିଳା ଗେଟ ଖୋଲି ଭିତରକୁ ପଶି ଆସିଲେ । ପଚାରିଲେ, 'ଆପଣ ମି: ଦାସ ମହାପାତ୍ର ?'

ମୁଁ ଆଶ୍ଚର୍ଯ୍ୟ ହେଲି । ଲଙ୍କାରେ ହରି ଶବ୍ଦ । ଭଦ୍ରମହିଳା ପୁଣି ସ୍ୱଷ୍ଟ ଓଡ଼ିଆରେ ? କେମିତି ସମ୍ଭବ ହେଲା ?

'ହଁ ମେଡମ୍, ଭିତରକୁ ଆସନ୍ତୁ' ।

'ମୁଁ ଡ: ମିସେସ୍ ସୁଲତା ଜର୍ଜ । ଏଇ ହସପିଟାଲରେ ମୋର କାମ' । ଆଗରେ ଥିବା କର୍ପୋରେସନର ଡାକ୍ତରଖାନାକୁ ସେ ହାତ ବଢ଼ାଇଲେ । ସେ କହିଲେ, 'ମୋ ଘର ଅନୁଗୋଳ ପାଖରେ । କିନ୍ତୁ ଜଣେ ତାମିଲ ଡାକ୍ତରଙ୍କୁ ବାହା ହେଇ ଏଠାକୁ ଚାଲି ଆସିଲି' ।

ଡ: ଜର୍ଜ ପୋର୍ଟ ହସପିଟାଲରେ ଅଛନ୍ତି । ଶିଶୁରୋଗ ବିଶେଷଜ୍ଞ ।

ତାଙ୍କୁ ପାଇ ବହୁତ ଖୁସି ହେଲି । 'ଆମର ଆଉ ରୋଗ ଭୟତ ରହିବ ନାହିଁ, ଅଧିକନ୍ତୁ ଆପଣ ଆମକୁ ତାମିଲ ଶିଖାଇବେ' ବୋଲି କହିଲି ।

ବନ୍ଧୁତା ଜମିଗଲା । ଅନାବିଳ ସମ୍ପର୍କ । ଏମିତି ହେଲା ଯେ ସେ ଖ୍ରୀଷ୍ଟିୟାନ ଓ ମୁଁ ହିନ୍ଦୁ ଜଣା ପଡ଼ିଲାନି । ମିସେସ ଜର୍ଜ ହିଁ ମୋତେ କହିଲେ ଏଠି କର୍ପୋରେସନ ଡାକ୍ତରଙ୍କର ଗୋଟାଏ ପ୍ରଧାନ କାମ ହେଲା ପାଖରେ ଥିବା ବସ୍ତିମାନଙ୍କୁ ଯାଇ ଗର୍ଭବତୀ ସ୍ତ୍ରୀ ମାନଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରିବା ଓ ଉପଦେଶ ଦେବା । ନିୟମିତ କାମ ।

ସୁଲତାଙ୍କ ସ୍ୱାମୀ ଡ:ଜର୍ଜ ତାମିଲ ହେଲେ ମଧ୍ୟ ଅଧା ଓଡ଼ିଆ । ଅର୍ଥାତ୍ ତାଙ୍କ ମା ଥିଲେ ଓଡ଼ିଆ ଝିଅ ଯିଏ କି ପିଲା ଦିନେ ତାଙ୍କ ବାପା ମାଙ୍କ ସହିତ ବର୍ମାରେ ଥିଲେ । ସେମାନେ ଥିଲେ ଖ୍ରୀଷ୍ଟିଆନ୍ ପରିବାର । ଡ: ଜର୍ଜଙ୍କ ବାପା ମଧ୍ୟ ପିଲାଦିନେ ବର୍ମାରେ ଥିଲେ । ସେହି ସୁତ୍ରରେ ସେମାନଙ୍କ ବିବାହ ହୋଇଥିଲା । ତେଣୁ ଓଡ଼ିଶା ସହିତ ଡ: ଜର୍ଜ, ସୁଲତାଙ୍କୁ ବିବାହ କରିବା ପୂର୍ବରୁ ମଧ୍ୟ ଭଲଭାବରେ ପରିଚିତ ଥିଲେ ଯଦିଓ ସେ ଓଡ଼ିଆ ବୁଝୁ ନଥିଲେ । ତାଙ୍କ ମାଁମୁ ପୁଅ ଭାଇ ମିଃ ପ୍ରଧାନ ସେତେବେଳେ ଇଣ୍ଡିଆନ୍ ରେଭିନ୍ୟୁ ସର୍ଭିସ ପାଇ ମାଡ୍ରାସରେ ପୋଷ୍ଟିଂ ହୋଇ ତାଙ୍କରି ଘରେ ରହୁଥିଲେ । ତେଣୁ ତାଙ୍କ ଘରେ ଓଡ଼ିଆ ବାତାବରଣ ଭଲଥିବାରୁ ଆମକୁ ବେଶ ସୁହାଇଲା । ଜର୍ଜ ଦଂପତିଙ୍କ ପିଲାମାନେ ମଧ୍ୟ ଓଡ଼ିଆ ବୁଝୁଥିଲେ ।

ତାମିଲନାଡୁର ଅନେକ ସିଷ୍ଟମ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି । ରାସ୍ତା ମରାମତି ଓ ସଫେଇ ସବୁ ରାତିରେ । ମ୍ୟୁନିସିପାଲଟି ଗାଡ଼ିରେ ୪/୬ ଜଣ ଲୋକ ଆସନ୍ତି, ତୁରନ୍ତ ରାସ୍ତାରେ ଥିବା ମଇଳା ଗାଡ଼ିରେ ରଖି ଚାଲି ଯାଆନ୍ତି । ଅପେକ୍ଷା କରିବା, ଗପ କରିବା ପ୍ରଶ୍ନ ନଥାଏ । ସେମିତି ମଧ୍ୟ ସମସ୍ତଙ୍କୁ ରେସନ କାର୍ଡ଼ ମିଳେ ଏବଂ ସେଥିରେ ଲେଖାଥାଏ ତେଲ,ଡାଲି, ଚିନି,ଚାଉଳ ଇତ୍ୟାଦି ସପ୍ତାହର କୋଉ ଦିନ ଓ କେତେ ମିଳିବ । ଏବଂ ଏହା ଅବଧାରିତ । ଦୋକାନ ନିଶ୍ଚୟ ଖୋଲା ଥାଏ । ଜିନିଷ ନ ମିଳିବାର ପ୍ରଶ୍ନ ନାହିଁ ।

ମାଡ୍ରାସର ଟ୍ରାନ୍ସପୋର୍ଟ ସିଷ୍ଟମ ସମସ୍ତେ ଦେଖିଥିବେ । ବସଗୁଡ଼ିକ ପରିଷ୍କାର ଓ ସେଗୁଡ଼ିକ ରୁଟ୍‌ମାନଙ୍କରେ ଟ୍ରେନ ଭଳି ଠିକ୍ ସମୟରେ ଚାଲେ । ଅନିୟମିତତାର ପ୍ରଶ୍ନ ନାହିଁ । ସେଠି କମ୍ପୁଟରାଇଜଡ ଟିକେଟିଂ ବୋଧେ ୧୯୯୦ ବେଳକୁ ଆରମ୍ଭ ହେଇଥିଲା ।

ଏଇଠି ମଧ୍ୟ ମୋର ସମ୍ପର୍କ ଗଢ଼ି ଉଠିଥିଲା ମିସେସ ଡା: ଫତିମା ମାସୁଦ ଓ ତାଙ୍କ ପରିବାର ସହିତ । ସେ ମଧ୍ୟ ସେଇ କର୍ପୋରେସନ ଡାକ୍ତରଖାନାରେ ଅବସ୍ଥାପିତ । ରକ୍ଷଣଶୀଳ ମୁସଲମାନ ହେଇ ମଧ୍ୟ ସେମାନେ ମୋ'ଘରେ ଖାଉଥିଲେ ଏବଂ ପ୍ରତ୍ୟେକ ପର୍ବ ପର୍ବାଣିରେ

ସେ ମୋ ଘରକୁ ସୁନ୍ଦର ଚିକେନ ବିରିଆନି, ମିଠା, ଫଳ, ଟିଫିନ କେରିଅର ଭର୍ତ୍ତି ହେଇ ଆସୁଥିଲା । ମୁଁ ଥିଲି ତା'ର 'ଭାଇସାବ୍' । ମୁଁ ତ ଭୁଲି ଯାଇଥିଲି ଆମର ଧାର୍ମିକ ଓ ସାଂସ୍କୃତିକ ସୀମାରେଖା । ଏତେ ସ୍ନେହ ଏତେ ମମତା କ'ଣ ପୂର୍ବ ଜନ୍ମର ଆଶୀର୍ବାଦ ? ମୋ ସ୍ତ୍ରୀ ବେମାର ପଡୁଥିବା ବେଳେ ସେ ତ କମ୍ ସେବା କରି ନାହିଁ । ତା' ସ୍ୱାମୀ ମି: ମାସୁଦ ଥିଲେ ପୋର୍ଟର ଜଣେ ଅଫିସର । ଆମରି ପାସ ସେକ୍ସନ ଦାୟିତ୍ୱରେ ଥାଆନ୍ତି । ଉଭୟ ଥିଲେ ବେଶ ମାର୍ଜିତ ଓ ସଂସ୍କୃତି ସଂପନ୍ନ ।

ସେଇମାନେହିଁ ମୋତେ ମାଡ୍ରାସର ସବୁ ଦର୍ଶନୀୟ ସ୍ଥାନ ବୁଲି ଦେଖେଇଛନ୍ତି । ସବୁ ସିନେମା,ସର୍କସ,ଫେଡେରେସନ କପ୍ ଫୁଟବଲ ଦେଖିବା ସେମାନଙ୍କ ପାଇଁ ସମ୍ଭବ ହେଇଚି । ମୋ ରହଣିର ଦୀର୍ଘ ସାଢ଼େ ତିନି ବର୍ଷ ଏ ଦୁଇଟି ପରିବାର ସହିତ ମିଶି ଗୋଟିଏ ହୋଇ ଯାଇଥିଲା ।

ତଥାପି ମୁଁ ଅମଣିଷଟାଏ । ଏତେ ସ୍ନେହ, ମମତା ଓ ଉପକାର ର ମୂଲ୍ୟ କଅଣ ଦେଇ ପାରିଚି ? ୧୯୮୯ରେ ତା' ସ୍ୱାମୀ ହୃଦ୍‌ରୋଗରେ ଚାଲିଗଲା ବେଳେ ମୁଁ ପ୍ରମୋସନ ପାଇ ଥିଲି ଆସାମର ବୋଙ୍ଗାଇଗାଁଓରେ । ବୋଡ଼ୋ ଆନ୍ଦୋଳନରେ କମ୍ପୁଚି । ପ୍ରତିଦିନ ବୋମା ବିସ୍ଫୋରଣଠାରୁ ଆରମ୍ଭ କରି ଆର୍ମି ଓ ପୋଲିସ ଉପରେ ଆକ୍ରମଣ ଥିଲା ଏକ ଦୈନନ୍ଦିନ ଘଟଣା । ମୁଁ ନୂଆ ଜଏନ କରିଥାଏ ଆଉ ପ୍ଲାଂଟର ସୁରକ୍ଷା ଦାୟିତ୍ୱ ମୋର । ତା'ସତ୍ତ୍ୱେ ଆସିବି ବୋଲି ଟେଲିଗ୍ରାମ୍ ପଠାଇ ଦେଇଥିଲି । କୋଉଠି ଆସି ପାରିଲି ? ସେ ତା'ପୁଅକୁ ଷ୍ଟେସନକୁ ପଠାଇ ଥିଲା । ମୋତେ ନ ପାଇ ଫେରିବାର ଦୁଃଖ ଏବେବି ମୋ ମନରୁ ଯାଇନାହିଁ । ତା ପରିବାର ଫଟୋରେ ମୋର ଆଲବମ ଭର୍ତି ।

୧୯୮୪ରେ ହେଇଥିଲା 'ଅଲ ଇଣ୍ଡିଆ ପୋର୍ଟ ଏଣ୍ଡ ଡକ୍ ଓ୍ୱାର୍କରସ୍ ଷ୍ଟ୍ରାଇକ'। ମୋତେ ପୋର୍ଟ ତରଫରୁ ଦିଆ ଯାଇଥିଲା ସିକ୍ୟୁରିଟି ବନ୍ଦୋବସ୍ତ ପାଇଁ ସଂପୂର୍ଣ୍ଣ ଦାୟିତ୍ୱ । ଧର୍ମଘଟ ସମୟରେ 'ବନ୍ଦୋବସ୍ତ' କାମରେ ମୋର କିଛି ଅଭିଜ୍ଞତା ଥିଲା ରାଉରକେଲା ଓ ରାଞ୍ଚିରୁ । ଦୀର୍ଘ ପ୍ରାୟ ଏକ ସପ୍ତାହ ଧର୍ମଘଟ ହେଲା । ସଂପୂର୍ଣ୍ଣ ଶାନ୍ତିପୂର୍ଣ୍ଣ । କିଛି ବନ୍ଧୁ ଏଥିରେ ଅସହିଷ୍ଣୁ ହେଲେ । ମଣିଷ ମନ ଅସହିଷ୍ଣୁତାର ଅଳନ୍ଧୁକୁ ନେଇ ବଂଚିଥାଏ । ମୁଁ କିନ୍ତୁ ସନ୍ତୁଷ୍ଟ । ଲୋକଙ୍କଠୁ ଭଲ ଶୁଣିଲେ ଆଉ କଅଣ ଦରକାର ?

ମୁଁ ତାମିଲନାଡୁରେ ଲୋକଙ୍କ ସିଭିକ ସେନ୍ସକୁ ପ୍ରଶଂସା କରେ । ରାସ୍ତା ଘାଟ କିପରି ସଫା ରହିବ ସେ ଦିଗରେ ସେମାନେ ସଚେତନ । ରାସ୍ତା କଡ଼ରେ ଶହ ଶହ ଚା ଓ ପଇଡ଼ ଦୋକାନ ଥାଏ । କିନ୍ତୁ ରାସ୍ତା ମୋଟେ ଅପରିଷ୍କାର ହୁଏନା । ସେଠି ଧର୍ମଘଟକାରୀଙ୍କ ଶୋଭାଯାତ୍ରା, ବିବାହ ଉତ୍ସବର ଶୋଭାଯାତ୍ରା ଦେଖିଚି । ସବୁବେଳେ ରାସ୍ତାର ଗୋଟିଏ ପାଖରେ ଗୋଟିଏ ଧାଡ଼ିରେ ଚାଲନ୍ତି । ଯିବା ଆସିବାରେ ମୋଟେ ଅସୁବିଧା ହୁଏନି ।

ପୋଲିସ ସଜାଗ ଥାଏ । ମାଡ୍ରାସ ରେଳ ଷ୍ଟେସନରେ ମୁଁ ଯେତେବେଳେ ପ୍ରଥମେ ଯାଇ ପହଂଚିଲି (୧୯୮୧) ସେଠାର ଶୃଙ୍ଖଳା ଦେଖି ଆଶ୍ଚର୍ଯ୍ୟ ହେଲି । ଷ୍ଟେସନ ଏରିଆରେ ପରିବା ବା ଅନ୍ୟ କିଛି ବିକ୍ରି ହେବାର ପ୍ରଶ୍ନ ଉଠୁନି କିମ୍ବା ଦିନ କିମ୍ବା ରାତିରେ ଲୋକ ଶୋଇ ଥିବାର ଦେଖିବାକୁ ମିଳିବନି । ବୁକିଂ କାଉଂଟର ସବୁ କମ୍ପ୍ୟୁଟରାଇଜଡ । ବୁକିଂ ଏରିଆ ବାହାରେ ଧାଡ଼ି ହେଇ ବସି ଥାଆନ୍ତି ଛୋଟ ଛୋଟ କେବିନ୍ ମାନଙ୍କରେ ଭିନ୍ନକ୍ଷମ ଯୁବକ ଯୁବତୀମାନେ । ସେମାନଙ୍କୁ ମିଳିଥାଏ ଗୋଟିଏ ଗୋଟିଏ ଟେଲିଫୋନ । ଲୋକଙ୍କୁ ସାହାଯ୍ୟ ଯୋଗାଇ ଦିଅନ୍ତି । ଆଜି ପରି ସେତେବେଳେ ମୋବାଇଲ ନଥିଲା । ମୋବାଇଲ ନଥିବା ସମୟରେ ଯାତ୍ରୀମାନଙ୍କ ପାଇଁ ଷ୍ଟେସନ ବାହାରେ ଲେଣ୍ଡ୍‌ଲାଇନ୍ ଫୋନଟିଏ ଏକାନ୍ତ ଜରୁରୀ । ପଚାଶ ପଇସା ଦେଇ ଜଣେ ତା'ର ସମ୍ପର୍କୀୟ ବା ପରିବାର ସହ କଥା ହେଇପାରେ । ଅନ୍ୟ ଷ୍ଟେସନ ମାନଙ୍କରେ ଏ ସିଷ୍ଟମ କାହିଁକି କରାଯାଇନି କେଜାଣି ବୋଲି ମୁଁ ଭାବୁଥିଲି । ଠିକ୍ ସେମିତି ମଧ୍ୟ ଅଟୋ ବ୍ୟବସ୍ଥା । ସମସ୍ତେ ଧାଡ଼ିରେ ଆସନ୍ତି । ଯାତ୍ରୀମାନେ ସେଇ ଧାଡ଼ିରୁ ନିଅନ୍ତି ଅଟୋ । ପ୍ରିପେଡ଼ ରେଟ୍ ଧାର୍ଯ୍ୟ ଥାଏ । ଠିକ୍ ଷ୍ଟେସନ ବାହାରେ ବସଷ୍ଟାଣ୍ଡ୍ ।

ଶୃଙ୍ଖଳା ଓ ସୌନ୍ଦର୍ଯ୍ୟର ସହର ମାଡ୍ରାସ । ଗୋଟିଏ ସଭ୍ୟ ଓ ସମ୍ଭ୍ରାନ୍ତ ସହର । ଜିପ, କାରଟିଏ ହଠାତ୍ ରାସ୍ତାରେ ଅଟକି ଗଲେ ମନକୁ ମନ ପଥଚାରୀମାନେ ଆଗେଇ ଆସନ୍ତି ଠେଲିବାକୁ । ସେଠାକାର ପୋଲିସକୁ ମଧ୍ୟ ଦେଖିବାର କଥା । ପୋଷାକରେ ସ୍ମାର୍ଟନେସ ଏବଂ କର୍ତ୍ତବ୍ୟ ପରାୟଣତା ଉଲ୍ଲେଖ ଯୋଗ୍ୟ । ଥରେ ପୋର୍ଟ ଭିତରେ ଚୋରିର ଖବର ପାଇ ମୁଁ ଯାଇ ପହଂଚିଲା ବେଳକୁ ପୋଲିସ ପହଂଚି ତା'କାମ ଆରମ୍ଭ କରି ସାରିଥାଏ । ଏସବୁ ସାଧାରଣ କଥା । ଏ ସବୁ ମୁଁ ବହୁବାର ଦେଖିଛି । ମାଡ୍ରାସର ସବୁଠୁ ପ୍ରିୟ ସ୍ଥାନ ମୋର ଥିଲା 'ମେରିନା ବିଚ' । ଏତେ ବଡ଼ ଲମ୍ବା ବିଚରେ ଦିଆସିଲି କାଠିଟିଏ ପଡ଼ି ଥିବାର କେହି ଦେଖିବନି । ସେଇ ବିଚ୍‌ରେ ଅଛି ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ଓ ପ୍ରେସିଡେନ୍ସି କଲେଜ । ସେମାନଙ୍କ ପରିସରକୁ ଦେଖିଲେ ମଣିଷ ଅଭିଭୂତ ହେଇ ପଡ଼େ । ସେଇଠି ବି ଅଛି ମହାତ୍ମା ଗାନ୍ଧୀ ଓ ଆନ୍ନାଦୁରାଇଙ୍କ ବିରାଟ ପ୍ରତିମୂର୍ତ୍ତି । ମାଡ୍ରାସର ସାଢ଼େ ତିନି ବର୍ଷ ରହଣି ଭିତରେ ପ୍ରାୟ ପ୍ରତି ପୂର୍ଣ୍ଣିମାର ସନ୍ଧ୍ୟା ମୁଁ ସେଇଠି ବିତେଇଛି । ଭୋକ ଶୋଷ ଭୁଲିହେଇଯାଏ ସେଠି । ଭାରତର ବହୁ ବିଚ ଦେଖିଛି । କନ୍ୟାକୁମାରୀଠାରୁ କେରଳର କୋଭଲମ୍ ଓ କୋଣାର୍କର ଚନ୍ଦ୍ରଭାଗାଠାରୁ ଦୀଘା ପର୍ଯ୍ୟନ୍ତ ସବୁ ଦେଖିଛି । ମେରିନାର ରୂପ କେବେବି ଭୁଲିବାର ନୁହେଁ । ପୁରୀ ସ୍ୱର୍ଗଦ୍ୱାରରେ ଏବେ ବିଜୁ ବାବୁଙ୍କ ଷ୍ଟେଚୁ ରହିବ କି ଜାନକୀବାବୁଙ୍କ ଷ୍ଟେଚୁ ରହିବ ସେବିଷୟରେ ମାମଲା ଏବେ କୋର୍ଟରେ କିନ୍ତୁ ମେରିନା ବିଚରେ ସେ ବିବାଦର ପ୍ରଶ୍ନ ଉଠୁନି ।

# ସଂଯୁକ୍ତା ଓ ରଘୁନାଥ ପାଣିଗ୍ରାହୀଙ୍କ ମହନୀୟତା

ଉତ୍କଳ ଏସୋସିଏସନ ଗଠିତ ହେଲା ପରେ ଚିନ୍ତା ପଡ଼ିଲା ଅନ୍ୟାନ୍ୟ କାମ ପାଇଁ ଟଙ୍କା କୋଉଠୁ ଆସିବ ? ସମସ୍ତେ ତ କିଛି କିଛି ଦେଇ ସାରିଲେଣି ସେତେବେଳକୁ । ଆଉ କେତେ ମାଗିବି । ଏଇ ମାଗଣା କଥାଟା ବଡ଼ ବାଧେ । ମାସକୁ ଥରେ ଆମେ ମିଶୁଁ । ଥରେ ଡାଃ କବି ମିଶ୍ରହିଁ ପ୍ରସ୍ତାବ ଦେଲେ, 'ଗୋଟାଏ ପ୍ରୋଗ୍ରାମ କରିବା, ଓଡ଼ିଶାରୁ ସଂଯୁକ୍ତା ପାଣିଗ୍ରହୀଙ୍କୁ ଡକାଇବା, ଟିକେଟ ବିକ୍ରି କରିବା, ଗୋଟିଏ ଶୋଭିନିଅର ମଧ୍ୟ ପ୍ରକାଶ କରିବା ।' ସମସ୍ତେ ହଁ କରି ଦେଲେ । କବି ବାବୁ ଉତ୍ସାହିତ ହେଇ ଉଠିଲେ ।

ମାଡ୍ରାସରେ ଓଡ଼ିଶୀ ଓ ସଂଯୁକ୍ତାଙ୍କ ଅପୂର୍ବ ଲୋକ ପ୍ରିୟତା ଅଛି । କାରଣ ଆଗରୁ ସେ ରୁକ୍ମିଣୀ ଅରୁନ୍ଦେଲଙ୍କ ସ୍ଥାପିତ 'କଳାକ୍ଷେତ୍ର'ର ଛାତ୍ରୀ ଥିଲେ । କଳାକ୍ଷେତ୍ର ଏକ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଅନୁଷ୍ଠାନ । ସମସ୍ତେ ହଁ ହାଁ କରୁଥିଲେ ମଧ୍ୟ ମୋର ଭୟ ଥିଲା । କବି ବାବୁ ଅଭୟ ଦେଲେ । କାମ ଆଗେଇ ଚାଲିଲା । ସେ ତ ଜଣେ କରିତ୍ କର୍ମା ବ୍ୟକ୍ତି । ତାଙ୍କରିଦ୍ୱାରା କେତେକ ସ୍ଥାନୀୟ କାଗଜରେ ସଂଯୁକ୍ତାଙ୍କ ପ୍ରୋଗ୍ରାମ ବିଷୟ ପ୍ରକାଶ ପାଇଲା । ସ୍ମରଣିକା ପାଇଁ ଲେଖା ଓ ବିଜ୍ଞାପନ ମଧ୍ୟ ସେ ସଂଗ୍ରହ କରୁଥାଆନ୍ତି । ତାଙ୍କ ସାଥିରେ ଥାଆନ୍ତି ଆଇ.ଆଇ.ଟି. ପ୍ରଫେସର ସୁରେନ୍ଦ୍ରନାଥ ମାଝୀ । କବିବାବୁ ଜଣେ ଖ୍ୟାତନାମା ହୃଦ୍‌ରୋଗ ବିଶେଷଜ୍ଞ । କର୍ପୋରେଟ ସେକ୍ଟର ସହିତ ଭଲ ସମ୍ପର୍କ । ଚାନ୍ଦା ଆଦାୟରେ ଅସୁବିଧା ହୁଏନା । ତା'ଛଡ଼ା ସଂଯୁକ୍ତାଙ୍କ ନାଁ ମଧ୍ୟ ଦର୍ଶକଙ୍କୁ ଟାଣି ଆଣିଲା । ପ୍ରୋଗ୍ରାମ ଗୋଟିଏ ଦିନ ଜାଗାରେ ଦୁଇଦିନ ହେଲା । ମ୍ୟୁଜିକ୍ ଏକାଡେମୀର ୧୫ଶହ କେପାସିଟିର ହଲରେ ଲୋକ ଟିକେଟ୍ କରି ମଧ୍ୟ ସ୍ଥାନ ଅଭାବରୁ ଠିଆ ହୋଇ ଦେଖିଲେ । ଅପୂର୍ବ ସଫଳତା ।

ଦ୍ୱିତୀୟ ଦିନର କାର୍ଯ୍ୟକ୍ରମ ପରେ ମୁଁ ଗ୍ରୀନ୍ ରୁମକୁ ଯାଇ ସଂଯୁକ୍ତାଙ୍କୁ ଭେଟିଲି । ଦୁଇଟି ସୋ ପାଇଁ ତାଙ୍କ ପ୍ରାପ୍ୟ (ଚୁକ୍ତି ଅନୁସାରେ) ଥିଲା ୨୦ ହଜାର । ମୁଁ ଦଶ ହଜାରର ଦୁଇଟି ବଣ୍ଡଲ ଧରି ତାଙ୍କୁ କହିଲି କାଲି ସକାଳେ ମୁଁ ଆପଣଙ୍କୁ ବିଦାୟ ଦେବାକୁ ଆସି ପାରିବିନି । ତେଣୁ ଏବେଠୁ ବିଦାୟ ନେବି ।

ଏ ଦୁଇଟା ବଣ୍ଡଲ କଅଣ ? ସେ ପଚାରିଲେ ।

ଦଶ + ଦଶ ଦୁଇଟା ସୋ ପାଇଁ ।

ସେ ଗୋଟାଏ ନେଲେ ଏବଂ କହିଲେ, 'ଅନ୍ୟଟି ଆପଣଙ୍କ ଅନୁଷ୍ଠାନକୁ ଦାନ କଲି ।'

ମୁଁ ହତବାକ୍ ହେଇଗଲି । ବିମୁଗ୍ଧ ନୟନରେ ତାଙ୍କୁ ଦେଖୁଥିଲି । ଭାବୁଥିଲି କେଉଁ ଭାବରେ ଏ ମହନୀୟ ମର୍ତ୍ତିର ପୂଜା କରିପାରିବି ? କହିବାକୁ ଗଲେ ତାହାହିଁ ଥିଲା ନବଗଠିତ ଉତ୍କଳ ଏସୋସିଏସନର ମୂଳପିଣ୍ଡ ।

୧୯୮୪ ଅଗଷ୍ଟ ମାସରେ ମାଡ୍ରାସ ଆଇ.ଆଇ.ଟି. ହଲରେ ମୋର ବିଦାୟ ସମ୍ବର୍ଦ୍ଧନା ଅବସରରେ ମୁଁ ପାସବୁକ ସହ ସମସ୍ତ ଦାୟିତ୍ୱ ଡଃ ଏସ୍.ଏନ୍.ମାଝୀଙ୍କୁ ଅର୍ପଣ କରି ମାଡ୍ରାସରୁ ବିଦାୟ ନେଲି ।



# ଜଗନ୍ନାଥ ମନ୍ଦିର ଓ ଉତ୍କଳ ଏସୋସିଏସନ

ମାଡ୍ରାସରେ ମୋର ପିଲାମାନଙ୍କ ସହିତ ପ୍ରଥମ ଆଲୋଚନା କଥା ମୁଁ ଆଗରୁ କହିଚି । ଆମର ନିଜର ଗୋଟିଏ ଜାଗା ନାହିଁ, ଆମର ନିଜର ପରିଚୟ ସୃଷ୍ଟି କରିବାର ସୁଯୋଗ ନାହିଁ, ଅଥଚ ହଜାର ହଜାର ଓଡ଼ିଆ ବହୁ ଉଚ୍ଚ ପଦବୀଠାରୁ ବିରାଟ ଛାତ୍ର ସମାଜ ମଧ୍ୟ ଅଛି । ବେଶ କିଛି ପ୍ରଥମ ଶ୍ରେଣୀର ବ୍ୟବସାୟୀ ଅଛନ୍ତି । ଏସୋସିଏସନ ଜଗନ୍ନାଥ ମନ୍ଦିରଟିଏ ଗଢ଼ି ପାରନ୍ତା ନାହିଁ ?

ସେତେବେଳେ ଏସବୁ ଆଲୋଚନା ଆଲୋଚନାରେ ହିଁ ରହିଥିଲା । ଏବେ ଏସୋସିଏସନ ଗଢ଼ା ହେଲା ପରେ ତା'ର ଶ୍ରେୟ ମୁଁ କାହାକୁ ଦେବି ? କବି ବାବୁ ଛଡ଼ା ଆଉ କାହାକୁ ଦେଇ ହେବ ? ଗୋଟିଏ ଅସାଧାରଣ ବ୍ୟକ୍ତିତ୍ୱ । ଅସାଧାରଣ ପାଣ୍ଡିତ୍ୟ । ଯେ କୌଣସି ବିଷୟରେ ଉଭୟ ଓଡ଼ିଆ ଓ ଇଂରାଜୀରେ ସେ ଚମତ୍କାର ଭାଷଣ ଦେଇ ପାରନ୍ତି ବୋଲି ବହୁ ବଡ଼ ବଡ଼ ଜାଗାରୁ ତାଙ୍କୁ ଭାଷଣ ପାଇଁ ନିମନ୍ତ୍ରଣ ଆସୁଥିଲା । ସବୁଠି ସେ ଜଗନ୍ନାଥ ସଂସ୍କୃତିକୁ ପ୍ରାଧାନ୍ୟ ଦେଉଥିଲେ ।

ମୁଁ ମାଡ୍ରାସରୁ ବିଦାୟ ନେଲା ପରେ ସେ ଆରମ୍ଭ କଲେ ଜାଗା ନେଇ ମନ୍ଦିର ନିର୍ମାଣ କାମ । ଇଚ୍ଛା ଥିଲେ ଅର୍ଥ ବାଧକ ହୁଏନା । ଏ କଥା ସେ ପ୍ରମାଣିତ କରିଛନ୍ତି । ପ୍ରଫେସର ମାଝୀ ପରି ଆଉ କେତେ ଜଣଙ୍କୁ ନେଇ ସେ ଲାଗି ପଡ଼ିଲେ । ଜଗଦ୍‌ଗୁରୁ କାଞ୍ଚି ଶଙ୍କରାଚାର୍ଯ୍ୟଙ୍କ ଠାରୁ ଆରମ୍ଭ କରି କର୍ପୋରେଟ ସେକ୍ଟରର ବହୁ ବ୍ୟକ୍ତି ସାହାଯ୍ୟ ପାଇଁ ଆଗେଇ ଆସିଲେ । ସମୁଦ୍ର କୂଳରେ ଏକ ଏକର ଜାଗା କିଣି ସୁନ୍ଦର ମନ୍ଦିରଟିଏ ନିର୍ମାଣ ହେଇଗଲା ମାତ୍ର ତିନିଚାରି ବର୍ଷ ଭିତରେ । କବି ବାବୁଙ୍କର ମେଜିକେଲ ହାତଟିଏ ଅଛି ।

ମନ୍ଦିର ଶୁଭ ଉଦ୍‌ଘାଟନ ବେଳକୁ ମୋତେ ନିମନ୍ତ୍ରଣ କଲେ । ମୁଁ ଥିଲି ନାଲକୋରେ । ସସ୍ତ୍ରୀକ ଆସିବାକୁ କହିଲେ । ମୁଁ ଆସିଲି । ମୋର ଗେଷ୍ଟ ହାଉସରେ ରହିବାର ବ୍ୟବସ୍ଥା

ଥିଲା । ପ୍ରଥମ ଦେଖାରେ କୁଣ୍ଢେଇ ପକାଇଲେ । କହିଲେ ଆପଣତ ପ୍ରଥମ କର୍ତ୍ତା ଆପଣ ଆସି ନଥିଲେ ଅପୂର୍ଣ୍ଣ ରହି ଥାଆନ୍ତା । ଦେଖିଲି ବିରାଟ ଆୟୋଜନ । ମନୋଜ ଦାସ ଓ ପୁରୀର ରାଜା ଅଛନ୍ତି ଅତିଥି । ଏମାନଙ୍କ ସହିତ କବିବାବୁ ଓ ତାଙ୍କ ସହଧର୍ମିଣୀ ମଧ୍ୟ ଯଜ୍ଞ କୁଣ୍ଡରେ ଆହୁତି ଦେଲେ । କବିବାକୁ ଖାଂଟି ହିନ୍ଦୁ ବ୍ରାହ୍ମଣ, ତାଙ୍କ ସ୍ତ୍ରୀ ଖାଂଟି ଖ୍ରୀଷ୍ଟିୟାନ । ଯଜ୍ଞକୁଣ୍ଡ ଅପବିତ୍ର ହେଇଗଲା କି? ଦୁଇଟି ଧର୍ମର ଗୋଟିଏ ଅପୂର୍ବ ସମନ୍ୱୟ ଆଣି ପାରିଥିଲେ କବିବାବୁ । ମାଡ୍ରାସରେ ତାଙ୍କ ଘରକୁ ମୁଁ ଅନେକ ଥର ଯାଇଚି । ଗୋଟିଏ କାନ୍ଥରେ ଗୋଟିଏ ଜାଗାରେ ଯୀଶୁ ଓ ଜଗନ୍ନାଥଙ୍କର ସ୍ଥାୟୀ ବସତି ।

ତେବେ ମୌଳବାଦୀଙ୍କର ଏ ଅସହନଶୀଳତା କୋଉ କାମକୁ ଆସୁଛି ?

ହାୟ, ସେହି କବିବାବୁ ଏବେ ଆଉ ନାହାନ୍ତି । ସେ ନିଜେ ଥିଲେ ନାମଜାଦା ହୃଦ୍ ବିଶେଷଜ୍ଞ, କିନ୍ତୁ ହୃଦ୍‌ଘାତରେ ଗଲେ । ସାପୁଆ କେଳା ସର୍ପାଘାତରେ ଗଲା ପରି । ୨୦୧୪ ମାର୍ଚ୍ଚ ମାସରେ ସେ ହଠାତ୍ କଟକରେ ଗୋଟିଏ ସଭାରେ ଭାଷଣ ଦେଉଦେଉ ଟଳିପଡ଼ିଲେ । ତା'ର ୩/୪ ବର୍ଷ ପୂର୍ବରୁ ସେ ତାଙ୍କର ପ୍ରିୟଭୂମି ମାନ୍ଦ୍ରାଜ ଛାଡ଼ି ଓଡ଼ିଶା ଫେରି ଆସିଥିଲେ । ଭୁବନେଶ୍ୱରରେ ରହି ସେ ତାଙ୍କର ଡାକ୍ତରୀ ପେସା ଓ ସାହିତ୍ୟ/ ସମାଜ ସେବାର ନିଶାରେ ନିଜକୁ ନିୟୋଜିତ କରିଥିଲେ । ସବୁବେଳେ ଖୁବ୍ ବ୍ୟସ୍ତ । ବିଦେଶ ମଧ୍ୟ ଯାଉଥିଲେ । ସ୍ତମ୍ଭ ଲେଖୁଥିଲେ ଆଧ୍ୟାତ୍ମବାଦ ଉପରେ । ପ୍ରତି ରବିବାର 'ସମାଜ' ଓ 'ସମୟ'ରେ ତାଙ୍କୁ ଦେଖିବାକୁ ମିଳୁଥିଲା । ବେଶ କିଛିବହି ମଧ୍ୟ ଲେଖିଚନ୍ତି । 'ବାଇଶି ପାହାଚ'ତାଙ୍କ ସମସ୍ତଙ୍କ ଆଗରେ । ସେଥିରେ ସେ ମନ୍ଦିର ନିର୍ମାଣର ନିଜର ଅଭିଜ୍ଞତା କଥା ଲେଖିଚନ୍ତି । ବେଶ ଜୀବନ୍ତ । ତାର ଅନେକ ସଂସ୍କରଣ ହେଇ ସାରିଛି । ଯଶ ଓ ସମ୍ମାନର ଶେଷ ସୋପାନରେ ଥିଲାବେଳେ ସେ ହଠାତ୍ ମାଡ୍ରାସ ଛାଡ଼ି ଓଡ଼ିଶା ଫେରି ଆସିଲେ । ଏଇଠି ଗୋଟାଏ ପ୍ରଶ୍ନ ଉଠୁଛି । ତା'ର ଉତ୍ତର ମୁଁ ପାଇ ପାରି ନାହିଁ । ସେ ଥରେ ଆସିଥିଲେ ରାଉରକେଲା । 'ସୁନ୍ଦରଗଡ଼ ଜିଲା ଲେଖକ ସାମ୍ମୁଖ୍ୟ'ର ମୁଖ୍ୟ ଅତିଥି ହେଇ । ମୁଁ ତାଙ୍କୁ ପଚାରିଲି, 'ଆପଣ ମାଡ୍ରାସ ଛାଡ଼ିଲେ କାହିଁକି ?' ସେ କହିଲେ, 'ଜଗନ୍ନାଥଙ୍କ ଇଚ୍ଛା ।'

କବିବାବୁ ଥିଲେ ସାଲିସ ବିହୀନ ଅପ୍ରତିଦ୍ୱନ୍ଦ୍ୱୀ ସଂଗ୍ରାମୀ ମଣିଷ । ହୁଏତ ଏଇଟା ତାଙ୍କର କିଛି ବନ୍ଧୁଙ୍କୁ ସହଜ ମନେ ହେଇ ନଥିବ । ସଚରାଚର ଏହାହିଁ ମଣିଷ ମନର ଦୁଃଖଦ ଅସ୍ୱାଭାବିକତା । ଯୋଉ 'ବାଇଶି ପାହାଚ' ତାଙ୍କୁ ସମ୍ମାନର ଶୀର୍ଷ ସ୍ଥାନରେ ପହଂଚାଇଚି ସେଇ 'ବାଇଶି ପାହାଚ' କୁଆଡ଼େ ତାଙ୍କୁ 'ଉତ୍କଳ ଏସୋସିଏସନ'ଠାରୁ ଦୂରେଇ ଦେଲା ।

ଉତ୍କଳ ଏସୋସିଏସନର ସଭାପତି ହିସାବରେ ସେ ସର୍ବତ୍ର ନିଜକୁ ପରିଚିତ କରାଇଥିଲେ ମଧ୍ୟ ଓ ମନ୍ଦିର ନିର୍ମାଣ ଏହାଦ୍ୱାରା ସମ୍ଭବ ହେଇଥିଲେ ମଧ୍ୟ 'ବାଇଶି ପାହାଚ'ରେ ଉତ୍କଳ ଏସୋସିଏସନ କଥା ଶବ୍ଦଟିଏ ମଧ୍ୟ ସେ ଉଲ୍ଲେଖ କରି ନାହାନ୍ତି ।

ବାଇଶି ପାହାଚର ଲୋକ ପ୍ରିୟତାର ପ୍ରଧାନ କାରଣ ହେଲା ସେଥିରେ ଅନେକଗୁଡ଼ିଏ ଅଲୌକିକ କଥା ଅଛି । ଏଇଟା ସାଧାରଣ କଥା ଯୋଉଠି ଯେତେ ଅଲୌକିକତା ସେଠି ସେତେ ବେଶୀ ଲୋକପ୍ରିୟତା । ସାଧୁ ସନ୍ଥମାନଙ୍କର ପ୍ରଧାନ ଅସ୍ତ୍ର ହେଲା ଅଲୌକିକତା । ଭାରତୀୟ ମାନସିକତା ଅଲୌକିକତା ପାଖରେ ବନ୍ଧା ପଡ଼ିଥାଏ । ମଣିଷ କାହିଁକିର ପ୍ରଶ୍ନ କରେ ନାହିଁ । ଚତୁର ତଥା ଠକମାନେ ମଣିଷର ସେଇ ଦୁର୍ବଳତାକୁ ନିଜ ସ୍ୱାର୍ଥ ଉଦ୍ଦେଶ୍ୟରେ ବ୍ୟବହାର କରନ୍ତି । ସେ କଥା ସରଳ ମଣିଷ ବୁଝିପାରେ ନାହିଁ । ଠକାମିରେ ପଡ଼ିଯାଏ ।



# ପାଟନାରେ କିଛି ଦିନ

ମାଡ୍ରାସରୁ ପାଟନା ଗ୍ରୁପ କମାଂଣ୍ଡାଟ୍ ଅଫିସକୁ ବଦଳି ହେଇ ଆସିଲି ଜୁଲାଇ ୨୬,୧୯୮୪ରେ । ଗୋଟିଏ ଗ୍ରୁପ କମାଂଣ୍ଡାଟ୍ ଅଫିସରେ ଚାକିରି ଏଇ ପ୍ରଥମ । ମାଡ୍ରାସରୁ ବୋକାରୋ ଏକ୍ସପ୍ରେସରେ ରାଧାରାଣୀ ଓ ସୁମିକୁ ନେଇ ଆସି ପହଂଚିଲି ବୋକାରୋରେ । ସେଠିଥିଲେ ଚନ୍ଦ୍ରପ୍ରଭା ମାଉସୀ- ରାଧାରାଣୀର ନିଜ ସବା ସାନ ମାଉସୀ । ସେତ ଆଗରୁ ଆର୍ମିରେ ଥିଲେ । ବିବାହ ମଧ୍ୟ କରିଥିଲେ ଆର୍ମିର ତାଙ୍କର ଜଣେ ବଙ୍ଗାଳୀ ସହକର୍ମୀଙ୍କୁ । ଆମ ସହିତ ତାଙ୍କ ସମ୍ପର୍କ ଅତି ନିବିଡ଼ । ମଉସା ମାଉସୀ ଆର୍ମିରୁ ଅବସର ନେଇ ପୁଣି ବୋକାରୋ ଇସ୍ପାତ କାରଖାନାରେ ଯୋଗ ଦେଇଥିଲେ ମେଡିକେଲ ବିଭାଗରେ ।

ଆମେ ଯାଇ ମାଉସୀଙ୍କ ଘରେ ପହଂଚିଲୁ । ଲୁଲୁ ସେତେବେଳକୁ ଶାନ୍ତିନିକେତନରେ ପିଜି କରୁଚି । ସରିବା ଅବସ୍ଥାରେ । ରୁମି ଭୁବନେଶ୍ୱରରେ ସତ୍ୟସାଇ କଲେଜରେ ଆଇ.ଏ. ପଢୁଚି । ହଷ୍ଟେଲରେ ଅଛି । ସୁମି ସେତେବେଳକୁ ବି.ଏ. ପାଶ କରି ସାରିଛି । ମୁଁ ମାଆ ଝିଅ ଦୁଇ ଜଣଙ୍କୁ ସେଠି ଛାଡ଼ି ଗଲି ପାଟନା । ମୋର ଜିନିଷ ପତ୍ର ସବୁ ରେଲୱେରେ ବୁକ୍ ହେଇଥାଏ । ସେଗୁଡ଼ିକ ବୋକାରୋରେ ଅନ୍‌ଲୋଡ୍ ହେଇ ପୁଣି ଅନ୍ୟ ଟ୍ରେନରେ ପାଟନା ଗଲା । ପାଟନାରେ ଜିନିଷ ପତ୍ର ଡେଲିଭାରୀ ନେଲା ବେଳକୁ ଦେଖିଲି କିଛି ପେଟି ଖୋଲା ଅଛି । କିଛି ଚୋରି ହେଇଛି । ଅନ୍ୟ ପେଟିରେ ଥିଲା ମୋର ପ୍ରିୟ ବହିଗୁଡ଼ାକ । ତାକୁ ଚୋର ନେଇ କରିବ କଅଣ ?

ଗ୍ରୁପ କମାଂଣ୍ଡାଟ୍ ଜଣେ ରିଟାୟାର୍ଡ଼ ଆର୍ମି ଅଫିସର । ଏବେ ସି.ଆଇ.ଏସ.ଏଫ.ରୁ ମଧ୍ୟ ଅବସର ନେବେ । ମୁଁ ଯୋଗ ଦେବାର ୩/୪ ଦିନ ପରେ ମୋତେ ଚାର୍ଜ ଦେବାର

ଥାଏ । ଜଣେ ଅମାୟିକ ଅଫିସର । ସେ ସମୟରେ ଟେଲିଫୋନରେ ପ୍ରଥମ କରି ଏସ.ଟି.ଡି. ସିଷ୍ଟମ ଆରମ୍ଭ ହେଉଥାଏ । କେବଳ କମାଣ୍ଡାଟ୍‌ଙ୍କ ଅଫିସ ଫୋନରେ ସେ ବ୍ୟବସ୍ଥା ଥାଏ । ମୁଁ ମାଡ୍ରାସ ଛାଡ଼ିବା ପୂର୍ବରୁ ତାଙ୍କୁ ଫୋନରେ ଘରଟିଏ ଠିକ୍ କରିବାକୁ କହିଥିଲି । ସେ କରିଥିଲେ । ଚାରି ଛଅ ଦିନ ପରେ ମୁଁ ପିଲାମାନଙ୍କୁ ବୋକାରୋରୁ ନେଇ ଆସିଲି । ଦୀଘାରେ ଥିବା ଏଫ.ସି.ଆଇ. ଗୋଦାମ ପାଖରେ ଗୋଟାଏ ଅସ୍ଥାୟୀ ଘର । ପରେ ସେଇ ପାଖରେ ବେଙ୍କ କଲୋନୀରେ ଗୋଟିଏ ଘର ଭଡ଼ା ନେଇ ସେଠାକୁ ଉଠିଆସିଲି । ଭଡ଼ା ଥିଲା ୫୦୦ଟଙ୍କା । ଦୀଘା ଥିଲା ଗଙ୍ଗା ନଦୀକୂଳରେ । ବୋରିଂ କେନାଲ ରୋଡ଼ରେ ଆମ ଅଫିସ ୪/୫ କିଲୋମିଟର ଦୂର । ଦୈନିକ ଗୋଟିଏ ଭେନରେ ମୁଁ ଯିବା ଆସିବା କରେଁ । ପାଟନାରେ ଦେଖିଲି ପନିପରିବା ଓ ଫଳ ଅତି ଶସ୍ତା । ରାଞ୍ଚି ପରି ଆମ୍ବ, ପଣସ, ଲିଚୁ, କଦଳୀ ପ୍ରଚୁର ଖାଇଚୁ । ମାଛ ଓ ପରିବା ମଧ୍ୟ ।

ସେଇଠିବି ଦେଖିଲି ନଦୀରେ ଦୁଇଟା ଘାଟ । ଗୋଟାଏ ଉଚ୍ଚ ଜାତିପାଇଁ ଅନ୍ୟଟି ଅଛବମାନଙ୍କ ପାଇଁ । ଭୁଲରେ ଯଦି କେବେ ଅଛବଟି ଉଚ୍ଚ ଜାତିର ଘାଟକୁ ଆସିଯାଏ, ସେଠି ଝଗଡ଼ା ଅନିବାର୍ଯ୍ୟ । ବେଳେବେଳେ ମାରପିଟ ମଧ୍ୟ । ମୁଁ ତା'ର ସାମାନ୍ୟ ଅଭିଜ୍ଞତା ରାଞ୍ଚିରୁ ପାଇଥିଲି ।

ସେଠି ପାଟନାରେ ମଧ୍ୟ ଦେଖିଲି ଗଙ୍ଗା କେମିତି ପ୍ରଦୂଷିତ ହୁଏ । ଗାଈ, ଗୋରୁ, ମଇଁଷି ଓ ମଣିଷର ଶବକୁ ସିଧା ଗଙ୍ଗାରେ ଭସେଇ ଦିଆଯାଏ । ଗଙ୍ଗା ପ୍ରାପ୍ତି ସେଇଠି ହୁଏ । ଯାଠୁ ଅଧିକ ଧାର୍ମିକ ବ୍ୟବସ୍ଥା ଆଉ କୋଉ ଧର୍ମରେ ମିଳିବ ? ମୁଁ ଗଙ୍ଗାକୁ ତିନିଟି ଯାଗାରେ ଦେଖିଚି । ହରିଦ୍ୱାର, ପାଟନା ଓ କଲିକତାରେ । ସେଇ ଗଙ୍ଗାକୁ ଦେଖିଛି କାମରୂପ ଏକ୍ସପ୍ରେସରେ ଆସାମ ଯିବାବେଳେ ଫାରକ୍କାଠାରେ ଯୋଉଠି ବେରେଜ ପାଖରେ ଭାସୁଥାଏ ଗଣ୍ଡାଗଣ୍ଡା ଶବ ।

ଏବେ କୁହାଯାଉଚି ଗଙ୍ଗାକୁ ପ୍ରଦୂଷଣ ମୁକ୍ତ କରାଯିବ । ହଜାର ହଜାର କୋଟି ଟଙ୍କା ଦେଶ ବିଦେଶରୁ ଆସୁଛି । ଏବେ ପ୍ରଧାନମନ୍ତ୍ରୀଙ୍କ କୋଟ୍ ବିକି ସେ ଟଙ୍କା ମଧ୍ୟ ସେଥିରେ ଜମା ହେଇଚି । ଗୋଟିଏ ସ୍ୱତନ୍ତ୍ର ବିଭାଗ ମଧ୍ୟ ଏବେ ହେଇଚି ତାପାଇଁ । କିନ୍ତୁ ତାର ବିଶୋଧନ ହେଇ ପାରିବ ? ଯୋଉ ମଣିଷ ମନରେ ପ୍ରତିଦିନ ମହଣ ମହଣ ପ୍ରଦୂଷଣ ସୃଷ୍ଟି ହେଉଚି ସେ ଗଙ୍ଗାକୁ କିପରି ପ୍ରଦୂଷଣ ମୁକ୍ତ କରି ପାରିବ ?

ପାଟନାରେ ମୋର ରହଣି ମାତ୍ର ଗୋଟିଏ ବର୍ଷ । ତା'ଭିତରେ କିନ୍ତୁ ଦୁଇଟା ଉଲ୍ଲେଖନୀୟ କାମ ମୋର ହେଇଗଲା । ବଡ଼ଝିଅ ସୁମିର ବାହାଘର । ପ୍ରସ୍ତାବଟା ମା' ହିଁ ରୋଗ ଶଯ୍ୟାରେ ପଡ଼ିଥିବାବେଳେ ଦେଇଥିଲା । ପରେ ତାହା କାର୍ଯ୍ୟକାରୀ ହେଲା । ତଥାପି କିଛି ଜମି ବିକିଲି ଏବଂ ରାଧାରାଣୀର କିଛି ଗହଣା ଦେଲି । ତା'ଛଡ଼ା ଉପାୟ

ନଥିଲା । ବାହାଘର ସେଇ ଗାଁରେ ଏବଂ ନିରାଡ଼ମ୍ବର ଭାବରେ ହେଲା । ଏଇ ବାହାଘରକୁ ମୁଁ ଲେଖିଚି 'ମିନୁର ବାହାଘର' ଗଳ୍ପରେ ଯାହା ପରେ ନବପତ୍ରରେ ପ୍ରକାଶ ପାଇଚି ଏବଂ ପ୍ରଥମ ଗଳ୍ପ ସଂକଳନରେ (ପୃଥିବୀ ଓ ପୃଥିବୀ) ସ୍ଥାନ ପାଇଛି । ଏଇ ଗଳ୍ପରେ ମୁଁ ଗାଁର ସମସ୍ତଙ୍କ ନାଁ ରଖିଚି । ବହୁ ପାଠକୀୟତା ପାଇଚି ଗଳ୍ପଟି କାରଣ ଏହା ସମସ୍ତ ବାସ୍ତବିକତା ଉପରେ ଆଧାରିତ ।

ପାଟନାରେ ଦ୍ୱିତୀୟ କାମଟି ହେଲା ଲୁଲୁର ପାଟନା ୟୁନିଭାରସିଟିରେ ନୌବାଣିଜ୍ୟରେ ପି.ଏଚ୍.ଡି. ପାଇଁ କାମ ଆରମ୍ଭ । ଭାରତର ଅନ୍ୟତମ ବିଶିଷ୍ଟ ଐତିହାସିକ ପ୍ରଫେସର ସୁରେନ୍ଦ୍ର ଗୋପାଳଙ୍କ ଅଧୀନରେ । ଲୁଲୁ ତାହା ଶାନ୍ତିନିକେତନରୁ ସ୍ଥିର କରି ଆସିଥିଲା । ମାତ୍ର କେଇଟା ଦିନର କାମ ଆରମ୍ଭ ପରେ ମୋର ହଠାତ୍ ପାରାଦୀପକୁ ବଦଳି ଅର୍ଡ଼ର ଆସିଲା । ମୁଁ ଚିନ୍ତିତ ହେଇ ପଡ଼ିଲି । କାରଣ ଲୁଲୁ ସେତେବେଳକୁ ପି.ଏଚ୍.ଡି. କାମ ଆରମ୍ଭ କରି ସାରିଥାଏ । କିନ୍ତୁ ପ୍ରଫେସର ଗୋପାଲ କହିଲେ ତା କାମପାଇଁ ତାକୁ ଅଧିକ ଭାବରେ କଲିକତାର ନେସ୍‌ନାଲ୍ ଲାଇବ୍ରେରୀ ଓ ଓଡ଼ିଶା ରାଜ୍ୟ ଅଭିଲେଖାଗାରରୁ ତଥ୍ୟ ସଂଗ୍ରହ କରିବାକୁ ପଡ଼ିବ । ତେଣୁ ସେତେବେଳେ ତା'ର ପାଖରେ ନ ରହିଲେ ଚଳିବ । ତେଣୁ ମୁଁ ଆଶ୍ୱସ୍ଥ ହେଲି ।



# ପାରାଦୀପକୁ ବଦଳି

ପାରାଦ୍ୱୀପ ପୋର୍ଟକୁ ମୋର ବଦଳି ଥିଲା ଏକାନ୍ତ ଅପ୍ରତ୍ୟାଶିତ । ସାଧାରଣ ଭାବେ ଗୋଟାଏ ରହଣି ତିନି ବର୍ଷ ହେବ ବୋଲି ନିୟମ କହୁଛି, ତେବେ ତାହାର ପରିବର୍ତ୍ତନ ହେବ ନାହିଁ ବୋଲି କଥା ନାହିଁ । ସେ ସବୁ ସରକାରଙ୍କ ଆବଶ୍ୟକତା ଅନୁସାରେ । ମୁଁ ସେତେବେଳକୁ ଓଡ଼ିଶା ବାହାରେ ମାତ୍ର ପାଂଚଣ୍ଡବର୍ଷ କଟାଇଛି । ଏ ଅବସ୍ଥାରେ ହଠାତ୍ ଓଡ଼ିଶା ଭିତରକୁ ବଦଳିକୁ ଈଶ୍ୱରଙ୍କ ଆଶୀର୍ବାଦ ବୋଲି କହିବା କଥା । ଗୋଟାଏ ବର୍ଷ ମଧ୍ୟ ମୁଁ ପାଟନା ଗ୍ରୁପ କମାଂଣ୍ଡାଟ ଅଫିସରେ କଟାଇ ନାହିଁ ।

ପାଟନା ମୋତେ ଭଲ ଲାଗୁଥିଲା । ତା'ର ପ୍ରଥମ କାରଣ ଗ୍ରୁପ କମାଣ୍ଡାଣ୍ଟ ଅଫିସରେ ସମସ୍ତ କାମ ଏଡମିନିଷ୍ଟ୍ରେଟିଭ । ଫିଲ୍ଡ କାମ ମୋତେ ନାହିଁ କହିଲେ ଚଳେ । ଅର୍ଥାତ୍ ପୋଷାକ ପିନ୍ଧିବାର ଆବଶ୍ୟକତା ନାହିଁ । ପୋଷାକଟା ମୋତେ ସବୁବେଳେ ଅଡୁଆ ଲାଗେ । ଅଡୁଆ ଲାଗେ ବୋଲିତ ପ୍ରଥମରୁ ଘୃଣା କରି ଆସୁଥିଲି । ମୁଁ ତାକୁ ଯେତେ ଛାଡ଼ିବାକୁ ଚାହିଁଲେ ମଧ୍ୟ ସେ ମୋତେ ଛାଡୁନାହିଁ । କେମିତି ଲୋକେ ପୋଷାକଟାକୁ

ଗର୍ବର କଥା କହନ୍ତି କେଜାଣି । ପୋଷାକ ଅର୍ଥ କ୍ଷମତା । କ୍ଷମତା ଗର୍ବ ଆଣେ । ଅହଂକାର ଆଣେ । ତାର ଅର୍ଥ ମଣିଷ ମଣିଷ-ପଣିଆରୁ ତଳକୁ ଖସେ । ମୋ ଭିତରେ ଥିବା ସୃଜନଶୀଳତାର ସୁନ୍ଦର ମଣିଷଟି ସେଥିପାଇଁ ପୋଷାକରେ ଥିବା ଗର୍ବ ଓ ଅହଂକାରର ମଣିଷଟିକୁ ଘୃଣା କରୁଥିବ ।

ଗ୍ରୁପ କମାଂଣ୍ଡାଟ୍ ଅଫିସଟା ଛୋଟ ଅଫିସ । ଜଣେ କମାଂଣ୍ଡାଟ୍, ଜଣେ ଆସିଷ୍ଟାଣ୍ଟ କମାଣ୍ଡାଂଟ୍ ଓ ଅନ୍ୟ ୧୦/୧୫ ଜଣ ମିନିଷ୍ଟରିଆଲ ଷ୍ଟାଫ । ଗ୍ରୁପ କମାଂଣ୍ଡାଟ୍‌ଙ୍କ ଅଧିନରେ ୮/୧୦ଟା ଛୋଟ ଛୋଟ ୟୁନିଟ ଥାଏ । ତାର ସୁପରଭିଜନ ଏକମାତ୍ର କାମ । ତେଣୁ କାମର ଓଜନ ପ୍ରାୟ ନଥାଏ । ୧୦ରୁ ୫ ଯାଏ ଅଫିସ । ତାପରେ ମୁକ୍ତ । ଲେଖା ଲେଖି ଓ ପଢ଼ା ପଢ଼ି ପାଇଁ ସୁବିଧା ।

ଐତିହାସିକ ସହର ପାଟନା । ତାର ଇତିହାସ ଭାରତର ଇତିହାସ । ତା'ର ସାହିତ୍ୟ, ସଂସ୍କୃତି, ଧର୍ମ ଓ ରାଜନୀତି ଭାରତର ସ୍ୱତନ୍ତ୍ର ପରିଚୟ । ସେ ମହାନ ସହରକୁ ଭଲ ଭାବରେ ଦେଖିବାକୁ ସମୟ ମଧ୍ୟ ମୋତେ ମିଳିନାହିଁ । ତା'ର ପ୍ରତ୍ୟେକଟି ଧୂଳିମାଟି ଇତିହାସର କଥା କୁହେ । ଗୟା ଓ ବୁଦ୍ଧଗୟା ହିନ୍ଦୁ ଓ ବୌଦ୍ଧମାନଙ୍କର ପବିତ୍ର ପୁଣ୍ୟ ତୀର୍ଥ । ଦୈନିକ ଲକ୍ଷ ଲକ୍ଷ ଲୋକ ସେଠାକୁ ଆସନ୍ତି ।

ମୋତେ ସେଠି ଭଲ ଲାଗୁଥିଲା କାରଣ ଠିକ୍ ଗଙ୍ଗା ନଦୀକୂଳରେ ବେଙ୍କ କଲୋନୀରେ ଗୋଟାଏ ଭଡ଼ାଘରେ ମୁଁ ରହୁଥିଲି । ମୁଁ ଓ ରାଧାରାଣୀ । ଲୁଲୁ ଅବଶ୍ୟ ସେତେବେଳକୁ ଶାନ୍ତିନିକେତନରେ ଇତିହାସରେ ପିଜି କରିସାରି ପାଟନା ବିଶ୍ୱ ବିଦ୍ୟାଳୟରେ ପି.ଏଚ୍.ଡି. କରିବାକୁ ରେଜିଷ୍ଟ୍ରେସନ କରାଉଥାଏ । ମୁଁ ଏଠି ୨/୩ ବର୍ଷ ରହିଗଲେ ତା'କାମଟା ସରିଯାଆନ୍ତା । ସୁମିର ବାହାଘରତ ସରିଯାଇଛି । ମୋଟାମୋଟି ଗୋଟାଏ ସୁଖଦ ମାନସିକତାରେ ଥିଲାବେଳେ ହଠାତ୍ ପାରାଦ୍ୱୀପ ପୋର୍ଟକୁ ବଦଳି ମୋତେ କିଛିଟା ଚିନ୍ତାରେ ପକାଇଲା । କିନ୍ତୁ ସେତେବେଳେ ଲୁଲୁ ସେଠି ରହିବାର ଆବଶ୍ୟକ ନଥିବାରୁ ମୁଁ ନିଶ୍ଚିତ ହୋଇଗଲି ।

ପିଲାମାନଙ୍କୁ ନେଇ ମୁଁ ପାରାଦ୍ୱୀପ ଆସିଲି । ସେତେବେଳେ ପାଟନାରୁ ସିଧା ଗୋଟିଏ ଟ୍ରେନରେ କଟକ ଯାଏ ଆସିବା ସୁବିଧା ନଥିଲା । ଆମେ ଗୟାଯାଏ ସଡ଼କ ପଥରେ ଆସି ସେଠୁ ନୀଳାଚଳ ଏକ୍ସପ୍ରେସ ଧରି କଟକ ଯାଏ ଆସିଲୁ । ସାଥିରେ ଥାଏ ରୁମି । ସେ ସେତେବେଳେ ଭୁବନେଶ୍ୱର ସତ୍ୟସାଇ କଲେଜରୁ ଆଇ.ଏ. ପାଶ କରିଥାଏ । ଏଥର ସେ ପାରାଦ୍ୱୀପ କଲେଜରେ ବି.ଏ. ପଢ଼ିବ । ପାରାଦ୍ୱୀପ ପୋର୍ଟରେ ଯୋଗ ଦେଲି ୧୩ ଅଗଷ୍ଟ ରେ । ଯୋଉଠିକୁ ଗଲେମଧ ଆମର ଘରର ଅସୁବିଧା ନଥାଏ । ମୋ ପାଇଁ

ନେହେରୁ ବାଂଲୋ ଏରିଆରେ ଗୋଟାଏ ଛଅ ମହଲା ବିଲଡିଂର ଦ୍ୱିତୀୟ ମହଲାରେ ଗୋଟାଏ ଟୁ ବେଡରୁମ ଘର ସଂରକ୍ଷିତ ଥିଲା । ସେଠି ପିଲାମାନଙ୍କୁ ଛାଡ଼ିଦେଲି ।

ଏତେ ଚମତ୍କାର ଏରିଆରେ ଘରଟିଏ ଭାଗ୍ୟରେ ଥିଲେ ମିଳେ । ମାତ୍ର ୩୦/୪୦ ଫୁଟ ଦୂରରେ ସମୁଦ୍ର । ବଙ୍ଗୋପସାଗର । ପଥର ବନ୍ଧରେ ଢେଉ ସବୁ ମୁଣ୍ଡ ବାଡ଼ଉଥାଏ । ପାଣି ଛିଟିକାର ଜଳକଣା ଅନେକ ସମୟରେ ଆମ ପର୍ଯ୍ୟନ୍ତ ଆସିଯାଏ, ଆମ ବାଲକୋନି ଯାଏ । ପବନ ଏତେ ବେଶୀ ଯେ କବାଟ ଝରକା ଖୋଲା ରଖିହୁଏନି । ସକାଳେ ସନ୍ଧ୍ୟାରେ ଚା ଖାଇଲା ବେଳର ମଜା କାହିଁରେ କ'ଣ । କବିମାନେତ ହ୍ରଦ ଓ ସମୁଦ୍ର ଦେଖିଲେ ପାଗଳ । ମୋ ଭିତର ପାଗଳପଣ ବି ମୁଣ୍ଡ ଟେକୁଥିଲା । କିଛିତ ଲେଖାଲେଖି ଅବଶ୍ୟ ହେଇଚି । ସେକଥା ପରେ କହିବି ।

ମୁଁ ପାରାଦୀପରେ ଜଏନ କଲା ପରେହିଁ ଜାଣିଲି କାହିଁକି ଏମିତି ପାଟନାରେ ମୋତେ ଶୀଘ୍ର ରିଲିଭ୍ କରିବାକୁ ଚାପ ପଡୁଥିଲା । ପାଟନାରେ ମୋର ବିଦାୟ ସଂବର୍ଦ୍ଧନା ବେଳେ କମାଂଣ୍ଡାଟ୍ ବର୍ମା କହିଲେ, 'ମହାପାତ୍ର, ଉପରସେ ଜୋରସେ ପକଡ଼ ଲିଆ ।' ମୁଁ ତାର ଅର୍ଥ ବୁଝିପାରି ନଥିଲି । ମୁଁ ତ ଆଗରୁ କହିଛି ମୋର ସେତେବେଳେ ସେଠୁ ବଦଳି ଆବଶ୍ୟକ ନଥିଲା । ତେଣୁ ଧରାଧରିର ପ୍ରଶ୍ନ ଉଠୁନାହିଁ ।

ପାରାଦୀପ ଏକ ସଂବେଦନଶୀଳ ସ୍ଥାନ । ଶ୍ରମିକ ଅଶାନ୍ତି ସବୁବେଳେ ଲାଗିଥାଏ । ଅପରାଧ ମଧ୍ୟ କମ୍ ନୁହେଁ । ଅଲ ଇଣ୍ଡିଆ ପୋର୍ଟ ଆଣ୍ଡ ଡକ ୱାର୍କରସ ଷ୍ଟ୍ରାଇକ ସମୟରେ ଘଟିଥିଲା ଭୟଙ୍କର ବିଶୃଙ୍ଖଳା ଯୋଉଥିରେ ଲୋକମାନେ ଉତ୍ୟକ୍ତ ହେଇ ଜଣେ ପୋଲିସ ଇନ୍ସପେକ୍ଟରଙ୍କୁ ପିଟି ପିଟି ମାରି ଦେଇଥିଲେ ଏବଂ ତା' ପରେ ପରେ ପୋଲିସମାନେ ଉତ୍ୟକ୍ତ ହେଇ ଘନଗଳିଆରେ ଥିବା ନୋଳିଆମାନଙ୍କର ବିରାଟ ବସ୍ତିକୁ ନିଆଁ ଲଗେଇ ଦେଇଥିଲେ । ସମସ୍ତ ପାରାଦୀପର ବାତାବରଣ ତା' ଫଳରେ ଉତ୍ତପ୍ତ ହେଇଥାଏ । ତଦନ୍ତ କମିଶନ ବସିଥାଏ । ସାଧାରଣ ଜନତା ଓ ପୋଲିସର ସମ୍ପର୍କ ତିକ୍ତ ହେଇ ଉଠିଥିଲା । ସେତେବେଳେ ଓଡ଼ିଆ କମାଂଣ୍ଡାଟ୍‌ଙ୍କ ସହିତ ଆଉଜଣେ ଓଡ଼ିଆ ଅଫିସର ଆବଶ୍ୟକ ।

ଠିକ୍ ସେତିକିବେଳେ ମଧ୍ୟ ଅଲ ଇଣ୍ଡିଆ ସି.ଆଇ.ଏସ.ଏଫ. ଫୁଟ୍‌ବଲ ଟୁର୍ଣ୍ଣାମେଂଟ୍ ସେଠି ଚାଲୁଥାଏ । ତା'ର ଫାଇନାଲ ମାତ୍ର ୫/୬ ଦିନ ପରେ । ଡ଼ି.ଜି ଆନନ୍ଦରାମ୍ ସେଥିରେ ଯୋଗଦେବେ ମୁଖ୍ୟ ଅତିଥି ହିସାବରେ, ଡି.ଜି. ଆସିଲେ,ତାଙ୍କ ସହିତ ଆସିବେ ବହୁ ଅଫିସର । ଆଇ.ଜି. ଓ ଡି.ଆଇ.ଜି. ପ୍ରମୁଖ ।

ମୋ ମୁଣ୍ଡରେ ବଜ୍ର ପଡ଼ିଲା । ଏତେ କମ୍ ସମୟ ଭିତରେ ଗୋଟାଏ ସଂପୂର୍ଣ୍ଣ ନୂଆ ଜାଗାରେ ମୁଁ ଏତେ ବଡ଼ ଗୁରୁ ଦାୟିତ୍ୱ ତୁଲାଇ ପାରିବି ?

ୟୁନିଟରେ ମୁଁ ଏକୁଟିଆ । କମାଂଣ୍ଡାଟ୍ ମଧ୍ୟ ନୂଆ । ମୁଁ ଏକ ମାତ୍ର ଆସିଷ୍ଟାଣ୍ଟ କମାଂଣ୍ଡାଟ୍ । ଇନ୍‌ସପେକ୍ଟର ମଧ୍ୟ ସେମିତି କେହିନାହିଁ । ଅଗଷ୍ଟ ୧୩, ୧୯୮୫ ରେ ମୁଁ ଜଏନ କଲି । ଅଗଷ୍ଟ ୧୫ରେ ସ୍ୱାଧୀନତା ଦିବସ । ଗୋଟେ ପାରାମିଲିଟାରୀ ଫୋର୍ସ ପାଇଁ ଅଗଷ୍ଟ ୧୫ ଓ ଜାନୁଆରୀ ୨୬ ଦୁଇଟି ମହାନ୍ ପର୍ବ । ଦର୍ଶନୀୟ ପେରେଡ ତ ହେବ, ଅଧିକନ୍ତୁ ପରମ୍ପରା ଅନୁଯାୟୀ ଭଲ ଭାବରେ 'ବଡ଼ାଖାନା' ମଧ୍ୟ ହେବ । ବଡ଼ାଖାନା ଅର୍ଥ ବଡ଼ ଭୋଜି । ସବୁ ଫୋର୍ସରେ ଏ ପ୍ରଥା ଅଛି । ନିଜ ଡିପାର୍ଟମେଂଟ୍ ଛଡ଼ା ଆହୁରି ଅନେକ ସରକାରୀ ଓ ବେସରକାରୀ ମାନ୍ୟଗଣ୍ୟ ବ୍ୟକ୍ତି ମଧ୍ୟ ଏଥିରେ ଯୋଗ ଦିଅନ୍ତି ।

ଆଗରୁ ଏସବୁ କାର୍ଯ୍ୟକ୍ରମରେ ନାଚଗୀତ ଓ ସୁରାପାନର ବ୍ୟବସ୍ଥା ନଥିଲା(ଅନ୍ତତଃ ସି.ଆଇ.ଏସ.ଏଫ.ରେ ନଥିଲା) ଏବେ ସେ ସବୁ ହେଲାଣି ।

ସକାଳେ ସେରିମୋନିଏଲ ପେରେଡ୍ ପରେ ସନ୍ଧ୍ୟାରେ ବଡ଼ାଖାନା; ଏସବୁ କାମର ଦାୟିତ୍ୱ ସିନିଅରମୋଷ୍ଟ ଆସିଷ୍ଟାଂଟ୍ କମାଂଣ୍ଡାଟ୍ ହିସାବରେ ମୋତେହିଁ କରିବାକୁପଡ଼ିବ । ପାନରୁ ଚୂନ ଖସିଗଲେ ବିଭ୍ରାଟ ସୃଷ୍ଟି ହୁଏ । ପେରେଡ୍‌ର ମାନ ଯେତିକି ଉନ୍ନତ ହେବ ସନ୍ଧ୍ୟାରେ ବଡ଼ାଖାନାର ମାନ ମଧ୍ୟ ସେତିକି ଉନ୍ନତ (ଶୃଙ୍ଖଳା ସହିତ) ହେବାକଥା ।

କମାଂଣ୍ଡାଟ୍ ହାତ ସଫା କରିଦେବେ । କହିବେ, 'ମୋତେ କ'ଣ ଜଣା ? ଆପଣଙ୍କ ସି.ଆଇ.ଏସ.ଏଫ.ରେ କି ପରମ୍ପରା ଅଛି । କେମିତି କଅଣ ହୁଏ ମୁଁ ଜାଣିନି । ମୁଁ ତ ଏବେ ଆସିଲି ଆପଣଙ୍କ ଡିପାର୍ଟମେଂଟକୁ । ମୋତେ ଆପଣ ରାସ୍ତା ବତେଇବେ ।'

ଏଇଟାବି ସତ କଥା । ସେତେବେଳକୁ ସି.ଆଇ.ଏସ.ଏଫ.ର ନିୟମ କାନୁନ ସାଧାରଣ ସାମରିକ ବା ବେସାମରିକ ସାଂସ୍କୃତିକ ପରମ୍ପରା ଏସବୁ ସ୍ପଷ୍ଟ ହେଇ ନଥିଲା । ଦୁଇ ପ୍ରକାର ନୀତି ନିୟମ ଚଳୁଥିଲା । ଦୁଇ ପ୍ରକାର ଅଫିସର ସି.ଆଇ.ଏସ.ଏଫ.କୁ ଡେପୁଟେସନରେ ଆସୁଥିଲେ । ନିଜର କେଡରଟିଏ ସୃଷ୍ଟି ହେଇ ନଥିବାରୁ ଆଇ.ପି.ଏସ. ଓ ଆଉ କିଛି ପୂର୍ବତନ ସାମରିକ ଅଫିସର ଆସୁଥିଲେ । ଫଳରେ ଗୋଟାଏ ମିଶ୍ର ସଂସ୍କୃତି ଗଢ଼ି ଉଠିଲା । ଏହାଦ୍ୱାରା କେତେକ କ୍ଷେତ୍ରରେ ବିଶୃଙ୍ଖଳା ମଧ୍ୟ ସୃଷ୍ଟି ହେଲା । କେହି କେହି କୋର୍ଟରେ ମାମଲା ମଧ୍ୟ ରୁଜୁ କଲେ ।

ଡେପୁଟେସନରେ ସବୁବେଳେ ଯେ ଭଲ ଅଫିସର ଆସୁଥିଲେ ତା ନୁହେଁ । ମିଶ୍ର ବ୍ୟବସ୍ଥା ଭିତରେ ସେ ସବୁ ଆଶା କରି ହୁଏନା । ସୁବିଧା ଓ ସୁଯୋଗ ନେବାକୁ କିଏ ବା ଇଚ୍ଛା ନ କରିବ । ଏଇ ଅଶୀଦଶକ ହିଁ ସି.ଆଇ.ଏସ.ଏଫ. ପାଇଁ ଅନେକ କିଛି ନୂଆ ବ୍ୟବସ୍ଥା ସୃଷ୍ଟିକଲା । କେନ୍ଦ୍ର ସରକାରଙ୍କ ଅର୍ଦ୍ଧସାମରିକ ବାହିନୀପାଇଁ ସମ୍ପୂର୍ଣ୍ଣ ନୂଆ

କେଡରଟିଏ ସୃଷ୍ଟିକରାଯିବା ସହିତ ତାର ନୀତିନିୟମ ସବୁ ଅଲଗା କରିଦିଆଗଲା । ଫଳରେ ଡେପୁଟେସନ ପ୍ରଥା ଅନେକ ସଙ୍କୁଚିତ ହୋଇଆସିଲା ।

ପାରାଦୀପ ପୋର୍ଟ ମୋତେ ଗୋଟାଏ ଛୋଟ ପୋର୍ଟ ପରି ଲାଗିଲା । ଯଦିଓ ପାରାଦୀପ ପୋର୍ଟ ଭାରତର ଦଶଟି ବୃହତ୍‌ପୋର୍ଟ ଭିତରୁ ଗୋଟିଏ କିନ୍ତୁ ମୋର ମାଡ୍ରାସ ପୋର୍ଟପରି ବୃହତ୍ ପୋର୍ଟରେ କାମ କରିଥିବାର ଅଭିଜ୍ଞତା ଥିବାରୁ ମୋତେ ଏଇଟା ଛୋଟ ପରି ଲାଗିଲା । ତେଣୁ ତା'ର ସୁରକ୍ଷା ବ୍ୟବସ୍ଥା ମୋତେ ବଳେଇ ପଡ଼ିବ ନାହିଁ ବୋଲି ଭାବିଲି ।

ପ୍ରଥମ ପଦକ୍ଷେପରେ ମୋର କମାଂଣ୍ଡାଟ୍‌ଙ୍କ ସହିତ ଏ ବିଷୟରେ ଆଲୋଚନା ବେଳେ ମୁଁ ତାଙ୍କୁ ଏଇ ଧାରଣା ଦେଲି । ସେ ଯେ ଖାଲି ସି.ଆଇ.ଏସ.ଏଫ.ରେ ନୂଆ ତା' ନୁହେଁ ପୋର୍ଟ ସିକ୍ୟୁରିଟି ମଧ୍ୟ ତାଙ୍କ ପାଇଁ ନୂଆ । ମୋ ସହିତ ଦୀର୍ଘ ଆଲୋଚନା ପରେ ସେ ମୋତେ ସମ୍ପୂର୍ଣ୍ଣ ଦାୟିତ୍ୱ ଦେଇ ଦେଲେ । ସେଇଠି ମଧ୍ୟ କଥା ପ୍ରସଙ୍ଗରେ ସେ କହିଲେ, 'ଆପଣଙ୍କର ପାରାଦୀପକୁ ଆସିବା ପାଇଁ ମୁଁ ଡିଜିଙ୍କୁ କହିଥିଲି ।' ସେ ଏକଥା ମଧ୍ୟ କହିଲେ 'ଆପଣଙ୍କ ବିଷୟରେ ମୁଁ ଏଠାକାର ଡେପୁଟି ଚେୟାରମେନ ରାଧାନାଥ ଶତପଥୀଙ୍କ- ଠାରୁ ଶୁଣିଥିଲି । ସେ ଆପଣଙ୍କୁ ମାଡ୍ରାସରୁ ଜାଣିଥିଲେ ।'

ମୁଁ ଆଶ୍ଚର୍ଯ୍ୟ ହେଲି । ରାଧାନାଥ ଶତପଥୀ ଏବେ ଆସି ପାରାଦୀପ ପୋର୍ଟର ଡେପୁଟି ଚେଆରମେନ, ଏକଥା ଜାଣି ନଥିଲି । ଖୁସି ହେଲି । ତାଙ୍କ ସହିତ ଓ ତାଙ୍କ ପରିବାର ସହିତ ମୋର ଭଲ ସମ୍ପର୍କ ଥିଲା ମାଡ୍ରାସରେ । ଉତ୍କଳ ଏସୋସିଏସନ ଗଢ଼ିଲା ବେଳେ ସେ ସକ୍ରିୟ ସାହାଯ୍ୟ ଦେଇଥିଲେ ।

ସି.ଆଇ.ଏସ.ଏଫ.ର ସମସ୍ତ କାମ ପୋର୍ଟର ଡେପୁଟି ଚେଆରମେନଙ୍କ ଦ୍ୱାରା ହିଁ ହୋଇଥାଏ । ତେବେ ମୋର ଆଉ ଚିନ୍ତା କଅଣ ? କମାଂଣ୍ଡାଟ୍ ମଧ୍ୟ ଖୁସି । ଏଥର ଆମ ଭିତରେ ସମ୍ପର୍କ ଦୃଢ଼ ହେବାକୁ ଲାଗିଲା । ବିଶେଷ କରି ପ୍ରଶାସନିକ କ୍ଷେତ୍ରରେ ଆମର ସହଯୋଗ ବଢ଼ିଲା ।

ମୁଁ ଭାବୁଛି ସେଠି ମୋର ପ୍ରଥମ ପରୀକ୍ଷାର ବେଳ ସ୍ୱାଧୀନତା ଦିବସର କାମ ଓ 'ବଡ଼ାଖାନା'। ବେଶ ସୁରୁଖୁରୁରେ ହୋଇଯିବାଦ୍ୱାରା ମୁଁ ଆଶ୍ୱସ୍ତ ହେଲି । ସେଇ ଦିନ ମଧ୍ୟ ମୋର ପ୍ରଥମ ପରିଚୟ ହେଲା ଚେଆରମେନ ଏମ୍.ୱାଇ.ରାଓଙ୍କ ସହିତ । ରାଓ ଓଡ଼ିଶା କେଡରର ଆଇ.ଏ.ଏସ.। ବେଶ ସିନିଅର ମଧ୍ୟ । ସେକ୍ରେଟେରୀ ରାଜକିଶୋର ମିଶ୍ର ଥିଲେ ସମ୍ଭବତଃ ମେଘାଳୟ କେଡରର ଆଇ.ଏ.ଏସ୍. । ତାପରେ ଆସିଲା ଅଲ ଇଣ୍ଡିଆ ସି.ଆଇ.ଏସ.ଏଫ. ଫୁଟବଲ ଟୁର୍ଣ୍ଣାମେଂଟ୍‌ର ଫାଇନାଲ ଦିନ । ମୁଖ୍ୟଅତିଥି ଡି.ଜି.

ଆନନ୍ଦରାମ୍ ନିଜେ । ଅସଲ ପରୀକ୍ଷା ଏଇଠି । ଆନନ୍ଦରାମ ପାରାଦ୍ୱୀପରୁ ଫେରିବାର କିଛି ମାସପରେ ଅବସର ନେଲେ । ତାଙ୍କପରେ ଦୁର୍ଗାମାଧବ ମିଶ୍ର ସି.ଆଇ.ଏସ୍.ଏଫ୍‌ର ତୃତୀୟ ଡି.ଜି. ଭାବରେ ଦାୟିତ୍ୱ ଗ୍ରହଣକଲେ ।



# ଦୁର୍ଗାମାଧବ ମିଶ୍ରଙ୍କ ସହିତ ପ୍ରଥମ ପରିଚୟ

ଏଇଟା ଠିକ୍ କେବେ ହେଇଚି ସେ କଥା କହି ହେବନି । ଓଡ଼ିଶାର ସେ ଜଣେ ସୁପରିଚିତ ଗାଳ୍ପିକ । ମୁଁ ତାଙ୍କ ଗପ ଝଙ୍କାରରୁ ପଢୁଥାଏଁ । ତାଙ୍କ ଗପ ଏଇଥି ପାଇଁ ଭଲ ଲାଗେ ଯେ ତାଙ୍କ ଗପର ବିଷୟବସ୍ତୁ ସମାଜଧର୍ମୀ । ଭାବ ମଧ୍ୟ ସରଳ । ଭାଷା ସାଧାରଣ ଲୋକର । ତାଙ୍କର ଖଣ୍ଡେ ଦି ଖଣ୍ଡ ଗପ ବହି ମଧ୍ୟ ମୋ ପାଖରେ ଅଛି । ମୋଟ କଥା ମନେ ମନେ ତାଙ୍କ ପ୍ରତି ଗୋଟେ ଶ୍ରଦ୍ଧା ମୋର ଥିଲା । ଝଙ୍କାରର ମୁଁ ନିୟମିତ ପାଠକ । ସେଇ ଝଙ୍କାରରେ ମୋର ପ୍ରଥମ ଗପ ୧୯୬୮ରେ ପ୍ରକାଶ ପାଏ । ଗଳ୍ପର ଶୀର୍ଷକ 'ଭଙ୍ଗା ଘରର ଭୂତ' । ଜଣେ ରିଟାୟାର୍ଡ଼ ପୋଲିସ ଅଫିସର କେମିତି ଚାକିରି ପରେ ମଧ୍ୟ ତା'ର ବିକୃତ ପୋଲିସ ମନୋବୃତ୍ତି ବଦଳେ ନାହିଁ, ଏହାହିଁ ଥିଲା ତାର ବିଷୟବସ୍ତୁ । ମହାପାତ୍ର ନୀଳମଣି ସାହୁ ସେତେବେଳେ ଝଙ୍କାରର ସମ୍ପାଦକ । ସେ ପ୍ରଶଂସା କଲେ । ଡଃ ମହତାବ ମଧ୍ୟ । ପ୍ରଜାତନ୍ତ୍ର ଗୋଷ୍ଠୀ ସହିତ ମୋର ସମ୍ପର୍କ ମୀନାମଣ୍ଡଳୀରୁ । ମୁଁ ଯେତେବେଳେ କଟକ ଯାଏଁ ପ୍ରଜାତନ୍ତ୍ର ଅଫିସକୁ ଯାଏଁ । ଡଃ ମହତାବଙ୍କୁ ଭେଟି (ଦରବାରରେ) ନମସ୍କାରଟିଏ ଜଣାଏଁ ।

ଗଳ୍ପ ମାଧ୍ୟମରେ ଦୁର୍ଗାମାଧବ ମିଶ୍ରଙ୍କ ସହିତ ସମ୍ପର୍କ ସେଇ ଅଜଣା ସମୟରୁ । ତାଙ୍କୁ ପ୍ରଥମେ ଭେଟିଲି ରାଉରକେଲାରେ ବୋଧେ ୧୯୭୮ କିମ୍ବା ୧୯୭୯ରେ, ସେ ଆସି ତାଙ୍କ ପୁଅ ବସାରେ ଥାଆନ୍ତି । ଲୋକ ନାଟକ ସମୟ । ରଜନୀବାବୁ କହିଲେ ଚାଲ ଦୁର୍ଗାମାଧବ ମିଶ୍ରଙ୍କଠାକୁ । ମୁଁ, ହରିବାବୁ, ବିଷ୍ଣୁବାବୁ ଓ ରଜନୀବାବୁ । ଅଳ୍ପ ସମୟ କଥାବାର୍ତ୍ତା ପରେ ରଜନୀବାବୁ ଅନ୍ୟମାନଙ୍କ ସହ ମୋତେ ମଧ୍ୟ ପରିଚୟ କରେଇଦେଲେ । ଭୂପେନବାବୁ ସି.ଆଇ.ଏସ.ଏଫ.ରେ ଅଛନ୍ତି, ଭଲ ଗଳ୍ପ ଲେଖନ୍ତି ।

ପ୍ରଥମ କରି ତାଙ୍କୁ ଦେଖିଲା ପରେ ଗାଳ୍ପିକ ଦୁର୍ଗାମାଧବଙ୍କ ପ୍ରତି ଆପେ ଆପେ ଶ୍ରଦ୍ଧା ନଇଁ ଆସିଲା । କିନ୍ତୁ ସେଦିନ ଯେତେବେଳେ ଜାଣିଲି ସେଇ ଦୁର୍ଗାମାଧବ ମିଶ୍ର ଆସୁଚନ୍ତି ସି.ଆଇ.ଏସ.ଏଫ.ର ସର୍ବୋଚ୍ଚ କର୍ତ୍ତା ଭାବରେ ଆମ ୟୁନିଟର ଇନ୍ସପେକ୍ସନ ପାଇଁ ମୁଁ ଖୁସି ହେଲି ।

ମନରେ ସ୍ୱତନ୍ତ୍ର ପ୍ରଶ୍ନଟିଏ ଉଙ୍କି ମାରିଲା ସେ କ'ଣ ଲେଖକ ଭୂପେନ ମହାପାତ୍ରଙ୍କୁ ଜାଣିଥିବେ କି ? ସେ କଅଣ ମୋ ଗଳ୍ପ କେବେ ପଢ଼ିଥିବେ କି ? ପ୍ରଶ୍ନଗୁଡ଼ିକ ଦୁଃସ୍ୱପ୍ନ ପରି ମିଳେଇ ଗଲା ।

ମୁଁ କାମରେ ଲାଗି ଗଲି । ଡିଜିଙ୍କ ପରିଦର୍ଶନ ଯେମିତି ସର୍ବୋତ୍କୃଷ୍ଟ ହୁଏ ସେଥିରେ ଲାଗି ଗଲି । ପୋଲିସ ବା ଗୋଟିଏ ପାରାମିଲିଟାରୀ ଫୋର୍ସର ମୁଖ୍ୟଙ୍କ ପରିଦର୍ଶନ ଓ ତାର ଇନ୍ସପେକ୍ସନ ନୋଟ ଯେ ୟୁନିଟ କର୍ମକର୍ତ୍ତାଙ୍କ ଭାଗ୍ୟ ନିର୍ଦ୍ଧାରଣ କରେ ଏକଥା ସମସ୍ତେ ଜାଣନ୍ତି । ଦୁର୍ଗାମାଧବ ସି.ଆଇ.ଏସ.ଏଫ.ର ନୂଆ ଡି.ଜି. । ହୁଏତ ୨/୩ ମାସ ଆଗରୁ ଜଏନ କରି ଥାଆନ୍ତି । ସେ ଓଡ଼ିଆ ଓ ଓଡ଼ିଶା କେଡରର ଅଫିସର । ଜଣେ ନାମଜାଦା ଗଳ୍ପ ଲେଖକ, ସାହିତ୍ୟିକ । ବହୁତ ପାନ ଖାଆନ୍ତି । ଜରଦା ଦିଆ ନିଶ୍ଚୟ । ଇଲିସି ମାଛ ପ୍ରିୟ । ବାଗଦା ଚିଙ୍ଗୁଡ଼ି ମଧ୍ୟ ଭଲ ଲାଗୁଥିବ । ପଖାଳ ଖାଉଥିବେ ? ଆଉ କ'ଣ କ'ଣ ତାଙ୍କ ପ୍ରିୟ ? ଡି.ଜି.ଙ୍କ ତଳେ ଅଛନ୍ତି ଆଇ.ଜି., ଡି.ଆଇ.ଜି. ତା' ତଳକୁ କମାଣ୍ଡାଟ୍ ଓ ଆସିଷ୍ଟାଂଟ୍ କମାଂଣ୍ଡାଟ ଅର୍ଥାତ୍ ମୋ ପର୍ଯ୍ୟନ୍ତ । ଆମେ ସମସ୍ତେ ଖୋଜି ପକାଇଲୁ ଡିଜିଙ୍କ ଆଉ କ'ଣ କ'ଣ ପ୍ରିୟ ବସ୍ତୁ ଅଛି ? ପ୍ରିୟ ଲୋକ ?

ଶେଷରେ ମୋ ମନକୁ ଆସିଲା ଡି.ଜି.ଙ୍କ ପ୍ରିୟ ପବ୍ଲିସିଟି ମଧ୍ୟ । ପବ୍ଲିସିଟି କିଏ ନ ଚାହେଁ? ଘଟି ନଥିବା ଘଟଣା ମଧ୍ୟ ଡି.ଜି.ଙ୍କଦ୍ୱାରା ହେଇଚି ବୋଲି ପ୍ରଚାର କରେଇ ପାରିବା ବୁଦ୍ଧିମାନର କାମ । ମୁଁ କିନ୍ତୁ ସେଯାଏଁ ପାରାଦୀପରେ ଗଣମାଧ୍ୟମରେ କିଏ କିଏ ଅଛନ୍ତି ସେତକ ଜାଣି ନଥିଲି । ଜାଣିବାର ସୁଯୋଗ କାହିଁ? କିଏ ଜଣେ ଆମ ଭିତରୁ କହିଲେ ଡି.ଜି.ଙ୍କ ପାର୍ଟିରେ ଡ୍ରିଙ୍କସ ଦରକାର ହେଉଥିବ ।

ଆମେ ସମସ୍ତେ ଚମକି ପଡ଼ିଲୁ । କମାଂଣ୍ଡାଟ୍‌ଙ୍କ ଧାରଣା ହେଲା ଲେଖକ ହିସାବରେ ଦାସ ମହାପାତ୍ର ଏ କଥାଟା ଜାଣିଥିବେ । ମୁଁ ସମର୍ପଣର ହାତ ଟେକି ଦେଲି । ମୋଟେ କିଛି ଜାଣିନି । ଜଣେ ପୋଲିସରେ ଥିଲେ ସୁରା ପ୍ରତି ଦୁର୍ବଳତା ଥାଇପାରେ କିନ୍ତୁ ସବୁ ଲେଖକ ଯେ ସୁରା ପ୍ରିୟ ହେଇଥିବ ତାର କିଛି ମାନେ ନାହିଁ । ବାକୀ କଥା କହିହେବନି । ଗୋଟିଏ ନିର୍ଜନ ଦ୍ୱୀପର କଥା ଇଏ । ବିଷ୍ଣୁ ସହାୟ ଇଷ୍ଟ ଜୋନର ଡି.ଆଇ.ଜି.(କୋଲକାତା) ଯିଏ ଡି.ଜି.ଙ୍କ ପ୍ରୋଗ୍ରାମକୁ ମନିଟର କରୁଥାନ୍ତି ସେ ଫୋନରେ ଜଣାଇଲେ ସେ ସମ୍ପୂର୍ଣ୍ଣ ଧର୍ମାତ୍ମା,ସାଧୁ ସନ୍ଥ କହିହେବ । ପାନର ଗୋଟିଏ ଡିଗ୍ରୀ ମଧ୍ୟ ଉପରକୁ ଉଠନ୍ତି ନାହିଁ ।

ଆମେ ଆଶ୍ୱସ୍ତ ହେଇଗଲୁଁ । ନଚେତ୍ ମୁଁ ମନେ ମନେ ଭାବୁଥିଲି ଗୋଟାଏ ପୋର୍ଟରେ ସର୍ବୋତ୍କୃଷ୍ଟ ଫରେନ ଡ୍ରିଙ୍କ୍‌ର କୋଉ ଅଭାବ ? କୃତ୍ରିମ ବନ୍ୟାଟିଏ କରେଇ ଦେଇ ହୁଅନ୍ତା ।

ଯାଃ ମଣିଷ ସେ ଅପକର୍ମରୁ ମୁକ୍ତି ପାଇଗଲା ।

ସେଥର ଡି.ଜି.ଙ୍କ ଭିଜିଟ ଭଲରେ ସରିଗଲା । ମୋଟାମୋଟି ପବ୍ଲିସିଟି ମଧ୍ୟ ଭଲ ହେଲା । ଇଲେକ୍‌ଟ୍ରୋନିକ ଗଣମାଧ୍ୟମ ଆକାଶବାଣୀ ଛଡ଼ା ଆଉ କିଛି ନଥିଲା । ସବୁ ସମ୍ବାଦପତ୍ର ଭଲ କଭରେଜ ଦେଲେ । କିନ୍ତୁ ସେଥର ଡି.ଜି. ଗୋଟାଏ ଦିନ ଅଧିକା ରହିଲେ । ପୁରୀ କୋଣାର୍କ ଇତ୍ୟାଦି ବୁଲାବୁଲି କରି ପରେ କଟକ ଗଲେ । ସବୁଠି ମୁଁ ସାଥିରେ ଥାଏ । ମୋ ସାଥିରେ ଥାଆନ୍ତି ଆଉ ଦଳେ ଷ୍ଟାଫ । ଯୋଉଠି ଯାହା ଦରକାର ପଡ଼େ ଆମେ ସେକାମ ତୁଲାଉ । ନିର୍ଦ୍ଦେଶ ଥିଲା । ଏହା ହିଁ ତ ଆବଶ୍ୟକତା,ସାମାନ୍ୟ ଅସୁବିଧା ଯେମିତି ଭି.ଆଇ.ପି.ଙ୍କ ନହୁଏ । ସେମାନେ ଆମ ଅତିଥି ।

ଜଗନ୍ନାଥ ମନ୍ଦିରରେ ଦିଅଁ ଦର୍ଶନ ପୂର୍ବରୁ ମୁଁ ଯେତେବେଳେ ଗଲି ଦୀପ କିଣିବାକୁ ସେ ମନା କଲେ । କହିଲେ ସେ ଦୀପ ତୁମେ କିଣନା । ମୁଁ କିଣିବି । ଭୋଗ, ଫୁଲ ମୁଁ କିଣିବି । ମୁଁ ଚୁପ୍ । ବଶମ୍ବଦ ଅଧିକରୀଟିଏ ପରି ଛିଡ଼ା ହେଲି । ସେ ନିଜେ ସବୁ କାମ କଲେ । ମୋତେ ମଧ୍ୟ ଦୀପଟିଏ ଦେଲେ । ମନ୍ଦିରରେ ସମସ୍ତେ ତାଙ୍କୁ ଚିହ୍ନି ଥାଆନ୍ତି । ବାଟ ଛାଡ଼ି ଦିଅନ୍ତି ।

ସମସ୍ତ ଗସ୍ତ ସମୟରେ ମୁଁ ତାଙ୍କ ପଛେ ପଛେ ଥାଏ । ଗୋଟାଏ ବ୍ୟବଧାନ ରଖୁଥାଏ । ଶେଷରେ ଆମେ ଗଲୁ କଟକ । ତିନି ଚାରିଟା ଗାଡ଼ି ଆଗପଛ ହେଇ ଚାଲିଥାଏ । ସେ କୁଆଡ଼େ ଯିବେ ସେ ଜଣାନ୍ତି । ବାଟ ସେ ଜଣାନ୍ତି । କଟକଚଣ୍ଡୀ ପାଖରେ ଆମେ ଓହ୍ଲାଇ ପାଦରେ ଚାଲୁଚୁ, ସେ ମୋ ପାଖକୁ ଲାଗି ଆସି ମୋତେ କହିଲେ, 'ଏଇଠି ମୋର ଗୋଟାଏ ଘର ଅଧା ତିଆରି ହେଇ ୪/୫ ବର୍ଷ ହେଲା ପଡ଼ି ରହିଛି । ତୁମ କମାଂଣ୍ଡାଟ୍ ଓଡ଼ିଶା କେଡରର ନୁହନ୍ତି । ଚିହ୍ନା ପରିଚୟ ନାହିଁ । କେମିତି କଅଣ କହିବି । ତୁମେ ପାରାଦୀପରୁ ମଝିରେ ମଝିରେ ଆସି ଟିକେ ଦେଖିଲେ କାମଟା ହେଇଯା'ନ୍ତା । ମୋର ଆଉ ତିନିବର୍ଷ ରହିଲା ରିଟାୟାର କରିବାକୁ ।

ମୁଁ କହିଲି ହେଇପାରିବ, କିନ୍ତୁ କମାଂଣ୍ଡାଟ୍ ଟିକିଏ ଜାଣିବା ଦରକାର ।

ସେ କହିଲେ ସେକଥା ମୁଁ ଦେଖିବି । ତୁମ ଡି.ଆଇ.ଜି.ବିଷ୍ଣୁ ସହାୟ ମଧ୍ୟ ଜାଣନ୍ତି ।

ବାସ, ତାପରେ ଆଉ କିଛି କଥା ନଥିଲା । ସେ ମୋତେ ପଦାରବିନ୍ଦ ମହାପାତ୍ର ଓ ମନୋରମା ମହାପାତ୍ରଙ୍କ ସହିତ ପରିଚୟ କରାଇ ଦେଲେ । ପଦାରବିନ୍ଦ ସେତେବେଳେ ଇଣ୍ଡିଆନ ଫରେଷ୍ଟ ସର୍ଭିସରୁ ଅବସର ନେଇ 'ସମାଜ'ରେ ଜେନେରାଲ ମେନେଜର ଥିଲେ କିନ୍ତୁ ରାଧାନାଥ ରଥ ନିଜେ ସବୁ କାମ ଦେଖୁଥାନ୍ତି । ଦୁର୍ଗାମାଧବଙ୍କ ଘର ତିଆରିର ଖର୍ଚ୍ଚବାର୍ଚ୍ଚର ହିସାବ ଓ ତଦାରଖ ପଦାରବିନ୍ଦ କରୁଥାନ୍ତି । ମୋର ଦାୟିତ୍ୱ କେବଳ କଂଟ୍ରାକ୍ଟରର କାମ ଦେଖିବା ଓ ତା' ସହିତ ଯୋଗାଯୋଗ କରି କାମକୁ ଆଗେଇ ନେବା । ଏହା

ଗୋଟାଏ ବଡ଼ କଥା ନଥିଲେ ମଧ୍ୟ ମୁଁ ଜାଣିଥିଲି ପରେ ଏସବୁ କାମରେ କଥା ଉଠିପାରେ ଯେ ସରକାରୀ ଲୋକବଳ ଓ କ୍ଷମତାର ଅପବ୍ୟେବହାର ହେଉଛି । କିନ୍ତୁ ପ୍ରକୃତ କଥା ନଜାଣି ଜଣେ ଯଦି ଏମିତି କହିବ ତାକୁ କିଏ ବା କଅଣ କରି ପାରିବ ?



# ଭଲରେ ସମୟ କଟିଲା

ଡି.ଆଇ.ଜି. ବିଷ୍ଣୁ ସହାୟ ଓ କମାଣ୍ଡାଣ୍ଟଙ୍କ ଜ୍ଞାତ ସାରରେ ଦୁର୍ଗାମାଧବଙ୍କ ଘର କାମ ବେଶ ଆଗେଇ ଚାଲିଲା । ମୁଁ କେବଳ ମଝିରେ ମଝିରେ ଆସି କାମ ଦେଖୁଥାଏଁ । ଏଇ ଅବସ୍ଥାରେ ସେତେବେଳେ ସମାଜ ଅଫିସରେ ଥିଲେ ସୂର୍ଯ୍ୟ ନାରାୟଣ ଆଚାର୍ଯ୍ୟ । ତାଙ୍କରି ଚେଷ୍ଟାରେ ମୋର ପ୍ରଥମ ଗଳ୍ପ ବହି 'ପୃଥିବୀ ଓ ପୃଥିବୀ' ଓଡ଼ିଶା ବୁକଷ୍ଟୋର ପ୍ରକାଶ କଲା । ସୂର୍ଯ୍ୟ ନାରାୟଣ ବାବୁ ମୋର ଗଳ୍ପଗୁଡ଼ିକ ଦେଖି ଖୁସି ହେଇଗଲେ । ତା'ର ଅନେକ ଗଳ୍ପ ଝଙ୍କାରରେ ପ୍ରକାଶ ପାଇଥିଲା । ଗୋବିନ୍ଦ ପାତ୍ରଙ୍କୁ କହି ମାସକ ଭିତରେ ବହି ପ୍ରକାଶ କରି ଦେଲେ । ସେତେବେଳେ ଦୁର୍ଗାମାଧବ ପୁଣି ଥରେ ପାରାଦୀପକୁ ଆସି ଥାଆନ୍ତି ।

ମୁଁ ତାଙ୍କୁ କହିଲି ମୋ ବହିଟିର ଉନ୍ମୋଚନ କରିବାକୁ । ସେ ଖୁସି ହେଲେ । ମୁଁ ସେତେବେଳେ ବହିର ଉନ୍ମୋଚନ କଅଣ ସେ କଥା ଜାଣି ନଥାଏଁ । ପାରାଦୀପ କଲେଜର ପ୍ରିନ୍ସିପାଲ ଧନେଶ୍ୱର ରାଉତ ହିଁ କହିଲେ ସେ ଦାୟିତ୍ୱ ଆମର । ଆମେ କରି ଦେବୁଁ । ଆପଣ ଖାଲି ଡି.ଜି.ଙ୍କୁ ଏଠାକୁ ନେଇ ଆସିବେ । ତାହାହିଁ ହେଲା । ସନ୍ଧ୍ୟାବେଳେ କଲେଜ ହଲରେ ପ୍ରାୟ ୫୦/୬୦ ଜଣଙ୍କ ଉପସ୍ଥିତିରେ ବହିର ଉନ୍ମୋଚନ ହେଇଗଲା । ମୁଁ ଜଣେ ଦର୍ଶକ ହିସାବରେ ବସିଥିଲି ମାତ୍ର । ଧନ୍ୟବାଦ ଦେବା କାମ ମଧ୍ୟ କରିନାହିଁ । କିନ୍ତୁ ଦୁର୍ଗାମାଧବଙ୍କ ପରି ଜଣେ ବିଶାଳ ବ୍ୟକ୍ତିତ୍ୱ ଯେ ମୋର ପ୍ରଥମ ଗପ ବହିର ଲୋକାର୍ପଣ କରିଛନ୍ତି ସେ ଗର୍ବ ଏବେ ମଧ୍ୟ ମୋର ଅଛି ।

ମୋର ସେଇ ସମୟଟା ବେଶ ଭଲରେ କଟିଲା । ପୋର୍ଟର ଅପରାଧ ନିୟନ୍ତ୍ରଣ ମଧ୍ୟ ହେଲା । ପୋର୍ଟର ଏନ୍‌ଟ୍ରି ପରମିଟ ଯାହାକୁ ଗେଟପାସ କୁହାଯାଏ, ଯାହାର ମାଡ୍ରାସ ପୋର୍ଟରେ ଆଧୁନିକି କରଣ କରାଇଥିଲି ବୋଲି ସେଠା ପୋର୍ଟ ଚେଆରମେନ ମୋତେ ଏପ୍ରିସିଏସନ ଲେଟର ଦେଇଥିଲେ ସେଇ ସ୍କିମର ଚାଲୁ ପାରାଦୀପରେ ମଧ୍ୟ କଲି । ଏସବୁକୁ ଦେଖି କମାଣ୍ଡାଟ୍ ଖୁସି ହେଲେ । ପୋର୍ଟ ଚେଆରମେନ ମଧ୍ୟ ସନ୍ତୋଷ ପ୍ରକାଶ କଲେ । ଏଇଟା ଗୋଟାଏ ସମୟ ଯେତେବେଳେ ଶ୍ରମିକ ସଂସ୍ଥାର କିଛି ନେତା ଜବରଦସ୍ତ ପୋର୍ଟର କ୍ୱାର୍ଟର ଦଖଲ କରୁଥିଲେ । ଚେଆରମେନ ବିବ୍ରତ । ଦିନେ କମାଣ୍ଡାଣ୍ଟ ମୋତେ

ପଚାରିଲେ ଶ୍ରମିକ ସଂସ୍ଥା ଏପରି ବେଆଇନ ଭାବରେ ଘର ନେଇଥିଲେ ଆମେ ତାକୁ ଦଖଲକୁ ନେଇ ପାରିବା ?

ମୁଁ କହିଲି ହେବ । ସେ ଘରଟାକୁ ସି.ଆଇ.ଏସ.ଏଫ.କୁ ପଛ ତାରିଖରେ ଏଲଟ୍ କରି ଦିଅନ୍ତୁ । ତାହାହିଁ ହେଲା । ମୁଁ ଏଲଟମେଂଟ୍ ଅର୍ଡ଼ର ଧରି ଫୋର୍ସ ନେଇ ପହଂଚିଲି ସେ ଘର ଆଗରେ । ନେତାମାନେ ଅନ୍ୟମାନଙ୍କ ସହ ତାସ ଖେଳୁଥିଲେ । ଆମକୁ ଦେଖି ଆଶ୍ଚର୍ଯ୍ୟ । ମୁଁ ଅର୍ଡ଼ର ଦେଖେଇଲି । ସେମାନେ ଘର ଛାଡ଼ିଦେଲେ । ସଂଗେ ସଂଗେ ଘର ଖାଲି ହେଲା । ମୁଁ ତାଲା ପକେଇ ଫୋର୍ସ ଜଗାଇ ଦେଲି ।

ଚେଆରମେନ ରାଓ ଖୁବ ଖୁସି ହେଲେ ।

କଥାଟା କିନ୍ତୁ ପାରାଦୀପରେ ଚହଳ ସୃଷ୍ଟି କଲା । ସି.ଆଇ.ଏସ.ଏଫ. ଯେ ପୋଲିସ ପରି କାମ କରି ପାରେ ଏମିତି ଗୋଟିଏ ଧାରଣା ସୃଷ୍ଟି ହେଲା । ଗୋଟାଏ ଭଲ ଇମେଜ ସୃଷ୍ଟି ହେଲା । ମୁଁ କିନ୍ତୁ ତାକୁ ମିଛ ଇମେଜ ବୋଲି କହିବି । ପ୍ରକୃତ କଥା ହେଲା ସେତେବେଳକୁ ପାରାଦୀପରେ ମୋର ଲୋକ ସମ୍ପର୍କର ଗୋଟାଏ ସ୍ୱତନ୍ତ୍ର ଇମେଜ ସୃଷ୍ଟି ହେଇଥାଏ । ଶ୍ରମିକ ନେତାମାନେ ମୋତେ ଭଲ ପାଆନ୍ତି । ସାଧାରଣ ଜନତା ଓ ପୋଲିସ ମାନଙ୍କ ସହିତ ମଧ୍ୟ ଭଲ ସଂପର୍କ ଥିଲା । ତେଣୁ ମୋତେ ଦେଖି ସେମାନେ ଆଉ ଯୁକ୍ତିତର୍କ କିମ୍ବା ପ୍ରତିବାଦ ନ କରି ସ୍ୱତଃପ୍ରବୃତରେ ଘର ଖାଲି କରିଦେଲେ ।

ଆଉ ଏକ ଘଟଣା ଘଟିଥିଲା ସେଇ ପାରାଦୀପରେ ।

କାରଖାନା ବା ପୋର୍ଟ ଗେଟ୍ ମାନଙ୍କରେ ସି.ଆଇ.ଏସ.ଏଫ.ଷ୍ଟାଫ ପଇସା ନେଇ ଅସାଧୁ କର୍ମଚାରୀଙ୍କ ସହିତ କାରବାର କରିବାଠାରୁ ବିନା ଗେଟ୍ ପାସରେ ଲୋକଙ୍କୁ ଭିତରକୁ ଛାଡ଼ିବା କଥା ସମସ୍ତେ ଜାଣନ୍ତି । ଏହାଦ୍ୱାରା ପୋର୍ଟ ଭିତରେ ଚୋରି ବୃଦ୍ଧି ପାଏ । ମୁଁ ମାଡ୍ରାସ ପୋର୍ଟରେ ଥିଲାବେଳେ ଦେଖିଥିଲି ସେଠି ମଧ୍ୟ ଏହି ଅପରାଧ ରୋକିବାକୁ ଭଲ ନିୟମଟାଏ ଅଛି । ଏଥିପାଇଁ ସେଠିକାର କମାଣ୍ଡାଣ୍ଟଙ୍କୁ ଧନ୍ୟବାଦ ଦେବା କଥା । ସେଠି ନିୟମ ଅଛିଯେ ସିଫ୍ଟ ଆରମ୍ଭବେଳେ ଯେଉଁ ସି.ଆଇ.ଏସ.ଏଫ. ଷ୍ଟାଫ ଭିତରକୁ ଆସିବେ, ସେମାନେ ଗୋଟାଏ ସ୍ୱତନ୍ତ୍ର ରେଜିଷ୍ଟାରରେ ତାଙ୍କ ପାଖରେ ନିଜର କେତେ ଟଙ୍କା ଅଛି ତାକୁ ସିଫ୍ଟ ଇନଚାର୍ଯକୁ ଦେଖେଇ ଘୋଷଣା ଲେଖିବେ । ପରବର୍ତ୍ତୀ ସମୟରେ ଯଦି ତାଙ୍କ ପାଖରେ ବେଶୀ ପଇସା ମିଳେ ତେବେ ତାହା ଅସତ ଉପାୟରେ ଅର୍ଜିତ ବୋଲି ଧରାଯିବ ଓ ସେ ସେଇ ଅନୁସାରେ ଦଣ୍ଡିତ ହେବେ ।

ପାରାଦୀପରେ ମୁଁ ସେଇ ନିୟମ ଲାଗୁ କରାଇଲି । କିନ୍ତୁ ତାହା କିପରି କାର୍ଯ୍ୟ କରୁଛି ତାହା ଜାଣିବା ପାଇଁ ଦିନେ ସନ୍ଧ୍ୟାବେଳେ ଛଦ୍ମ ବେଶରେ ମୁଣ୍ଡରେ ଧଳା ଟୋପି ଲଗାଇ

ଗୋଟିଏ ରିକ୍ସାରେ ବସି ଫିସିଂ ଗେଟରେ ପହଂଚିଲି । କେହି ଜାଣିବା ପୂର୍ବରୁ ମୁଁ ଷ୍ଟାଫମାନଙ୍କୁ କୋଠରି ଭିତରକୁ ନେଇ ସର୍ଚ୍ଚ କରି ଦେଖିଲି ସେମାନଙ୍କଠାରେ ଘୋଷିତ ଅର୍ଥ ଅପେକ୍ଷା ଯଥେଷ୍ଟ ବେଶୀ ଅର୍ଥ ଅଛି । ସେମାନଙ୍କ ପକେଟ, ସାର୍ଟ କଲର ଓ ଜୋତା ମୋଜା ଭିତରୁ ନୋଟ ବାହାରିଲା । ମୁଁ ତାର ସିଜର ଲିଷ୍ଟ ତିଆରି କଲି । ପରଦିନ ସେମାନଙ୍କୁ ସସ୍‌ପେଣ୍ଡ୍ କରାଗଲା ।

ଠିକ୍ ତାପର ଦିନ ଏ ଖବର ସବୁ ଖବର କାଗଜରେ ପ୍ରକାଶ ପାଇଲା । ବେଶ ବଡ଼ ବଡ଼ ଅକ୍ଷରରେ, ରେଡିଓରେ ମଧ୍ୟ କୁହାଗଲା । ଏଥିରେ କମାଣ୍ଡାଟ୍ ସିନା ଖୁସି ହେଲେ କିନ୍ତୁ ଦିଲ୍ଲୀରୁ ଡି.ଜି. ଫୋନ କରି ପବ୍ଲିସିଟି ଯୋଗୁଁ ଭଲ ହେଲା ନାହିଁ ବୋଲି କହିଲେ । ପୋର୍ଟ ଚେଆରମେନ ମଧ୍ୟ ଖୁସି ।

ସବୁଠି ଗୋଟିଏ ହଇଚଇ ସୃଷ୍ଟି ହେଲା । କିନ୍ତୁ ଅପରାଧ ଓ ଦୁର୍ନୀତି କମିଲା । ଏଥିରେ ମୁଁ ସନ୍ତୁଷ୍ଟ । ଗୋଟିଏ ବଡ଼ କାମ ହେଇ ପାରିଚି ବୋଲି ଆତ୍ମ ସନ୍ତୋଷ । ଅନୈତିକତା ଦୁର୍ନୀତି ପରି କାମକୁ କେମିତି କେଜାଣି ପ୍ରଥମରୁ ଘୃଣାଭାବ ରହି ଆସିଛି । ମୁଁ ବାହାରେ ଦୁର୍ନୀତି ବିରୋଧରେ ଲୋକଙ୍କୁ କହୁଥିବି ଅଥଚ ନିଜେ ଲାଞ୍ଚ ନେଉଥିବି ଏହାତ ଜଘନ୍ୟ କାମ । ସରକାରୀ ଗାଡ଼ିର ଅପବ୍ୟବହାର ଏପରି ସାଧାରଣ ହେଲାଣି ଯେ ତାକୁ ଆଜିକାଲି ଆଉ କେହି ଅପବ୍ୟବହାର ବୋଲି କହୁ ନାହାନ୍ତି । ତାହା ବ୍ୟବହାରରେ ପରିଣତ ହେଲାଣି । ବୋଧେ ସେଇ ଅପବ୍ୟବହାରକୁ ଘଂଟ ଘୋଡ଼େଇବାପାଇଁ କେତେକ ଜାଗାରେ ନିୟମ କରି ଦିଆ ଗଲାଣି ଯେ ଗୋଟାଏ ନିର୍ଦ୍ଦିଷ୍ଟ ଅର୍ଥ ଅଫିସରଙ୍କଠାରୁ ନେଇ ସମ୍ପୂର୍ଣ୍ଣ ଗାଡ଼ିର ବ୍ୟବହାର ତାଙ୍କ ଉପରେ ଛାଡ଼ି ଦିଆ ଯାଇଛି । ଏଥିରେ ମାସକୁ ଗାଡ଼ି ଯେତେ ଶହ କିଲୋମିଟର ଚାଲିଲେ ମଧ୍ୟ କେହି ପ୍ରଶ୍ନ କରି ପାରିବେ ନାହିଁ । ସ୍ୱାଧୀନତା ପରେ ଆମ ଗଣତନ୍ତ୍ରରେ ଅଫିସର ସାହୀକୁ (ବ୍ୟୁରୋକ୍ରେସୀ)ସୁବିଧା ଦେବାକୁ ନୂଆ ନିୟମ ପ୍ରଣିତ ହେଲା । ସେ ସୁବିଧା ବ୍ୟୁରୋକ୍ରେସୀ ପାଇଲା ପରେ ପଲିଟିକାଲ ବସମାନେ ସେଥିରୁ କେମିତି ଅଲଗା ରୁହନ୍ତେ ? ସିଂହଭାଗ ତ ସେମାନଙ୍କର ପାଇବା କଥା । ସେମାନେତ 'ବଡ଼ ଭାଇ' । ଭରତବର୍ଷରେ ଏ ଯେଉଁ ସୁବିଧାବାଦୀ ଗଣତନ୍ତ୍ର ଚାଲିଛି ତାକୁ ଆମେ ପୃଥିବୀର ଅନ୍ୟ କେଉଁଠି ଦେଖିବା ନାହିଁ । ଏ ଗଣତନ୍ତ୍ରର ଅନ୍ୟନାମ 'ଖାଓ ପିଓ ଲୁଟୋ'। ପୃଥିବୀର ଅନ୍ୟ ଦେଶମାନଙ୍କରେ ଥିବା ରାଜତନ୍ତ୍ରରେ ମଧ୍ୟ ଏବ୍ୟବସ୍ଥା ମିଳିବ ନାହିଁ । ସେମାନେ ବୁଝନ୍ତି ନାହିଁ ଯେ ଯେଉଁ ଅର୍ଥରେ ସେମାନେ ହରିଲୁଟ କରି ମଉଜ ମଜଲିସ କରୁଛନ୍ତି ତା'ର ପ୍ରତ୍ୟେକ ଅଂଶ ସାଧାରଣ ଜନତାର ଝାଳବୁହା ଧନ । କିନ୍ତୁ ଆମେ କହିବା କାହାକୁ ? ଯୋଉମାନେ ଆଇନ କରନ୍ତି ସେଇମାନେ ଯଦି ଆଇନ ଭାଙ୍ଗନ୍ତି ତେବେ କାହାକୁ କହିବା ? ମୁଁ ତ ଭାବୁଛି ଆମ ଦେଶରେ ଆମ ନେତୃବର୍ଗ

ଆଇନଟିଏ ତିଆରି ହେବା ବେଳକୁ ତାକୁ କିପରି ସହଜରେ ଭାଙ୍ଗିହେବ ସେ ଉପାୟ ସେମାନେ ଠିକ୍ କରି ସାରିଥାଆନ୍ତି । ଆମ ସମ୍ବିଧାନକୁ ଶହେ ଥର ବଦଳାଇବା ମୂଳରେ ଏଇଟା ଗୋଟାଏ କାରଣ ହେଇପାରେ । କୁଲଦୀପ ନାୟାର ଥରେ ଲେଖିଥିଲେ ଆମ ସମ୍ବିଧାନରେ କଳ୍ପିତ ତିନୋଟି ଖମ୍ବ ଭିତରୁ ଦୁଇଟିକୁ ଭଙ୍ଗା ସରିଲାଣି, ଶେଷ ଖମ୍ବଟି(ଜୁଡ଼ିସିଆରି) ଏବେ ନଡ଼ଚଡ଼ ହେଉଛି । ଖସି ପଡ଼ିବାକୁ ଆଉ କେତେ କାଳ? ଯାହା ଦେଖା ଯାଉଛି ଏଇ ଦ୍ୱିତୀୟ ଏନ.ଡି.ଏ. ସରକାର ସମୟରେ ସେ କାମ ସମ୍ପୂର୍ଣ୍ଣ ହେଇଯିବ ।

ତେବେ ସେ ଯାହାହେଉ ମୋର ଏଇ କେତୋଟି କାମକୁ ପାରାଦୀପରେ ଲୋକମାନେ ଓ ପୋର୍ଟ ମେନେଜମେଂଟ୍ ସିନା ପ୍ରଶଂସା କଲେ କିନ୍ତୁ ମୋର ଉପରିସ୍ଥ ଅଫିସର ତାକୁ ଆନ୍ତରିକତାର ସହ ଗ୍ରହଣ କଲେ କି ନାହିଁ ତାହାଥିଲା ପ୍ରଶ୍ନବାଚୀ । ଆମର ସାଧାରଣ ମାନସିକତା ହେଲା ସହକର୍ମୀ, ସହଧର୍ମୀଙ୍କ ପ୍ରଶଂସା ସହ୍ୟ ନ କରିବା । ଅସହନଶୀଳତା ଆମ ହାଡ଼େହାଡ଼େ ଥାଏ ।

ମୋର ଏଇ ସବୁ ଭଲ କାମକୁ ମୋର କମାଂଣ୍ଡାଟ୍ ପ୍ରଶଂସା କରିଥିଲେ କି ନା ସେ କଥା ପରେ ଜଣା ପଡ଼ିଲା । ମୁହଁରେ ଗୋଟାଏ କଥା ଓ ପେଟରେ ଆଉ ଗୋଟାଏ କଥା ଏମାନଙ୍କର ସବୁବେଳେ ଥାଏ ।

ଜଣେ ଆସିଷ୍ଟାଂଟ୍ କମାଂଣ୍ଡାଟ୍ ଫୋର୍ସର ସୁପ୍ରିମ କମାଣ୍ଡର ବା ଡିଜିଙ୍କ ପାଖ ଲୋକ ହେବ ଏକଥା ସମସ୍ତେ ସହ୍ୟ କରିପାରନ୍ତି ନାହିଁ । ତା'ର ପ୍ରତିଫଳନ ମୋର ଏ.ସି.ଆର. (ଏନୁଆଲ କନ୍‌ଫିଡେନସିଆଲ ରିପୋର୍ଟ) ରେ ମିଳିଥିଲା । ସେ କଥା ମୁଁ ପରେ ଜାଣିଲି । ମୋର ଏ.ସି.ଆର.ରେ କେଉଁଠି ଗୋଟାଏ 'ଏଭାରେଜ' ଥିଲା ବୋଲି ମୋର ପ୍ରମୋଶନ ଅଟକି ଗଲା ଠିକ୍ ପାରାଦ୍ୱୀପରୁ ବଦଳି ହେବା ପରେ । କେହି ଜଣେ ଉପରିସ୍ଥ ଅଫିସର କିପରି ବିଶ୍ୱାସ ଘାତକତା କରିଛନ୍ତି ତା'ର ପ୍ରମାଣ ଏବେ ମିଳିଲା । ପ୍ରତିବାଦରେ ମୁଁ ଓଡ଼ିଶା ହାଇକୋର୍ଟରେ କେସ୍ କଲି ଓ ତାପରେ ଯାଇ ଡେପୁଟି କମାଂଣ୍ଡାଟ ପଦବୀକୁ ପ୍ରମୋଶନ ପାଇଲି ।

ପାରାଦୀପ ପୋର୍ଟର ସୁବର୍ଣ୍ଣ ଜୟନ୍ତୀ ନିକଟରେ ପାଳିତ ହେଇଚି । ତା' ତରଫରୁ ସ୍ମରଣିକାଟିଏ ପ୍ରକାଶ ପାଇଚି । ସେଥିରେ ତତ୍କାଳୀନ ଚେଆରମେନ ଏମ.ୱାଇ.ରାଓଙ୍କ ଲେଖାଟିଏ ଅଛି । ସେଥିରେ ଲେଖା ଅଛି ପୋର୍ଟ ଘର ସବୁ ଅସାମାଜିକ ଲୋକଙ୍କ ଦଖଲରୁ ମୁକ୍ତ କରିବାକୁ କମାଂଣ୍ଡାଟ୍‌ଙ୍କ ପ୍ରଚେଷ୍ଟା ପ୍ରଶଂସାଜନକ । ଏହାକୁ ଅବଶ୍ୟ ଅନେକ ପ୍ରକାର ଅର୍ଥ କରାଯାଇ ପାରେ । କିନ୍ତୁ ମୋର ଏ.ସି.ଆର.ରୁ ତା'ର ସମ୍ଭାବ୍ୟ ଚିତ୍ର ମିଳୁ

ନାହିଁ । ପରିଣତ ବୟସର ଋକିରି ରିଭ୍ୟୁ ସମୟରେ ମୋତେ ହେଡ୍‌କ୍ୱାର୍ଟରରୁ ଚିଠି ମିଳିଥିଲା ଯେ ବିଗତ ବର୍ଷମାନଙ୍କରେ ମୋର ପାରଫରମାନ୍‌ସ lacklusture and colourless' ତେଣୁ ପ୍ରମୋଶନ ପାଇଁ ବେଂଚ୍‌ମାର୍କ କମୁଛି ।

କ୍ଷମତା ମଣିଷକୁ ସବୁବେଳେ ପାଗଳ କରେ ଏବଂ ସେଇ ପାଗଳାମିରୁ ଜନ୍ମ ନିଏ ସ୍ୱେଚ୍ଛାଚାର ଯା'ର ଅନ୍ୟନାମ ଦୁର୍ନୀତି । ୧୯୮୦-୮୫ ଭିତରେ ସି.ଆଇ.ଏସ.ଏଫ.କୁ ବାହାରୁ ବହୁ ଅଫିସର ଡେପୁଟେସନରେ ଆସୁଥିଲେ । ସେମାନଙ୍କ ଭିତରେ ବେଶୀଭାଗ ସେଇମାନେ, ଯେଉଁମାନେ ନିଜ କେଡର ଷ୍ଟେଟରୁ ବାହାରକୁ ଯିବାକୁ ବ୍ୟାକୁଳ ହେଉଥିଲେ । ସି.ଆଇ.ଏସ.ଏଫ.ରେ ସେମାନଙ୍କ ସ୍ୱେଚ୍ଛାଚାରୀତା ଆମ ପାଇଁ ଅସହ୍ୟ ହେଉଥିଲା । ଅରଣା ମଇଁଷିକୁ ମଣ କରିବାକୁ ଉପର ସ୍ତରରେ ମଧ୍ୟ ସେମିତି କିଛି ଚେଷ୍ଟା ନଥିଲା । ଏଥିପାଇଁ ଏଇ ସମୟ ଭିତରେ ଅନେକଗୁଡ଼ିଏ ମାମଲା କୋର୍ଟରେ ଫାଇଲ ହେଇଥିଲା । ତାପରେ ଅବସ୍ଥା ସୁଧୁରିଲା । କେଡର ନୀତି ସ୍ଥିର ହେଲା, ଡେପୁଟେସନ ପ୍ରଥା ବନ୍ଦ ହେଲା ।



## ମୁଁ ସେମାନଙ୍କୁ ଯେତିକି ଜାଣିଛି

ମୋର ଏତେ କଥା କହିବାର ଅର୍ଥନୁହେଁ ଯେ ବାହାରୁ ଭଲ ଅଫିସର ଆସୁ ନାହାନ୍ତି କି ସର୍ବଭାରତୀୟ ସେବାରେ ଭଲ ଅଫିସର ନାହାନ୍ତି । ମୋର ଦୀର୍ଘ ୩୦ ବର୍ଷରୁ ଅଧିକ ଅଭିଜ୍ଞତା ଭିତରେ ମୁଁ ବହୁ ଅଫିସରଙ୍କ ସମ୍ପର୍କରେ ଆସିଚି । ପ୍ରତ୍ୟକ୍ଷ ଓ ପରୋକ୍ଷ ଅନୁଭୂତି, ଅଭିଜ୍ଞତା ଅବଶ୍ୟ ଅଛି । ସେମାନେ ଖାଲି ଓଡ଼ିଶାର ନୁହନ୍ତି ଓଡ଼ିଶା ବାହାରର ମଧ୍ୟ ଅଛନ୍ତି । ବିଭିନ୍ନ ରାଜ୍ୟ ବୁଲିବା ଭିତରେ ମୁଁ ଏମାନଙ୍କୁ ଅତି ନିକଟରୁ ଓ ଦୂରରୁ ଦେଖିଚି । ସେମାନଙ୍କ ଆଚାର ବ୍ୟବହାର ଚାଲି ଚଳନ, ଅନ୍ୟ କେଡର ପ୍ରତି ଆଭିମୁଖ୍ୟ ପ୍ରଭୃତି ଦେଖିବାର ସୁଯୋଗ ପାଇଛି । ପ୍ରତିଭାବାନ ବ୍ୟକ୍ତିଙ୍କ ଅବଦାନରେ ଡିପାର୍ଟମେଂଟ୍ ଲାଭବାନ ହୁଏ । ସେଥିପାଇଁ ଡେପୁଟେସନ୍ ପ୍ରଥା ରହିଛି ।

ମୋତେ ସବୁଠୁ ଭଲ ଲାଗିଛି ପୂର୍ବତନ ଡି.ଜି. ସୁରେନ୍ଦ୍ର ନାଥଙ୍କୁ । ୨/୩ ଥର ମାତ୍ର ଦେଖିଛି । କଥାବାର୍ତ୍ତା କରିଛି । ପ୍ରଥମଥର ରାଞ୍ଚିରେ (ଏଚ.ଇ.ସି.) । ସେତେବେଳେ ଅଲ ଇଣ୍ଡିଆ ପୋଲିସ ଷ୍ଟ୍ରାଇକ ଶୀର୍ଷରେ । ସାରା ଭାରତ କମ୍ପୁଥାଏ । ସବୁ ପାରା ମିଲିଟାରୀ ଫୋର୍ସରେ ଧର୍ମଘଟ । ସି.ଆଇ.ଏସ.ଏଫ. ମଧ୍ୟ ସେଥିରୁ ବାଦ୍ ନଥିଲା । ଧର୍ମଘଟ ଗୁରୁତର ଅବସ୍ଥାରେ ଥିଲାବେଳେ ସେ ଆସି ସମସ୍ତଙ୍କୁ ଭେଟିଲେ ।

ଅତି ଧୀର, ନମ୍ର, ଭଦ୍ର, ମିଷ୍ଟଭାଷୀ । ଗୋଟିଏ ଶବ୍ଦ ମଧ୍ୟ କାହାକୁ ଆଘାତ ଦେଲା ଭଳି କହନ୍ତି ନାହିଁ । ମନେ ହେବ ଅତି ଆପଣାର । ଖୋଲା କଥା, ଛଳନା ମୋଟେ ନାହିଁ । ମନରେ ଯଥେଷ୍ଟ ଦମ୍ଭ ଓ ବିଶ୍ୱାସ ।

ସମଗ୍ର ଡିପାର୍ଟମେଂଟକୁ ସେହିଁ ସଜାଡ଼ି ଦେଲେ । ମୃତ୍ୟୁର ଗମ୍ଭୀରା ଭିତରୁ ଉଠାଇ ଆଣି ନୂଆ ଜୀବନ୍ୟାସ ଦେଇ ଦେଲେ । ତାଙ୍କୁ ଆମେ ମଣିଷ ନୁହେଁ ଦେବତା କହୁଁ । ହାୟ, ସେ ପ୍ରକାର ଦେବତାଟି ପଞ୍ଜାବ ରାଜ୍ୟପାଳ ପଦରେ ଥିଲାବେଳେ ଗୋଟିଏ ବିମାନ ଦୁର୍ଘଟଣାରେ ପରିବାର ସଦସ୍ୟଙ୍କ ସହିତ ପ୍ରାଣ ହରାଇଥିଲେ ।

ତାଙ୍କରି ସମୟରେ ମୋର ପ୍ରମୋଶନ ହୋଇଥିଲା । ସେ ମାଡ୍ରାସ ପୋର୍ଟରେ ଥିଲା ବେଳେ ତାଙ୍କ ସହ ଦ୍ୱିତୀୟ ସାକ୍ଷାତ । ପଦଟିଏ ଠିଆଠିଆ କହିଲି ପାରିବାରିକ ସମସ୍ୟା କଥା । ଶୁଣିଲେ, ସେମିତି ଧୀରସ୍ଥିର ଓ ସଂବେଦନଶୀଳ । କହିଲେ ଥରେ ଦିଲ୍ଲୀ ଆସ କଥାବାର୍ତ୍ତା ହେବା ।

କୋଟି ନିଧି ପାଇଲା ପରି ଲାଗିଲା । ସବୁ ଦୁଃଖ କୁଆଡ଼େ ଉଭେଇ ଗଲା କି ?

ପାଂଚସାତ ଦିନ ଛୁଟି ନେଇ ଗଲି ଦିଲ୍ଲୀ । ଛୁଟିରେ ଥାଇ ଡିଜିଙ୍କୁ ସାକ୍ଷାତ କରି ହେବ ? ସୁରେନ୍ଦ୍ର ନାଥ କିନ୍ତୁ ପୂର୍ବ ଅନୁମତି ନଥାଇ ମଧ୍ୟ ସାକ୍ଷାତ ଦେଲେ ତାଙ୍କ ସରକାରୀ ବାସ ଭବନରେ ସନ୍ଧ୍ୟା ସାତଟାରେ । ମନେଅଛି, ୧୯୮୨ର'ଏସିଆଡ୍'ବେଳର । ସେ ଖେଳ ପ୍ରିୟ ଖାଲି ନଥିଲେ, ଏସିଆଡ୍ କମିଟିର ସଦସ୍ୟ ବୋଲି ମଧ ଶୁଣିଲି । ଷ୍ଟେଡିୟମରୁ ସେ ସିଧା ଯିବେ ଘରକୁ । ଅଫିସରେ ଦେଖା କରି ହେଲାନି । ଅନୁମତି ତ ସେ ଦେଇଛନ୍ତି । ଆଉ ଚିନ୍ତା କଅଣ ? ସିଧା ଘର ପାଖରେ ଯାଇ ହାଜର ହେଲି । ଗେଟ୍ ପାଖରେ ଅପେକ୍ଷା କଲି । ସେ ଆସିଲେ । ଗାଡ଼ିରେ ସିଧା ପୋର୍ଟିକୋ ପାଖକୁ ଚାଲିଗଲେ । ଗେଟ୍‌ରେ ଥିବା ସେଂଟ୍ରି ଯାଇ ଜଣାଇଲା ଏମ.ପି.ଟି.ରୁ ଜଣେ ଏ.ସି. ଆସିଛନ୍ତି ଦେଖା କରିବାକୁ ।

'ଡାକ ତାଙ୍କୁ' । ସେ ସେମିତି ଠିଆ ହେଇ ରହିଲେ ।

ମୁଁ ଗଲି । ସମ୍ମାନ (ସେଲ୍ୟୁଟ୍) ଜଣାଇଲି ।

ସାମାନ୍ୟ ହସି କରମର୍ଦ୍ଦନ କରି କହିଲେ 'ବସନ୍ତୁ, ଚା' ପିଇବେ ନା କଫି ?' ଶୀତ ଦିନ ।

ମୁଁ କହିଲି, 'ନୋ,ଥେଙ୍କ୍ ୟୁ ସାର' ।

'ହଉ, ତେବେ କୁହନ୍ତୁ' ।

ମୁଁ କହିଲି ସଂକ୍ଷେପରେ । ସାର ମର୍ମ ହେଲା 'ମୋତେ ଓଡ଼ିଶା ପାଖାପାଖି ଜାଗାକୁ ଦିଅନ୍ତୁ' ।

ସେ ମୋ ପିଠିରେ ହାତ ଦେଲେ । 'ମୁଁ ଆପଣଙ୍କ ଅସୁବିଧା ବୁଝୁଛି । କିନ୍ତୁ ଏବେ ଏବେ ପ୍ରମୋଶନ ପାଇଚନ୍ତି । ଆଉ ବର୍ଷେ ରହି ଯାଆନ୍ତୁ ତାପରେ ଦେଖିବା' ।

ତାପରେ ଉଠିଲେ । କହିଲେ, 'ଉଇସ୍ ୟୁ ଗୁଡ୍ ଲକ୍ ।'

ମୁଁ ସେତେବେଳକୁ ସବୁ ଦୁଃଖ ଭୁଲି ଯାଇଥିଲି ।

ଲୋକଟା ମେସ୍ମେରିଜିମ୍ ଜାଣେ କି ? କେତେବେଳେ ଗେଟ୍ ବାହାରକୁ ଆସିଗଲି ଜାଣି ପାରିଲିନି ।

ସୁରେନ୍ଦ୍ର ନାଥଙ୍କ ପରେ ମୁଁ ଆଉ ଜଣେ ଅଫିସରଙ୍କୁ ଦେଖିଚି । ସେ ଥିଲେ ଓଡ଼ିଶା କେଡରର ଆଇ.ପି.ଏସ. ସୁରେଶ ଦେ । ଭଦ୍ରକ ବାସିନ୍ଦା ବଙ୍ଗାଳୀ । ଶ୍ରୀମା ଭକ୍ତ । ବାସ୍ତବିକ ଅର୍ଥରେ ଧାର୍ମିକ । ଛଳନାର ଧର୍ମ କଥା ସେ ଜାଣନ୍ତି ନାହିଁ । ଦୁର୍ଗାମାଧବ ମିଶ୍ର ଯେତେବେଳେ ସି.ଆଇ.ଏସ.ଏଫ.ର ଡି.ଜି. ଥିଲେ, ସେ ସେତେବେଳେ ଆଇ.ଜି.(ହେଡ୍‌କ୍ୱାଟର) ଥିଲେ । ଦୁର୍ଗାମାଧବ ହିଁ ତାଙ୍କୁ ସି.ଆଇ.ଏସ.ଏଫ.କୁ ଆଣିଥିଲେ । କାରଣ ସେତେବେଳର ରାଜ୍ୟ ପୋଲିସର ବାତାବରଣ ତାଙ୍କୁ ସୁହାଉ ନଥିଲା । ରାଜ୍ୟ ପୋଲିସର ବାତାବରଣକୁ ଆମେ ରାଜନୀତିର ବାତାବରଣ ବୋଲି କହିପାରିବା । ରାଜନୈତିକ ପ୍ରଭୁଙ୍କ ଦର୍ଶନ ବିନା ପୋଲିସ ଅଫିସରମାନେ ବାଟ ଚାଲନ୍ତିନାହିଁ । ସୁରେଶ ଦେଙ୍କୁ ଏସବୁ ଭଲ ଲାଗି ନଥିବ । ଅତ୍ୟନ୍ତ ସାଧୁ, ସଚ୍ଚୋଟ, ଧର୍ମ ପରାୟଣ ଏବଂ ଆଇନର ସେବକ ସୁରେଶ ବାବୁ ରାଜନୀତିରେ 'ମାଙ୍କଡ଼ମାନଙ୍କୁ' ନମସ୍କାର କରିବାକୁ କୁଣ୍ଠାବୋଧ କରିଥିବେ । ତାଙ୍କ ଭିତରର ଦେବତ୍ୱ ତା'ର ପ୍ରତିବାଦ କରିଥିବ ।

ମୋର ତାଙ୍କ ସହିତ ପ୍ରଥମ ସାକ୍ଷାତ ହୁଏ ସେଇ ସି.ଆଇ.ଏସ.ଏଫ. ହେଡ୍‌କ୍ୱାର୍ଟର ଅଫିସରେ । ମୁଁ ଯାଇଥିଲି ଫିଙ୍ଗରପ୍ରିଂଟ୍ ଓ ଫୁଟପ୍ରିଂଟ୍ ଟ୍ରେନିଂରେ ଦିଲ୍ଲୀ । ଡି.ଜି. ଙ୍କ ଅଫିସ ଯାଇଥିଲି । ଡି.ଜି.ଙ୍କ ପିଏ ମୋତେ ଆଇ.ଜି.ଙ୍କ ସହିତ ଦେଖା କରିବାକୁ କହିଲେ । ସେ ବି ବହୁତ ବ୍ୟସ୍ତ । ହେବା କଥା । ମୋତେ ତାଙ୍କର ପାରାଦୀପ ଗସ୍ତ କଥା କହିଲେ । ଦିନ ତାରିଖ ସବୁ କହିଲେ । ସସ୍ତ୍ରୀକ ଭଦ୍ରକରୁ କଟକ ଓ କଟକରୁ ପାରାଦ୍ୱୀପ ଯିବା କଥା କହିଲେ । ୟୁନିଟ ଇନ୍ସପେକ୍ସନ ହେବନାହିଁ । ଖାଲି ବୁଲି ଆସିବି ବୋଲି କହିଲେ । ମୁଁ କହିଲି କାର ଭଦ୍ରକଯାଏଁ ପଠେଇବି ?

ସେ ମନା କଲେ । ନା, ମୁଁ ବସରେ ଯାଇ ବାଦାମବାଡ଼ି ବସ ଷ୍ଟାଣ୍ଡରେ ପହଂଚିବି । ସେଇଠୁ ସରକାରୀ କାମ ଆରମ୍ଭ ହେବ ।

ମୋତେ ଅଡୁଆ ଲାଗିଲା । ବସଷ୍ଟାଣ୍ଡରେ କିଏ କାହାକୁ ଖୋଜିବ । ସେତେବେଳେ ମୋବାଇଲ ନଥିଲା ।

ଯା ହେଉ ତାହାହିଁ ହେଲା । ସେ କହିଲେ, 'ମୁଁ ଭଦ୍ରକ ପର୍ଯ୍ୟନ୍ତ ଯିବି ଛୁଟିରେ । ଛୁଟି ସରିଲା ପରେ ସରକାରୀ କାମ ଆରମ୍ଭ ହେବ କଟକଠାରୁ । ତେଣୁ ସରକାରୀ ଗାଡ଼ି ଭଦ୍ରକ କିମିତି ଯିବ ?

ମୋ ପାଟି ଖନି ମାରିଗଲା । ସେ ଆସିଲେ । ତାଙ୍କ ମିସେସଙ୍କ ସହ । ମୁଁ ତାଙ୍କୁ ବାଦାମବାଡ଼ିରେ ଅନେକ ଖୋଜିଲା ପରେ ନେଇ ଆସିଲି ।

ମୁଁ ସେତେବେଳେ ପାରାଦୀପରେ ଏକ ପ୍ରକାର ଚାର୍ଜରେ ଥିଲି । କମାଂଣ୍ଡାଟ୍ ବଦଳି ହେଇ ଯାଇ ଥାଆନ୍ତି । ଅନ୍ୟ ୟୁନିଟ କମାଂଣ୍ଡାଟ୍‌ଙ୍କୁ ଅତିରିକ୍ତ ଦାୟିତ୍ୱ ଦିଆ ଯାଇ ନ ଥିଲା । ପୋର୍ଟ ଗେଷ୍ଟ ହାଉସରେ ତାଙ୍କର ରହିବାର ବ୍ୟବସ୍ଥା ହେଇଥିଲା । ଗେଷ୍ଟ ହାଉସର ଲୋକେସନ ଅତି ଚମତ୍କାର । ଠିକ୍ ସମୁଦ୍ର କୂଳରେ । ତା'ର ଗୋଟିଏ 'ସିନିକ୍ ବ୍ୟୁଟି' ଅଛି । ସେ ମାତ୍ର ଗୋଟିଏ ଦିନ ସେଠି ଥିଲେ । ତାଙ୍କର ଜଣେ ସମ୍ପର୍କୀୟ ପୋର୍ଟରେ ଚାକିରି କରୁଥିଲେ । ତାଙ୍କ ଘରକୁ ଗଲେ । ପାରାଦୀପ ଅଂଚଳ ବୁଲାବୁଲି କଲେ । ସେତିକିରେ ଶେଷ । ତା' ପରଦିନ ଟ୍ରେନ୍‌ରେ ଦିଲ୍ଲୀ ଫେରିଗଲେ ।

ଗେଷ୍ଟ ହାଉସରୁ ବାହାରିଲା ବେଳକୁ ମୋତେ କହିଲେ ବିଲ୍ ଆଣ ।

'ବିଲ୍ କଅଣ ହେବ ? ଆପଣତ କମ୍ପାନୀର ଗେଷ୍ଟ । ବିଲ୍ ତିଆରି ହେବନି' ।

ସେ ମୋଟେ ଶୁଣିଲେନି । ଗେଷ୍ଟ୍ ହାଉସ ମେନେଜରଙ୍କୁ ଡାକି କହିଲେ ବିଲ୍ ତିଆରି କରନ୍ତୁ ।

ତାହାହିଁ ହେଲା । ସେ ପେମେଂଟ୍ କଲେ, ରସିଦ ନେଲେ, ତାପରେ ଉଠିଲେ । ନୀଳାଚଳ ଏକ୍ସପ୍ରେସ୍‌ରେ ରିଜରଭେସନ ତାଙ୍କର ଆଗରୁ ଥିଲା । ଆମେ କଟକ ରେଳ ଷ୍ଟେସନରେ ପହଂଚିଲୁ । ରେଳବାଇ କେଣ୍ଟିନ୍‌ରେ ଯାଇ କହି ଦେଲି ଅମୁକ ବଗିରେ ଅମୁକ ସିଟରେ ଅଛନ୍ତି ସୁରେଶ ଦେ ଓ ତାଙ୍କ ମିସେସ । ସେଠି ଦୁଇଟା ଲଂଚ୍ ପ୍ୟାକେଟ୍ ଦେବେ । ଟ୍ରେନରେ ଆସି ତାଙ୍କୁ ସେ କଥା କହିଲି । ସେ ସଙ୍ଗେ ସଙ୍ଗେ ପକେଟରୁ କୋଡ଼ିଏ ଟଙ୍କା ବାହାର କରି କହିଲେ ମୋ ପାଇଁ କିଲେ କାକୁଡ଼ି ଆଣି ଦିଅନ୍ତୁ ।

ମୁଁ ଆଶ୍ଚର୍ଯ୍ୟ ହେଲି । କାକୁଡ଼ି କ'ଣ ହେବ ?

ଏଇଟା ଆମର ଲଂଚ । ତା' ଠୁ ଅଧିକ କିଛି ଦରକାର ନାହିଁ ।

ମୁଁ ଥମ ହେଇଗଲି । ମନେ ମନେ ଭାବିଲି । ଇଏ ପୁଣି ଜଣେ ପୋଲିସ ଅଫିସର । ପଲିଟିକେଲ ବସମାନେ ଯାଙ୍କୁ 'ଅନଫିଟ୍ ଫର ପୋଲିସ ଡ୍ୟୁଟି' ବୋଲି କହୁଥିବେ ଏବଂ ବୋଧେ ଏଇଥି ପାଇଁ ସବୁବେଳେ ରାଜ୍ୟ ବାହାରକୁ ଡେପୁଟେସନରେ ପଠେଇ ଦେଉଥିବେ ।

କିଏ ଥରେ ଜଣେ କହୁଥିଲେ 'ନେଇ ଆଣି ଥୋଇ ପାରୁଥିଲେ ପୋଲିସ ବିଦ୍ୟା ଭଲ' ।

କିନ୍ତୁ ସୁରେଶ ବାବୁ ? ଏସବୁ ପାଇଁ ଅନୁପଯୁକ୍ତ । ସାଧୁ,ସନ୍ଥର ସରଳ ଜୀବନଟିଏ, କୋଉଠି ନେଇ ଆଣି ଥୋଇ ପାରୁଥିବ ?

ସୁରେଶ ଦେ ଅବସର ନେଲା ପରେ ପଣ୍ଡିଚେରୀରେ ସ୍ଥାୟୀ ଭାବରେ ବସବାସ କରୁଛନ୍ତି ।

ମୁଁ ମାଡ୍ରାସ୍ ପୋର୍ଟରେ ଆଇ.ପି.ଏସ. କମାଂଣ୍ଡାଟ୍ ଏସ୍.ଆଇ. ଜାଫର ଅଲ୍ଲୀଙ୍କ ଅଧିନରେ ଥିଲି । ଠିକ୍ ଅଲ୍ ଇଣ୍ଡିଆ ସି.ଆଇ.ଏସ୍.ଏଫ୍.ଷ୍ଟ୍ରାଇକ ପରେ ଶ୍ରୀହରିକୋଟାରୁ ପ୍ରମୋଶନରେ ଯାଇ ସେତେବେଳେ ମାଡ୍ରାସ ପୋର୍ଟରେ ଜଏନ କରିଥିଲି । ତାହାଥିଲା ଗୋଟାଏ ଶାନ୍ତି ଶୃଙ୍ଖଳା ଧ୍ୱସ୍ତବିଧ୍ୱସ୍ତ ହେବା ପରର ସମୟ ଯେତେବେଳେ ଅନ୍ୟମାନେ ଆମକୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ଭାବୁଥିଲେ ରିଂଲିଡରଟିଏ ହେଇ ଥିବକି ? ସେତେବେଳେ ଜାଫର ଅଲ୍ଲୀ ମୋତେ ସ୍ୱାଗତ ଜଣେଇଥିଲେ ସମ୍ପୂର୍ଣ୍ଣ ସହୃଦୟତାର ସହିତ ।

ମୁଁ ଖୁସି ହେଲି । ଭଲରେ ସମୟ କଟିବ ବୋଲି ଭାବିଲି । ତାହାହିଁ ହେଲା । ଶୃଙ୍ଖଳା, ସମୟାନୁବର୍ତ୍ତିତା, ସାଧୁତା, ସଚ୍ଚୋଟତା, ସରକାରୀ କର୍ତବ୍ୟବୋଧ ଓ କାର୍ଯଦକ୍ଷତା ତାଙ୍କଠାରୁ ଶିଖିବାର କଥା । ସେଇଠି ମଧ୍ୟ ଜୀବନରେ ପ୍ରଥମ କରି ଦେଖିଲି ଜଣେ କମାଂଣ୍ଡାଟ୍ ଠିକ ଦଶଟାରେ ଅଫିସରେ ପହଂଚିବେ ଓ ପାଂଚଟାରେ ଛାଡ଼ିବେ । ସେ ଅଜଥା କାହା ସହିତ ବେଶି କଥା ହୋଇ ସମୟ ନଷ୍ଟ କରିବାକୁ ପସନ୍ଦ କରନ୍ତି ନାହିଁ । ଫାଇଲ୍ ଠିକ୍ ସମୟରେ ଡିସ୍ପୋଜ କରିବାରେ ମଧ ବେଶ୍ ଦକ୍ଷ । ସେଥିପାଇଁ ଆବଶ୍ୟକତାରୁ ବେଶି ସମୟ ଅଫିସରେ ରହିବାକୁ ପଡ଼େ ନାହିଁ ।

ସେଇଠି ମଧ୍ୟ ଦେଖିଲି ଜାଫର ଅଲ୍ଲୀ ଅଫିସରୁ ଯାଇ ଘରେ ପହଂଚିଲା ମାତ୍ରେ ସରକାରୀ ଗାଡ଼ି ଅଫିସକୁ ଫେରିଆସେ ଏବଂ ଠିକ୍ ନଅଟାରେ ଯାଇ ତାଙ୍କୁ ଅଫିସକୁ ଆଣେ । ଆଉ ସରକାରୀ ଗାଡ଼ିକୁ ବ୍ୟକ୍ତିଗତ କାମରେ ସେ କେବେ ବ୍ୟବହାର କରିଥିବା ମୁଁ ଜାଣିନାହିଁ । ସେଇଠି ମଧ୍ୟ ଚେଷ୍ଟା କରିଥିଲି ଲୁଲୁର ପିଜି ପଢ଼ିବାପାଇଁ ଯେଉଁଥିପାଇଁ ତାଙ୍କ ସାହାଯ୍ୟ ଲୋଡ଼ିଥିଲି ।

ସେ ଚେଷ୍ଟା ମଧ୍ୟ କରିଥିଲେ । ଏପରିକି ସେ ସମୟର ଚେଆରମେନ ସିଲଭରାଜଙ୍କୁ ମଧ୍ୟ କହିଥିଲେ ଚେଷ୍ଟା କରିବାକୁ । ବାହାର ରାଜ୍ୟରେ ଜଣେ କମାଂଣ୍ଡାଟ୍ ତାଙ୍କ ଅଧସ୍ତନ କର୍ମଚାରୀର ପୁଅର ଶିକ୍ଷା ପାଇଁ ଯୋଉଁ ଚେଷ୍ଟା ସେ କରିଥିଲେ ତାକୁ ଦେଖି ମୁଁ ମୋହିତ ହେଇ ଯାଇଥିଲି ।

ମାଡ୍ରାସରେ ହିଁ ହେଇଥିଲା ମୋର ଗଲ୍‌ବ୍ଲଡର ଷ୍ଟୋନ ଅପରେସନ । ୧୫ ଦିନ ଥିଲି ପୋର୍ଟ ହସପିଟାଲରେ । ସେ ସମୟର ଡି.ଆଇ.ଜି. ମିଃ ରାଧାକୃଷ୍ଣନ ମୋତେ ଯାଇ ଦେଖିଥିଲେ । ଡାକ୍ତର ସହିତ ପରାମର୍ଶ କରିଥିଲେ । ଏଇଟାତ ଗୋଟାଏ ଫୋର୍ସର ଆବଶ୍ୟକତା । ଷ୍ଟାଫଙ୍କର ଓ୍ୱେଲଫେୟାର ଦେଖିବା ୟୁନିଟ ମୁଖ୍ୟଙ୍କ ପ୍ରଥମ ଓ ପ୍ରଧାନ କାମ । ମୋ ପୁଅର ଏଡମିଶନ ହେଇପାରି ନଥିଲେ ମଧ୍ୟ ଦୁଃଖ ନାହିଁ । କିନ୍ତୁ ସେମାନେ ଯେ ଚେଷ୍ଟା କରିଛନ୍ତି ଓ ମୋ ପ୍ରତି ସମ୍ବେଦନଶୀଳ ହେଇଛନ୍ତି ଏଇଟା ହିଁ ବଡ଼ କଥା ।



# ମନ୍ଦିର ବୋଝ

ମୋର କମାଣ୍ଡାଣ୍ଟ ଅଳ୍ପ ଦିନ ପରେ ପୁଣି ଡେପୁଟେସନରେ ପୋଲିସକୁ ଫେରିଗଲେ ।

ସେ ସିନା ବିଦାୟ ନେଲେ କିନ୍ତୁ ତାଙ୍କ ମନ୍ଦିରର ବୋଝ ସେ ମୋ ମୁଣ୍ଡରେ ଥୋଇ ଦେଇଗଲେ । ତାଙ୍କ ସମୟରେ ସି.ଆଇ.ଏସ.ଏଫ. କ୍ୟେମ୍ପସ ଭିତରେ ମନ୍ଦିର ତୋଳା କାମଟି ଆରମ୍ଭ ହେଇ ଯାଇଥିଲା । ମନ୍ଦିର ତୋଳାକୁ ସମସ୍ତେ ଧର୍ମ କାମ ବୋଲି କହି ଥାଆନ୍ତି । କିନ୍ତୁ ଯଦି ସବୁ ବାସ୍ତବତାର ସହିତ ଜଣେ ମନ୍ଦିର ତୋଳାର ପ୍ରକ୍ରିୟାଟିକୁ ଦେଖିବ ତେବେ ସେଥିରେ କେତେ ଧର୍ମ ଜଣେ ଅର୍ଜନ କରିଥିବ ସେ କଥା ଜାଣି ପାରିବ ।

ଇତିହାସ ଦେଖାଯାଉ । ତାହା କୋଣାର୍କ ହେଉ ବା ଆଗ୍ରାର ତାଜମହଲ ହେଉ । ଯେଉଁ ସାଧାରଣ ମଣିଷର ଝାଳନାଳରେ ତାହା ତିଆରି ହେଇଥିଲା, ଦିନେ ଅଧେ ନୁହେଁ, ବର୍ଷ ବର୍ଷ ଧରି, ସେ ଶ୍ରମିକମାନେ ପାଇଥିଲେ କି ଉପଯୁକ୍ତ ମଜୁରୀ । ବାରଶ ବଢ଼େଇ ବାରବର୍ଷ ଧରି ଅବିଶ୍ରାନ୍ତ କାମ କରିଥିଲେ ନିଜ ପିଲା କବିଲା କଥା ଭୁଲି, ରାଜା ମହାରାଜାମାନଙ୍କର ଚାବୁକହିଁ ତାର ଉତ୍ତର ଦେବ । ରାଜାଙ୍କ ନିର୍ଦ୍ଦେଶରେ ଯେ କାମ ହୁଏ ତା'ର ପ୍ରାପ୍ୟ କାହିଁ ?

ରାଜ ପରିଭାଷାରେ ମଜୁରୀର ପ୍ରଶ୍ନ ନଥାଏ ।

ଏସବୁ ମନ୍ଦିର ନିର୍ମାଣକୁ ଧର୍ମାର୍ଜିତ ବୋଲି କହି ହେବ ? ବେଠିକୁ ମନ୍ଦିର ଉଦ୍ଦେଶ୍ୟରେ ବ୍ୟବହାର କରି ଧର୍ମ ଅର୍ଜନ ବୋଲି ଲୋକଙ୍କ ଅନ୍ଧ ବିଶ୍ୱାସକୁ ଉତ୍ତେଜିତ କରାଯାଏ ସିନା ସେଠି ଧର୍ମ କାହିଁ? ତାଜମହଲ ନିର୍ମାଣର ପାପ କଥା (ଅନୀତି କଥା) ମୁଁ 'ଆଓରଙ୍ଗଜେବ' ଗଳ୍ପରେ ଲେଖିଛି । ସେ ଗଳ୍ପ ମଧ୍ୟ ଅନ୍ୟ ଭାଷାରେ ଅନୁଦିତ ହୋଇ ପାଠକୀୟ ଶ୍ରଦ୍ଧା ପାଇଛି ।

ରାଜା ଜମିଦାରଙ୍କ ଯୁଗ ପରେ ଆସିଲା ଅଫିସର ସାହୀ ଯୁଗ । ଅଙ୍ଗୁଳି ନିର୍ଦ୍ଦେଶରେ କାମ ହୁଏ । ଗୋଟାଏ ଫୋର୍ସ/ପୋଲିସ ଓ ଆର୍ମି ଚାକିରିରେ ଅବସର ସମୟରେ ଯୋଉ

କାମ ହୁଏ ଜୱାନମାନଙ୍କଦ୍ୱାରା, ତା'ର ନାମ 'ଫେଟିଗ୍ ଡିଉଟି' । ମନ୍ଦିର ତୋଳାହେଉ ବା ପୋଖରୀ ଖୋଳାହେଉ ସବୁଧର୍ମ ନାମରେ ନାମିତ କଲେ କେହି ଆପତ୍ତି କରନ୍ତିନାହିଁ। ଆମ ସମ୍ବିଧାନରେ ଧର୍ମ ନିରପେକ୍ଷତା କଥାଟା ଅଛି । ସବୁ ଧର୍ମକୁ ସମାନ ଆଖିରେ ଦେଖିବାର କଥା । ଗୋଟାଏ ଫୋର୍ସରେ ସବୁ ଧର୍ମର ଲୋକ ଥା'ନ୍ତି । ସମସ୍ତଙ୍କ ଆବଶ୍ୟକତାକୁ ସମାନ ଭାବରେ ଦେଖିବାର କଥା । ହିନ୍ଦୁ, ଖ୍ରୀଷ୍ଟିୟାନ, ମୁସଲମାନ, ଶିଖ୍ ସବୁ ଧର୍ମପାଇଁ ସମାନ ସୁଯୋଗ ହେବା କଥା । ତାହାହିଁ ସମ୍ବିଧାନର ନିର୍ଦ୍ଦେଶ । ହିନ୍ଦୁଙ୍କ ସଂଖ୍ୟା ବେଶୀ ବୋଲି କହି ମନ୍ଦିର ହେଲେ ଅନ୍ୟ ମାନଙ୍କ କଥା କିଏ ବୁଝିବ ?

ଡଃ ଅବଦୁଲ କଲାମ ଯେତେବେଳେ ଶ୍ରୀହରିକୋଟା ରକେଟ ଲଞ୍ଚିଂ ସେଂଟରରେ ଥିଲେ ସେଠି ସେ ଗୋଟିଏ ସରକାରୀ ପ୍ଲଟ ଉପରେ ମନ୍ଦିର,ମସଜିଦ ଓ ଚର୍ଚ୍ଚର ଗୃହ ତୋଳାଇଥିଲେ । ଏଥିରେ କାହାରି କିଛି କହିବାର ନାହିଁ ।

କିନ୍ତୁ ପାରାଦୀପରେ (ସି.ଆଇ.ଏସ.ଏଫ.କମ୍ପ୍ଲେକ୍ସରେ) ଯୋଉ ମନ୍ଦିରର ଶୁଭ ଦିଆ ଯାଇଥିଲା ତାହା ଆମର ସାମ୍ବିଧାନିକ ନିୟମକୁ କେତେଦୂର ସ୍ୱୀକୃତି ଦେଇଛି ମୁଁ ଜାଣି ନାହିଁ । କାହିଁକି କେଜାଣି କମାଣ୍ଡାଣ୍ଟ ମୋତେ ସେ ନିର୍ମାଣ ସହିତ ପ୍ରଥମରୁ ଅଲଗା ରଖିଥିଲେ । ମୁଁ ମଧ୍ୟ ସେଥିରେ ଆଗ୍ରହ ପ୍ରକାଶ କରି ନଥିଲି । କମାଂଣ୍ଡାଟ ମୋତେ ସବୁ ଦାୟିତ୍ୱ (ଏ.ସି.,ଏଡମିନିଷ୍ଟ୍ରେସନ) ଦେଇଥିଲେ କେବଳ ମନ୍ଦିର ହିସାବ ଓ କେତୋଟି non-government fund କୁ ଛାଡ଼ି । ଜଣେ ଇନ୍ସପେକ୍ଟର ଓ ଜଣେ ଏ.ଏସ.ଆଇ.କୁ ସେ ଏ ସବୁ ଦାୟିତ୍ୱ ଦେବା କଥା ମୁଁ ଜାଣିଥିଲି । କାହିଁକି ସେମିତି ହେଲା ଧର୍ମ ଉପରେ ସମ୍ପୂର୍ଣ୍ଣ ଆସ୍ଥା ରଖୁଥିବା କମାଣ୍ଡାଣ୍ଟ ହିଁ କହି ପାରିବେ । କିନ୍ତୁ ସେ ଯେତେବେଳେ ପାରାଦୀପରୁ ବିଦାୟ ନେଲେ ସେତେବେଳେ ମୋତେ କେବଳ କହିଲେ ସେ କାମତ ପ୍ରାୟ ସରିବା ଅବସ୍ଥାରେ ଆପଣ ବାକୀ କାମ ଦେଖିବେ ।

ଏଇ ବାକୀ କାମ ଭିତରେ ମୋ ପାଖକୁ ଯେତେବେଳେ ଅଭିଯୋଗ ଆସିଲା ମୋ ମୁଣ୍ଡ ବୁଲାଇ ଦେଲା । ତା'ର ସମାଧାନ କେମିତି ହେବ ?

ମୁଁ ସେଇ ଶିବଙ୍କ ଉପରେ ସେ ସବୁ ଦିନେ ଅଜାଡ଼ି ଦେଇ କହିଲି, 'ପ୍ରଭୁ ହେ, ତୁମେ ବୁଝ' ।

ମୁଁ ବହୁ ପ୍ରକାର ଅଫିସର ଦେଖିଛି । କିଛିଟା ପୂର୍ବରୁ ବର୍ଣ୍ଣନା କରିଛି ମଧ୍ୟ । କିନ୍ତୁ ଜଣେ ଅଫିସର ଯେତେବେଳେ ତାଙ୍କ ବିଦାୟ ସମ୍ବର୍ଦ୍ଧନା ବେଳେ 'ରୂପା ତାରକସି କାମର ରଥ' ମାଗି ବସିଲେ ସେତେବେଳେ ତା'ର ଦାମଥିଲା ୧୩ ହଜାର ଟଙ୍କା । ମୁଁ ଆଶ୍ଚର୍ଯ୍ୟ ହେଇଗଲି ।

ଉପହାର ବସ୍ତୁଟି ଶେଷରେ ସେ ନିଜେ ଯାଇ କିଣିଲେ ।

ଏଇପରି ଅଫିସରମାନେ ମଧ୍ୟ ତାଙ୍କର ଝିଅଟିଏ ଜନ୍ମ ହେଲେ ଅଧସ୍ତନ କର୍ମଚାରୀଙ୍କଠାରୁ 'ସୁନାମୁଦି' ଉପହାର ଗ୍ରହଣ କରନ୍ତି । ସ୍ୱାମୀ ବିବେକାନନ୍ଦ ଧର୍ମ ମଣିଷ ମନର ଭୟରୁ ଜାତ ବୋଲି କହନ୍ତି । ସତେତ ମଣିଷ ମନରେ ଭୟ ନଥିଲେ ସେ ଈଶ୍ୱରଙ୍କୁ ଖୋଜନ୍ତା ନାହିଁ । ପାପ, ଅନୀତି, ଦୁର୍ନୀତିର ଭୟ ମଣିଷ ମନରେ ଯେତେ ପ୍ରବଳ ହେବ ସେ ଭଗବାନଙ୍କୁ ସେତେ ବେଶୀ ଖୋଜିବ । ସେତିକି ବେଶୀ ସେ ତାଙ୍କ ଶରଣାପନ୍ନ ହେବ ।

କିନ୍ତୁ ଅବୋଧ ମଣିଷଟି ମୋଟେ ବୁଝେ ନାହିଁ ଯେ ଈଶ୍ୱରଙ୍କ ପରି ନିଷ୍ପାପ ଦେବତାଟି କେବେବି ମଣିଷକୁ ପାପରୁ ମୁକ୍ତି ଦେବା ପାଇଁ ପୂଜା କି ଭୋଗ ଖୋଜି ନ ଥାଏ । ମଣିଷର ପୂଜା ବେଳେ ସେ ହସୁଥାଏ ମାତ୍ର ।



# ପାରାଦୀପରେ ସାହିତ୍ୟ ଚର୍ଚ୍ଚା

ଓଡ଼ିଶା ଭିତରେ ହେଉ ବା ବାହାରେ ହେଉ ମୁଁ ଯୋଉଠିକି ଯାଇଛି ସେଠି ଖୋଜିଛି ମୋର ମନର ମଣିଷ ଲେଖକଟିଏ । ପାରାଦୀପରେ ତାହାହିଁ ହେଲା । ମୁଁ ପହଞ୍ଚିଲା ମାତ୍ରେ ଲେଖକ ମହଲରେ କଥାଟା ବ୍ୟାପି ଗଲା । ବନ୍ଧୁ ବାସୁଦେବ ସେଠୀ, ପୀତାମ୍ବର ତରାଇ, ଭଗବାନ ମହାପାତ୍ର, ରବି ସ୍ୱାଇଁ, ପ୍ରଭାତ ନନ୍ଦ ଏବଂ ସ୍ୱର୍ଣ୍ଣ ମିଶ୍ର ଓ ନିଧିରାମ ମହାରଣା ସମସ୍ତେ । ଖୁବ ବେଶୀ କବି ଲେଖକ ଅବଶ୍ୟ ସେଠି ନଥିଲେ । କିନ୍ତୁ ଅନୁଷ୍ଠାନଟିଏ ଥିଲା । ଅନୁଷ୍ଠାନ ଥିଲେ ମଧ୍ୟ ନିୟମିତ ସାହିତ୍ୟ ଚର୍ଚ୍ଚା ହେଉ ନଥିଲା । କାଁ ଭାଁ ବୈଠକ ବସୁଥିଲା । ମୋ ଯିବାପରେ ସେଇଟା ସାମାନ୍ୟ ତ୍ୱରାନ୍ୱିତ ହେଲା । ପାରାଦୀପ କଲେଜ ସେଥିପାଇଁ ସାହାଯ୍ୟର ହାତ ବଢ଼ାଇ ଦେଲେ । ଆଠଦଶ ଜଣ ହେଲେ ମଧ୍ୟ ଆସର ଜମିଲା । ବେଶୀଭାଗ କବିତା ହିଁ ପଢ଼ା ହେଉଥିଲା । ପ୍ରଭାତ ନନ୍ଦ ଭଲ ଆଲୋଚନା କରୁଥିଲେ ।

କମାଂଣ୍ଡାଟ୍‌ଙ୍କ ବଦଳି ପରେ ମୁଁ ଏକୁଟିଆ ହେଇଗଲି । ଅନ୍ୟ କୌଣସି କମାଣ୍ଡାଣ୍ଟଙ୍କୁ ଏଠିକାର ଦାୟିତ୍ୱରେ ରଖା ନଯିବାଦ୍ୱାରା ମୋତେ ସବୁ କାମ ଦେଖିବାକୁ ପଡ଼ିଲା । ପୋର୍ଟରୁ ଡେପୁଟି ଚେଆରମେନ ରାଧାନାଥ ଶତପଥୀ ବସ୍ତୁତଃ ଓଡ଼ିଶାର ଶାସନ ସହିତ ଭଲ ସମ୍ପର୍କ ରଖି ପାରିଲେନାହିଁ । ତା'ର କାରଣ ଯିଏ ତାମିଲନାଡୁର ସିଷ୍ଟମ ସହିତ ଅଭ୍ୟସ୍ତ ସେ ଓଡ଼ିଶାର ସିଷ୍ଟମକୁ ପସନ୍ଦ କରିବନାହିଁ । ଏଇଥିପାଇଁ ତ ଓଡ଼ିଶାର ବହୁଲୋକ ସ୍ଥାୟୀ ଭାବରେ ମାଡ୍ରାସରେ ରହି ଯାଇଛନ୍ତି । ରାଧାନାଥ ଶତପଥୀ ସେମାନଙ୍କ ମଧ୍ୟରୁ ଜଣେ ।

ମୁଁ ପୋର୍ଟର କାମ ଦେଖୁଥାଏ । ପୋର୍ଟର ସିକ୍ୟୁରିଟି ସମସ୍ୟା ବଡ଼ ଜଟିଳ । ଶ୍ରମିକମାନେ ସାଧାରଣତଃ ବିଶୃଙ୍ଖଳିତ । ଜଣେ ଟ୍ରେଡ୍ ୟୁନିଅନର ସଦସ୍ୟ ହେଲେ ସେ ନିଜକୁ ସବୁ ଶୃଙ୍ଖଳାର ବାହାରେ ବୋଲି ଭାବେ । ଆଇ.ଡି.କାର୍ଡ଼ଟି ନେଇ ପୋର୍ଟ ଗେଟରେ ଦେଖାଇବାକୁ ସେମାନେ ଅସମ୍ମାନ ଜନକ ମନେକରନ୍ତି । ତେଣୁ ସି.ଆଇ.ଏସ.ଏଫ. ଷ୍ଟାଫ୍ ସହିତ ଝଗଡ଼ା ଓ ତାକୁ ନେଇ ସମସ୍ୟାଟିଏ ହଠାତ୍ ମୁଣ୍ଡଟେକେ । ଗେଟ୍ ସାମନାରେ ଥାନା । ସଙ୍ଗେ ସଙ୍ଗେ ପୋଲିସ ଆସି ଯାଏ ।

ଏ ସମସ୍ୟା ପ୍ରାୟ ପ୍ରତିଦିନ । ମୁଁ ଏସବୁ ଦେଖିଲାବେଳେ ଫୋର୍ସର ପ୍ରଶାସନିକ କାମ ମଧ୍ୟ ବଢୁଥାଏ । ତାଆରି ଭିତରେ ଡି.ଜି.ଙ୍କ ଭିଜିଟ, ଡି.ଆଇ.ଜି.ଙ୍କ ଗସ୍ତ ଏସବୁ ମଧ୍ୟ ଥାଏ ।

ଗୋଟାଏ ଟ୍ରେନିଂ ସେଂଟର ଯାହା ବହୁଦିନୁ ପାରାଦୀପରେ ଅସ୍ଥାୟୀ ଭାବରେ ଚାଲୁଥାଏ ତା'ର ସ୍ଥିତିକୁ ଦୃଢ଼ କରିବା ଥିଲା ମୂଳ ଉଦ୍ଦେଶ୍ୟ । ଦୁଇତିନି ଥର ଡି.ଜି. ଆସିଛନ୍ତି ଖୋର୍ଦ୍ଧା ଓ ବାଙ୍କୀ ପଟେ ଟ୍ରେନିଂ ସେଂଟର ପାଇଁ ଉପଯୁକ୍ତ ସ୍ଥାନ ବାଛିବାକୁ । ଭଲ ଜାଗା ମିଳୁ ନଥାଏ । ଶେଷରେ ସେ ମୋତେ ଥରେ କହିଲେ ପୋର୍ଟ ଆମକୁ ବର୍ତ୍ତମାନ ପାଇଁ ଟିକେ ସାହାଯ୍ୟ କରନ୍ତା ନାହିଁ । ସେତେବେଳେ ଚେଆରମେନ ପ୍ରସନ୍ନ ମିଶ୍ର ଥିଲେ ଓଡ଼ିଶା କେଡରର ଆଇ.ଏ.ଏସ୍. ଅଫିସର । ମୋ ସହିତ ଭଲ ସମ୍ପର୍କ । ମୁଁ ତାଙ୍କୁ ଯାଇ କହିଲି ଟ୍ରେନିଂ ସେଂଟରଟାଏ ଏଠାରେ ଥିଲେ ପୋର୍ଟପାଇଁ ଅନେକ ସୁବିଧା । ପୋର୍ଟ ଗୋଟାଏ ସାଇକ୍ଲୋନ ପ୍ରବଣ ଏରିଆ । ଝଡ଼ ତୋଫନ ଏଠି ସବୁବେଳେ । କ୍ଷୟ କ୍ଷତି ମଧ୍ୟ ଅସୀମିତ । ପୋର୍ଟର ସୁରକ୍ଷା ପାଇଁ ଯେତିକି ଷ୍ଟାଫ ଅଛନ୍ତି ସେତିକି ଯଥେଷ୍ଟ ନୁହେଁ । ପୋର୍ଟବିତ ବଢୁଚି । ତା'ର କାରବାର ବଢୁଚି । ତା'ର ଶ୍ରମିକ ସମସ୍ୟା ମଧ୍ୟ ବଢୁଛି । ଏ ଅବସ୍ଥାରେ ଗୋଟାଏ ଟ୍ରେନିଂ ସେଂଟର ଥିଲେ ତା'ର ୧୦୦ ଜବାନଙ୍କୁ ଆମେ ଆବଶ୍ୟକ ବେଳେ କାମରେ ଲଗାଇପାରିବା । ଏମିତିତ ଆଗରୁ କାମ ହେଉଛି । ପୋର୍ଟ ତାକୁ ଭୁଲି ନଥାଏ ।

ପ୍ରସନ୍ନ ମିଶ୍ର କଥାଟାକୁ ଚିନ୍ତାକଲେ । କହିଲେ ଆପଣଙ୍କ ଡି.ଜି. ଥରେ କଥା ପ୍ରସଙ୍ଗରେ ଏ କଥା କହୁଥିଲେ । ଅବଶ୍ୟ ଭଲ ପ୍ରସ୍ତାବ । କିନ୍ତୁ ଆପଣଙ୍କ ଆବଶ୍ୟକତା ଯାହା ସେ ସବୁ କ'ଣ ଆମେ ଯୋଗାଇ ପାରିବୁ? ପୋର୍ଟ ବାହାରେ ନଦୀର ମୁହାଣ ପାଖକୁ ଆମର କିଛି ଜାଗାଅଛି । ତାକୁ ଅବଶ୍ୟ ଆମେ ଦେଇପାରିବୁ । କିନ୍ତୁ ଷ୍ଟାଫଙ୍କ ପାଇଁ ଘର ଓ ଗାଡ଼ି ଇତ୍ୟାଦି ଦେଇ ପାରିବୁନି ।

ମୁଁ ଡି.ଜି.ଙ୍କୁ ଏକଥା କହିଲି । ସେ ତାଙ୍କ ପରବର୍ତ୍ତୀ ଗସ୍ତରେ ଆସି ଜାଗା ଦେଖିଲେ ଏବଂ ଚେଆରମେନଙ୍କ ସହିତ ପରାମର୍ଶ କଲେ ।

ଶେଷରେ ସେଇଠି ଟ୍ରେନିଂ ସେଂଟର ହେବ ବୋଲି ସ୍ଥିର ହେଲା । ତାହାହିଁ ହେଲା ଓଡ଼ିଶାର ପ୍ରଥମ ସି.ଆଇ.ଏସ.ଏଫ. ଟ୍ରେନିଂ ସ୍କୁଲ । ଅବଶ୍ୟ ଅସ୍ଥାୟୀ ସ୍କୁଲଟିଏ ପାଇଁ ପୂର୍ବତନ କମାଂଣ୍ଡାଟ ଦାମୋଦର ଷଡ଼ଙ୍ଗୀଙ୍କ ଚେଷ୍ଟାକୁ ପ୍ରଶଂସା କରିବାକୁ ହେବ । ଯେତେବେଳେ ସାରା ଭାରତରେ ସି.ଆଇ.ଏସ.ଏଫ.ର ଡିମାଣ୍ଡ ପ୍ରବଳ ଭାବରେ ବଢ଼ି ଚାଲିଥିଲା ଅଥଚ ଆମ ପାଖରେ ପ୍ରଶିକ୍ଷିତ ଜଓ୍ୱାନ ମୋଟେ ନଥିଲେ ସେତେବେଳେ ଦାମୋଦର ଷଡ଼ଙ୍ଗୀଙ୍କ ଭଳି ଦୂରଦ୍ରଷ୍ଟା ଅଫିସରଙ୍କୁ ପ୍ରଶଂସା କରିବାକୁ ହେବ । ଅଚ୍ଚ କେତୋଟା ପୋର୍ଟର ଗୁଡସ୍ ସେଡ୍‌କୁ ନେଇ ବହୁ ଅସୁବିଧା ଭିତରେ ଥାଇ ମଧ୍ୟ ଫୋର୍ସର ଭବିଷ୍ୟତକୁ ଆଖି ଆଗରେ ରଖି ସେ ଯେଉଁ କାମ ଆରମ୍ଭ କରିଥିଲେ ତାକୁ ଯୁଗେ ଯୁଗେ ସମସ୍ତେ ମନେ ରଖିବେ ।

ଦାମୋଦର ଷଡ଼ଙ୍ଗୀ ବୋଧେ ମଣିପୁର କେଡରର ଆଇ.ପି.ଏସ୍. ଅଫିସର । ସମଗ୍ର ପାରାଦୀପ ୟୁନିଟ ପାଇଁ ତାଙ୍କର ଦାନ ଅତୁଳନୀୟ । ସମୁଦ୍ର ପାଖରେ ସି.ଆଇ.ଏସ୍.ଏଫ୍. କଂପ୍ଲେକ୍ସ ମଧ ତାଙ୍କରି ଅବଦାନ ।

ଯାହେଉ, ଶେଷରେ ସି.ଆଇ.ଏସ.ଏଫ. ଟ୍ରେନିଂ ସ୍କୁଲର ଭିତ୍ତିପ୍ରସ୍ତର ସେଇଠି ସ୍ଥାପିତ ହେଲା । ସେତେବେଳେ ଚିନ୍ତାମଣି ପାଣିଗ୍ରାହୀ ଥିଲେ କେନ୍ଦ୍ରରେ ଗୃହ ବିଭାଗର ରାଷ୍ଟ୍ରମନ୍ତ୍ରୀ ଜଣେ ଅମାୟିକ ବ୍ୟକ୍ତିତ୍ୱ । ଜଣେ ପ୍ରଗତିଶୀଳ ଲେଖକ ହିସାବରେ ମୁଁ ତାଙ୍କ ନାଁ ଶୁଣିଥାଏଁ । ପ୍ରଜାତନ୍ତ୍ର ଓ ଝଙ୍କାର ସହିତ ସେ ଜଡ଼ିତ ଥିଲେ ।

୧୯୮୬ ମସିହା ଡିସେମ୍ବର ୧୨ତାରିଖ । ସେହିଦିନ ଗୋଟାଏ ବିରାଟ ଉତ୍ସବାନୁଷ୍ଠାନରେ ମୁଖ୍ୟ ଅତିଥି ଚିନ୍ତାମଣି ପାଣିଗ୍ରାହୀ ତାର ଶୁଭ ପ୍ରଦାନ କରିଥିଲେ । ମଂଚାସୀନ ଥିଲେ ଦୁର୍ଗାମାଧବ ମିଶ୍ର, ଡି.ଆଇ.ଜି. ବିଷ୍ଣୁ ସହାୟ, ପୂର୍ବାଂଚଳ ଆଇ.ଜି., ରାଉରକେଲାର (ସି.ଆଇ.ଏସ.ଏଫ.) ଡି.ଆଇ.ଜି. ବିପିନ ବିହାରୀ ମିଶ୍ର ଏବଂ ଚେଆରମେନ ପ୍ରସନ୍ନ କୁମାର ମିଶ୍ର । ପରେ ଅବଶ୍ୟ ସେହି ଟ୍ରେନିଂ ସେଂଟରଟି ନରାଜ ପାଖକୁ ଉଠି ଯାଇଥିଲା ।

ଏଇଠି ଗୋଟିଏ କଥା ଉଲ୍ଲେଖ କରିବା ମୁଁ ଉଚିତ ମନେ କରୁଛି ।

କାର୍ଯ୍ୟକ୍ରମ ପରେ ଗେଷ୍ଟ ହାଉସରେ ମଧ୍ୟାହ୍ନ ଭୋଜନ ସମୟରେ ଦୁର୍ଗାମାଧବ ମିଶ୍ର ମୋତେ ଚିନ୍ତାମଣି ପାଣିଗ୍ରାହୀଙ୍କୁ ଜଣେ ଲେଖକ ହିସାବରେ ପରିଚୟ କରାଇଦେଲେ । ମୁଁ ସେତେବେଳେ କହିଲି ମୁଁ ଆପଣଙ୍କ 'ପଞ୍ଚମୀ' ବହି ଓ ସେଥିରେ ଥିବା ଆପଣଙ୍କ ଲିଖିତ ମୁଖବନ୍ଧ ପଢ଼ିଛି । ସେ ଆଶ୍ଚର୍ଯ୍ୟ ହେଇ ପଚାରିଲେ ସେ ବହି ଆପଣଙ୍କ ପାଖରେ ଅଛି ? ମୋତେ ଦେବେ ? ମୁଁ ଆପଣଙ୍କୁ ଫେରେଇ ଦେବି ।

ମୁଁ ଖୁସି ହେଇଗଲି । ସଙ୍ଗେ ସଙ୍ଗେ ଘରକୁ ଯାଇ ବହିଟି ଆଣି ତାଙ୍କୁ ଦେଲି ।

'ପଞ୍ଚମୀ' ବିଷୟରେ ଏଠି ଦି'ପଦ କହିବା ଆବଶ୍ୟକ ।

ଚିନ୍ତାମଣିଙ୍କୁ ସେତେବେଳେ ଡଃ ମହତାବ ହିଁ ପ୍ରଜାତନ୍ତ୍ରରେ ରଖେଇଥିଲେ । ଜାନକୀ ପଟ୍ଟନାୟକଙ୍କୁ ମଧ୍ୟ ରଖେଇଥିଲେ । ସେ ସମୟରେ କ୍ଷୁଦ୍ର ଗଳ୍ପର ପ୍ରତିଯୋଗିତାଟିଏ ମଧ୍ୟ ସେ କରେଇଥିଲେ । ଯେଉଁ ପାଞ୍ଚୋଟି ଗଳ୍ପ ସର୍ବୋତ୍କୃଷ୍ଟ ବିବେଚିତ ହୋଇଥିଲା ତା'ର ସଙ୍କଳନର ନାମ ପଞ୍ଚମୀ । ବଉଳା ଗଳ୍ପ ଗୋଟିଏ ଗାଈର କଥା । ଅତ୍ୟନ୍ତ ହୃଦୟସ୍ପର୍ଶୀ । ସେଇ ଗଳ୍ପ ପ୍ରଥମ ହେଇଥିଲା ଏବଂ ସେ ପୁସ୍ତକର ସମ୍ପାଦନା କରିଥିଲେ ଚିନ୍ତାମଣି ପାଣିଗ୍ରାହୀ । ବଡ଼ ପ୍ରଭାବଶାଳୀ ସେ ସମ୍ପାଦକୀୟ ଥିଲା । ପରବର୍ତ୍ତୀ କାଳରେ ଚିନ୍ତାମଣି ପାଣିଗ୍ରାହୀ ମଣିପୁରର ରାଜ୍ୟପାଳ ହେଇଥିଲେ । ୧୯୮୯ରେ ମୁଁ ଆସାମର ବଂଗାଇଗାଓଁ ତୈଳ ବିଶୋଧନାଗାରରେ ଡେପୁଟି କମାଣ୍ଡାଣ୍ଟ ଭାବରେ ଯୋଗ ଦେଲା ପରେ ସେ ମଣିପୁର ଆସିଲେ । ସେତିକିବେଳେ ମଧ୍ୟ ଆଉ ଦୁଇଜଣ ଓଡ଼ିଆ ଉତ୍ତର ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ ରାଜ୍ୟପାଳ ହିସାବରେ ଯୋଗ ଦେଇଥିଲେ । ସୁରେନ୍ଦ୍ର ଦ୍ୱିବେଦୀ ଅରୁଣାଚଳରେ ଓ ଲୋକନାଥ ମିଶ୍ର ଆସାମରେ ।

'ପଞ୍ଚମୀ' ବହିଟି ଅବଶ୍ୟ ମୁଁ ଆଉ ଫେରି ପାଇ ନଥିଲି । ତେବେ ଏମାନଙ୍କ କଥା ପରେ କହିବି । ଟ୍ରେନିଂ ସେଂଟରଟି ସ୍ଥାପିତ ହେଇଗଲା ପରେ ଓ ତାହା ବିଧିବଦ୍ଧ ଭାବେ ଉଦ୍‌ଘାଟିତ ହେଇଗଲା ପରେ ମୁଁ ଟିକିଏ ନିଶ୍ଚିନ୍ତ ହେଇଗଲି । ଗତ ବର୍ଷେ ହେଲା ଏଥିପାଇଁ ଉପର ସ୍ତରରେ ବରାବର କଥା ପଡୁଥିଲା । ଡି.ଜି., ଆଇ.ଜି. ଓ ଡି.ଆଇ.ଜି. ପ୍ରମୁଖ ବାରମ୍ବାର ଭୁବନେଶ୍ୱରର ବିଭିନ୍ନ ସ୍ଥାନ ଦେଖୁଥିଲେ । ମନ ମାନୁ ନଥିଲା । କେତେ ଚର୍ଚ୍ଚା ଆଲୋଚନା ହେଇଛି ।

ଏବେ ତା'ର ଗୋଟାଏ ସମାଧାନ ହେଇଗଲା । ସମସ୍ତେ ବି ଖୁସି । ଅନେକ ଦିନୁ ଚିନ୍ତାଥିଲା ଯେ ଟ୍ରେନିଂ ସେଂଟରଟା ଉଠି ଯିବକି ? ଏବେ ସେ ଦୁଶ୍ଚିନ୍ତା ଗଲା ।

ଟ୍ରେନିଂ ସେଂଟର ସ୍ଥାୟୀ ହେଇ ଯିବାଦ୍ୱାରା ସେଠାକୁ ଜଣେ କମାଂଣ୍ଡାଟ ଆସିଲେ ଏବଂ ତାଙ୍କୁ ପାରାଦୀପ ପୋର୍ଟର ଆଡିସ୍‌ନାଲ ଚାର୍ଜ ଦିଆଗଲା । କିନ୍ତୁ ଯିଏ ଆସିଲେ ଅଳ୍ପ ଦିନ ଭିତରେ ତାଙ୍କ ଚରିତ୍ର ମହମହ ବାସିଲା । ମାତ୍ର କେଇଟା ଦିନ ଭିତରେ ଚେୟାରମେନ ଅତିଷ୍ଠ ହୋଇ ପଡ଼ିଲେ ଏବଂ ଦିଲ୍ଲୀକୁ କହି ତାଙ୍କୁ ବିଦା କଲେ । ଏମାନଙ୍କ ପାଇଁ ଡିପାର୍ଟମେଂଟ ବଦନାମ ହୁଏ । ଖାଲି ପାରାଦ୍ୱୀପ ନୁହେ,ଏ ଭଦ୍ରଲୋକ ଯୋଉଁଠିକି ଯାଇଛନ୍ତି ସେଠି ତାଙ୍କ ଖ୍ୟାତି ଶୀଘ୍ର ଜଣା ପଡ଼ିଯାଏ । ଶେଷରେ ଅବସ୍ଥା ଏମିତି ହେଲା ଯେ କେନ୍ଦ୍ର ସରକାର ମଧ୍ୟ ତାଙ୍କୁ ବିଦା କଲେ ।

# ଅମିତାଭ ବଚ୍ଚନ ଓ ଜୟା ପରି

ଏମିତି ଗୋଟାଏ ଶୀର୍ଷକକୁ ଦେଖି କେହିକେହି ବିସ୍ମିତ ହେବେ । କିନ୍ତୁ ବାସ୍ତବରେ ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ମୁଁ ଆଗରୁ କହିଚି ପାରାଦୀପରେ ମୋତେ ଯୋଉ ଘରଟି ମିଳିଥିଲା ସେଇଟା ଠିକ୍ ସମୁଦ୍ରକୂଳରେ । ବିଜୁବାବୁଙ୍କ ସମୟରେ ତିଆରି ହୋଇଥିବା ଗୋଟିଏ ଛଅମହଲା ଆପାର୍ଟମେଣ୍ଟର ତିନି ମହଲାରେ । ସମୁଦ୍ରକୁ ସାମନା କରିଛି । ସାମନାରେ ପଥର ବନ୍ଧ । ବନ୍ଧ ଦେହରେ ମୁଣ୍ଡ ବାଡ଼େଇ ହେଉଚି ସମୁଦ୍ରର ଢେଉ । ସକାଳର ଦୃଶ୍ୟ ଅତ୍ୟନ୍ତ ମନୋରମ । ସୂର୍ଯ୍ୟ ଉଠେ ମଝି ସମୁଦ୍ରରେ ଗୋଲାକାର ଲାଲ ପିଣ୍ଡଟିଏ ପରି । ଧୀରେ ଅତି ଧୀରେ । ଠିକ୍ ସେତିକିବେଳେ ପଥର ବନ୍ଧରୁ ୧୦/୧୫ ଫୁଟ୍ ଦୂରରେ ପାଣି ଭିତରେ ଖେଳ ଆରମ୍ଭ ହୁଏ ଡଲଫିନମାନଙ୍କର । ସିଧା ଉପରକୁ ଡିଆଁ ମାରନ୍ତି ଓ ପୁଣି ତଳକୁ ଖସନ୍ତି । ଗୋଟିଏ ଅଧେ ନୁହେଁ ଏକାଥରକେ ୨୦/୩୦ ବା ତା'ଠାରୁ ବେଶୀ । ପଥରବନ୍ଧ ଧାରେ ଧାରେ ପଚିଶ ତିରିଶ ଏକର ଜାଗାରେ ଲଗାତାର ଏ ଖେଳ ଚାଲେ ପ୍ରାୟ ସକାଳ ୮/୯ ଯାଏ । ବାଲକୋନିରେ ବସି ଏ ଦୃଶ୍ୟ ଆମେ ପ୍ରାୟ ଦେଖୁଁ । ସନ୍ଧ୍ୟାବେଳେ କାହିଁକି କେଜାଣି ଏ ଦୃଶ୍ୟ ଦେଖିବାକୁ ମିଳେନା । କିମ୍ବା ହୁଏତ ଏ ଦୃଶ୍ୟ ମୁଁ ଦେଖିବାର ସୁଯୋଗ ପାଇ ନଥିବି ।

ଦିନେ ହଠାତ୍ ଗୋଟାଏ ଆସନ୍ନ ସନ୍ଧ୍ୟାରେ ଦେଖିଲି ଯୁବକ ଯୁବତୀର ଯୋଡ଼ିଟିଏ ସେଇ ପଥରବନ୍ଧ ଉପରେ ଓ ମୋ ଘର ସାମନାରେ ଚାଲୁ ଚାଲୁ ଗୋଟାଉଛନ୍ତି ବାଲିକଙ୍କଡ଼ା । ସମୁଦ୍ରର ଢେ଼ଉ ଯେତେବେଳେ ପଥରବନ୍ଧରେ ଧକ୍କାଖାଇ ପାଣିବନ୍ଧ ଉପରକୁ ଛିଟିକି ପଡୁଛି ସେତେବେଳେ ସେମାନେ ସାମାନ୍ୟ ପାଟିକରି ବନ୍ଧରୁ ତଳକୁ ଡେଉଁଛନ୍ତି । ଆନନ୍ଦରେ କୁରୁଳି ଉଠୁଛନ୍ତି ।

ବଡ଼ ସତର୍କତାର ସହିତ ଲକ୍ଷ୍ୟକଲି । ଯୋଡ଼ିକୁ ଦେଖିଲା ଭଳିଆ ମନେହେଉଛି । ସେମାନେ ନା ଆଉ କିଏ ?

ସେମାନେ ଥିଲେ ଯୌବନର ମଧ୍ୟ ଭାଗରେ । ଚାଳିଶ ଟପି ଥିବକି ନାହିଁ । ସୁନ୍ଦର ସ୍ୱାସ୍ଥ୍ୟ । ଉଚ୍ଚତାରେ ଯୁବକଟି ଯୁବତୀ ଅପେକ୍ଷା ସାମାନ୍ୟ ବେଶୀ । ଚିତ୍ରଟିଏ ମନକୁ ଆସିଲା । ଅମିତାଭ ବଚ୍ଚନ ଓ ଜୟା ଭାଦୁଡ଼ି । ବାକିସବୁ ସୁନ୍ଦରତାରେ ସେମାନେ ସମାନ । ଆଖି ଲାଖି ହୋଇଯାଏ ।

କିଏ ଏମାନେ ? କେଉଠି ରହୁଚନ୍ତି ? ଏଇ ପାଖରେ ? ମୁଁ ଓହ୍ଲେଇ ଗଲି ତଳକୁ । ବାଲି ଉପରକୁ । ବନ୍ଧ ଉପରକୁ । ମୋତେ ଦେଖି ସେମାନେ ଆଗେଇ ଆସିଲେ ।

ଆରେ! ଏମାନେ ତ ମୋର ଅତି ପ୍ରିୟ । ପରିଚିତ । ସୁବୋଧ ଦାସ ଓ ସାରଦା । ମୁଁ ଏମାନଙ୍କୁ ଜାଣିଥିଲି ରାଉରକେଲାରୁ । ସୁବୋଧ ବାବୁ ରାଉରକେଲା ଷ୍ଟିଲ ପ୍ଲାଂଟ୍‌ରେ ଲେବର ଡିପାର୍ଟମେଂଟରେ ନୂଆ କରି ଯୋଗଦେଇଥିଲେ ଏବଂ ଏ କୟା ଭାଦୁଡ଼ି ପରି ଦେଖାଯାଉଥିବା ଝିଅଟା ସାରଦା । ସାରଦା ସାମାନ୍ୟ ହସି ଆଗେଇ ଆସିଲା ଓ ମୁଣ୍ଡ ନୁଆଁଇ ନମସ୍କାର କଲା । ସାରଦାର ଭାଇ ରାଉରକେଲାର ମାକ୍ସମୁଲାର ଭବନ ଲାଇବ୍ରେରୀରେ ଲାଇବ୍ରେରୀଆନ । ମୋର ତାଙ୍କ ସହିତ ସାମାନ୍ୟ ପରିଚୟ ସେଇ ଲାଇବ୍ରେରୀ ମାଧ୍ୟମରେ । ସାରଦା ମଝିରେ ମଝିରେ ସେଠିକୁ ଆସେ । ତା' ଭାଇର ବନ୍ଧୁ ହିସାବରେ ସେଇ ମାନ୍ୟତା ସେ ମୋତେ ଦିଏ ।

ସୁବୋଧ ବାବୁ କହିଲେ ଆପଣଙ୍କ ଆସିବା କଥା ଆମେ ଜାଣିଥିଲୁ କିନ୍ତୁ ଦେଖା ହେବାର ସୁଯୋଗ ନଥିଲା । ସେମାନଙ୍କୁ ଆମେ ପ୍ରଥମ ପରିଚିତ ବନ୍ଧୁ ହିସାବରେ ଗ୍ରହଣ କଲୁ ।

ମୁଁ କହିଲି ହେଇ ଏଇଟା ମୋର ଫ୍ଲାଟ ।

ସେ କହିଲେ ଆ, ସେଇଟା ଆମର । ସାରଦା ସେଇ ଦିନଠୁ ମୋତେ ସିଧା ସଳଖ ଭାଇନା ଡାକିବା ଆରମ୍ଭ କଲା । ତାପରେ ଆମର ସମ୍ପର୍କର ଦୂରତ୍ୱ କ୍ରମଶଃ ଲିଭି ଲିଭି ଆସିଲା

ବେଶୀ ଦିନ ନୁହେଁ । ହଠାତ୍ ସୁବୋଧ ବାବୁଙ୍କର ପ୍ରମୋଶନରେ ଟ୍ରାନ୍ସଫର ହେଲା । ଗୋଆ ପୋର୍ଟକୁ । ଏଇଠି ମୁଁ ଭାବୁଥିଲି ଆମ ସମ୍ପର୍କ ଆଉ ଯୋଡ଼ି ହେବାର ନାହିଁ । କିନ୍ତୁ ସେ କଥା ହେଲାନାହିଁ ।

## ଅପରାଧ ନିୟନ୍ତ୍ରଣ

ବିଧିବଦ୍ଧ ଭାବେ କେହି କମାଂଣ୍ଡାଟ ନଥିବା ବେଳେ ମୋ ଉପରେ ସ୍ୱାଭାବିକ ଭାବେ ଚାପ ବେଶୀ ପଡୁଥାଏ । ଅନ୍ୟ ଦିଗରେ ପୋର୍ଟ ଭିତରେ ଅପରାଧ ବଢୁଥାଏ, ବିଶେଷ କରି ବୈଦ୍ୟୁତିକ ସରଞ୍ଜାମର ଚୋରି ପୋର୍ଟ କର୍ମକର୍ତ୍ତାଙ୍କୁ ଯେତିକି ବ୍ୟଥିତ କରୁଥାଏ କ୍ରେନ୍‌ରୁ ବୈଦ୍ୟୁତିକ ସରଞ୍ଜାମ ଚୋରି ହେଲେ କ୍ରେନ ଅଚଳହେବ ଏବଂ କ୍ରେନ ଅଚଳହେଲେ ଜାହାଜରେ ମାଲ ବୋଝେଇ ଓ ଉତ୍ତାରିବା ଡେରିହେବ । ଏଇଟାହିଁ ପୋର୍ଟର ପ୍ରଥମ ଓ ପ୍ରଧାନ କାମ । ଯାହା ଡେରି ହେଲେ ପୋର୍ଟର କ୍ଷତି । ଏ କାମ ସୀମା ବାହାରକୁ ଗଲେ ବେଳେବେଳେ ଜାହାଜର ମାଲିକ ପୋର୍ଟକୁ ବାସନ୍ଦ କରିଦିଏ । ଫଳରେ ପୋର୍ଟ ଅଚଳ ହେଇଯାଏ ।

ଚେଆରମେନ ଓ ଟ୍ରାଫିକ ମେନେଜର ଉଦ୍‌ବେଗ ପ୍ରକାଶ କଲେ ।

ମୁଁ ଗୋଟାଏ ସ୍ୱତନ୍ତ୍ର ଟିମ ନିଯୁକ୍ତ କଲି । ସେମାନଙ୍କୁ ରାତିରେ ଡ୍ୟୁଟିରେ ଲଗାଇ ଦେଇ ମୁଁ ନିଜେ କଂଟ୍ରୋଲ ରୁମରେ ବସି ରହିଲି । ରାତି ୨ଟାରେ ମୁଁ ଖବର ପାଇଲି ଗୋଟିଏ ଲୋକକୁ ଧରା ହେଇଛି । ସେ ସରଞ୍ଜାମ କ୍ରେନରୁ ଖୋଲିଲାବେଳେ ଧରା ହେଇଥିଲା ଏବଂ ତା' ପାଖରେ କିଛି ସରଞ୍ଜାମ ଥିଲା ।

ପଚାରିବାରୁ ଲୋକଟି କହିଲା ପୋର୍ଟ ବାହାରେ ଥିବା ଇଞ୍ଜିନିଅରିଂ କାରଖାନାରେ କାମକରେ । ସେଇ କାରଖାନା ପୋର୍ଟ ଭିତରେ ଥିବା କ୍ରେନ ଓ ଅନ୍ୟାନ୍ୟ ମେସିନର ମରାମତି କାମକରେ ।

ସେ କାରଖାନାଟି ଓଡ଼ିଶାର ଜଣେ ରାଜନେତାଙ୍କ ଭଣଜାର ବୋଲି ସମସ୍ତେ ଜାଣିଥିଲେ । ଲୋକଟି କିଛି ଚୋରି ଜିନିଷ ସେ କାରଖାନାରୁ ମିଳି ପାରିବ ବୋଲି କହିବାରୁ ଆମେ ତାକୁ ନେଇ ସଙ୍ଗେ ସଙ୍ଗେ ସେଠାକୁ ଗଲୁ ଓ କିଛି ମାଲ ସେଠୁ ଜବତ କଲୁ । ଭୋର ବେଳକୁ ସେ ଲୋକମାନଙ୍କୁ ଓ ଜବତ ମାଲ ସବୁ ଥାନାରେ ଡିପୋଜିଟ ଦେଲୁଁ । ଆମ କାମ ସେତିକିରେ ଶେଷ । ପୋଲିସ ସେମାନଙ୍କୁ ଜଗତସିଂପୁର କୋର୍ଟକୁ ପଠେଇ ଦେଲା । ସେମାନେ ସେଠୁ ଜେଲକୁ ଗଲେ ।

ଠିକ୍ ତାର ଦୁଇଦିନ ପରେ ନୂଆ କମାଂଣ୍ଡାଟ୍ ପାରାଦୀପରେ ଜଏନ କଲେ । ସେ ଥିଲେ ଓଡ଼ିଶା କେଡରର ଅଫିସର । ପାରାଦୀପରେ ଜଏନ କରିବାର ବୋଧେ ଦିନକ ପରେ ମୁଁ ତାଙ୍କ ଅଫିସରେ ଥିବା ବେଳେ କେହି ଜଣେ ତାଙ୍କଠାକୁ ଟେଲିଫୋନ କଲେ । ଫୋନରେ ମୋ ନାମରେ ଅଭିଯୋଗ କଲେ ଯେ ମୁଁ ମିଛ କେସ୍‌ରେ ତାଙ୍କ ଲୋକଙ୍କୁ ଫସାଇଛି । କିନ୍ତୁ ସେ ଯେତେବେଳେ ତାଙ୍କ ନିଜର ପରିଚୟ ଦେଲେ ମୁଁ ଦେଖିଲି କମାଂଣ୍ଡାଟ୍ ଟିକିଏ ଅପ୍ରସ୍ତୁତ ହେଲା ଭଳିଆ ଲାଗିଲେ ।

ଟେଲିଫୋନ ରଖି ସେ ଯେତେବେଳେ ମୋତେ ପଚାରିଲେ ସି.ଆଇ.ଏସ.ଏଫ. କେମିତି ପୋର୍ଟ ବାହାରକୁ ଯାଇ ସର୍ଚ୍ଚ କଲା, ମୁଁ କହିଲି ଏସବୁ ଆମ କ୍ଷମତା ଭିତରେ । ସେ କହିଲେ, 'ଠିକ୍‌ଅଛି । ୟୁ ହେଭ୍ ଟୁ ଏନ୍‌ସାର ଇନ୍ ଦି କୋର୍ଟ ଅଫ୍ ଲ' । ସେତେବେଳକୁ ସେମାନଙ୍କ ଜାମିନ ଜଗତସିଂହପୁର କୋର୍ଟରେ ପ୍ରତ୍ୟାଖାନ ହେଇ ସାରିଥାଏ । ଘଟଣାଟା ସମଗ୍ର ଅଂଚଳରେ ଚହଳ ସୃଷ୍ଟି କଲା ଏଇଥି ପାଇଁ ଯେ ଏତେ ବଡ଼ ଲୋକର କମ୍ପାନୀର ଲୋକମାନେ ଚୋରି କାମରେ ଲିପ୍ତଥିଲେ । ସେମାନଙ୍କୁ ପୋଲିସ ନୁହେଁ ସି.ଆଇ.ଏସ.ଏଫ. ଧରି ଜେଲରେ ଭର୍ତି କରିଦେଲା । ଆଉ ଗୋଟିଏ କଥା ମଧ୍ୟ ଉଠିଲା ଯେ ପୋଲିସ ପରି ସି.ଆଇ.ଏସ.ଏଫ. ମଧ୍ୟ ସମ ପରିମାଣରେ କ୍ଷମତାର ଅଧିକାରୀ । ଏ ସବୁଥିଲା ଲୋକ ମୁଖରେ ।

ମୁଁ କିନ୍ତୁ ଜାଣେ ଏଥିରେ ନୂଆ କିଛି ନଥିଲା । ଚୋର ଧରିବା ବ୍ୟାପାରରେ ଏହା ପ୍ରାଇଭେଟ ମଣିଷର ଯେତିକି କ୍ଷମତା ତା'ଠୁ ବେଶୀ ପ୍ରୟୋଗ କରାଯାଇନି । କି 'ଲ ଅଫ୍ ଏଭିଡେନସ'ରେ ଥିବା ନିୟମର ମଧ୍ୟ ଉଲ୍ଲଘଂନ କରାଯାଇନି ।

ଏ ଘଟଣାଟି କିନ୍ତୁ ଭଲ ପବ୍ଲିସିଟି ପାଇଥିଲା ଏବଂ ସେଇଟା ହିଁ ସି.ଆଇ.ଏସ.ଏଫ.ର ସମ୍ମାନକୁ ବଢ଼େଇ ଦେଇଥିଲା । କାହିଁକି କେଜାଣି କମାଂଣ୍ଡାଟଙ୍କୁ ଏ କଥାଟା ଭଲ ଲାଗି ନଥିଲା ।

ସବୁଠି ସବୁ କ୍ଷେତ୍ରରେ ଏଇ ପ୍ରକାର ଭଲ କାମଟିଏ ହେଇଥିଲେ ତାହା ୟୁନିଟ ପାଇଁ ପ୍ରଶଂସା ଆଣି ଦେଇଥାଏ । ସେ କ୍ଷେତ୍ରରେ ୟୁନିଟ ହେଡ୍‌ର କର୍ତବ୍ୟ ହେଉଛି ସେହି କର୍ମଚାରୀ ବା କର୍ମଚାରୀମାନଙ୍କୁ ପ୍ରଶଂସା ପତ୍ର ଦେବା ଯାହା ତାଙ୍କ ସର୍ଭିସ ବୁକରେ ସ୍ଥାନିତ ହେବ । ପରେ ତାହା ତାଙ୍କ ପ୍ରମୋଶନ ପାଇଁ ସାହାଯ୍ୟ କରେ ।

ଘଟଣାର ପରେ ପରେ ପ୍ରାୟ ମାସକ ଭିତରେ ଡି.ଜି. ପାରାଦୀପ ଆସିଥିଲେ ଏବଂ ସେତେବେଳେ ଡି.ଆଇ.ଜି. ମଧ୍ୟ ଆସିଥିଲେ । ସେତେବେଳେ ମଧ୍ୟ ଏ ଘଟଣା ସମସ୍ତଙ୍କ ମୁହଁରେ ଥିଲା । କିନ୍ତୁ କମାଂଣ୍ଡାଟ ଏ କ୍ଷେତ୍ରରେ ସମ୍ପୂର୍ଣ୍ଣ ନୀରବ ଯାହାକୁ ମୋଟେ ସ୍ୱାଭାବିକ ବୋଲି କୁହାଯାଇ ପାରିବନି । ବରଂ ଗୋଟାଏ ଉଦ୍ଦେଶ୍ୟ ମୂଳକ ଓମିସନ ବୋଲି କହିହେବ । ଭଲକାମ ଓ ଖରାପ କାମକୁ ଯଥାଯଥ ଭାବରେ ରେକର୍ଡ଼ରେ ରଖିବା ପ୍ରତ୍ୟେକ ୟୁନିଟ କମାଣ୍ଡରର କର୍ତ୍ତବ୍ୟ ।

## ମୋର ରାଶିଚକ୍ର ଖରାପ ପଡ଼ିଲା ?

ମୁଁ ରାଶିଚକ୍ର କଥା କହିବା ଅର୍ଥ ହେଉଛି ଯଦିଓ ମୁଁ ବ୍ୟକ୍ତିଗତ ଭାବରେ ଏଥିରେ ମୋଟେ ବିଶ୍ୱାସ କରେ ନାହିଁ ତଥାପି ସେତେବେଳେ ଯେମିତି ଅସୁବିଧା ସବୁ ମୋ ପାଇଁ ସୃଷ୍ଟି ହେଲା ସେଥିରେ ରାଶିଚକ୍ର କଥା ମନକୁ ଆସିବା ସ୍ୱାଭାବିକ । ତା' ସତ୍ତ୍ୱେ ବ୍ୟକ୍ତିଗତ ଜୀବନରେ କେତେଟା କାମ ମୋତେ ସନ୍ତୋଷ ଦେଇଥିଲା ।

ରୁମି ସେଇ ପାରାଦୀପରେ ବି.ଏ.(ଅନର୍ସ)ନେଇ ପାସ କଲା । ତାକୁ ଏମ.ଏ. ପଢ଼ାଇବା ମୋର ଇଚ୍ଛା । ତା'ର ମଧ୍ୟ ସେଇଇଚ୍ଛା । ଲୁଲୁର ପି.ଏଚ୍.ଡି. କାମ ସରିବା ଉପରେ । ସେ ଏବେ ତା' ନିଜକାମ ଖୋଜି ନେଇପାରିବ । ସୁମି ମୋ ପାଖରେ ଥାଏ ତାର ପ୍ରଥମ ଡେଲିଭାରି ପାରାଦୀପ ପୋର୍ଟ ହସପିଟାଲରେ ଭଲରେ ହୋଇଗଲା । ତା ଝିଅ ଚିକୁର ଜନ୍ମ ସେଇଠି ।

ଡି.ଜି.ଙ୍କ ଘର ତିଆରି କାମ ପ୍ରାୟ ସରିଥାଏ । କଟକରେ ତାଙ୍କ ଘରଟା ଠିକ୍ ପଦାରବିନ୍ଦ ମହାପାତ୍ର ଓ ମନୋରମା ମହାପାତ୍ରଙ୍କ ଘରର ପାଖ ପ୍ଲଟ । ପଦାରବିନ୍ଦଙ୍କ

ଅକ୍ଳାନ୍ତ ପରିଶ୍ରମକୁ ଭୁଲି ହେବ ନାହିଁ । ମୁଁ ପାରାଦୀପରୁ ଆସି କେତେ ବା କାମ ଦେଖି ପାରିବି । ତାଙ୍କ ଘର ପ୍ରତିଷ୍ଠା ସରିଲା । ମୁଁ ଏକ ପ୍ରକାର ନିଶ୍ଚିନ୍ତ ହେଇଗଲି ।

ୟୁନିଟ କାମରେ ମୁଁ ଅସ୍ୱସ୍ତି ବୋଧ କରୁଥିଲି । କମାଂଣ୍ଡାଟ ବୋଧେ ମୋତେ ବିଶ୍ୱାସକୁ ନେଉ ନାହାନ୍ତି । ଥରେ ତାଙ୍କ ସହିତ କେମ୍ପ ଏରେଞ୍ଜମେଂଟ୍ ବିଷୟରେ ଆଲୋଚନା ହେଉଥିଲା ବେଳେ ସେ କହିଲେ ଡିଜିଙ୍କ କେମ୍ପ ଏରେଞ୍ଜମେଂଟ୍‌ରେ ଯାହା ଯାହା ପ୍ରକୃତ ଖର୍ଚ୍ଚ ହେଇଛି ତା'ର ହିସାବ ଦିଅନ୍ତୁ । ମୁଁ କହିଲି ମୁଁ ତ ଦେଇଚି । ଖର୍ଚ୍ଚ ତ ମୁଁ ନିଜେ କରି ନାହିଁ । ମୁଁ ଯୋଉ ଷ୍ଟାଫମାନଙ୍କୁ ସେ କାମରେ ରଖିଥିଲି ସେମାନେ ଯାହା ଦେଇଚନ୍ତି । ତାର ସମସ୍ତ ଖର୍ଚ୍ଚର ହିସାବ ଦେଇଚି ।

କେମ୍ପ ଆରେଞ୍ଜମେଂଟ୍ କେବଳ ଡି.ଜି.ଙ୍କ ନଥିଲା । ସେଥିରେ ବହୁ ଅଫିସର ଥିଲେ । ସେମାନେ ବିଭିନ୍ନ ଜାଗାକୁ ମଧ୍ୟ ଯାଇଛନ୍ତି ।

କିନ୍ତୁ ଏବେ ପୁଣି ତା'ର ଆବଶ୍ୟକତା କ'ଣ ? ମୋର ମଧ୍ୟ ଧାରଣା ହେଲା କମାଂଣ୍ଡାଟ ଭଲ ଉଦ୍ଦେଶ୍ୟରେ ଏସବୁ ମାଗୁ ନାହାନ୍ତି । ସିନିଅର ଅଫିସରଙ୍କୁ ବ୍ଲେକମେଲ କରିବାକୁ ଚାହାନ୍ତି ? ନା ଜୁନିଅର ଷ୍ଟାଫମାନେ ବାଜେଖର୍ଚ୍ଚ କରିଛନ୍ତି ବୋଲି ତାଙ୍କ ବେକରେ ଫାଶି ଲଗାଇବାକୁ ଚାହାନ୍ତି ?

ତାପରେ ଏ ପ୍ରଶ୍ନ ଆଉ ଉଠିବା କଥା ନୁହେଁ । କିନ୍ତୁ ତାଙ୍କ ମନରେ ଯେ ଗୋଟାଏ ସନ୍ଦେହ ରହିଛି ଏକଥା ବୁଝି ହେଉଥାଏ । ମୁଁ ଏ ଯାଏ ସିନିଅର ଆସିଷ୍ଟାଂଟ୍ କମାଂଣ୍ଡାଟ୍ ଏସି (ପ୍ରଶାସନ) ହିସାବରେ କାମ କରୁଥିଲି । ଦ୍ୱିତୀୟ ଆସିଷ୍ଟାଂଟ୍ କମାଂଣ୍ଡାଟ୍ ମିଃ ପ୍ରଭୁ ପୋର୍ଟ ସିକ୍ୟୁରିଟି କାମ ଦେଖୁଥିଲେ । ହଠାତ୍ ଆମର ପଦ ବଦଳିଲା । କମାଣ୍ଡାଟ୍ ତାକୁ ବଦଳାଇଲେ । ସାଧାରଣ ନିୟମ ଅନୁସାରେ ଯଦିଓ ଏପରି ହେବା କଥା ନୁହେଁ ତଥାପି ବଦଳ ହେଲା । ମୋର ଅଫିସ ଚେଆରମେନଙ୍କ ଅଫିସ ପାଖରେ ହେଲା । ଏଥିରୁ କମାଂଣ୍ଡାଟ୍‌ଙ୍କ ମାନସିକତା ବୁଝିବାକୁ ଅସୁବିଧା ହେଲା ନାହିଁ ।

ଏଇ ସମୟ ବେଳକୁ ମୋର ସ୍ପାଇନାଲ ପ୍ରବଲେମ ବାହାରିଲା । ହଠାତ୍ ମୋର ମେରୁଦଣ୍ଡରେ ଯନ୍ତ୍ରଣା ଦେଖାଦେଲା । ବେଶୀ ସମୟ ଚେଆରରେ ବସି ହେଲାନାହିଁ କି ଠିଆ ମଧ୍ୟ ହେଇ ପାରିଲିନି । ଠିଆ ହେଲାବେଳେ ବଙ୍କେଇ ଗଲି ।

ପୋର୍ଟ ହସପିଟାଲକୁ ଗଲି । ସେଠି ସେମାନେ ମୋତେ ଟ୍ରାକସନ ଲଗାଇ ରଖିଦେଲେ । ଏହା ଭୀଷଣ ଯନ୍ତ୍ରଣା ଦାୟକ । ଏ ବେମାରି ମୋର ପୂର୍ବରୁ ଥିଲା । ଗୋଟିଏ ସ୍କୁଟର ଦୁର୍ଘଟଣାରୁ ହେଇଥିଲା ।

# ଚରମ ଅମାନବିକତା

ମୁଁ ହସପିଟାଲରେ ୬/୭ ଦିନ ରହିଲି । ଦୈନିକ ଦୁଇଥର ଲେଖାଏଁ ଟ୍ରାକସନ ଦିଆ ଯାଉଥାଏ । କେତେକ କ୍ଷେତ୍ରରେ ବାହାରୁ ଔଷଧ କିଣା ଯାଏ । କିନ୍ତୁ କିଏ ଆଣିବ ? ମୋ ଘର ମଧ୍ୟ ହସପିଟାଲଠାରୁ ଦଶ କିଲୋମିଟର ଦୂର । ମୋର ଖାଇବା କିଏ ଆଣିବ ?ମୁଁ ତ ସବୁ ବେଳେ ବିଛଣାରେ । ବିଛଣାରେ ମଧ୍ୟ ଟ୍ରାକସନ ଲାଗିଥାଏ । ମୁଁ ଥରେ କମାଣ୍ଡାଣ୍ଟ ପାଖକୁ ଖବର ପଠାଇଲି ମୋତେ ଅନ୍ୟ ହସପିଟାଲକୁ ରେଫର କରାନ୍ତୁ ଏବଂ ମୋ ପାଖରେ ଜଣେ  ଲୋକ ଦିଅନ୍ତୁ । ସେ କିଛି କଲେ ନାହିଁ । ଯୋଉ ସବ୍‌ଇନ୍ସପେକ୍ଟର ମୋ ପାଖରୁ ତାଙ୍କ ପାଖକୁ ଖବର ନେଇ ଯାଇଥିଲା ସେ ଆସି କହିଲା ସେ କହିଲେ ସେ ତ ହସପିଟାଲରେ ଅଛନ୍ତି । ଟ୍ରିଟମେଂଟ ତ ଚାଲିଛି । ଆଉ ଅଧିକ ମୁଁ କଅଣ କରି ପାରିବି ।

ମୁଁ ଦୁଃଖରେ ଭାଙ୍ଗି ପଡ଼ିଲି । କାହାକୁ ଏ କଥା କହିବି ? ଦିନେ ଚିଫ୍ ମେଡିକେଲ ଅଫିସର ଆସି ପଚାରିଲେ ଆପଣଙ୍କୁ ଆମେ କଟକ ହସପିଟାଲକୁ ରେଫର କରିବୁ; କିନ୍ତୁ ଆପଣ ଯିବେ କିମିତି ? କିଏ ନେଇ ଯିବ ?

ମୁଁ ତାଙ୍କୁ କହିଲି ମୋତେ ଆପଣ ରାଉରକେଲାର ଆଇ.ଜି.ଏଚ.କୁ ପଠାନ୍ତୁ । ସେଠି ମୋର ଟ୍ରିଟମେଂଟ୍ ଭଲରେ ହେଇ ପାରିବ ବୋଲି ଭାବୁଛି । ତାହା ହିଁ ହେଲା । ଏକୁଟିଆ ମୁଁ ରାଉରକେଲା ଗଲି । ପାରାଦୀପରୁ କଟକ ବସରେ । ସେଠୁ ବିନା ରିଜରଭେସନରେ ଏକୁଟିଆ ଟିକଟ କାଟି ଉତ୍କଳ ଏକ୍ସପ୍ରେସରେ ଗଲି ରାଉରକେଲା ।

ନିୟମ ଅନୁସାରେ ୟୁନିଟ ତରଫରୁ ଜଣେ ଷ୍ଟାଫ ବେମାରରେ ପଡ଼ିଥିଲା ବେଳେ ତାକୁ ସହାୟତା ଯୋଗାଇଦେବା କଥା । ଏପରିକି ଜଣେ ଷ୍ଟାଫର ପରିବାର ଗାଁରେ ଥିଲାବେଳେ ସେଠି ଯଦି ଅସୁବିଧା ହୁଏ ଜମିବାଡ଼ି ସଂକ୍ରାନ୍ତୀୟ ମଧ୍ୟ, ୟୁନିଟ କମାଣ୍ଡର ସୈନିକ ସଭାରେ ଏ ଖବର ପାଇଲେ ତାକୁ ଜିଲା ପ୍ରଶାସନକୁ ଲେଖି ତା'ର ସମାଧାନ କରେଇବା କଥା । ଏସବୁ ଏକ ସାଧାରଣ ନିୟମ ।

ଜଣେ ଯଦି ବେମାର ପଡ଼ିଥାଏ ତାକୁ ରକ୍ତଦାନ କରିବା ପ୍ରଥମ କାମ । ମୁଁ ନିଜେ ଏକଥା କେତେ ଥର କରିଚି ।

ଷ୍ଟାଫଙ୍କ ୱେଲଫେଆର କାମ ଦେଖିବା ୟୁନିଟ୍ ହେଡଙ୍କର ପ୍ରଥମ ଓ ପ୍ରଧାନ କାମ । ମୋ କ୍ଷେତ୍ରରେ ସେ କଥା ହେଲା ନାହିଁ । ଅନ୍ୟ କୋଉଠି ଏପରି ହେଉ ନଥିବ । ଏହାଯେ ଖାଲି ନିୟମ ବହିର୍ଭୂତ କାମ ହେଲା ତା ନୁହେଁ ତାକୁ ଇଚ୍ଛାକୃତ ମଧ୍ୟ କହି ହେବ ।

ସେ ଯେ ଜଣେ ସାଧୁ ଓ ସଚ୍ଚୋଟ ବ୍ୟକ୍ତି ଏ କଥା ସମସ୍ତେ ସ୍ୱୀକାର କରିବେ । ଆର୍ଥିକ ଅସଙ୍ଗତିକୁ ସେ ସହ୍ୟ କରୁ ନଥିଲେ । ତେବେ ଏ କ୍ଷେତ୍ରରେ ପାରାଦୀପ

ସି.ଆଇ.ଏସ.ଏଫ. କମ୍ପ୍ଲେକ୍ସରେ ଯୋଉ ମନ୍ଦିର ତିଆରି ହେଲା ତା'ର ବୈଧତା ବିଷୟରେ ସେ ନିଶ୍ଚୟ ଅନୁଧ୍ୟାନ କରିଥିବେ । ତା'ର ଆର୍ଥିକ ଦିଗ ମଧ୍ୟ ଯଥା ଚାନ୍ଦା ସଂଗ୍ରହ, ବିଲଡିଂ ମେଟେରିଏଲ ସଂଗ୍ରହ କଥା ମଧ୍ୟ ଜାଣିଥିବେ । ମନ୍ଦିରର ଅସମାପ୍ତ କାମ ତାଙ୍କରି ସମୟରେ ଶେଷ ହେଇଥିଲା ।

ରାଉରକେଲା ଆଇ.ଜି.ଏଚ.ରେ ମୋର 'ମାଇଲୋଗ୍ରାମ' ଟେଷ୍ଟ ହେଇଥିଲା । ସେଥିରୁ ମୋ ଅପରେସନ ଯେ ଜରୁରୀ ଆବଶ୍ୟକ ତାହା ଜଣାପଡ଼ିଲା । ତାକୁ ସେମାନେ 'ଡିସ୍କ ପ୍ରୋଲପ୍ସ' ବୋଲି କହିଲେ । ମାଇଲୋଗ୍ରାମରେ ପ୍ରବଳ ବାନ୍ତି ହୁଏ । ଏହା ଏକ ଭୀଷଣ ଯନ୍ତ୍ରଣା ଦାୟକ ଟେଷ୍ଟ । ଏ ଅବସ୍ଥାରେ ମୁଁ ମୋ ଡିପାର୍ଟମେଂଟ ତରଫରୁ କୌଣସି ସାହାଯ୍ୟ ପାଇ ନଥିଲି । ବରଂ ମୁଁ କାଳେ ମିଛରେ ବାହାନା କରୁଥିବି ତାହା ଜାଣିବା ପାଇଁ ରାଉରକେଲା ୟୁନିଟରୁ ଜଣକୁ ମୋଠାକୁ ପଠାଇଥିଲେ । ସେ ଦେଖିଥିବ ମୁଁ କେମିତି ଘୋର ଯନ୍ତ୍ରଣାରେ ଛଟପଟ ହେଉଥିଲି ।

ରାଉରକେଲାରେ ମଧ୍ୟ ମୋର ଚିକିତ୍ସା ଠିକ୍ ହେଇ ପାରିଲା ନାହିଁ । ପୁଣି କଟକ ଆସିଲି । ସେଠି ତେଜେଶ୍ୱର ରାଓ ହିଁ ପ୍ରଥମେ କହିଲେ କନଜରଭେଟିବ ମେଥର୍ଡ଼ରେ ପ୍ରଥମେ ଚେଷ୍ଟା କରିବା । ସେ ମୋର ପୁରା ଅଣ୍ଟାଟା ପ୍ଲାଷ୍ଟର କରିଦେଲେ । ତାପରେ କହିଲେ ତିନି ସପ୍ତାହ ସମ୍ପୂର୍ଣ୍ଣ ବିଶ୍ରାମ । ତା'ପରେ ଆସିବେ ।

ଏହି ସମୟ ବେଳକୁ ମୋର ଅନ୍ୟ ୟୁନିଟକୁ ବଦଳି ଅର୍ଡର ଆସିଥିଲା । ଗତ ଦୁଇବର୍ଷ ଭିତରେ ଅଜସ୍ର ଖଟିଛି । ଯେମିତି କାମ କରିଚି ସେଥିରେ ମୋର ଆତ୍ମ ସନ୍ତୋଷ ଅଛି । ଯଦି କିଛି ପ୍ରଶଂସା ପାଇବା କଥା ତାହା ପାଇଚି । ଆଉ ଯଦି ନିନ୍ଦା ପାଇବାର ଥାଏ ତାହା ଗ୍ରହଣ କରି ନେବି ।

ଏଇ ସମୟରେ ମୁଁ ଗୋଟାଏ ପାଖ ୟୁନିଟକୁ ବଦଳିପାଇଁ ଡି.ଆଇ.ଜି.ଙ୍କୁ କହିଥିଲି । ସେ ମୋତେ ଏଫ.ସି.ଆଇ. ତାଳଚେର ୟୁନିଟକୁ ବଦଳି କରାଇ ଥିଲେ । ସେଠୁ ବନ୍ଧୁ ପ୍ରଦୋଷ ପଣ୍ଡାଙ୍କୁ ନାଲକୋ ୟୁନିଟକୁ ବଦଳି କରାଇଥିଲେ । ମୋ ମନ ଏଥିରେ ମାନିଲା ନାହିଁ । କାରଣ ତାଳଚେରରେ ମୋର ଟ୍ରିଟମେଂଟର ସୁବିଧା ନାହିଁ । ଏକଥା ପୁଣି ଥରେ କହିବାରୁ ଡି.ଆଇ.ଜି. ସେ ଅର୍ଡର କେନସେଲ କରି ମୋତେ ପୁଣି ନାଲକୋ, ଅନୁଗୋଳକୁ ବଦଳି କରାଇଲେ ।

ଏଥିରେ ମୋର ବନ୍ଧୁ ପ୍ରଦୋଷ ଅବଶ୍ୟ କ୍ଷୁବ୍ଧ ହେଲେ । କିନ୍ତୁ ମୋର ଅନ୍ୟ ଉପାୟ ନ ଥିଲା । ଜଣକର ଚିକିତ୍ସାର ସୁବିଧା ପାଇଁ ଉପଯୁକ୍ତ ସ୍ଥାନକୁ ବଦଳି କରେଇବା ବା ତାର ସୁବିଧା କରେଇବା ଡିପାର୍ଟମେଂଟର କାମ । ଏଥିରେ ନୂତନତା ବା କ'ଣ ଅଛି ? ଏବେତ ଅବସ୍ଥା ଅନେକ ବଦଳି ଗଲାଣି । ପିଲାମାନଙ୍କ ପଢ଼ିବା ପାଇଁ ଅଧିକାଂଶ ୟୁନିଟରେ

ସ୍କୁଲ ଖୋଲା ଗଲାଣି ଏପରିକି ଅଧିକ ପଢ଼ିବା ପାଇଁ ମଧ୍ୟ ବ୍ୟବସ୍ଥା ହେଲାଣି । ସେମିତି ମଧ୍ୟ ଚିକିତ୍ସା ପାଇଁ କେନ୍ଦ୍ର ସରକାରଙ୍କ ସ୍ୱାସ୍ଥ୍ୟ ଯୋଜନା ସହିତ ଯୋଡ଼ା ଗଲାଣି ।

ମୋର ବସ୍ ମୁଁ ଦୀର୍ଘକାଳ ଶଯ୍ୟାଶାୟୀ ଥିଲା ବେଳେ ଥରେ ହସପିଟାଲ ଗଲେ ନାହିଁ କି କଟକରୁ ସାମାନ୍ୟ ସୁସ୍ଥ ହେଇ ଫେରିଲା ପରେ ଥରେ ପଚାରିଲେ ନାହିଁ 'କେମିତି ଅଛନ୍ତି ?' ତାଙ୍କଠୁ କଅଣ ଅଧିକ ଆଶା କରା ଯାଇ ପାରିବ ?

ତିନି ସପ୍ତାହ ବିଶ୍ରାମ ନେଲା ପରେ ମୁଁ ପ୍ରାୟ ୮୦ ପରସେଣ୍ଟ୍ ସୁସ୍ଥ ହେଇଗଲି । ଯଦିଓ ଛାତି ଓ ମେରୁଦଣ୍ଡରୁ ପ୍ଲାଷ୍ଟର ଖୋଲା ହେଇ ନଥାଏ, କିନ୍ତୁ ମୁଁ ସାମାନ୍ୟ ଚାଲି ପାରୁଥିଲି।

ସେ ହୁଏତ ମୋତେ ରିଲିଭ୍ କରିବାକୁ ଖୁବ୍ ବ୍ୟସ୍ତ ହେଇପଡ଼ିଥିଲେ । ତେଣୁ ଫିଟନେସ୍ ସାର୍ଟିଫିକେଟ୍ ନ ମଗାଇ ମଧ୍ୟ ସେଇ ଅନଫିଟ୍ ଅବସ୍ଥାରେ ମୋତେ ରିଲିଭ୍ ଅର୍ଡର ଦେଇଦେଲେ ।

# ଅନୁଗୋଳରେ

ଗୋଟିଏ ଟେକ୍ସିରେ ମୁଁ ରାଧାରାଣୀ ଓ ରୁମିକୁ ନେଇ ନାଲକୋ ଅନୁଗୋଳରେ ପହଂଚିଲି ପ୍ରାୟ ସଞ୍ଜବେଳେ । ସେଠି ତାଙ୍କ ଗେଷ୍ଟ ହାଉସରେ ଆମ ପାଇଁ ଗୋଟିଏ ରୁମ ରଖା ଯାଇଥିଲା । ସେଠାକାର ଇନ୍ସପେକ୍ଟର ରାଓ୍ୱତଙ୍କ ସହିତ ମୋର ପୂର୍ବରୁ ପାଟନାରେ ପରିଚୟ ଥିଲା । ଜଣେ ଭଲ କର୍ମଠ ଓ ବିଶ୍ୱସ୍ତ ଅଫିସର । ନାଲକୋରେ ତାଙ୍କ ଛଡ଼ା ମୋର ସେତେବେଳେ ଅନ୍ୟ କେହି ପରିଚିତ ନଥିଲେ । ମୁଁ ତାଙ୍କଠାକୁ ଖବର ପଠେଇଥିଲି । ଆଗରୁ ଗୋଟିଏ ଟ୍ରକରେ ମୋର ଜିନିଷପତ୍ର ପଠେଇ ଦେଇଥିଲି । ରାଓ୍ୱତ ତାକୁ ସବୁ ବେରେକ ଭିତରେ ଗୋଟାଏ ଜାଗାରେ ରଖାଇ ଦେଇଥିଲେ । ମୁଁ ଏକ ପ୍ରକାର ନିଶ୍ଚିନ୍ତ ଥିଲି ।

ରାଓ୍ୱତ ମୋତେ କହିଲେ ଆପଣଙ୍କଠାରୁ ଅଳ୍ପ ଦୂରରେ ଆଉ ଗୋଟିଏ ରୁମରେ ନୂଆ କମାଂଣ୍ଡାଟ୍ ତାଙ୍କ ଫେମିଲି ସହ ଅଛନ୍ତି । ତାଙ୍କ ଘରର ସଜାସଜି କାମ ଚାଲିଚି । ଆଉ ଦୁଇ ଚାରି ଦିନ ପରେ ଚାଲି ଯିବେ ।

ସେ ସି.ଆର.ପି.ଏଫ୍.ରୁ ଡେପୁଟେସନରେ ଆସିଥାନ୍ତି ।

ମୋର ତ ଚାରି ଆଡ଼େ ପ୍ଲାଷ୍ଟର । ଭଲ ଭାବରେ ମୁଭମେଂଟ୍ ହେଇପାରୁ ନଥାଏ । ଅଫିସକୁ ଖବରଦେଲି ଯେ ଦୁଇଦିନ ପରେ ସରକାରୀ ହସ୍ପିଟାଲକୁ ଯାଇ ଡାକ୍ତରୀ ପରୀକ୍ଷା ପରେ ଫିଟ୍‌ନେସ ଆଣି ଜଏନ କରିବି ।

ତାହାହିଁ ହେଲା । ଦୁଇଦିନ ପରେ ହସପିଟାଲ ଗଲି ଓ ଫିଟନେସ ଆଣି ଜଏନ କଲି । ଇତି ମଧ୍ୟରେ ମୋତେ ଟାଉନସିପ ଭିତରେ ଗୋଟିଏ ଘର ମିଳିଗଲା । ସେ ସବୁରେ ଆମର କିଛି ଅସୁବିଧା ନଥାଏ । ଜିନିଷପତ୍ର ସବୁ ନୂଆଘରକୁ ଆସିଗଲା ଏବଂ ଆମ୍ଭେ ଗେଷ୍ଟ ହାଉସରୁ ଘରକୁ ଆସିଗଲୁ ।

ମୋତେ ସ୍ମେଲଟର ପ୍ଲାଂଟର ଦାୟିତ୍ୱ ଦିଆଗଲା । ସ୍ମେଲଟର ପ୍ଲାଂଟରେ ଆଲୁମିନିୟମ ଇନଗଟ ତିଆରି ହୁଏ । ତେଣୁ ସେ ପ୍ଲାଂଟର ଗୁରୁତ୍ୱ ଅଛି । ସେଇ କାରଖାନା ଭିତରେ ଗୋଟିଏ ହେଲିପେଡ୍ ଅଛି । ଭି.ଆଇ.ପି.ମାନେ ଆସିଲେ ତାଆରି ଭିତରେ ଅବତରଣ କରନ୍ତି । ତା'ରି ଭିତରେ ମଧ୍ୟ ଅଛି ରିସର୍ଚ୍ଚ ଲେବୋରେଟରୀ । ସେଥିରେ ଅଛି ପ୍ଲାଟିନମ୍ ତାର । ପ୍ଲାଟିନମ୍ ପାତ୍ର । ଏଗୁଡ଼ିକ ଅତ୍ୟନ୍ତ ମୂଲ୍ୟବାନ କିନ୍ତୁ ଆକାରରେ ଛୋଟ । ଗୋଟିଏ ସେଥିରୁ ଚୋରି ହେଲେ କାମ ଅଚଳ ହୁଏ । ପରୀକ୍ଷାଗାରରେ ଠିକ୍ ସମୟରେ ଉତ୍ପାଦିତ ସାମଗ୍ରୀର ମାନ ନିର୍ଦ୍ଧାରିତ ହୋଇ ନପାରିଲେ ସେପଟେ ଉତ୍ପାଦନ ବାଧାପାଏ । ଏସବୁ ଆନ୍ତଃ ସଂଲଗ୍ନ । ଏହାହିଁ ଇଣ୍ଡଷ୍ଟ୍ରିଆଲ ସିକ୍ୟୁରିଟି । ମୋର ଏସବୁ ବିଷୟରେ କିଛି ଅଭିଜ୍ଞତା ରାଉରକେଲା ଓ ରାଂଚିର ହେଭି ଇଞ୍ଜିନିଅରିଂ କାରଖାନାରୁ ମିଳିଥିଲା । ସ୍ମେଲଟର ପ୍ଲାଂଟର ଦାୟିତ୍ୱ ନେଲା ପରେ ମୁଁ ମୋର ଇନ୍ସପେକ୍ଟର ସାଥିରେ ଯେତେବେଳେ ବୁଲି ଦେଖିଲି ସେତେବେଳେ ଏ ସବୁକୁ ଆଖି ଆଗରେ ରଖିଲି ।

ସେତେବେଳେ ନାଲକୋର ଏକ୍‌ଜିକ୍ୟୁଟିଭ ଡାଇରେକ୍ଟର ଥିଲେ ଏଲ.କେ.ପଣ୍ଡା ମୁଁ ତାଙ୍କୁ ଯାଇ ଭେଟିଲି ତାଙ୍କ ଅଫିସରେ । ସେ ସଙ୍ଗେ ସଙ୍ଗେ ମୋତେ କହିଲେ ମୁଁ ତ ଆପଣଙ୍କୁ ଜାଣେ । ଆପଣ ଜଣେ ଲେଖକ । ମୁଁ ଆଶ୍ଚର୍ଯ୍ୟ ହେଲି । କଥା ପ୍ରସଙ୍ଗରେ ସେ ମୋତେ କହିଲେ ତାଙ୍କ ବାପା ଅନନ୍ତ ପ୍ରସାଦ ପଣ୍ଡା । ମୁଁ ଖୁସି ହେଲି । ଏତେବଡ଼ ବିଖ୍ୟାତ ଲେଖକଙ୍କ ପୁଅ ଏଠି ଏକ୍‌ଜିକ୍ୟୁଟିଭ ଡାଇରେକ୍ଟର ।

ଏଲ.କେ.ପଣ୍ଡା ଜଣେ ଅତି କର୍ମଠ ଓ ଦକ୍ଷ ବ୍ୟକ୍ତି । କାରଖାନା ବିଷୟରେ ସାମାନ୍ୟ ଆଲୋଚନାବେଳେ ମୁଁ ତାଙ୍କୁ କହିଲି ମୁଁ କାରଖାନା ବୁଲି ଦେଖି ସାରିଲିଣି । ଚୋରି ପ୍ରବଣ ଏରିଆ ମଧ୍ୟ ଦେଖି ସାରିଲିଣି । କୋଉଠି କଅଣ କରିବାକୁ ହେବ ମୁଁ ତାର ପ୍ଲାନ ତିଆରିକରି ଆପଣଙ୍କୁ ଦେଖାଇବି ।

ଏଇଠି ସେ କହିଲେ ଏଇ କଥା ପଦକ ମୁଁ ଆପଣଙ୍କ ସି.ଆର.ପି.ଏଫ୍.ରୁ ଆସିଥିବା କମାଂଣ୍ଡଟାଙ୍କ ଠାରୁ ଶୁଣିବାକୁ ଚାହିଁଥିଲି । ଯା ହେଉ ଆପଣତ ଆସିଲେଣି ।

ମୁଁ ତାଙ୍କ କଥାର ଇଙ୍ଗିତ ବୁଝି ପାରିଲି । କିନ୍ତୁ ଉପାୟ କଅଣ ଅଛି ।

ସ୍ମେଲଟର ପ୍ଲାଂଟର ସୁରକ୍ଷା ବ୍ୟବସ୍ଥା ଖୁବ୍ ବେଶୀ ସମସ୍ୟା ସୃଷ୍ଟି କରିବ ବୋଲି ଭାବୁ ନ ଥିଲି ।

ଇଣ୍ଡଷ୍ଟ୍ରିଆଲ ସିକ୍ୟୁରିଟି ବିଷୟରେ ମୋର ଛଅ ମାସର ଟ୍ରେନିଂ ହେଇଥିଲା ୧୯୭୫ ରେ ହାଇଦ୍ରାବାଦରେ ସି.ଆଇ.ଏସ.ଏଫ. ଟ୍ରେନିଂ କଲେଜରେ । ସେତେବେଳେ ସ୍ୱତନ୍ତ୍ର ଟ୍ରେନିଂ କଲେଜର ଘର ନଥିଲା ବୋଲି ନାସନାଲ ପୋଲିସ ଏକାଡେମୀ (ଏନ୍‌ପିଏ) ଭିତରେ କେତୋଟା ବିଲଡିଂ ନେଇ ଟ୍ରେନିଂ କଲେଜ ଆରମ୍ଭ ହେଇଥିଲା । ମୋଟାମୋଟି ସେତେବେଳେ ପି.ଟି.ପାରେଡ ଉପରେ ଜୋର ଦିଆ ଯାଉଥିଲେ ମଧ୍ୟ ଆର୍ମି ଓ ପୋଲିସର କିଛି ଅଭିଜ୍ଞ ଅଫିସର ଆସି ସେଠି ଆମକୁ ଇଣ୍ଡଷ୍ଟ୍ରିଆଲ ସିକ୍ୟୁରିଟି ବିଷୟରେ ଟ୍ରେନିଂ ଦେଇଥିଲେ । ମୋର ଅଭିଜ୍ଞତା ସହିତ ସେଗୁଡ଼ିକ ବେଶ ଖାପ ଖାଉଥିଲା । ପରେ ସେଇ ନାଲ୍‌କୋରେ ଥିବା ବେଳେ ମୁଁ ଦିଲ୍ଲୀର ଫିଙ୍ଗର ପ୍ରିଣ୍ଟିଂ ବ୍ୟୁରୋରେ ମଧ୍ୟ ଟ୍ରେନିଂ ନେଇଥିଲି । ପ୍ରତ୍ୟେକ ସିକ୍ୟୁରିଟି ଅଫିସର ପାଇଁ ଏ ଟ୍ରେନିଂର ଆବଶ୍ୟକତା ରହିଛି ।

ଏଲ.କେ.ପଣ୍ଡାଙ୍କ ସହିତ ସେ ଦିନ ଆଲୋଚନା ବେଳେ ମୁଁ ମୋ ସ୍ପାଇନାଲ ପ୍ରୋବ୍ଲେମ କଥା କହିଲି । ସେ କହିଲେ ଏଠିକା ହସପିଟାଲରୁ ରେଫର କରାଇ ନେଇ ଥରେ ଦିଲ୍ଲୀର ଏମସ୍ (ଏ.ଆଇ.ଆଇ.ଏମ.ଏସ)କୁ ଯାଆନ୍ତୁ । ସେଠି ଆମ ଗେଷ୍ଟ ହାଉସରେ ରହି ପାରିବେ ।

ମୁଁ ଏକଥା ପଦକରେ ଅତ୍ୟନ୍ତ ଆଶାବାଦୀ ହେଇ ଉଠିଲି । ଯା ହେଉ ସୁବିଧା ଦେଖି ତା’ ପାଇଁ ଥରେ ଚେଷ୍ଟା କରିବି ବୋଲି ଠିକ୍ କଲି ।



# ଅନୁଗୋଳରେ ସାହିତ୍ୟ ଚର୍ଚ୍ଚା

ଅନୁଗୋଳରେ ପହଂଚିବା ପୂର୍ବରୁ ମୋର ସେଠାକାର କିଛି ବନ୍ଧୁଙ୍କ ସହିତ ମାନସିକ ସ୍ତରରେ କିଛିଟା ସମ୍ପର୍କ ଥିଲା । ମାନସିକ ସ୍ତରରେ ଅର୍ଥ ବ୍ୟକ୍ତିଗତ ସମ୍ପର୍କ ନ ଥିଲା । ଥିଲା ସାହିତ୍ୟ ମାଧ୍ୟମରେ । ସାହିତ୍ୟ କେବଳ ମଣିଷ ସହିତ ମଣିଷକୁ ଯୋଡ଼ିପାରେ । ସେ ଯେଉଁଠି ଥାଉନା କାହିଁକି । ସ୍ଥାନ, ସମୟ ଓ ଦୂରତା ସେ ବାଧା ମାନେନା ।

ଅନୁଗୋଳକୁ ସାହିତ୍ୟ ଦୃଷ୍ଟିରୁ ବିଚାର କଲେ ତା’ ସହିତ ଆସି ମିଶିବ ତାଳଚେର (ଏଫସିଆଇ) ଓ ନାଲକୋ ଟାଉନସିପ ମଧ୍ୟ । ତିନିଟାକୁ ଗୋଟାଏ କରାଯାଇ ପାରିବ । ନାଲକୋ ଟାଉନସିପର ପ୍ରଫୁଲ୍ଲ ଗିରି ସେତେବେଳେ ପ୍ରଜାତନ୍ତ୍ରରେ ନିୟମିତ ଲେଖୁଥିଲେ ଅବଶ୍ୟ ଶିଶୁ ସାହିତ୍ୟ । କିନ୍ତୁ ସେ ମଧ୍ୟ ଜଣେ ଭଲ ଅନୁବାଦକ । ମୁଁ ଅନୁଗୋଳକୁ ଆସିଲାପରେ ଜାଣିଲି ସେ ଜଣେ ଗାନ୍ଧୀବାଦୀ । ମାଳତୀ ଚୌଧୁରୀଙ୍କ ଆଶ୍ରମରେ ଆଗରୁ ରହୁଥିଲେ । ସେ ଆଶ୍ରମକୁ ମୁଁ ମଣିଷ ତିଆରି କାରଖାନା ବୋଲି କହେଁ । ଗାନ୍ଧୀବାଦହିଁ

ମଣିଷକୁ ମଣିଷ ରୂପରେ ଗଢ଼ି ନିଏ । ଏବର ସମାଜରେ ସିନା ଗାନ୍ଧୀବାଦ ଗୋଟାଏ ଅଚଳ ମୁଦ୍ରାରେ ପରିଣତ ହେଲାଣି । ଲୋକେ ହସି ଦେଉଛନ୍ତି ।

ପ୍ରଫୁଲ୍ଲ ଗିରି ଥିଲେ ଖାଣ୍ଟି ଗାନ୍ଧୀବାଦୀ । ଧୋତି ପଞ୍ଜାବୀ ପିନ୍ଧୁଥିଲେ । ନବ ଚୌଧୁରୀ, ମାଳତୀ ଚୌଧୁରୀ ଥିଲେ ତାଙ୍କର ଆଦର୍ଶ । ସେଇ ଅନୁସାରେ ବିଶିଷ୍ଟ ଲେଖକ, ଆଲୋଚକ, ଅନୁବାଦକ ଚିତ୍ତରଞ୍ଜନ ଦାସଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ । ସେ 'ଚିତ୍ତ ଭାଇ' ବୋଲି ଡାକୁଥିଲେ । ଗାନ୍ଧୀବାଦୀମାନଙ୍କ ଭିତରେ ଏଇ ଡାକ ଚଳେ ।

ଅନୁଗୋଳରେ ତାଙ୍କ ସହିତ ମୋର ପ୍ରଥମ ସମ୍ପର୍କ ହୋଇଥିଲା ସେ ଯେତେବେଳେ ନାଲକୋ ହାଇସ୍କୁଲରେ ଶିକ୍ଷକ ଥିଲେ । ଠିକ୍ ହାଇସ୍କୁଲ ଆଗରେ ଗୋଟାଏ ଫ୍ଲାଟ୍‌ରେ ପରିବାର ସହ ସେ ରହୁଥିଲେ । ପ୍ରଫୁଲ୍ଲ ବାବୁ ସେତେବେଳେ ଗୋଟାଏ ସାହିତ୍ୟ ପତ୍ରିକାର ସମ୍ପାଦନା କରୁଥିଲେ । ପତ୍ରିକାର ନାମ ଥିଲା 'ଚର୍ଚ୍ଚା'। ଉନ୍ନତମାନର ସାହିତ୍ୟ ଆଲୋଚନା ସେଥିରେ ହେଉଥିଲା । ତାଙ୍କର ଗୋଟାଏ ଅନୁଷ୍ଠାନ ମଧ୍ୟ ଥିଲା । ତା'ର ନାମ ମଧ୍ୟ 'ଚର୍ଚ୍ଚା' । ଏଇ ଚର୍ଚ୍ଚା ତରଫରୁ ସେ ଥରେ ଚିତ୍ତ ବାବୁଙ୍କୁ ଡାକି ଥିଲେ ଗୋଟିଏ ଆଲୋଚନାରେ ଯୋଗ ଦେବାକୁ । ସଭାଟା ହାଇସ୍କୁଲ ହଲରେ ନୁହେଁ ବାରଣ୍ଡାରେ ହେଇଥିଲା । ମନେ ଅଛି ସମସ୍ତେ ତଳେ (ଦରି ଉପରେ) ବସିଥିଲେ । ବେଶ ୬୦/୭୦ ଲୋକ ହେଇଥିଲେ ।

ଚିତ୍ତ ବାବୁଙ୍କୁ ମୁଁ ରାଉରକେଲାରୁ ହିଁ ଜାଣିଥିଲି । ସେ ରଜନୀ ବାବୁଙ୍କ ପ୍ରିୟ । ସେ ମଧ୍ୟ ନବପତ୍ରରେ ଲେଖୁଥିଲେ । ଚିତ୍ତ ବାବୁଙ୍କର ଜଣେ ଭାଇ ରାଉରକେଲା ଷ୍ଟିଲ ପ୍ଲାଂଟ ରେ ଚାକିରି କରୁଥିଲେ । ଚାରି ନମ୍ବର ସେକ୍ଟରରେ ସେ ରହୁଥିଲେ । ଚିତ୍ତ ବାବୁ ଆସି ତାଙ୍କରି ଘରେ ଥିଲେ । ରଜନୀ ବାବୁଙ୍କ ସହିତ ଆମେ କେତେଜଣ ଯାଇ ତାଙ୍କ ସହିତ ଦେଖା କରିଥିଲୁ । ତାପରେ ସେ ଥରେ ଦି'ଥର ଆମ ପ୍ରୋଗ୍ରାମରେ ଆସିଛନ୍ତି । ସାମାନ୍ୟ ପରିଚୟ ମୋର ସେଇଠୁ ଥିଲା । ନାଲକୋରେ ଆଉଥରେ ଏକାଠି ହେଲୁ । ପରବର୍ତ୍ତୀ ଅବସ୍ଥାରେ ତାଙ୍କସହିତ ଆଉ ଗୋଟିଏ ସମ୍ପର୍କ ଯୋଡ଼ି ହେଇଗଲା । ଲୁଲୁ ଯୋଉ ପରିବାରରୁ ବାହା ହେଲା ସେଇଟା ଥିଲା ବାଗଲପୁରର (ଜଗତସିଂହପୁର) ଫେମିଲି । ବାଗଲପୁରର ଗୌରାଙ୍ଗ ଦାସ ଓଡ଼ିଶାର ନାମଜାଦା ଗାନ୍ଧୀବାଦୀ ନେତା । ତାଙ୍କରି ବଂଶର ରବୀନ୍ଦ୍ର ନାଥ ଦାସଙ୍କ ଝିଅ କଲା । ବାହାଘରର କିଛି ଦିନ ପରେ ମୋ ସମୁଦି ରବି ବାବୁ ଥରେ ମୋତେ ନେଇ ଚିତ୍ତବାବୁଙ୍କ ଘରକୁ ଯାଇଥିଲେ । ପରିଚୟ କରାଇଲା ବେଳେ ସେ କହିଲେ ମୁଁ କଅଣ ତାଙ୍କୁ ଜାଣିନାହିଁ ଯେ ତୁ ଆସିଛୁ ପରିଚୟ କରାଇବାକୁ । ତାପରେ ସେ ଯାହା କହିଲେ ମୁଁ ସେଥିରେ ଅଭିଭୂତ ହେଇପଡ଼ିଲି । ସେ କହିଲେ ଆପଣ ରବିର ସମୁଦି ଭାବରେ ଆମ ସମସ୍ତଙ୍କର ସମୁଦି । ମୁଁ ସେଦିନ ତାଙ୍କ ଘରକୁ ଖାଲି ହାତରେ

ଯାଇଥିଲି କିନ୍ତୁ ଆଞ୍ଜୁଳା ଭର୍ତ୍ତିକରି ଫେରିଲି । ଚିତ୍ତ ବାବୁଙ୍କଠାରୁ ଏତେ ବେଶୀ ସମ୍ମାନ ଓ ଆପଣାପଣ ପାଇବି ବୋଲି ଆଶା କରି ନଥିଲି । ମହତ୍ ଲୋକଙ୍କଠାରେ ମହତ୍ ଗୁଣ ପ୍ରକାଶ ପାଏ ।

ନାଲକୋରେ ପ୍ରଫୁଲ୍ଲ ବାବୁ ମୋତେ ନେଇ ଗୋଟାଏ ସ୍ୱପ୍ନ ବୋଧେ ଦେଖୁଥିଲେ । ସେ କହିଲେ ଏଠାକାର ସାହିତ୍ୟିକ ବାତାବରଣ ସେତେ ଭଲ ନୁହେଁ । ତାଳଚେର ଓ ଏଫ.ସି.ଆଇ. ଠାରୁ ଏପଟେ ଅନୁଗୋଳ ଯାଏ ହାତ ଗଣତି କିଛି ଲେଖକ ଥିଲେ ମଧ୍ୟ ସଂଯୋଗ ଅଭାବରୁ କାମ ହେଇ ପାରେ ନାହିଁ । ଆପଣ ସେ ଦାୟିତ୍ୱ ନିଅନ୍ତୁ ।

କଥାଟା ମୋତେ ଭଲ ଲାଗୁଥିଲେ ମଧ୍ୟ ମୁଁ ଯେ ଏସବୁ ସାଙ୍ଗଠନିକ କାମଠାରୁ ଟିକିଏ ଦୂରରେ ଥାଏଁ ଏ କଥା ମୁଁ ସମସ୍ତଙ୍କୁ ଜାଣିବାକୁ ଦିଏ ନାହିଁ । କାମର ଚାପ ଯଦି ବେଶୀଥାଏ ତେବେ ସେତକ ସମ୍ଭବ ହେଇ ପାରେନା । ତାହାହିଁ ତ ହେଇଥିଲା ପାରାଦୀପରେ । ମୁଁ ଆଗକୁ ଯାଇ ପାରିଲିନି ।

ନାଲକୋରେ ପ୍ରଫୁଲ୍ଲ ବାବୁଙ୍କ ପାଖରେ ଥାଆନ୍ତି ଅଧ୍ୟାପକ କୃଷ୍ଣଚନ୍ଦ୍ର ଦାଶ । ଜଣେ ନାଟ୍ୟକାର ଓ ନିର୍ଦ୍ଦେଶକ । ତାଙ୍କ ସହିତ ରାଉରକେଲାରେ ଲୋକନାଟକ ସମୟରୁ ପରିଚୟ । ତାଙ୍କ ସ୍ତ୍ରୀ ବିନୋଦିନୀ ଲେଖାଲେଖି କରୁ ନଥିଲେ ମଧ୍ୟ ବେଶ ସାହିତ୍ୟ ପ୍ରିୟ । ବିନୋଦିନୀ ଶିକ୍ଷୟିତ୍ରୀ । ସେଇ ପାଖରେ ଥାଆନ୍ତି ଅଜୟ ପଟ୍ଟନାୟକ ଓ ତାଙ୍କ ସ୍ତ୍ରୀ ସଲିଳା ପଟ୍ଟନାୟକ । ଉଭୟ କବି । ଭଲ ନାଁ ଅଛି । ଆହୁରି ପାଖରେ ଅଛନ୍ତି କବି ପ୍ରଧାନ, ଜଣେ ପଦସ୍ଥ ଅଫିସର ଅଥଚ ଭଲ ଗପ ଲେଖନ୍ତି । ଏଫ.ସି.ଆଇ. ରେ ଅଛନ୍ତି ଡଃ ପ୍ରସନ୍ନ ବରାଳ । ମୋ ଗଳ୍ପର ସେ ଜଣେ ମୁଗ୍ଧ ପ୍ରଶଂସକ । 'ଆରେ ଜହ୍ନମାମୁଁ' ଗପଟିକୁ ପ୍ରଭାକର ଶତପଥୀଙ୍କର ଅନିଶା ପତ୍ରିକାରୁ ପଢ଼ି ସେ ଉଚ୍ଚ ପ୍ରଶଂସା କରି ଯେଉଁ ଚିଠି ଲେଖିଥିଲେ ତାହା ଏବେ ମଧ୍ୟ ମୋ ପାଖରେ ଅଛି । ସେ ମଧ୍ୟ ଜଣେ ନାଟ୍ୟକାର । ଅନୁଗୋଳରେ କବି ଖଗେଶ୍ୱର ମହନ୍ତବାବୁ । ଏବେ ମଧ୍ୟ ତାଙ୍କ ହାତ ସକ୍ରିୟ । ମୋଟାମୋଟି ସମସ୍ତଙ୍କୁ ଏକାଠି କରିବାକୁ ଚେଷ୍ଟା କରାଗଲା । ପ୍ରଫୁଲ୍ଲ ବାବୁ ମୋତେ ଥରେ ନେଇ ଭୁବନେଶ୍ୱର ଗଲେ ସମ୍ବାଦ ଅଫିସକୁ । ସେଠି ଥିଲେ କଥାଶିଳ୍ପୀ ଗୌରହରି ଦାସ । ପ୍ରଥମ ପରିଚୟରୁ ଆତ୍ମୀୟତା ଯୋଡ଼ି ହେଇଗଲା । ଏବେବି ଅତୁଟ । ସେତେବେଳେ 'କଥା' ପ୍ରକାଶ ପାଇବାକୁ ଆରମ୍ଭ କରୁଥିଲା । ମୋର ବେଶ କେତୋଟି ଗଳ୍ପ ସେଥିରେ ପ୍ରକାଶ ପାଇଥିଲା । ତା' ଭିତରୁ 'ପ୍ରମିଳା' ଗଳ୍ପ ପ୍ରଧାନ । 'କଥା'ରେ ପ୍ରକାଶ ପାଇଲା ପରେ ସେ ଗଳ୍ପଟି ଚର୍ଚ୍ଚାର ଶୀର୍ଷକୁ ଉଠିଗଲା । କାରଣ ସେ ନାୟିକାର ସମ୍ପୂର୍ଣ୍ଣ ଜୀବନୀକୁ ନେଇ ଗଳ୍ପଟି ସୃଷ୍ଟି ଏବଂ ଘଟଣାଟି ଘଟିଥିଲା ମୁଁ ରାଉରକେଲାରେ ଥିଲା ବେଳେ । ପ୍ରମିଳା ଜଣେ ସ୍ୱାମୀ ଅତ୍ୟାଚାରିତା ତଥା ପରିତ୍ୟକ୍ତା ନାରୀ ଯେ କି ଜୀବନର ବହୁ ଯୁଦ୍ଧରେ ଅବତୀର୍ଣ୍ଣ ହେଇଚନ୍ତି

ଓ ଶେଷରେ ଜିତିଚନ୍ତି ମଧ୍ୟ । ତାଙ୍କର ସେଇ ଯୁଦ୍ଧ ଭୂମିରେ ହିଁ ମୋ ସହିତ ତାଙ୍କର ସାକ୍ଷାତ ଏବଂ ମୁଁ ତାଙ୍କୁ କୋର୍ଟକୁ ଯାଇ ଲଢ଼େଇ କରିବାକୁ ସାହାଯ୍ୟ କରିଛି । ଘଟଣା ଘଟିଥିଲା ୧୯୭୫ରେ ଅଥଚ ମୁଁ ଗପଟି ଲେଖିଲି ୧୯୮୮ରେ ଓ ତାହା 'କଥା'ରେ ପ୍ରକାଶ ପାଇଲା ପରେ ରାଉରକେଲାରେ ପ୍ରଥମ ଚହଳ ସୃଷ୍ଟିହେଲା । ପ୍ରମିଳା ସେତେବେଳେ ଗୋଟାଏ ସ୍କୁଲରେ ଶିକ୍ଷୟିତ୍ରୀ । ସେଇ ପ୍ରମିଳା ଲେଙ୍କାଙ୍କୁ ତାଙ୍କ ସ୍ୱାମୀ ଯେତେବେଳେ ଛାଡ଼ିଦେଇ ତାଙ୍କ ନିଜ ସାନଭାଇର ସ୍ତ୍ରୀ ସହିତ ରହିଲେ ସେତେବେଳେ ମୁଁ ମୋର ଆଡଭୋକେଟ୍ ବନ୍ଧୁ ଦୈତାରୀ ଦାସଙ୍କ ସାହାଯ୍ୟରେ କେସ୍ କରାଇଥିଲି । ସେଥିରେ ସେ ଜିତିଥିଲେ ।

ପ୍ରାୟ ୧୭/୧୮ ବର୍ଷ ପରେ ପ୍ରମିଳା ଗଳ୍ପ ପ୍ରକାଶ ପାଇଲା ପରେ ସେ ଅବଶ୍ୟ ମୋତେ ଖୋଜିଲେ ।

ହାୟ, ସେ ମହିୟସୀ ମହିଳା କିନ୍ତୁ ଆଜି ଆଉ ନାହାନ୍ତି । ଏଇ ରାଉରକେଲାରେ କାନସରରେ ତାଙ୍କର ମୃତ୍ୟୁ ହେଇଥିଲା । ଏକଦା ସେଇ ପ୍ରମିଳା ଗଳ୍ପର ପାଠକୀୟତା ଦେଖି ମୁଁ ଭାବୁଥିଲି ଗଳ୍ପଟିକୁ ଉପନ୍ୟାସରେ ରୂପାନ୍ତରିତ କରିବାକୁ । କିନ୍ତୁ ପରେ ମୋତେ ସେଥିରୁ ନିବୃତ୍ତ ରହିବାକୁ ପଡ଼ିଲା କାରଣ ସେ ଯାଏ ମୁଁ ଗଳ୍ପହିଁ ଲେଖି ଚାଲିଥିଲି । ଉପନ୍ୟାସ ଲେଖି ନଥିଲି କି ସେଥିପାଇଁ ସାହସ ମଧ୍ୟ କରି ନଥିଲି ।

ମୋର ପ୍ରଥମ ଉପନ୍ୟାସ 'ପ୍ରଥମ ପୃଥିବୀ' (ଆଶା ପୁସ୍ତକାଳୟ ବ୍ରହ୍ମପୁର ୧୯୯୮)ଲେଖା ହେଲା ଅନେକ ପରେ । ଚାକିରିରୁ ଅବସର ନେବା ପରେ । ଉପନ୍ୟାସ ପାଇଁ ମୋର ପ୍ରେରଣାଦାତା ବିଶିଷ୍ଟ ଔପନ୍ୟାସିକ ବିଭୂତି ପଟ୍ଟନାୟକ ଅବଶ୍ୟ ମୋର ମନେ ରହିବେ । ମୋର ବୋହୂ କଳା ମାଧ୍ୟମରେ ତାଙ୍କ ସହିତ ପାରିବାରିକ ସମ୍ପର୍କଟିଏ ଯୋଡ଼ି ହେଇଗଲା ପରେ (ସେ ଥିଲେ କଳାର ମାମୁଁ) ସେ ମୋତେ ଉପନ୍ୟାସ ଲେଖିବାକୁ ବାରମ୍ବାର କହିଲେ । 'ପ୍ରଥମ ପୃଥିବୀ' ଗୋଟିଏ ଗ୍ରାମ୍ୟ ସଂସ୍କୃତିରେ ଜାତିପ୍ରଥା ଓ ତାର ସାଂକେତିକ ସମାଧାନ କଥା କହିଥାଏ । ବିଂଶ ଶତାବ୍ଦୀର ମଧ୍ୟଭାଗରେ ମୁଣ୍ଡ ଟେକିଥିବା ନୂଆ ସାମନ୍ତବାଦୀ ଚିନ୍ତନ ମଧ୍ୟ ସେଥିରେ ଅଛି । ପ୍ରକାଶକ ଇତି ମଧ୍ୟରେ ତାର ଦ୍ୱିତୀୟ ସଂସ୍କରଣ ମଧ୍ୟ କରି ସାରିଲେଣି ମୋତେ ନ ଜଣେଇ । ଯା'ହେଉ ମୁଁ ଅମଡ଼ାମାଡ଼ି ଯାଉଚି । ନାଲକୋରେ ପହଂଚିଲା ପରେପରେ ସେଠିକା ସାହିତ୍ୟର ବାତାବରଣ ଟିକେ ଗରମ ହେଇ ଉଠିଲା । କେତୋଟି ଆଲୋଚନାଚକ୍ର ହେଲା ସେ ପ୍ରଫୁଲ୍ଲ ବାବୁଙ୍କ ଚର୍ଚ୍ଚା ଆନୁକୂଲ୍ୟରେ । ମୁଁ ତ ନାଁକୁ ମାତ୍ର ତାର ସଭାପତି ହେଇ ଯାଇଥିଲି । ଯାଇ ବସୁଥିଲି ମାତ୍ର । ସବୁ କରୁଥିଲେ ପ୍ରଫୁଲ୍ଲ ବାବୁ । ତେବେ ବୈଠକ ଭଲ ଜମୁଥିଲା । ପ୍ରାୟ ସମସ୍ତେ ଆସୁଥିଲେ । ନାଲକୋ ଛଡ଼ା ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଆସର ଆରମ୍ଭ ହେଲା । ତାଳଚେର

କଲେଜ,ଏଫ.ସି.ଆଇ. ଟାଉନସିପ ଓ ଅନୁଗୋଳ ଟାଉନରେ ମଧ୍ୟ ହେଲା । ସେଠି ଜଣେ ଯୁବକ ରାଧାକାନ୍ତ ମହାନ୍ତି ଓ କବି ଖଗେଶ୍ୱର ମହତାବ । ମୋଟା ମୋଟି ଭଲ ବାତାବରଣଟିଏ ସୃଷ୍ଟି ହେବାଦ୍ୱାରା ମୋର ପବ୍ଲିକ ରିଲେସନ ମଧ୍ୟ ଭଲ ଗଢ଼ିଉଠିଲା ।

ସେଠି ମଧ୍ୟ ଥିଲେ ବରେଣ୍ୟ କବି ରାଧାମୋହନ ଗଡ଼ନାୟକ । କିନ୍ତୁ ବୟସାଧିକ୍ୟ ଯୋଗୁଁ ସେ କୁଆଡ଼େ ଯିବାଆସିବା କରି ପାରୁ ନଥିଲେ ।

ଏସବୁ ସୁନ୍ଦର ବାତାବରଣ ସତ୍ତ୍ୱେ ମୋର ପ୍ରମୋସନଟା ଅଟକି ଯାଇ ଥିବାରୁ ମନଟା ଭଲ ନଥିଲା । ଏବିଷୟରେ ଦୁର୍ଗାମାଧବଙ୍କୁ ଆଉ କଅଣ କହିବି । ତାଙ୍କ ସହିତ ଆଉ ସାକ୍ଷାତର ସମ୍ଭାବନା ନାହିଁ । ମୁଁ ଭାବୁଥିଲି ମୋର ବସମାନେ ମୋତେ କ୍ଲିନ୍ ଚିଟ ଦେଇ ନାହାନ୍ତି । ମୋର ଡି.ଜି.ଙ୍କ ସହିତ ସିଧା ସମ୍ପର୍କଟା ସେମାନଙ୍କୁ ଈର୍ଷାନ୍ୱିତ କରିଛି । ନିରପେକ୍ଷ ଭାବରେ ମୋର କାର୍ଯ୍ୟକୁ ସେମାନେ ବିଚାରକୁ ନେଇ ନାହାନ୍ତି । ଏଇଟାତ ଜଷ୍ଟିସ ନୁହେଁ । ଏ.ସି.ଆର୍ ଲେଖାର ଯୋଉ ନିୟମାବଳୀ ଅଛି ତାକୁ ଜଣେ ଆଡ଼େଇ ଯାଇପାରେ ?

ମୁଁ ଓଡ଼ିଶା ହାଇକୋର୍ଟରେ କେସଟିଏ ଫାଇଲ କରିଦେଲି । ମୁଁ ଏତେସବୁ ଭଲ ଭଲ କାମ କରିବା ସତ୍ତ୍ୱେ ମୋର ପ୍ରମୋସନ କାହିଁକି ଅଟକିଲା ତାହାହିଁ ମୁଁ କେସ୍ ଫାଇଲ୍ ବେଳେ ପ୍ରଶ୍ନ କରିଥିଲି ।

ନାଲକୋରେ ସାଧାରଣ ଭାବେ ମୋର କାମ ଚାଲିଥିଲା ବେଳେ ଲୁଲୁ ତା'ର ପିଏଚ.ଡି. କାମ ସାରି ଆସିଗଲା । ସେ ଆଖପାଖ କଲେଜମାନଙ୍କରେ ଖୋଜୁଥିଲା । କିନ୍ତୁ ସବୁଠି ଗୋଟିଏ ମାନ୍ଦା ଅବସ୍ଥା । ଯିଏ ବି ରଖିବାକୁ ରାଜିହେଲା ସେ ପ୍ରଥମେ ୨୦/୩୦ ହଜାର ଡିପୋଜିଟ୍ କରିବାକୁ କହିଲା, ନଚେତ୍ ୫୦୦ଟଙ୍କାରେ ଆରମ୍ଭ କରିବାକୁ କହିଲା । ସେ ରାଜି ହେଲାନି । ଶେଷରେ ତା' ନିଜ ଚେଷ୍ଟାରେ ରାଜ୍ୟ ଅଭିଲେଖାଗାରରେ (ଷ୍ଟେଟ ଆରକାଇଭସ)ଗୋଟାଏ internship ରେ ଯୋଗ ଦେଲା । ସେ ଭୁବନେଶ୍ୱରରେ ଗୋଟିଏ ଭଡ଼ା ଘରେ ରହିଲା ।

ରୁମି ମୋ ପାଖରେ ରହି ଏମ.ଏ. ପଢ଼ିଲା । ଇତି ମଧ୍ୟରେ ତା'ର ବାହାଘର ପ୍ରସ୍ତାବ ଆସିବାକୁ ଆରମ୍ଭ ହେଲା । ମୋର ଚାକିରିର ଅବସ୍ଥା ଯାହା, ଆଉ ବର୍ଷେପରେ ପୁଣି ଥରେ ବଦଳି ହେବ । ଏଥର ଓଡ଼ିଶା ବାହାରକୁ ହେଇପାରେ । ସରକାରଙ୍କ ନୂଆ ବଦଳି ନୀତି ସେଇ କଥା କୁହେ । ଓଡ଼ିଶାର ବାହାରକୁ ଗଲେ ପୁଣି ରୁମିର ପାଠପଢ଼ାରେ ଅସୁବିଧା । ତେଣୁ ଚିନ୍ତା କଲି ଭଲ ପ୍ରସ୍ତାବ ଆସିଲେ ମନା କରିବିନାହିଁ । ସେ ଯଦି ଚାହିଁବ ବାହାଘର ପରେ ଏମ.ଏ. ଶେଷ କରି ପାରିବ । ତା'ର ଆଉ ଗୋଟିଏ ବର୍ଷ ବାକିଥିଲା । ଗୋଟିଏ ଅନିଶ୍ଚିତ ଅବସ୍ଥାରେ ଥିଲି ।

ଏଇ ସମୟରେ ସୁମିର ଝିଅ ଯିଏ ପାରାଦୀପରେ ଜନ୍ମ ହୋଇ ଥିଲା ସେ ଆମ ପାଖରେ ଥାଏ । ବର୍ଷେ କି ଦେଢ଼ ବର୍ଷର ହୋଇଥିବ । ମୋତେ ବାବୁଜୀ ଓ ରାଧାରାଣୀଙ୍କୁ ବୋଉ ବୋଲି ଡାକୁଚି ଅନ୍ୟମାନଙ୍କ ପରି ।

ମୋର କାମ ସାଧାରଣ ଭାବରେ ଚାଲିଥାଏ । ଏଠି ମଧ୍ୟ ନୂଆ କମାଂଣ୍ଡାଟ୍‌ଙ୍କ ସହିତ ସମ୍ପର୍କ ଭଲ ନଥାଏ । ତା'ର ଗୋଟିଏ ପ୍ରଧାନ କାରଣ ହେଲା ସି.ଆର.ପି.ରୁ ଡେପୁଟେସନରେ ଆସିଥିବା ଅଫିସର ପ୍ଲାଂଟ ସିକ୍ୟୁରିଟି ବିଷୟ କିଛି ଜାଣି ନଥିବାରୁ କାରଖାନାର ଅଫିସର ମୋତେ ଯୋଗାଯୋଗ କରନ୍ତି । ତେବେ ଏଇଟା ସେମିତି କିଛି ଜରୁରୀ ନଥିଲା । ଜରୁରୀ ଥିଲା କମାଂଣ୍ଡାଟ ଜୱାନମାନଙ୍କ ମେସ୍‌ରୁ ଚାଉଳ, ତେଲ, ଡାଲି ଇତ୍ୟାଦି ନେବା ପୁଣି ବିନା ପଇସାରେ । ଏହାଦ୍ୱାରା ଜୱାନଙ୍କ ମେସ୍‌ର ମୁଣ୍ଡପିଛା ଖର୍ଚ୍ଚ ବଢୁଥିଲା । ଜୱାନମାନଙ୍କୁ ଏହା ବାଧୁଥିଲା । ଏହା ଏକ ସମ୍ପୂର୍ଣ୍ଣ ନିୟମ ବିରୁଦ୍ଧ କାମ ।

ଥରେ ଗୋଟାଏ ମେସ୍ ମିଟିଂରେ ମୁଁ ଏକଥା ଜାଣିଲା ପରେ ମୁଁ କମାଂଣ୍ଡାଟଙ୍କୁ ଯାଇ କହିଲି । ଏ କଥା ମଧ୍ୟ କହିଲି ଯେ ଜୱାନଙ୍କ ମେସ୍‌ରୁ କିଛି ଜିନିଷ ଆଣିବା ନିୟମ ଦୃଷ୍ଟିରୁ ଅସଙ୍ଗତ । ଏପରିକି ପଇସା ଦେଇ ମଧ୍ୟ ସେଠୁ କିଛି ଆଣିବା ଅନୁଚିତ ।

ଏକଥା ତାଙ୍କୁ ହୁଏତ ଭଲ ଲାଗିଲା ନାହିଁ । ଆବଶ୍ୟକ ସ୍ଥଳେ ସିନିଅର ଅଫିସରମାନେ ଜୱାନଙ୍କ ମେସ୍‌ରୁ ନେଇ ପାରିବେ ବୋଲି ସେ କହିଲେ । ମୋର ମନା କରିବା ସତ୍ତ୍ୱେ ସେ ଅର୍ଡର୍ଲି ପଠାଇ ଅଟା, ମଇଦା, ଚିନି, ମିଲ୍କ ପାଉଡର ଇତ୍ୟାଦି ନେଇ ଚାଲିଲେ । ଅବସ୍ଥା ଏପରି ହେଲା ଯେ ଥରେ ଗୋଟାଏ ମେସ୍ ମିଟିଂରେ କୌଣସି ହାବିଲଦାର ମେସ୍‌ର ଦାୟିତ୍ୱନେବାକୁ ରାଜି ହେଲେ ନାହିଁ । ଗୋଟାଏ ଅଚଳାବସ୍ଥା ସୃଷ୍ଟି ହେଲା । କାରଣ ନିୟମ ଅନୁସାରେ ଜଣେ ହାବିଲଦାରହିଁ ମେସ୍ କମାଣ୍ଡରର ଦାୟିତ୍ୱ ନେବ । ମୁଁ କାରଣ ଜାଣିବାକୁ ଚାହିଁବାରୁ ଜଣେ କହିଲେ ପ୍ରତିମାସ ମେସ୍ କମାଣ୍ଡରକୁ (କମାଂଣ୍ଡାଟ୍‌ଙ୍କ ପାଇଁ) ୩/୪ ଶହ ଟଙ୍କା ହାତରୁ ଦେବାକୁ ପଡ଼େ ।

ଏହା ଯେ ଏକ ସିରିଅସ ଅବସ୍ଥା ଆଡ଼କୁ ମୁହାଇଲାଣି ଏ କଥା ସେତିକି ବେଳେ ଜାଣି ପାରିଲି । କମାଂଣ୍ଡାଟ୍ ବୋଧେ ତାଙ୍କ ଜିଦ୍‌ରେ ଅଟଳ ଅଛନ୍ତି । ତାଙ୍କ ମତରେ ଆମ ସି.ଆର.ପି.ଏଫ୍.ରେ ଏପରି ବ୍ୟବସ୍ଥା ଅଛି । ଯଦି କୌଣସି ଅଗମ୍ୟ ଅଂଚଳରେ (ରିମୋଟ ଏରିଆରେ) ଜିନିଷପତ୍ର ସହଜରେ ମିଳୁ ନାହିଁ ସେଠି ଜୱାନଙ୍କ ମେସ୍‌ରୁ ରେସନ ଆଇଟମ ନେଲେ ଅସୁବିଧା ନାହିଁ । କିନ୍ତୁ ଅନୁଗୋଳ ଆଦୌ ଅଗମ୍ୟ ନୁହେଁ ।

ମେସ୍‌ର ବିଲ୍ ବଢ଼ିବାଦ୍ୱାରା ଖାଦ୍ୟର ମାନ ମଧ ହ୍ରାସପାଇବା ସ୍ୱାଭାବିକ୍ । ଜଣେ ଜବାନ୍ ପରିବାର ଛାଡ଼ି ବିଦେଶରେ ବାରାକ୍‌ରେ ରହିଥିବାବେଳେ ଯଦି ଭଲ ଖାଦ୍ୟ ଖାଇ ନପାରିବ ତେବେ ତା'ଠାରୁ ଉତ୍କର୍ଷତା ଓ ଦକ୍ଷତା ଆଶା କରିବା ବୃଥା । ଆଜି ମୁଁ

ବୁଝୁଛି ଆର୍ମି ଜବାନ୍‌ମାନେ ଭଲ ଖାଦ୍ୟ ନପାଇ କାହିଁକି ବିଦ୍ରୋହୀ ହୋଇଯାଉଛନ୍ତି ଓ ସୋସିଆଲ୍ ମିଡ଼ିଆରେ ପ୍ରକାଶ କରିଦେଉଛନ୍ତି । କିନ୍ତୁ ସେଥିପାଇଁ ସେମାନଙ୍କୁ ନ୍ୟାୟ ପ୍ରଦାନ କରିବା ପରିବର୍ତ୍ତେ ଦୋଷୀକୁ ଘଂଟ ଘୋଡ଼ା ଯାଉଛି ଓ ସେମାନଙ୍କ ବିଶୃଂଖଳା ଆଚରଣ ପାଇଁ ଦଣ୍ଡିତ କରାଯାଉଛି । ଏହି ଦୁର୍ନିତି କେବଳ ସି.ଆଇ.ଏସ୍.ଏଫ. କିମ୍ବା ସି.ଆର୍.ପି.ଏଫ୍.ରେ ନୁହେଁ, ଆର୍ମି ବା ବି.ଏସ୍.ଏଫ୍. ରେ ଥିବା ମଧ୍ୟ ଅଭିଯୋଗ ହେଲାଣି ।

ମୁଁ କହିଲି ସେ ବ୍ୟବସ୍ଥା ସି.ଆଇ.ଏସ.ଏଫ.ରେ ନାହିଁ । ତେଣୁ ଏଠି ତାହା ନିୟମରେ ନାହିଁ । କମାଂଣ୍ଡାଟଙ୍କ ଧାରଣା ହେଲା ମୁଁ ମେସ୍ କମାଣ୍ଡରମାନଙ୍କୁ ଉସକାଉଚି । ଏ ବିଷୟରେ ରାଗ ରଖି ଅନ୍ୟ କେତେ ବିଷୟରେ ସେ ମୋତେ ହଇରାଣ କଲେ । ବାଧ ହୋଇ ମୁଁ ଡି.ଆଇ.ଜି.ଙ୍କୁ ଏ କଥା କହିଥିଲି, ଯାହାର ସେ ତଦନ୍ତ ଆଦେଶ ଦେଲେ ।

ମୁଁ ଥରେ ସରକାରୀ କାମରେ ଦାମନଯୋଡ଼ି ଯାଇଥିଲି । ଗଲାବେଳେ ଅନୁଗୋଳରୁ ଭୁବନେଶ୍ୱର ସରକାରୀ ଗାଡ଼ିରେ ଗଲି । କିନ୍ତୁ ଫେରିଲା ବେଳକୁ ଗାଡ଼ି ପଠେଇଲେ ନାହିଁ । ମୋତେ ବସରେ ଆସିବାକୁ ବାଧ କଲେ ।

ମୋ ଅଫିସ୍ ରୁ ଟାଇପ ମେସିନ ନେଇଗଲେ । କହିଲେ ଆସିଷ୍ଟାଂଟ୍ କମାଂଣ୍ଡାଟ ଅଫିସ ପାଇଁ ଟାଇପ ମେସିନର ଆବଶ୍ୟକତା ନାହିଁ । ଏଇ ସବୁ କଥାରେ ତାଙ୍କ ସହିତ ବାରମ୍ବାର ଚିଠି ପତ୍ର ଦିଆ ନିଆ ହେଲା ଆଉ ତିକ୍ତତା ବଢ଼ିଲା ।

ମୁଁ ଏସବୁ କଥା ଡି.ଆଇ.ଜି.ଙ୍କୁ କହିଲି ।



# ରୁମିର ବାହାଘର

ମୋର ବିବେକ ବାଧା ଦେଉଥିଲା । ରୁମିର ବାହାଘରକଥା ପଡ଼ିଲା ବେଳକୁ ମନ ଭିତରେ ଦୁଇଟା ଚିନ୍ତା ଆସୁଥିଲା । ପ୍ରଥମରେ ତା'ର ଏମ୍.ଏ. ଆଉ ଗୋଟିଏ ବର୍ଷ ଅଛି । କୌଣସି ପ୍ରକାରେ କଷ୍ଟ କରି ରହି ପାରିଲେ ସେ ତା'ର କେରିଆର ଗଢ଼ିନେଇ ପାରନ୍ତା । କିନ୍ତୁ ସେତକ କଅଣ ସମ୍ଭବ ହେବ ? ଏପଟେ କମାଂଣ୍ଡାଟ ମହୋଦୟ ଯେମିତି ମନୋଭାବ ପୋଷଣ କରୁଛନ୍ତି ସେଥିରେ ତାଙ୍କଠାରୁ ଗୋଟିଏ ସକାରାତ୍ମକ ଚିନ୍ତା ଆଶା କରିବା ଅସମ୍ଭବ । ଅନ୍ୟ ଦିଗରେ ପ୍ରମୋଶନ ପାଇଁ ହାଇକୋର୍ଟରେ କେସ୍‌ଟିଏ ଫାଇଲ ହେବାଦ୍ୱାରା ଫୋର୍ସ ହେଡ୍‌କ୍ୱାର୍ଟର ମଧ୍ୟ ଭଲ ଓ ସଂବେଦନ ମନୋଭାବ ପୋଷଣ କରିବା ସମ୍ଭବ ନୁହେଁ । ରାଗ ରଖି ଏଠାରେ ତିନି ବର୍ଷ ପୂରଣ ହେବା ପୂର୍ବରୁ ଗୋଟିଏ ଦୂର ଜାଗାକୁ ବଦଳି କରି ଦିଆ ଯାଇପାରେ । ମୁଁ ପୁଣି ଥରେ ହାଇକୋର୍ଟ ଯିବି କି ?

ଏମିତି ଗୋଟିଏ ମାନସିକ ଚିନ୍ତା ଭିତରେ ଥିଲା ବେଳେ ହଠାତ୍ ଗୋଟାଏ ଖବର ଆସିଲା ଯେ ବାରିପଦାରୁ ଜଣେ ଭଦ୍ରଲୋକ ସସ୍ତ୍ରୀକ ଆମଘରକୁ ଆସିବେ ଝିଅ ଦେଖିବାକୁ । ଯିଏ ଆସିବେ ସେ ଜଣେ ରିଟାୟାଡ଼୍ ଡି.ଏସ.ପି. ଏବଂ ସେ ମଧ୍ୟ ନାଲକୋର ଏକ୍‌ଜିକ୍ୟୁଟିବ ଡାଇରେକ୍ଟରଙ୍କ ଆତ୍ମୀୟ । ଝିଅ ତାଙ୍କର ପସନ୍ଦ ହେବ କି ନହେବ ଅଲଗା କଥା କିନ୍ତୁ ଝିଅ ଦେଖାକୁ ମନା କରି ହେବ କି ? ଝିଅ ସେମାନେ ଦେଖିଲେ ଏବଂ ପସନ୍ଦ ମଧ୍ୟକଲେ । ମୋତେ ଡାକିଲେ ତାଙ୍କ ଘରକୁ । ବାପା ମାଆ ସାଥିରେ ବର ନିଜେ ମଧ୍ୟ ଆସିଥିଲା । ମୁଁ ସେମାନଙ୍କ ବିଷୟରେ ଯାହା ଶୁଣିଲି ତାହା ପସନ୍ଦ ଯୋଗ୍ୟ । କଥାଟା ହେଲା ପ୍ରସ୍ତାବଟା ଆସିଥିଲା ମନ୍ଦାରୁଣୀରେ ଥିବା ମୋର ଜଣେ ବନ୍ଧୁଙ୍କ (ଭୂପତି ଭାଇଙ୍କ ଶଳା) ମାଧ୍ୟମରେ ।

ମୁଁ ଥରେ ତାଙ୍କୁ ନେଇ ବାରିପଦା ଗଲି । ସେଠି ଘର ଓ ତାଙ୍କ ପରିବାର ସହ ସମ୍ପର୍କ ହେଲା ପରେ ବାହାଘର ବିଷୟରେ କଥାବାର୍ତ୍ତା ଅଳ୍ପ ବହୁତ ହେଲା । କଥାବାର୍ତ୍ତା ମଧ୍ୟରେ ମୁଁ ନିଜକୁ ସ୍ପଷ୍ଟ କରିବାକୁ ଯାଇ ଯେତେବେଳେ ପଚାରିଲି ଆପଣ ମୋଠୁ କଅଣ ଆଶା କରୁଛନ୍ତି, ସେ କହିଲେ 'କିଛି ନା' । ଏ ଶବ୍ଦଟା ମୋ ପାଇଁ ଅବୁଝା ହେଲା । ମୁଁ ତେଣୁ କହିଲି ଆପଣ ଯଦି 'କିଛି ନା' କହିବେ, ମୁଁ କିନ୍ତୁ 'କିଛି' କଥାଟା କହିବି । ସେ ହୋ ହୋ ହସିଲେ । ମୁଁ ଦେଖିଲି ମୋର ଯେତିକି ଖୋଲାମନ ତାଙ୍କର ସେତିକି ଖୋଲା ହୃଦୟ । ପୋଲିସର କୌଣସି ଲକ୍ଷଣ ତାଙ୍କଠି ନାହିଁ । ଅତି ସରଳ ଓ ଅତି ଅମାୟିକ । ଯାଠୁ ଭଲଘର ଆଉ କୋଉଠି ମିଳିବ । ଗୋଟିଏ କଥାରେ କାମ ଶେଷ ।

ମୁଁ ସେଇଦିନ ନାଲକୋ ଫେରି ଆସିଲି । ଆସିଲା ପରେ ଚିନ୍ତାରେ ପଡ଼ିଲି । ବାହାଘର ପାଇଁ ସିନା ରାଜି ହେଇଗଲି, ଟଙ୍କା କାହିଁ ? ସୁମିର ବାହାଘର ବେଳେ ପି.ଏଫ.ରୁ ଯୋଉ ଲୋନ ନେଇଥିଲି ତାହା ଅବଶ୍ୟ ସୁଝା ସରିଛି । କିନ୍ତୁ ସେଥିରୁ କେତେ ବା ଆଉ ନେଇ ହେବ ? ସୁମିର ବାହାଘର ବେଳେ ରାଧାରାଣୀର କିଛି ଗହଣା ନେଇଥିଲି । ଏବେ ସେ ପ୍ରଶ୍ନ ମଧ୍ୟ ନାହିଁ । ଦରମାରୁ ତ ସଂଚିବା କେବେ ସମ୍ଭବ ନୁହେଁ । ସବୁ ବେଳେ ତ 'ହେଣ୍ଡ ଟୁ ମାଉଥ' । ନଜର ପଡ଼ିଲା କେଶପୁରା ଗାଁରେ ଥିବା ଜମି ଉପରେ । ଅନେକଦିନୁ ସେଇଟା କିଣାହେଇ ପଡ଼ିଥିଲା । କେଶପୁରା ମୋ ଶଶୁରଙ୍କ ଗାଁ । ସେ ଥିଲାବେଳେ ତାଙ୍କରି ସାହାଯ୍ୟରେ ସେ ଜମି କିଣିଥିଲି । ମୋର ସାନଶଳା କୁନା ତାର ଯତ୍ନ ନେଉଥିଲା ।

ତା' ସହିତ ଯୋଗାଯୋଗ କଲି । ସେ କହିଲା ଭଲ ଲୋକ ଦେଖି ବିକି ଦେବ । ସେତେବେଳେ ମଧ୍ୟ ଟେଲିଫୋନର ସୁବିଧା ନଥିଲା କି ଗାଁକୁ ଯିବାକୁ ସଡ଼କ ନଥିଲା । ଦୀର୍ଘ ଛଅ କିଲୋମିଟର ଧାନ ବିଲ ରାସ୍ତାରେ ପାଣି କାଦୁଅରେ ପଶି ଚାଲି ଚାଲି ଯିବାକୁ ପଡୁଥିଲା । ସେଇ ଅବସ୍ଥାରେ ଦିନେ ଗଲି ଓ ସବୁ ବିକାବିକି କରି ଚାଲି ଆସିଲି । ଏବେ

ଗୋଟାଏ ଚିନ୍ତା ଆସିଲା ବାହାଘର କୋଉଠି ହେବ । ସୁମି ବାହାଘର ବେଳକୁ ନିଜ ଗାଁର ଘରଟା ଥିଲା କାରଣ ମାଆ ତାକୁ କୌଣସି ପ୍ରକାରେ ବଞ୍ଚାଇ ରଖିଥିଲା । ଏବେ ତ ଆଉ ସେତକ ନାହିଁ । ବନ୍ଧୁମାନେ ନାଲକୋରେ କରିବାକୁ କହୁଥିଲେ । ଡିପାର୍ଟମେଂଟରୁ ସାହାଯ୍ୟ ମିଳିବ । କିନ୍ତୁ ମୋ ପାଇଁ ଏକଥାଟା ଯେତିକି ଭଲ ସେତିକି ଖରାପ । କେହି ତାକୁ ଓଲଟା ପ୍ରୟୋଗ କରି ପାରନ୍ତି । ତେବେ ମୋର ଭାବୀ ସମୁଦି ଦୁର୍ଗାବାବୁ କହିଲେ ବାହାଘର ଆପଣ ବାରିପଦାରେ କରାନ୍ତୁ । ଆମେ ଆପଣଙ୍କୁ ସାହାଯ୍ୟ କରିବା । ତାହାହିଁ ହେଲା । ସେଠିତ ବୁଢ଼ିଆ ଓ ସୁବୋଧ ବାବୁ ଥିଲେ । ଗୋଟିଏ ବଡ଼ଘର ୩/୪ ଦିନପାଇଁ ଭଡ଼ାରେ ନେଇଗଲି । ଗାଁରୁ ବ୍ରାହ୍ମଣ, ବାରିକ ଓ କିଛି ଲୋକ ଆସିଲେ । ସବୁ କାମ ସେଇଠି ହେଇଗଲା । ତାର ଦିନକ ପରେ ମୁଁ ରାଧାରାଣୀ ଓ ଲୁଲୁ ସମସ୍ତେ ନାଲକୋ ଫେରିଆସିଲୁ ।

ଦୁଇ ଝିଅର ବାହାଘର ପରେ ମୁଁ ଗୋଟିଏ ପ୍ରକାର ଶାନ୍ତିରେ ନିଃଶ୍ୱାସ ମାରିଲି ନା ଅଶାନ୍ତିରେ ? ମୁଁ ଏକଥା ଚିନ୍ତା କରୁଥିଲି । ସୁମିର ବାହାଘରଟା ମୋର ଜଣାଶୁଣା ଓ ପାରିବାରିକ ବନ୍ଧୁତା ଭିତରେ ହେଇଥିଲା । କିନ୍ତୁ ରୁମିର ବାହାଘରତ ସେମିତି ହେଇନି । କେତେବା ମୁଁ ସେମାନଙ୍କୁ ଜାଣିଛି ? ଆହୁରି ବେଶୀ ଜାଣିବା ଉଚିତ ନଥିଲା କି ? ଗୋଟିଏ ବାହାଘରରେ ଏସବୁର ଆବଶ୍ୟକତା ରହିଚି । ଗାଁରେ ଯୁକ୍ତ ପରିବାର ଓ କୃଷି ସଂସ୍କୃତିରେ ଯାହାଥିଲା ପରବର୍ତ୍ତୀ କାଳରେ ଏସବୁ ଆଉ ରହିଲାନି । ଅନେକ ଅଜଣା ଓ ଅଶୁଣା ସମ୍ଭାବନା ଓ ଆଶଙ୍କା ଭିତରଦେଇ ଗତି କରିବାକୁ ପଡ଼ିଲା । ପୁରୁଣା ଓ ନୂଆ ଭିତରେ ଏହାହିଁ ପାର୍ଥକ୍ୟ । ଏମିତି ଗୋଟିଏ ସମ୍ଭାବନାର ସମୟ ଭିତରେ ମୁଁ କିନ୍ତୁ ହାତ ଟେକିଦେଲି ।

ସରକାର ମହାବାହୁ ! ମୋତେ ତୁମେ ଏଣିକି ଆଣ୍ଡାମାନ ପଠେଇଲେ ମଧ୍ୟ ଖୁସିରେ ଯିବି । ଏଇଠି ଗୋଟିଏ କଥା କହିବା ଦରକାର । ନାଲକୋରେ ମୋର ଅନେକ ପ୍ରକାର ମାନସିକ ଦୁଶ୍ଚିନ୍ତା ଭିତରେ ମୋର ବନ୍ଧୁ ଫର୍ଟିଲାଇଜର (ଏଫ.ସି.ଆଇ.) ଦାସ ମହାପାତ୍ର ଦମ୍ପତି ମୋତେ ଅନେକ ସାନ୍ତ୍ୱନା ଦେଉଥିଲେ । ଦାସ ମହାପାତ୍ରଙ୍କ ସହିତ ଗୋଟାଏ କ୍ଷୀଣ ସମ୍ପର୍କ, ମୋର ତାଙ୍କ ସାନ ଭାଇ ଗୋରା ଦାସ ମହାପାତ୍ର ସହିତ ଥିଲା । ସେ ସମ୍ପର୍କ ରାଉରକେଲାରୁ । ଏଫ.ସି.ଆଇ.ରେ ତାଙ୍କ ସ୍ତ୍ରୀ ମାନସୀ ଜଣେ ଭଲ ସଂସ୍କୃତି ପ୍ରେମୀ ମହିଳା । ସେ ଜାତିରେ ବଙ୍ଗାଳୀ ବ୍ରାହ୍ମଣ,ବିବାହ କରିଥିଲେ କଣ୍ଟେଇ ବାସିନ୍ଦା 'ଦାସ ମହାପାତ୍ର'କରଣଙ୍କୁ ଯେଉଁ ପରିବାର ବାଲେଶ୍ୱରରେ ରହିଯାଇଥିଲେ । କିନ୍ତୁ ବାଲେଶ୍ୱରର ଏହି ପରିବାର ବଙ୍ଗାଳୀ ଭିତରେ ଗଣା ଯାଆନ୍ତି ନାହିଁ । ମାନସୀ ପାଖରେ ଥାଏ ପ୍ରଚୁର ଅଭିଜାତ ତଥା ସମ୍ଭ୍ରାନ୍ତ ସଂସ୍କୃତି । ଜଣେ କଲିକତା ଜନ୍ମିତ ବଙ୍ଗାଳୀ ହେଇଥିବାରୁ ବୋଧେ ତାଙ୍କର ବଙ୍ଗଳା ସାହିତ୍ୟ ପ୍ରତି ଥାଏ ପ୍ରଚୁର ଶ୍ରଦ୍ଧା । ବେଶ ଭଲ ଆଲୋଚନା କରି ପାରନ୍ତି । ମୁଁ ତାଙ୍କ ଘରକୁ ଗଲେ କିମ୍ବା ସେ ଆମ ଘରକୁ ଆସିଲେ

ଆମର ଏମିତି ସାହିତ୍ୟ ଓ ସିନେମା ଚର୍ଚ୍ଚାରେ ସମୟ କଟିଯାଏ । ମୁଁ ଦେଖିଛି 'ବନଫୁଲର ଶହେଟି ଗଳ୍ପ' ଉପରେ ସେ କେତେ ଥର ମୋ ସହିତ ଆଲୋଚନା କରିଚନ୍ତି । ମିଃ ଦାସ ମହାପାତ୍ର ମଧ୍ୟ ଖୁବ ମେଳାପୀ । ରୁମିର ବାହାଘର ପାଇଁ ମଧ୍ୟ କେତୋଟି ଭଲ ପ୍ରସ୍ତାବ ସେ ଆଣିଥିଲେ । ମୋର ଦୁଇ ବର୍ଷର ରହଣି ଭିତରେ ଦାସ ମହାପାତ୍ର ପରିବାର ସହିତ ବେଶ୍ ଭଲ ଆତ୍ମୀୟ ସମ୍ପର୍କ ରହିଥିଲା । ଆମର ସମୟ ଭଲରେ କଟୁଥିଲା ।

ତାଙ୍କର ଥିଲା ଗୋଟିଏ ପୁଅ ଓ ଗୋଟିଏ ଝିଅ । ଦୁହେଁ ବେଶ ମେଧାବୀ । ମୁଁ ନାଲକୋ ଛାଡ଼ିବା ପରେ ଅବଶ୍ୟ ସେମାନଙ୍କ ସହିତ ସମ୍ପର୍କ ରହିଲା ନାହିଁ । କିନ୍ତୁ ସମ୍ପର୍କ ସମ୍ପୂର୍ଣ୍ଣ କଟିଲା ନାହିଁ ମଧ୍ୟ । ମଝିରେ କେବେ ବାଲେଶ୍ୱର ଗଲେ ସେମାନେ ଥିଲେ ଦେଖାହୁଏ ।

ରୁମିର ବାହାଘର ପରେ ପରେ ହଠାତ୍ ଦିନେ ମୋର ପ୍ରମୋଶନ ଅର୍ଡ଼ର ଆସିଗଲା । ମୁଁ ନିଜେ ମଧ୍ୟ ତାକୁ ଦେଖି ବିସ୍ମିତ ହେଲି । ତାର କାରଣ ଏଇତ ବର୍ଷେ ହେଇ ନଥିବ ମୁଁ ହାଇକୋର୍ଟରେ କେସ୍‌ଟିଏ ଫାଇଲ କରିଥିଲି । ଯେତେଦୂର ମନେ ପଡୁଚି ତା'ର ଦୁଇଟା ମାତ୍ର ତାରିଖ ଯାଇଛି,କିନ୍ତୁ ସରକାରଙ୍କ ତରଫରୁ କୌଣସି ଉତ୍ତର ଦିଆଯାଇନାହିଁ । ତେଣୁ ଡିପାର୍ଟମେଂଟ୍ ତରଫରୁ ହାଇକୋର୍ଟକୁ କୌଣସି ଜବାବ ଦିଆ ନଯାଇ ମୋତେ ପ୍ରମୋସନ ଦେଇଦେବାଟା ମୋ ପ୍ରତି ଯେ ଏ.ସି.ଆର୍.ରେ ଅନ୍ୟାୟ କରାଯାଇଥିଲା ତାହା ପ୍ରମାଣିତ ହେଇଗଲା । କିନ୍ତୁ ମୁଁ କେସ୍ ଚାଲୁରଖିଲି, କାରଣ ପ୍ରମୋସନ ସହିତ ସିନିଅରିଟି ମଧ ଅର୍ଥାତ୍ ଯେଉଁମାନେ ମୋତେ supersede କରିଛନ୍ତି ତାଙ୍କ ଉପରେ ରହିବା ମୋର ପ୍ରାପ୍ୟ ବୋଲି ମୁଁ କେସ୍ ଫାଇଲ୍ ବେଳେ ଦର୍ଶାଇଥିଲି । କହିବା ବାହୁଲ୍ୟ ଯେ କିଛିଦିନ ପରେ ମୋତେ ତାହା ମଧ ମିଳିଗଲା । ତେଣୁ କେସ୍ କ୍ଲୋଜ୍ କରିଦେଲି ।

ମୋର ପ୍ରମୋଶନ ଅର୍ଡ଼ରଟା କିନ୍ତୁ ଅନେକଙ୍କୁ ବିସ୍ମିତ କଲା । କମାଂଣ୍ଡାଟ୍ ଓ ତାଙ୍କ ସମର୍ଥକଙ୍କ ଯୋଗୁଁ ମୋର ଯୋଉ ସମ୍ପର୍କର ହାୱା ସେଠି ସୃଷ୍ଟି ହେଇଥିଲା ସେଥିରେ ପ୍ରମୋଶନ କଥାଟା ବୋଧେ ଅନେକଙ୍କ ଚିନ୍ତାର ବାହାରେ ଥିଲା । ନିଜେ କମାଂଣ୍ଡାଟ୍ ମଧ୍ୟ ବିସ୍ମିତ ହେଇ ଥିବେ । କିନ୍ତୁ ଈର୍ଷା ଓ ପରଶ୍ରୀକାତରତା ତାଙ୍କ ହାଡ଼େ ହାଡ଼େ । ମୋତେ ଅପନିନ୍ଦିତ କରିବାପାଇଁ ତାଙ୍କ ପରି ଆହୁରି ଦୁଇ ତିନି ଜଣ କମାଂଣ୍ଡାଟ୍ ଏକାଠି ହାତ ମିଳେଇ ଥିଲେ ସେତେବେଳେ । ସେମାନେ ମଧ୍ୟ ବିସ୍ମିତ ହେଇ ଯାଇଥିବେ । କିନ୍ତୁ ସତ୍ୟ ଓ ନ୍ୟାୟର ରାସ୍ତାକୁ କିଏ ଓ କେତେଦିନ ଅଟକାଇ ପାରିବ ?

ମୋର ବଦଳି ହେଇଥିଲା ଆସାମର ବଙ୍ଗାଇଗାଓଁ ଅଏଲ ରିଫାଇନାରୀକୁ । ଆସାମରେ ସେତେବେଳେ ବୋଡ଼ୋ ଆନ୍ଦୋଳନ ଶୀର୍ଷରେ । ପ୍ରତିଦିନ ଆର୍ମି ଓ ପୋଲିସକୁ ହତ୍ୟା ଏକ ସାଧାରଣ କଥା । ବୁଲେଟ ଓ ବୋମାର ବ୍ୟବହାର ସର୍ବତ୍ର ଓ ସବୁବେଳେ ।

ସେ ସବୁକୁ ପଛକୁ ରଖି ମୁଁ ଯିବାକୁ ପ୍ରସ୍ତୁତ ହେଲି । ଏହାପରେ ସବୁଠି ଗୋଟାଏ ଉଲ୍ଲାସର ବାତାବରଣ ଖେଳିଗଲା । ବିଗତ ଦୁଇବର୍ଷ ଭିତରେ ନାଲକୋ, ଅନୁଗୋଳ,ଏଫସିଆଇ, ତାଳଚେର ସବୁଠି ମୋର ବନ୍ଧୁମାନେ ଗୋଟାଏ ଖୁସିର ବାତାବରଣ ସୃଷ୍ଟି କଲେ । ସେମାନେ ମୋ ପାଇଁ ବିଦାୟ ସଭା ଓ ଭୋଜିର ଆୟୋଜନ ପାଇଁ ମୋ ସହିତ ଯୋଗାଯୋଗ କଲେ । ଖୁସିର ଲହର ବେଶୀ ଭାଗରେ ଏଇଥି ପାଇଁ ଯେ ସେମାନେ ଅଳ୍ପେ ବହୁତେ ନାଲକୋ ସିଆଇଏସଏଫ ୟୁନିଟକୁ ନେଇ ଗଢ଼ି ଉଠିଥିବା ରାଜନୈତିକ ବାତାବରଣ ସହିତ ପରିଚିତ ଥିଲେ ଏବଂ ମୋର ହାଇକୋର୍ଟର ଆଶ୍ରୟ ନେବା ମଧ୍ୟ ସେମାନଙ୍କୁ ଜଣାଥିଲା । ମୋର ସାହିତ୍ୟିକ ସମ୍ପର୍କ ସହିତ ଯୋଡ଼ ସାଧାରଣ ଲୋକ ସମ୍ପର୍କ ଥିଲା ସେଥିପାଇଁ ସେମାନେ କଥାଟାକୁ ମନେ ରଖିଥିଲେ ।

ସାଧାରଣ ପ୍ରମୋଶନ କଥାଟା ହୁଏତ ଏତେବେଶୀ ଲୋକ ଦୃଷ୍ଟିକୁ ଆସି ନଥାଆନ୍ତା ଯଦି ତାହା ସ୍ଥାନୀୟ ସମ୍ବାଦପତ୍ରରେ ପ୍ରକାଶ ପାଇ ନଥା'ନ୍ତା ।

ପାରାଦୀପରେ ମୋର ପ୍ରଥମ ବନ୍ଧୁ ବାସୁଦେବ ସେଠି ଯେକି 'ସମାଜ'ର ପ୍ରତିନିଧି, ସେ ତ ମୋତେ ସବୁଠୁ ବେଶୀ ପବ୍ଲିସିଟି ଦେଇଥିଲେ । ତାଙ୍କ ସହିତ ସମ୍ପର୍କକୁ ପାରାଦୀପ ଛାଡ଼ିଲା ପରେ ମଧ୍ୟ ଥିଲା । ପ୍ରତିବର୍ଷ ରାଧାନାଥ ଜୟନ୍ତୀ ପାଇଁ ସେ ମୋଠୁ ଲେଖା ନିଅନ୍ତି । ସେଇ ବାସୁଦେବ ଯେତେବେଳେ ମୋର ପ୍ରମୋଶନ କଥା ଶୁଣିଲେ ପାରାଦୀପରୁ ଟେଲିଫୋନ୍ କରି ପଚାରିଲେ ଏବଂ ଶୁଭେଚ୍ଛା ଜଣାଇଲେ ।

ବାସୁବାବୁ ମୁଁ ଚାକିରିରୁ ଅବସର ନେବାଯାଏ ମୋ ସହିତ ସମ୍ପର୍କ ରଖିଥିଲେ । ବନ୍ଧୁ ସତ୍ୟ ରାୟ ଓ ବାସୁବାବୁ ମିଶି ରାଧାନାଥ ଜୟନ୍ତୀ କମିଟି କରି ସ୍ମରଣିକା ପ୍ରକାଶ କରୁଥିଲେ । ଦୁର୍ଭାଗ୍ୟର କଥା ବାସୁବାବୁଙ୍କ ପୁଅ ୧୯୯୯ରେ ମହାବାତ୍ୟାବେଳେ ଆଶ୍ଚର୍ଯ୍ୟ ଜନକ ଭାବେ ନିଖୋଜ ହେଇଗଲା । ମୋର ଏଇ ସମୟରେ ନାଲକୋର ଏକଜିକ୍ୟୁଟିଭ ଡାଇରେକ୍ଟର ଥିଲେ ନୀଳାଦ୍ରୀ ମହାନ୍ତି । ରୁମିର ବାହାଘର ପରେ ତାଙ୍କ ସହିତ ଗୋଟେ ସମ୍ପର୍କ ଯୋଡ଼ି ହେଇଗଲା । ସେ ଥିଲେ ଜୋଇଁ ବିଜୟ ମହାନ୍ତିର ଭିଣୋଇ, ବଡ଼ବାପା ଝିଅ ଭଉଣୀର ସ୍ୱାମୀ ।

ପ୍ରଥମେ ନାଲକୋ ଅଫିସରମାନଙ୍କ ତରଫରୁ ବିଦାୟ ସମ୍ବର୍ଦ୍ଧନାର ଆୟୋଜନ ହେଲା । ଗୋଟାଏ ଶାନ୍ତ ପରିବେଶରେ ସାଧାରଣ ସଭାଟିଏ ହେଲା । ଅବଶ୍ୟ ସେଥିରେ ନୀଳାଦ୍ରୀବାବୁ ନିଜେ ନଥିଲେ । ଅନ୍ୟ ଅଫିସର ଓ କିଛି ପରିବାର ମଧ୍ୟ । ଦୁଇ ଚାରିଜଣ ଲେଖକ ଲେଖିକା । ତା' ପରେ ପରେ ଆରମ୍ଭ ହେଲା ସାହିତ୍ୟ ଅନୁଷ୍ଠାନମାନଙ୍କ ତରଫରୁ ଓ ବ୍ୟକ୍ତି ବିଶେଷଙ୍କ ତରଫରୁ । ନୀଳାଦ୍ରୀବାବୁଙ୍କ ଘରେ ଗୋଟିଏ ରାତ୍ରୀ ଭୋଜନ ଏବଂ

ଶେଷରେ ଥିଲା ଏଫ.ସି.ଆଇ.ର ମୋର ପ୍ରିୟ ବନ୍ଧୁ ଦାସ ମହାପାତ୍ରଙ୍କ ଘରେ । ମାନସୀ ଓ ତା'ର ସ୍ୱାମୀ ମୋତେ ବଡ଼ ଭାଇଠୁ ବେଶୀ ସମ୍ମାନ ଦେଉଥିଲେ ।

ସମସ୍ତଙ୍କର ଓ ସବୁ ଅନୁଷ୍ଠାନ ତରଫରୁ ବିଦାୟ ସମ୍ବର୍ଦ୍ଧନା ଶେଷ ହେଲା । ତା' ଭିତରୁ କେତେକ ମଧ୍ୟ ସମ୍ବାଦପତ୍ରରେ ପ୍ରକାଶ ପାଇଲା । ଶେଷରେ ଖବର ମିଳିଲା ଯେ ୟୁନିଟ ବା ନାଲକୋର ସି.ଆଇ.ଏସ.ଏଫ୍. ତରଫରୁ ବିଦାୟ ସମ୍ବର୍ଦ୍ଧନା ଦିଆଯିବ ନାହିଁ । ଗୋଟିଏ ପାରାମିଲିଟାରୀ ବା ମିଲିଟାରୀର ଶହ ଶହ ବର୍ଷର ପୁରାତନ ପରମ୍ପରା ବା ଟ୍ରେଡିସନ ଯାହାକୁ ନେଇ ଜଣେ ସଦସ୍ୟ ଗର୍ବ କରେ, ସେ ପରମ୍ପରା ପ୍ରଥମ ଥର ପାଇଁ ଜଣେ ଭଡ଼ାରେ ଆସିଥିବା ବହିରାଗତ କମାଂଣ୍ଡାଟ ହିଁ ଭଙ୍ଗ କଲେ । ଏହାଦ୍ୱାରା କଳଙ୍କିତ ଅଧ୍ୟାୟଟିଏ ଆମ ଡିପାର୍ଟମେଂଟରେ ସୃଷ୍ଟି ହେଲା । କିନ୍ତୁ ତା'ର କାରଣ କଅଣ ? କୋଉ କାରଣରୁ ଜଣେ ନିଜର ଉତ୍ସର୍ଗୀକୃତ ଜୀବନର ବହୁ ମୂଲ୍ୟବାନ ସେବା ବଦଳରେ, ଯୋଉମାନଙ୍କୁ ସାଥିରେ ନେଇ ସେ କାମ କରୁଥିଲା, ତାକୁ ବିଦାୟଟିଏ କହିବାରୁ ବିରତ କରାଗଲା ? ସୈନିକମାନେ ନିଜ ତରଫରୁ ସେଥିପାଇଁ ଅନିଚ୍ଛା ପ୍ରକାଶ କରିଥିଲେ କି ? ଅଫିସର ଜଣକ ଡିପାର୍ଟମେଂଟ ପାଇଁ ଅତ୍ୟନ୍ତ ଗର୍ହିତ କାମ କରି ନିନ୍ଦିତ ହୋଇଥିଲେ କି ? ସେ କାମତ ନୁହେଁ । ବରଂ ତାଙ୍କ ପ୍ରତି ସମ୍ପୂର୍ଣ୍ଣ ଅନ୍ୟାୟ କରାଯାଇଥିଲା ବୋଲି ମାନ୍ୟବର ହାଇକୋର୍ଟ ତାହା ପ୍ରମାଣ କଲେ ।

ୟୁନିଟ ତରଫରୁ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ଦିଆ ନଯିବା ପଛରେ ଗୋଟିଏ ମାତ୍ର କାରଣ ହେଇପାରେ 'ଅସୂୟା', ଯାହା ମାନନୀୟ ସି.ଆର.ପି.ଏଫ୍.ରୁ ଆସିଥିବା ତଥାକଥିତ ଅଫିସରଙ୍କୁ ଅତି ନିମ୍ନ ସ୍ତରକୁ ନେଇଗଲା ବୋଲି ସେଠାର ଲୋକେ କହି ବୁଲିଲେ । ଏ ଲୋକ ମତକୁ ସେ ଲିଭାଇ ପାରିବେ କି ?

ତିନି ଜଣ ଇନ୍ସପେକ୍ଟରଙ୍କ ନେତୃତ୍ୱରେ ଦୁଇ ତିନି ଜଣ ସବ୍‌ଇନିସ୍ପେକ୍ଟର ଓ ନୂଆ କରି ଆସିଥିବା ଚାରି ପାଂଚ ଜଣ ଲେଡି କନ୍‌ଷ୍ଟେବଲ ଆସି ମୋ ଘରେ ଯେତେବେଳେ କମାଣ୍ଡାଂଟଙ୍କ ନିର୍ଦ୍ଦେଶ କଥା ମୋତେ କହିଲେ ମୁଁ ବିସ୍ମିତ ହେଲି ।

'ଈଶ୍ୱର ତାଙ୍କୁ କ୍ଷମା କରନ୍ତୁ' ବୋଲି କହିଲି । "ଫର ହି ଡଜ୍ ନଟ୍ ନୋ ହ୍ୱାଟ୍ ହି ଇଜ୍ ଡୁଇଙ୍ଗ ?"

ପରେ ଏ କଥା ମୁଁ ଆସାମ ଗଲା ବେଳେ କଲିକତାରେ ଡିଆଇଜି ବିଷ୍ଣୁ ସହାୟଙ୍କୁ ଭେଟି ଏ ସମସ୍ତ ବିଷୟ ଜଣାଇଥିଲି ।

କହିବା ବାହୁଲ୍ୟ ଯେ ଏ ଘଟଣା ପରେ ସି.ଆଇ.ଏସ.ଏଫ. ହେଡ କ୍ୱାଟରର୍ସରୁ ସର୍କୁଲାର ପ୍ରକାଶ ପାଇଲା ଯେ ଏଣିକି ଫୋର୍ସର ପ୍ରତ୍ୟେକ ସଦସ୍ୟଙ୍କ ବଦଳି ବେଳେ

ୟୁନିଟ ତରଫରୁ ବିଦାୟ ସମ୍ବର୍ଦ୍ଧନା ଦିଆଯିବ ଏବଂ ଏଥିରେ ୟୁନିଟ-ମୁଖ୍ୟ ନିଜେ ଉପସ୍ଥିତ ରହିବେ ।

# ଫୁଲ ଫଗୁଣର ଦେଶ

ଶେଷରେ ମୁଁ ଯେ ଦିନେ କାଉଁରି କାମାକ୍ଷାର ଦେଶରେ ଯାଇ ପହଂଚିବି ଏ କଥା ମୁଁ ସ୍ୱପ୍ନରେ ମଧ୍ୟ ଭାବି ନଥିଲି । କାମାକ୍ଷା ଦେଶର ଗପ ମୁଁ ପିଲାକାଳେ ଅନେକ ଶୁଣି ଥିଲି । ଧଳା ଫୁଲ ଓ କଳାଫୁଲ ଶୁଙ୍ଘେଇ ମଣିଷକୁ ସେଠାକାର ନାରୀମାନେ କୁଆଡ଼େ ମେଣ୍ଢାରେ ପରିଣତ କରେଇ ଦିଅନ୍ତି ଶୁଣିଥିଲି ଏ ସବୁ ଗପ । ଏବେବି ସେମିତି ହେଉଥିବ ? ଆସାମ ଯିବା ରାସ୍ତାରେ ମୁଁ କଲିକତା ପାର୍କ ସର୍କସ୍‌ରେ ଥିବା ଆମ ଡିଆଇଜିଙ୍କ ସହିତ ଭେଟିବାକୁ ସକାଳେ ସକାଳେ ସେଠି ଯାଇ ପହଂଚିଲି । ଅଫିସରେ ଥିବା ଗେଷ୍ଟ ରୁମରେ ବସି ଜଳଖିଆ ଖାଉ ଖାଉ ଭାବୁଥିଲି ମୁଁ ମଣିଷଟିଏ ହେଇ ସେଠାକୁ ଯାଉଛି । ମେଣ୍ଢାଟିଏ ହେଇ ଫେରିବି ନାହିଁ ତ ?

ଡି.ଆଇ.ଜି. ବିଷ୍ଣୁ ସହାୟ ଜଣେ ଭଦ୍ରଲୋକ । ହୃଦୟବାନ । ପଶ୍ଚିମ ବଙ୍ଗ କେଡରର ଆଇପିଏସ । ଦୁର୍ଗାମାଧବ ମିଶ୍ରଙ୍କ ପ୍ରିୟ ଲୋକ । ମୁଁ ନାଲକୋ ଛାଡ଼ିବା ପୂର୍ବରୁ ତାଙ୍କୁ ଖବର ଦେଇଥିଲି, ତାଙ୍କୁ ଭେଟିବି । ତାଙ୍କ ପ୍ରାଇଭେଟ ସେକ୍ରେଟେରୀ ମାନିକ ମୁଖାର୍ଜୀ ଜଣେ ମଉଜିଆ ଲୋକ । ମୋ ସହିତ ଦେଖା ହେବା ମାତ୍ରେ ନାଲକୋ ଓ ପାରାଦୀପରେ ଘଟିଥିବା ଘଟଣାଗୁଡ଼ିକ ଗପି ଗଲେ । ମୋର ସେଥିରେ ଖୁବ୍ ବେଶୀ ଆଗ୍ରହ ନଥିଲେ ମଧ୍ୟ ପଚାରିଲି ନାଲକୋରେ କମାଂଣ୍ଡାଟ ଜବାନଙ୍କ ମେସରୁ ବିନା ପେମେଂଟରେ ରେସନ ଆଇଟମ ନେବା ବିଷୟରେ ଯୋଉ ସ୍ପେସିଆଲ୍ ଅଡିଟ ଡି.ଆଇ.ଜି. କରେଇଥିଲେ ସେଇଟା କଅଣ ହେଲା ? ସେ କହିଲେ ଟଙ୍କା ତ ଫେରେଇଲେ ଅଧିକନ୍ତୁ ତାଙ୍କୁ ସତର୍କ ମଧ୍ୟ କରେଇ ଦିଆ ଯାଇଚି । ଜବାନଙ୍କ ମେସରୁ ଅଫିସରମାନେ ରେସନ ଆଇଟମ ନେବା ଏକ ଅତ୍ୟନ୍ତ ଖରାପ କଥା । ଏକଥା ମୁଁ ଡି.ଆଇ.ଜି.ଙ୍କୁ ହିଁ କହିଥିଲି । ମୋର ନାଲକୋ ଛାଡ଼ିବାର ଅଳ୍ପ କିଛିଦିନ ପୂର୍ବରୁ ସ୍ପେସିଆଲ୍ ଅଡିଟ ହେଇଥିଲା ।

ଡି.ଆଇ.ଜି.ଙ୍କ ସହିତ ଭେଟ ହେଲା ପ୍ରାୟ ୧୧ଟାରେ । ମୋତେ ବିନା ଫେଆର ୱେଲରେ କିପରି ବିଦାୟ ଦିଆଯାଇଚି ସେ କଥା ତାଙ୍କୁ କହିଲି । ସେ ଅସନ୍ତୋଷ ପ୍ରକାଶ କଲେ । ପରେ ଆସାମ ଓ ସେଠାକାର ଅଏଲ ରିଫାଇନେରୀର ସୁରକ୍ଷା ବିଶେଷ କରି ଭୟଙ୍କର ଅବସ୍ଥାରେ ଥିବା ବୋଡ଼ୋ ଆନ୍ଦୋଳନ ବିଷୟରେ ଆଲୋଚନା ହେଲା । ମୁଁ ଆସାମ ଗଲେ ମଧ୍ୟ ସେ ମୋର ଡି.ଆଇ.ଜି. ହୋଇ ରହିବେ । ଅବଶ୍ୟ ସେ ବେଶି ଦିନ ରହି ନଥିଲେ । ମୋର ଗ୍ରୁପ କମାଂଣ୍ଡାଟ୍‌ଙ୍କ ଅଫିସ ପାଟନାରେ । ସେଠି ଅଛନ୍ତି ମୋର ପ୍ରିୟ

ଲୋକ ଡେଭିଡ ଟ୍ରେଜର । ବ୍ରହ୍ମପୁରର ତେଲୁଗୁ ବ୍ୟକ୍ତି । କଲିକତା ଓ ପାଟନା ଭିତରେ ସମତା ରକ୍ଷା ସେତେବେଳେ ସହଜ ନ ଥିଲା । ତଥାପି ଟେଲିଫୋନ ଓ ଫେକ୍ସ, ଟେଲିପ୍ରିଂଟର ଇତ୍ୟାଦିର ସୁବିଧା ଥିଲା । ଫୋନରେ ପାଟନା ଅପେକ୍ଷା କଲିକତା ସହଜରେ ମିଳୁଥିଲା ।

କାମରୂପ ଏକ୍ସପ୍ରେସରେ ମୁଁ ଯାଇ ବାଂଗାଇଗାଓ ଷ୍ଟେସନରେ ପହଂଚିଲି ପରଦିନ ପ୍ରାୟ ଦିନ ଚାରିଟା ବେଳେ । ଖବର ତ ଆଗରୁ ଦିଆଯାଇଥିଲା । ଷ୍ଟେସନକୁ ଗୋଟିଏ କାର ଓ ଗୋଟିଏ ଜିପରେ ୫/୭ ଜଣ ବନ୍ଧୁକଧାରୀ ସିପାହୀ ଆସିଥିଲେ । ଇନ୍ସପେକ୍ଟର ଥିଲେ ସାଥିରେ । ଏସିଷ୍ଟାଂଟ କମାଂଣ୍ଡାଟ ସରକାରୀ କାମରେ ବାହାରକୁ ଚାଲିଯାଇଥିଲେ । ମୋ ଗାଡ଼ି ପଛରେ ବନ୍ଧୁକଧାରୀ ଫୋର୍ସ ଦେଖି ମୁଁ ଭାବିଲି ଏଇଟା ପରମ୍ପରା ନା ସମୟର ଆବଶ୍ୟକତା । ଇନ୍ସପେକ୍ଟର ଜଣେ ଅଭିଜ୍ଞ ବ୍ୟକ୍ତି । ଦୁଇ ବର୍ଷ ହେଲା ସେଠି ରହିଲେଣି । ଦୈନନ୍ଦିନର ବୋମା ବିସ୍ଫୋରଣ ଓ ସୁରକ୍ଷା ବାହିନୀକୁ ଟାରଗେଟ କରିବା କଥା ସେ ମୋତେ କହିଲେ । ମନେ ମନେ ଭାବିଲି ମୁଁ ତେବେ ଆଗ୍ନେୟଗିରିର ମୁହଁ ଉପରେ ଅଛି । ମୋ ପାଇଁ ଏଇଟା ଆଶୀର୍ବାଦ ନା ଅଭିଶାପ ?

ଏପ୍ରିଲ ମାସର ଅଧାଅଧିର ସମୟ । ଦିନ ୪ଟାରେ ଷ୍ଟେସନରେ ଗାଡ଼ିରୁ ଓହ୍ଲାଇ ଯୋଉ ବାୟୁମଣ୍ଡଳୀୟ ଉତ୍ତାପ ଅନୁଭବ କଲି ତାହାଥିଲା ପ୍ରଥମ ବସନ୍ତର ସମୟ । ଆରାମ ଲାଗୁଥିଲା । କିନ୍ତୁ ରାଜନୈତିକ ଉତ୍ତାପରେ ତ ମୁଣ୍ଡ ଭିତରଟା ମଧ୍ୟ ଅସହ୍ୟ ବୋଧ ହେଉଛି । ମୋର ଇନ୍ସପେକ୍ଟର ଗାଡ଼ି ଭିତରେ ବସି କହି ଚାଲିଥିଲେ । ବୋମା ଯେ କୌଣସି ଜାଗାରେ ଯେକୌଣସି ସମୟରେ ଫୁଟି ପାରେ ସାର । ଏମାନଙ୍କୁ ମୋଟେ ବିଶ୍ୱାସ ନାହିଁ । ସେତେବେଳେ ମୋ କାନରେ ସେ କଥା ପଶୁଥିଲା କି ନା କେଜାଣି । ବାହାରେ ଘଂଚ ଗୁଆବଣ ଓ ଆସାମ ଟାଇପ୍ ଘର ଭିତରଦେଇ ଆମ ଗାଡ଼ି ଚାଲୁଥିଲାବେଳେ ତା'ର ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲି । ବେଳେବେଳେ ସୁନ୍ଦରୀ ରମଣୀ ପିଠିରେ ବୋଝଟିଏ ନେଇ ଯାଉଛନ୍ତି । ମଜା ଲାଗୁଥିଲା ଦେଖିବାକୁ । ବେଶ ସୁନ୍ଦର ତ ?

'କୋଉଠାକୁ ଯିବେ ସାର୍ ? ଗେଷ୍ଟ ହାଉସକୁ ନା ଆପଣଙ୍କ ବଙ୍ଗଳାକୁ ? ଆପଣଙ୍କ ଘର ବି ରେଡିକରି ଦିଆଯାଇଛି' । ଇନ୍ସପେକ୍ଟର ପଚାରିଲେ । ଆମ ଚାକିରିରେ ଏଇଟା ଗୋଟିଏ ବଡ଼ ସୁବିଧା । ଯୋଉଠିକି ଗଲେ ଫରନିସ୍ଡ ଘର, କାମ କରିବାକୁ ଲୋକ, ଗାଡ଼ି, ଟେଲିଫୋନ ମହଜୁଦ ଥାଏ । ଅବଶ୍ୟ ଏସବୁ ଆଗରୁ ନଥିଲା । ପରେ ହେଲା । ନିୟମ କରି ଦିଆ ଗଲାଣି । ମୁଁ କହିଲି ଘର ଯଦି ପ୍ରସ୍ତୁତ ଅଛି, ଗେଷ୍ଟ ହାଉସକୁ ଆଉ କାହିଁକି ଯିବା ? ଗୃହ ପ୍ରବେଶ ଭଲ ।

ବଙ୍ଗାଇଗାଓଁ ଷ୍ଟେସନରୁ ଧଲିଗାଓଁ ଟାଉନସିପଟା ପ୍ରାୟ ପାଂଚ କିଲୋମିଟର ଦୂର । ଟାଉନସିପ ଭିତରେ ପଶୁ ପଶୁ ଗୋଟାଏ ଚକ୍ ଚକ୍ କରୁଥିବା ଆସାମ ଟାଇପ ଥ୍ରୀ

ବେଡରୁମ ଘର ଆଗରେ ଗାଡ଼ି ଠିଆ ହେଲା । ସେଇଟା ହେଉଚି 'ବଙ୍ଗାଇଗାଁ ରିଫାଇନେରୀ ଓ ପେଟ୍ରୋ କେମିକେଲସ୍ ଲିମିଟେଡ'ର ଟାଉନସିପ । ସ୍ଥାନଟିର ନାମ କିନ୍ତୁ ଢ଼ଲିଗାଉଁ । ସେତେବେଳେ ଥିଲା କୋକରାଝର ଜିଲାରେ । ମୁଁ ଘରଟା ଉପରେ ଆଖି ପକାଇଲି । ଆସାମ ଟାଇପ ଘର । ଆସାମ ଓ ଉତ୍ତରପୂର୍ବାଂଚଳ ରାଜ୍ୟଗୁଡ଼ିକ ଭୂକମ୍ପ ପ୍ରବଣ ଅଂଚଳ । ପ୍ରାୟ ପ୍ରତି ମାସରେ ଥରେ ଦି'ଥର ଭୂମିକମ୍ପ ହୁଏ । ତେଣୁ ଏଠି କଂକ୍ରିଟ ଛାତର ପକ୍କାଘର ବହୁତ କମ୍ । ଗୋଟା ବାଉଁଶ ବା ବାଉଁଶକୁ ଦୁଇଫାଳ କରି ଠିଆ କରେଇ ଦିଆଯାଏ । ତାପରେ ତା'ଉପରେ ସିମେଂଟର ପଲସ୍ତରା କରାଯାଏ । ଛାତ ସବୁ ଟିଣର । ତା ତଳେ ପ୍ଲାଯଉଡ୍‌ର ସିଲିଂ । ଗରମ ଜଣା ପଡ଼େନି । ଏପରି ରଙ୍ଗ ଦିଆ ଯାଇଥାଏ ଯେ କେବେବି ଜଣା ପଡ଼େନି ଏଇଟା ପକ୍କାଘର ନୁହେଁ ବୋଲି ।

ଗାଡ଼ିରୁ ବାହାରି ମୁଁ ଯେତେବେଳେ ଗେଟ୍ ସାମନାରେ ଠିଆ ହେଲି ସାମନା ବଗିଚାକୁ ଦେଖି ମୁଗ୍ଧ ହେଇଗଲି । ଗୋଟିଏ କୋଣ ଘର । ଡାହାଣ ପଟେ ବିରାଟ ଜାଗା । ସବୁଠି ଖାଲି ଫୁଲ ଆଉ ଫୁଲ । ତା'ରି ଭିତରେ ବିରାଟ ବିରାଟ ଆମ୍ବ, ପଣସ, ଲିଚୁ ଓ ଗୋଟାଏ ଆଖରୁଟ ଗଛ ମଧ୍ୟ । ଲମ୍ବା ଲମ୍ବା ତିନି ଚାରି ଧାଡ଼ି ସପୁରୀ । ତା'ରି ପାଖରେ ହେନା ଓ ସ୍ଥଳପଦ୍ମ । ବାଃ, ଚମତ୍କାର ତ । ରାତିରେ ଥିବ ଧଳା ଓ ଦିନରେ ସୂର୍ଯ୍ୟ କିରଣ ପଡ଼ିଲେ ହେବ ଲାଲ । ଫୁଲ ଯେ କେବଳ ମୋ ବଗିଚାରେ ତା' ନୁହେଁ । ରାସ୍ତାଘାଟ ସବୁଠି ଖାଲି ଫୁଲ ଆଉ ଫୁଲ । ଷ୍ଟେସନରୁ ଆସିଲା ବେଳେ ଦେଖିଛି । ଏ ସବୁର ସୌନ୍ଦର୍ଯ୍ୟ ଆହୁରି ବଢ଼ାଇ ଦିଏ ଘଂଚ ଗୁଆବଣ । ପୁରୀ ଗଲାବେଳେ ଆମେ ରାସ୍ତାର ଦୁଇ କଡ଼ରେ ଦେଖୁଁ ପ୍ରଚୁର ନଡ଼ିଆ ଗଛ । ସମୁଦ୍ର କୂଳ ଅଂଚଳରେ ଏ ଦୃଶ୍ୟ ସ୍ୱାଭାବିକ । ସେ ଜଳବାୟୁରେ ନଡ଼ିଆ ଗଛ ଭଲବଢ଼େ । କିନ୍ତୁ ଆସାମପରି ପାହାଡ଼ିଆ ଅଂଚଳରେ ଗୁଆ ଗଛରେ ପାନଲତା ମାଡ଼ିବାର ଦେଖି ଆଶ୍ଚର୍ଯ୍ୟ ହେଲି । ଆମ ଉତ୍ତର ବାଲେଶ୍ୱର ଅଂଚଳରେ ପାନର ବ୍ୟବହାର ଅଛି । ପାନ ଏକ ଅର୍ଥକରୀ ଫସଲ । ସମୁଦ୍ର ପାଖ ଅଂଚଳରେ ପାନଚାଷ ଅଛି । ଯାହାର ଗୋଟାଏ ଯୋଡ଼ାଏ 'ପାନବରଜ' ଅଛି ତା'ର ଧାନ ଜମି ଦରକାର ନାହିଁ । ଜଳେଶ୍ୱର ହେଉଛି ଗୋଟାଏ ବଡ଼ ବ୍ୟବସାୟ କେନ୍ଦ୍ର । ପାନ ରପ୍ତାନୀ ହୁଏ । ଆମ ଅଂଚଳରେ ପାନ ଗୋଟାଏ ପୁରୁଣା ସଂସ୍କୃତି କଥାକୁହେ । ଅତିଥି ଅଭ୍ୟାଗତ ଆସିଗଲେ ପ୍ରଥମେ ଘର ମାଲିକାଣୀ ପାନ ଡବାନେଇ ବସିଯାଆନ୍ତି । ଖିଲିକାତୀରେ ଗୁଆ ଭଙ୍ଗାଯାଏ । ଛୋଟଛୋଟ ହୁଏ । ପାନକୁ ଚିରି ଦୁଇ ତିନି ଖଣ୍ଡ କରାଯାଏ । ସେଥିରେ ଚୂନ ଲିପାଯାଏ । ଖଇର ପଡ଼େ । ତାପରେ ଗୁଣ୍ଡି, ଦୋକ୍ତା ଓ ଭଜା ଧଣିଆ ରଖି ଖିଲ କରାଯାଏ । ତାପରେ ଅନ୍ୟୁନ ଦୁଇଟି ଖିଲପାନ(ତାହା ହିଁ ଭଦ୍ରାଚାର) ଗୋଟିଏ ଛୋଟ ରେକାବିରେ ରଖି ବଢ଼େଇ ଦିଆଯାଏ । କିନ୍ତୁ ହାୟ, ଏ ସଂସ୍କୃତି ଏବେ ଲୁପ୍ତପ୍ରାୟ । ପାନବରଜ ଭାଙ୍ଗି ସେଠି ଇସ୍ପାତ କାରଖାନା ହେବ । କୃଷି ସଭ୍ୟତା ଲୋପ ପାଉଛି ।

ଆସାମରେ ପାନ ସଂସ୍କୃତି ଭିନ୍ନ । ସେଠି ପାନ ବନ୍ଧୁ ସଙ୍ଖୋଳିବା ଅପେକ୍ଷା ସଭା ସମିତିରେ ବେଶୀ ବ୍ୟବହାର ହୁଏ । ଘୋଡ଼ଣୀ ଥିବା ପାନ ରେକାବୀରେ (ତମ୍ବା କିମ୍ବା କଂସା) ଗୋଟା ପାନ ପତ୍ର ସହିତ ଫାଳିକିଆ ଗୁଆ ଓ ତା ସହିତ ଖଣ୍ଡେ ପାନ ପତ୍ରରେ ମେଂଚାଏ ଚୂନ ରଖାଯାଏ । ଏହା ସଭାର ମାନ୍ୟତା । ସମସ୍ତେ ସେଥିରୁ ପଟେ ପାନ ସହ ଫାଳେ ଗୁଆ ଓ ଟିକିଏ ଚୂନ ନେଇ ପାଟିରେ ପୂରାନ୍ତି । ଏଇଟା ତାଙ୍କ ସଂସ୍କୃତି । ଯେ କୌଣସି ସଭା ସମିତିରେ ଏହା ନିଶ୍ଚୟ ଥାଏ ।

ମୁଁ ମୋ ଘରଟାକୁ ଦେଖି ନେଲି । ତିନିଟା ବେଡରୁମ୍, ଦୁଇଟା ଟୟଲେଟ୍, କିଚେନ, ଷ୍ଟୋର ଓ ଗେରେଜ । ମନ୍ଦ ନୁହେଁ । ସାମାନ୍ୟ କିଛି ଫର୍ନିଚର ଓ ଟିଭି, ଟେଲିଫୋନ । ମୁଁ ଗେଷ୍ଟ ହାଉସ ଯିବିନାହିଁ କହିଲି ।

ଆମେ ପ୍ରଥମେ କାରଖାନା, ସିକ୍ୟୁରିଟି ଷ୍ଟାଫ୍ ଓ ସୁରକ୍ଷା ବ୍ୟବସ୍ଥା ବିଷୟରେ ଆଲୋଚନା କଲୁଁ । ଗୋଟାଏ ଫାଷ୍ଟ ହେଣ୍ଡ ରିପୋର୍ଟ ପାଇଲି । ଏତିକିବେଳେ ଫୋନ ଆସିଲା । 'ସି.ଏମ.ଡି. ଆପଣଙ୍କୁ ଦେଖାକରିବାକୁ ଚାହାନ୍ତି, ଟିକିଏ ଆସନ୍ତୁ ।' କାରଖାନାର ସର୍ବୋଚ୍ଚ ଅଫିସର 'ଚେଆରମେନ କମ ମେନେଜିଂ ଡାଇରେକ୍ଟର' । ଜଣେ ଗୋଆନିଜ୍ । ଅଏଲ ଟେକ୍‌ନୋଲୋଜିଷ୍ଟ । ମୁଁ ପ୍ରସ୍ତୁତ ନଥିଲି । ଦିନରେ ଖାଇ ନଥିଲି । କହିଲି, 'ଏବେ ଆଉ କାହିଁକି ? ବଡ଼ କ୍ଲାନ୍ତ ହେଇପଡ଼ିଛି । ଏବେ ତ ପାଂଚଟା ବାଜିଲାଣି । କାଲି ସକାଳେ ଆସିବି । ସୁରକ୍ଷା ଓ ଅନ୍ୟାନ୍ୟ ବିଷୟରେ କଥା ହେଇ ପାରିବି । ସବୁ ସିନିଅର ଅଫିସରଙ୍କ ସଙ୍ଗେ ମଧ୍ୟ ଦେଖା ହେବ' ।

ପରେ ମୁଁ ଜାଣିଲି ବେଶ କିଛି ସିନିଅର ଅଫିସର ଥିଲେ । ସେମାନେ କେବଳ ଫୁଲ ତୋଡ଼ାଟିଏ ଦେଇ ଥାଆନ୍ତେ । ଆଃ କି ଦୁଃଖ ! ମୋର ଅମଣିଷ ପଣିଆ ଗଲାନାହିଁ । କିନ୍ତୁ ଅନେକ କିଛି ଆଶା ପୋଷଣ କରି ଥାଆନ୍ତେ ଯାହାର ଉତ୍ତର ଦେଇପାରି ନ ଥାଆନ୍ତି । ସେମାନେ ସବୁ ବୋଡ଼ୋ ଆନ୍ଦୋଳନ ଯୋଗୁଁ ଆତଙ୍କିତ ଅବସ୍ଥାରେ ଥାଆନ୍ତି ।

ତାହାହିଁ ହେଲା । ତା'ପର ଦିନ ମୋର ସହକାରୀ କମାଣ୍ଡାଣ୍ଟ ଆସିଗଲେ । ମୋ ସହିତ ଆଲୋଚନା ହେଲା । ତାଙ୍କୁ ସାଥିରେ ନେଇ ଚେଆରମେନଙ୍କ ଅଫିସକୁ ଗଲି । ସେଠି ଆଉ ଦୁଇ ତିନିଜଣ ଅଫିସର ମଧ୍ୟ ଥିଲେ । କଥାବାର୍ତ୍ତାରୁ ଜାଣିଲି ବୋଡ଼ୋ ଆନ୍ଦୋଳନ ଓ ଘନ ଘନ ବନ୍ଦ ଡାକରା ଦିଆ ଯାଉଥିବାରୁ ତା'ଭିତରେ ଯୋଉ ହିଂସାତ୍ମକ କାଣ୍ଡ ହେଉଚି ସେଥିପାଇଁ ତାଙ୍କ ଭିତରେ କୋକୁଆ ଭୟ । ବନ୍ଦ ଡାକରା ମାସକୁ ପ୍ରାୟ ୨୦ ଦିନ । ଆନ୍ଦୋଳନ ଖାଲି ବୋଡ଼ୋମାନେ କରୁନାହାନ୍ତି । ଅସମୀୟମାନେ ମଧ୍ୟ କରୁଛନ୍ତି, ହିଂସାତ୍ମକ କାମ ପ୍ରାୟ ସବୁଦିନ । ଏପରି ସ୍ଥିତିରେ କାରଖାନାର ସୁରକ୍ଷା ସହିତ ଅଫିସରଙ୍କ ସୁରକ୍ଷା ମଧ୍ୟ ଜରୁରୀ । କହିଲି, ଭୟ କରନ୍ତୁ ନି । ସୁରକ୍ଷା ମୋର ଦାୟିତ୍ୱ । ଆପଣଙ୍କୁ ସବୁ ପ୍ରକାର ସାହାଯ୍ୟ ଯୋଗାଇବାକୁ ଚେଷ୍ଟା କରିବି ।

ଆମର ସି.ଆଇ.ଏସ.ଏଫ. ଆଇନ ଅନୁସାରେ କାରଖାନାର ସର୍ବୋଚ୍ଚ ଅଫିସର ମଧ୍ୟ ଆମର ମାଲିକ । ସେମାନଙ୍କ କ୍ଷେତ୍ର ମଧ୍ୟ ନିର୍ଦ୍ଧାରିତ । ତେଣୁ ସେମାନଙ୍କ ସହିତ ସହଯୋଗ ଏକାନ୍ତ ଆବଶ୍ୟକ । ଆଲୋଚନା ବେଳେ ମୁଁ ତାହାହିଁ କହିଲି । ମୋର ନିର୍ଭର ପ୍ରତିଶ୍ରୁତି ପାଇଁ ସେମାନେ ଅପେକ୍ଷା କରିଛନ୍ତି । ମୁଁ ଏକଥା ମଧ୍ୟ କହିଲି ଯେତିକି ଫୋର୍ସ ଅଛି ବର୍ତମାନ ସ୍ଥିତିରେ ତାହା ଯଥେଷ୍ଟ ନୁହେଁ । ତାକୁ ବଢ଼େଇବାକୁ ହେବ । ସେଥି ପାଇଁ ମେନେଜମେଂଟର ସହଯୋଗ ଦରକାର ।

ମୋଟାମୋଟି ଦୁହିଁଙ୍କ ଭିତରେ ଗୋଟାଏ ବୁଝାମଣା ହେଇଗଲା । ଟେଲିଫୋନରେ ଡି.ଆଇ.ଜି.ଙ୍କ ସହିତ କଥାହେଲି । ସେ ମୋତେ ଖୁବ୍ ଶୀଘ୍ର ଅଧିକ ୧୦୦ ଫୋର୍ସ ଦେବାକୁ ରାଜି ହେଲେ । ମୁଁ ଆଶ୍ୱସ୍ତ ହେଲି । ଅଧିକ ଲୋକଙ୍କ ପାଇଁ ଅଧିକ ରହିବାସ୍ଥାନ ଓ ତାଙ୍କପାଇଁ ମେସର ବ୍ୟବସ୍ଥା କରିବାକୁ ହେବ । ସେ ସବୁ ହେଇଗଲା । ଜବାନଙ୍କ ମାନସିକ ସ୍ତରରେ ଶାନ୍ତି ନଥିଲେ ତାଙ୍କଠାରୁ କାମନେଇ ହେବନାହିଁ । ମୋଟାମୋଟି ସି.ଆଇ.ଏସ.ଏଫ.ର ଦାୟିତ୍ୱ କାରଖାନା ପରିସର ଓ ତାର ଟାଉନସିପ । ତା'ପାଇଁ ସ୍ୱତନ୍ତ୍ର ପ୍ଲାନ ତିଆରି କରିଦେଲି ।

ବଙ୍ଗାଇଗାଓଁର ପ୍ରାକୃତିକ ପରିବେଶ ସିନା ମୋତେ ମୁଗ୍ଧ କରିଥିଲା କିନ୍ତୁ ତାର ରାଜନୈତିକ ସ୍ଥିତି ମୋତେ ଚିନ୍ତାରେ ପକାଇଥିଲା । ସେଠି ଦେଖିଲି ଗୋଟାଏ 'ବନ୍ଦ' ଡାକରାରେ କାଉ କୋଇଲି ମଧ୍ୟ ବସାରୁ ବାହାରନ୍ତି ନାହିଁ । ଟ୍ରେନ ଓ ବସ ଏପରିକି ବିମାନ ସେବା ମଧ୍ୟ ବେଳେବେଳେ ବାତିଲ ହୁଏ । କାରଖାନାକୁ କର୍ମଚାରୀ ଆସି ପାରନ୍ତିନାହିଁ । ଅଫିସର ମଧ୍ୟ । ବନ୍ଦ ଡାକରାଟା ଲଗାତର *୬/୭* ଦିନ ପାଇଁ ବଳବତ୍ତର ଥାଏ । ଏଇ ସମୟରେ ଟ୍ରେନଲାଇନ ଉଡ଼େଇବା ଓ ପୋଲ ଉଡ଼େଇବା ସାଧାରଣ କଥା । ସମଗ୍ର ଆସାମ ଯଦି ଦେଶର ଅନ୍ୟାନ୍ୟ ଅଂଶରୁ ବିଚ୍ଛିନ୍ନ ହୁଏ ତେବେ ସାଧାରଣ ଲୋକ କେମିତି ଚଳିବେ ? ହାଟ ବଜାର ପରିବାପତ୍ର କେମିତି ମିଳିବ ? ୫୦୦/୬୦୦ ଜୱାନ ମୋ ପାଖରେ । ସେମାନେ କଅଣ ଖାଇବେ ?

## ପ୍ରଥମ ବୋମା ବିସ୍ଫୋରଣର ଆତଙ୍କ

କାରଖାନାରେ ପ୍ରାୟ ୨୦୦ବୋଡ଼ୋ କର୍ମଚାରୀ । ବୋଡ଼ୋ ଆନ୍ଦୋଳନ ବେଳେ ସେମାନଙ୍କ ସକ୍ରିୟ ଭୂମିକା ନଥିଲେ ମଧ୍ୟ ନୈତିକ ସମର୍ଥନ ଥିବ ନିଶ୍ଚୟ । ଏସବୁକୁ ମନରେ ରଖି ଯୋଜନା ପ୍ରସ୍ତୁତ କରୁଥିବା ବେଳେ ଅର୍ଥାତ୍ ଜଏନ କରିବାର ମାତ୍ର ୮/୧୦ ଦିନ ପରେ ସନ୍ଧ୍ୟାରେ ଅଫିସରେ ବସି କାମକରୁଛି ଗୋଟାଏ ବିରାଟ ବିସ୍ଫୋରଣ ହେଲା । ଚମକି ପଡ଼ିଲି । ଆସିଷ୍ଟାଂଟକମାଂଣ୍ଡାଟ୍ ମୋ ପାଖକୁ ଦୌଡ଼ି ଆସିଲେ ।

ବିସ୍ଫୋରଣ ଘଟିଛି ଚମ୍ପା କ୍ଲବରେ । ଟାଉନସିପ ଭିତରେ ଏବଂ ମୋ ନିଜ ଘରଠାରୁ ଅଳ୍ପ ଦୂରରେ । ଚମ୍ପା କ୍ଲବଟା ଅଫିସରଙ୍କ କ୍ଲବ । ସାଣାରଣତଃ ସନ୍ଧ୍ୟାବେଳେ ସେଠି ଅଫିସର ଓ ତାଙ୍କ ପରିବାର ସେଠାକୁ ଯାଆନ୍ତି । ଅଳ୍ପ କିଛି ଫୋର୍ସ ନେଇ ଆମେ ଦୌଡ଼ିଗଲୁ । ସେଠି ଯାଇ ଯାହାଦେଖିଲି ସେଥିରେ ମୁଁ ହତବାକ୍ ହେଲି । ସମଗ୍ର କ୍ଲବ ଧ୍ୱସ୍ତ ବିଧ୍ୱସ୍ତ । ତା ଭିତରେ ଥିବା ଏକମାତ୍ର ଲୋକର ଶରୀର ଖଣ୍ଡ ଖଣ୍ଡ ହୋଇ ବିଛାଡ଼ି ପଡ଼ିଛି । ତା'ର ଅନ୍ତ ବୁଜୁଳା ରାସ୍ତା କଡ଼ରେଥିବା କୃଷ୍ଣଚୂଡ଼ା ଗଛର ଡାଳରେ ଝୁଲୁଛି । ଏପରି ବିଭତ୍ସ କାଣ୍ଡ ବି ଘଟିପାରେ ? ମୋ ଜୀବନର ପ୍ରଥମ ଅନୁଭୂତି । ସଙ୍ଗେସଙ୍ଗେ ଫୋର୍ସ ଘେରେଇ ଦେଲି ଭସ୍ମୀଭୂତ କ୍ଲବ ଚାରିପାଖରେ । ପୋଲିସ୍‌କୁ ଖବରଦେଲି । ଲୋକଙ୍କୁ କହିଲି ବ୍ୟସ୍ତ ହୁଅନ୍ତୁନି । ଭୟଭୀତ ହୁଅନ୍ତୁନି ।

ବି.ଆର.ପି.ଏଲ. କାରଖାନାଟା ବଡ଼ ନୁହେଁ । କିନ୍ତୁ ବେଶ ସ୍ପର୍ଶକାତର । କାରଣ ତାହା ଗୋଟିଏ ଅଏଲ ଇନଷ୍ଟଲେସନ । ଟାଉନ୍‌ସିପ ମଧ୍ୟ ଛୋଟ । ଲୋକ ସଂଖ୍ୟା ୧୦/୧୫ ହଜାର ଭିତରେ । ପୋଲିସ ଡେପୁଟି କମିଶନର (ଆଡିସନାଲ ଏସ.ପି.)ସହିତ କଥାବାର୍ତ୍ତା କଲି । ଏ ଦାୟିତ୍ୱ ତାଙ୍କର ।

## ପ୍ରିୟ ଲେଖକ ଅମଲ ଦାସ

ପ୍ରଥମ ଦିନହିଁ ମୋର ପରିଚୟ ହେଇଥିଲା ପବ୍ଲିକ ରିଲେସନ ଅଫିସର ଅମଲ ଦାସଙ୍କ ସହିତ । ଜଣେ ଲେଖକ । ଗଳ୍ପ ଓ କବିତା ଲେଖନ୍ତି, ଭଲ ନାଁ ଅଛି । ମନର ମଣିଷଟିଏ ମିଳିଗଲା । ତାଙ୍କରି ମାଧ୍ୟମରେ ସାରା ବଂଗାଇଗାଓଁର ଲେଖକମାନଙ୍କ ସହିତ ସମ୍ପର୍କ ଯୋଡ଼ି ହେଇଗଲା । ଆସାମ ସାହିତ୍ୟ ସଭାର ଗୋଟିଏ ବ୍ରାଂଚ 'ବଙ୍ଗାଇଗାଓଁ ସାହିତ୍ୟ ସଭା'। ଢ଼ଲିଗାଓଁରେ ମଧ୍ୟ ଗୋଟିଏ ସାହିତ୍ୟ ସଭା,ବଙ୍ଗାଇଗାଓଁର ବ୍ରାଂଚ । ମୋର ଲୋକ ସମ୍ପର୍କ ଆରମ୍ଭ ହେଲା ।

ସେତେବେଳେ ବଙ୍ଗାଇଗାଓଁ କୋକ୍ରାଝାର ଜିଲା ଅଧୀନରେ । ପରେ ତାହା ସ୍ୱତନ୍ତ୍ର ଜିଲା ହେଲା । ବଙ୍ଗାଇଗାଓଁ, କୋକ୍ରାଝାର, ବରପେଟା ପ୍ରଭୃତି ବୋଡ଼ୋ ଅଧ୍ୟୁସିତ ଅଂଚଳ । ବୋଡ଼ୋ ଆନ୍ଦୋଳନର ଉଦ୍ଦେଶ୍ୟ ଥିଲା ବୋଡ଼ୋ ସ୍ୱତନ୍ତ୍ର ରାଜ୍ୟ ହେଉ । ବୋଡ଼ୋ ଗୋଟିଏ ସଂଗ୍ରାମୀ ଜାତି । ଆନ୍ଦୋଳନରେ ହିଂସା ପ୍ରଥମ କାମ । ଆନ୍ଦୋଳନ ଦମନ ପାଇଁ ଆର୍ମି ଓ ପୋଲିସ ସାଧାରଣ ଲୋକଙ୍କ ଉପରେ ଯେତିକି ଅତ୍ୟାଚାର କରେ ବୋଡ଼ୋ ସନ୍ତ୍ରାସବାଦୀମାନେ ମଧ୍ୟ ପୋଲିସ ଉପରେ ସେତିକି ଅତ୍ୟାଚାର କରନ୍ତି । କମ୍ ସୁରକ୍ଷାବାହିନୀ (ପୋଲିସ ଓ ଆର୍ମି) ମରି ନାହାନ୍ତି । ରିମୋଟ କଂଟ୍ରୋଲର ବମ୍ ବହୁ ପୋଲିସକୁ ମାରିଛି । ଠିକ୍ ଯେମିତି ଆମ ମାଓବାଦୀ ଓ ପୋଲିସ ।

ମୁଁ କିନ୍ତୁ ଗୋଟିଏ କଥା ଜାଣିଥିଲି ସନ୍ତ୍ରାସବାଦୀମାନେ ବିନା ଟାରଗେଟରେ କାମ କରନ୍ତି ନାହିଁ । ବିନା କାରଣରେ ମଧ୍ୟ କାହାକୁ ଟାରଗେଟ କରନ୍ତି ନାହିଁ । ଏଦୃଷ୍ଟିରୁ ସି.ଆଇ.ଏସ୍.ଏଫ୍.କୁ ସେମାନେ ଟାରଗେଟ କରିବେ ନାହିଁ ଭାବୁଥିଲି । ତେଣୁ ମୁଁ ପ୍ରାୟ ପ୍ରତିଦିନ ଆମ ଲୋକଙ୍କୁ ଜନ ସାଧାରଣଙ୍କ ସହିତ ଭଦ୍ର ବ୍ୟବହାର କରିବାକୁ ବୁଝାଉଥିଲି । ସେଇଟା ଭଲ କାମଦେଲା । ଅନ୍ୟଦିଗରେ ମୁଁ ସବୁ ଲୋକଙ୍କ ସହିତ ନିବିଡ଼ ସମ୍ପର୍କ ରଖିଲି । କର୍ମଚାରୀଙ୍କ ରିକ୍ରେସନ ସେଂଟରକୁ ନିୟମିତ ଗଲି, ଏ ପଟେ ଅଫିସରଙ୍କ କ୍ଲବକୁ ମଧ୍ୟ ଗଲି ନିୟମିତ । ସେଠି କିଛି ଓଡ଼ିଆ ମଧ୍ୟ ଅଛନ୍ତି । ମୋର ବିଶ୍ୱାସ ସାହିତ୍ୟ ଓ ସାଂସ୍କୃତିକ ସମ୍ପର୍କ ଲୋକ ସମ୍ପର୍କର ମେରୁଦଣ୍ଡ । ସମସ୍ତ ଅଂଚଳରେ ଅମଲ ଦାସ, ସିପି ବେଜବରୁଆ, ଡାକ୍ତର ହାଜାରିକା ଏମାନଙ୍କ ସହିତ ପାରିବାରିକ ସମ୍ପର୍କ ଦୃଢ଼ ହେଇ ଉଠିଲା ଏବଂ କର୍ମଚାରୀ ମହଲରେ ମୁଁ ସେମାନଙ୍କ ବନ୍ଧୁ ହେଇଗଲି । ଟାଉନସିପ୍ ଭିତରେ ସେ ଅହମୀୟା ହେଉ ବା ବୋଡ଼ୋ ହେଉ ପର୍ବପର୍ବାଣୀରେ ତାଙ୍କ ଘରକୁ ଗଲି । ଫଳରେ ସନ୍ତ୍ରାସବାଦର ଭୟ ମୋଠାରୁ ଧୀରେ ଧୀରେ ଦୂରେଇ ଯିବାକୁ ଲାଗିଲା । ଟାଉନସିପ ଭିତରେ ବେଶ କିଛି ଲୋକଙ୍କ ସହିତ ମୋର ପାରିବାରିକ ସମ୍ପର୍କ ଗଢ଼ି ଉଠିଲା । ଭାବିଲି ସୁଦିନ ଆସିଲା ଦୁର୍ଦ୍ଦିନ ଭିତରେ । ଯା ଭିତରେ ମୁଁ ବୋଡ଼ୋମାନଙ୍କ ସହିତ ଖୋଲାଖୋଲି ଭାବରେ ମିଶିଲି । 'ଆସାମ ସାହିତ୍ୟ ସଭା' ପରି ବୋଡ଼ୋମାନଙ୍କର ମଧ୍ୟ 'ସାହିତ୍ୟ ସଭା' ଅଛି । ସେ ବର୍ଷ ତା'ର ବାର୍ଷିକ ଅଧିବେଶନ ସେଇ ଢ଼ଲିଗାଉଁଠାରୁ ଅଳ୍ପ ଦୂରରେ ଗୋଟାଏ ପଡ଼ିଆରେ ଅନୁଷ୍ଠିତ ହେଲା । ବିରାଟ ପଡ଼ିଆ । ଆମପରି ତାଙ୍କ ସାହିତ୍ୟ ସଭାର ବାର୍ଷିକ ଅଧିବେଶନ ଦିନକ ପାଇଁ କିମ୍ବା ଗୋଟିଏ ହଲ୍ ଭିତରେ ସୀମିତ ସମୟ ଭିତରେ ସରେ ନାହିଁ । ଗୋଟାଏ ବିରାଟ ଖୋଲା ପଡ଼ିଆରେ ମେଳା ବସେ । ସେଥିରେ ବହିମେଳା, ହସ୍ତତନ୍ତର ଲୁଗା ସହ ଅନ୍ୟାନ୍ୟ ପ୍ରଦର୍ଶନୀ ମଧ୍ୟ ଥାଏ । ତା'ରି ଭିତରେ ସାହିତ୍ୟ ସଭା ମଧ୍ୟ ଥାଏ । ତିନି କି ଚାରିଦିନ ଯାଏ ମେଳା ଚାଲେ । ହଜାର ହଜାର ଲୋକ । ଦେଖିବାର କଥା । ପ୍ରତିଦିନ ମୁଁ ସେଠାକୁ ଯାଏଁ । ଖଣ୍ଡେ ଦିଖଣ୍ଡ ବହି କିଣେ । ବୋଡ଼ୋ ଭାଷାର କବି ଲେଖକମାନଙ୍କ ସହିତ ପରିଚୟ ମଧ୍ୟ ହୁଏ । ଯୋଉଠି ଏତେ ଆତ୍ମୀୟ ସମ୍ପର୍କ ସେଠି ସେଇ ଜାତି ମନରେ ଏତେ ହିଂସା କୋଉଠୁ ଆସୁଛି କେଜାଣି ? ପୁଣି ଭାବେ ସେମାନେ ତାଙ୍କ ଜାତିପାଇଁ ଲଢୁଛନ୍ତି । ପ୍ରତ୍ୟେକ ମଣିଷର ଗୋଟାଏ ଜାତୀୟବାଦୀ ଚରିତ୍ର ଅବଶ୍ୟ ରହିବ । ସେତିକି ଜାତୀୟତା ଆମ ପାଖରେ ଅଛି ?

ବଂଗାଇଗାଓଁରେ ମୋ ନାଆଟା ମୋଟାମୋଟି ଭଲରେ ଚଳିବାକୁ ଆରମ୍ଭ କଲାବେଳେ ମୋତେ ଚେଆରମେନ କହିଲେ ଆମ କାରଖାନା ତିନି ପଟେ ୧୧ଟା ଡିପ ଟିଉବୱେଲ ଅଛି । ସେମାନେ ଭୂଗର୍ଭରୁ ପାଣି ନେଇ କାରଖାନାକୁ ଦିଅନ୍ତି । ନଈରୁ

ଯେତେ ପାଣି ଆସେ ତାହା ଯଥେଷ୍ଟ ନୁହେଁ । କିନ୍ତୁ କେତେଦିନ ହେଲା ବୋଡ଼ୋ ସନ୍ତ୍ରାସବାଦୀମାନେ ସେ କୂଅକୁ ଅଚଳ କରି ଦେଉଛନ୍ତି । ବିଜୁଳି ଲାଇନ କାଟି ଦେଉଛନ୍ତି । ଆପଣ ତାର ସୁରକ୍ଷା ଦାୟିତ୍ୱ ନ ନେଲେ କାରଖାନା ଅଚଳ ହେଇଯିବ । ପୋଲିସ ତାକୁ ନେଇ ପାରିବ ନାହିଁ ବୋଲି କହୁଛି । ମୁଁ ଦ୍ୱନ୍ଦ୍ୱରେ ପଡ଼ିଲି । କାରଖାନାଟି ସୁଉଚ୍ଚ ପାଚେରୀ ଭିତରେ ଥିବାରୁ ଏବଂ 'ନିଷିଦ୍ଧାଞ୍ଚଳ' ଘୋଷିତ ହେଇ ଥିବାରୁ ଆମେ ସିନା ସୁରକ୍ଷା ଯୋଗାଇ ଦେଉଛୁ । କିନ୍ତୁ ତାହା ବାହାରକୁ କିମିତି ଯିବା ?

ମୁଁ ଦେଖିଲି ନଳକୂଅଗୁଡ଼ିକ ମୁଖ୍ୟ ରାସ୍ତା ପାଖରେ କିନ୍ତୁ ବଣଜଙ୍ଗଲ ଘେରା ବୋଡ଼ୋ ଗାଁଗୁଡ଼ିକ ଭିତରେ । କିନ୍ତୁ କାରଖାନାର ସ୍ୱାର୍ଥ ଦୃଷ୍ଟିରୁ ତା'ର ସୁରକ୍ଷା ଆବଶ୍ୟକ । ମୁଁ କଲିକତା ଯାଇ ଡିଆଇଜିଙ୍କ ସହିତ ପରାମର୍ଶ କଲି । ସେ କହିଲେ ଆପଣ ଯଦି ଦାୟିତ୍ୱ ନେଇ ପାରିବେ ନିଅନ୍ତୁ । ମୁଁ ଅଧିକ ଫୋର୍ସ ଯୋଗାଇ ଦେବି । କିନ୍ତୁ ମେନେଜମେଂଟ୍ ଗୋଟିଏ ଚିଠି ଆମକୁ ଦେବ । ମୁଁ ସେଇ ଦିନ ସନ୍ଧ୍ୟା ସୁଦ୍ଧା ବଂଗାଇଗାଓଁ ଫେରିଲି । କଲିକତାରୁ ଗୌହାଟି ଉଡ଼ାଜାହାଜରେ ୪୦ ମିନିଟ ଲାଗେ । ଗୌହାଟିରୁ ବଂଗାଇଗାଓଁ କାରରେ ତିନି ଘଂଟା, ୧୮୫ କିଲୋମିଟର ରାସ୍ତାକୁ । ଏ ରାସ୍ତାରେ ପୋଲିସ ଯିବାକୁ ପ୍ରଚଣ୍ଡ ଭୟ କରୁଥିଲେ ମଧ୍ୟ ମୁଁ ସାଦାପୋଷାକରେ ସାଧାରଣ ମଣିଷ । ମୋ କାରରୁ ମୁଁ ରେଡ୍‌ଲାଇଟ ଖୋଲି ଦେଇଥାଏ । ଗୌହାଟିରୁ ବଂଗାଇଗାଓଁ ସମ୍ପୂର୍ଣ୍ଣ ରାସ୍ତାଟା ବୋଡ଼ୋ ସନ୍ତ୍ରାସବାଦୀଙ୍କ ଏରିଆ ଭିତର ଦେଇଯାଏ ।

କିନ୍ତୁ ବୋଡ଼ୋମାନେ ଟିଉବୱେଲକୁ କାହିଁକି ନଷ୍ଟ କରୁଛନ୍ତି ତାର କାରଣ ମଧ୍ୟ ଜାଣିବା ଦରକାର । ଖାଲି ଫୋର୍ସ ରଖିଦେଲେ ସମସ୍ୟାର ସମାଧାନ ହେବନାହିଁ । ମୋ ପାଖରେ ମଧ୍ୟ କିଛି ବୋଡ଼ୋ ଜୱାନ ଅଛନ୍ତି । ଜଣେ ଏ.ଏସ.ଆଇ. ଅଛନ୍ତି । ମୁଁ ସେମାନଙ୍କ ଭିତରୁ ଦୁଇ ଜଣଙ୍କୁ ନେଇ ସେ ଗାଁ'କୁ ଗଲି । କେତେ ଜଣଙ୍କ ସହିତ ଯେତେବେଳେ କଥା ହେଲି ସେମାନେ କହିଲେ କମ୍ପାନୀ ଆମ ଗାଁ'ରେ କୂଅଖୋଳି ପାଣି ନେବାରୁ ଆମର ସବୁ ଟ୍ୟୁବୱେଲରୁ ପାଣି ଶୁଖିଯାଉଛି । ଆମେ କିମିତି ଚଳିବୁ ?

ମୁଁ ଦେଖିଲି ଏହା ଯୁକ୍ତିଯୁକ୍ତ କଥା । କାରଖାନା ସ୍ଥାନୀୟ ଲୋକଙ୍କୁ ଛାଡ଼ିଦେଇ ପାରିବନାହିଁ । ମୁଁ ଚେଆରମେନ୍‌ଙ୍କୁ ଏକଥା କହିଲି । ସବୁ କଥାକୁ ବୋଡ଼ୋ ସନ୍ତ୍ରାସବାଦ ସହିତ ଯୋଡ଼ିଦେଲେ ହେବନାହିଁ । କାରଖାନା ତରଫରୁ ଗାଁ ଲୋକଙ୍କ ପାଇଁ ସ୍ୱତନ୍ତ୍ର ପାଣିର ବ୍ୟବସ୍ଥା କରାଗଲା । ଆମର ଯୋଉ ଟ୍ୟୁବୱେଲ ଅଛି ସେଥିରୁ ପ୍ରତ୍ୟେକ ଗାଁ'କୁ ୨ଟା କରି ପାଇପରେ ପାଣି ସଂଯୋଗ ଦିଆଗଲା । ତାଙ୍କ ପାଣି ସମସ୍ୟାର ସମାଧାନ କରାଗଲା । ତଥାପି ମୁଁ ସୁରକ୍ଷାର ବ୍ୟବସ୍ଥା କଲି । ଏଗାରଟା ନଳକୂଅ ପାଇଁ ଅଧିକ ଫୋର୍ସ ମଧ୍ୟ ଆସିଲେ । ଦୁଇଦିନ ପରେ ସହକାରୀ ପୋଲିସ କମିଶନରଙ୍କ ସହିତ ଯେତେବେଳେ

ସାକ୍ଷାତ୍ ହେଲା ସେ କହିଲେ ଏ ସମସ୍ୟାର ସମାଧାନ ଆମେ କରି ପାରି ନଥାଆନ୍ତୁ । କାରଣ ସେମାନେ ଆମକୁ ବିଶ୍ୱାସକୁ ନେଉ ନାହାନ୍ତି । ସମସ୍ୟାର ସମାଧାନ ପାଇଁ ପ୍ରଥମେ ଆନ୍ତରିକତାର ସହିତ ସମ୍ପର୍କର ଉନ୍ନତି ହେବା ଆବଶ୍ୟକ, ଏ କଥା ମୁଁ ବୁଝିଥିଲି ।

ତାପରେ ମୁଁ ନିଶ୍ଚିନ୍ତ ହେଇଗଲି । କାରଖାନାର ସୁରକ୍ଷା ପାଇଁ ମୋତେ ଆଉ ବେଶୀ ଚିନ୍ତା କରିବାକୁ ପଡ଼ିଲା ନାହିଁ । ମୁଁ ପର୍ଯ୍ୟଟନରେ ମାତିଲି । ଆସାମରେ ସେତେବେଳକୁ ପାଂଚ ଛଅଟା ସି.ଆଇ.ଏସ.ଏଫ. ୟୁନିଟ ଥିଲା ଯାହାର ସିକ୍ୟୁରିଟି ମୁଖ୍ୟ ଥିଲେ ଜଣେ ଜଣେ ଆସିଷ୍ଟାଂଟ କମାଂଣ୍ଡାଟ୍ । ନାଗାଲାଣ୍ଡ ଓ ତ୍ରିପୁରାର କାଗଜକଳ ତାଆରି ଭିତରେ ଆସେ । ଗ୍ରୁପ୍ କମାଂଣ୍ଡାଟ୍(ପାଟନା) ଅଧିନରେ ଏଇ ସବୁ ୟୁନିଟ । ଗ୍ରୁପ୍ କମାଣ୍ଡାଂଟ୍ ଡେଭିଡ୍ ଟ୍ରେଜରଙ୍କ ସହିତ ମୋର ସମ୍ପର୍କ ଭଲଥିଲା । ପୂର୍ବରୁ ସେ ମୋତେ ଜାଣିଥିଲେ । କେବଳ ସେତିକି ନୁହେ, ମୁଁ ପାରାଦୀପ ପୋର୍ଟ ହସ୍ପିଟାଲରେ ଚିକିତ୍ସିତ ହେଉଥିବା ବେଳେ ସେ ଖବର ପାଇ ପାଟନାରୁ ଜଣେ କର୍ମଚାରୀଙ୍କୁ ପାରାଦୀପ ପଠାଇ ମୋ କଥା ବୁଝିଥିଲେ ଓ ନିଜ ଦେହର ଯତ୍ନ ନେବାକୁ ଥରେ ଦୁଇଥର ଚିଠି ମଧ ଦେଇଥିଲେ । ସେ ମୋତେ ନାଗାଲାଣ୍ଡ ଓ ତ୍ରିପୁରାର ଏଇସବୁ ୟୁନିଟ୍ ବୁଲି ଅଡିଟ୍ କରିବାକୁ କହିଲେ । ପାଟନାରୁ ଲୋକ ପଠାଇ ଏସବୁ କରିବା ସମ୍ଭବ ନୁହେଁ । ମଲୁ ଖୋଜୁଥିଲା ଯାହା ବଇଦ ବତେଇଲା ତାହା । ସମଗ୍ର ଉତ୍ତର ପୂର୍ବାଂଚଳର ରାଜ୍ୟ ବୁଲି ଦେଖିବାକୁ ମୋତେ ସୁଯୋଗ ମିଳିଗଲା । ଉତ୍ତର ପୂର୍ବାଂଚଳରେ ଅଏଲ ରିଫାଇନେରୀ ବ୍ୟତୀତ ପ୍ରାକୃତିକ ବାଷ୍ପ, ସାରକାରଖାନା ଓ ଚାରି ପାଂଚଟା କାଗଜକଳ । ଆସାମ ଚା'ପାଇଁ ସୁପରିଚିତ । ମୁଁ ବର୍ଷକର ପ୍ରୋଗ୍ରାମ କଲି ବୁଲିବାକୁ । ପ୍ରଥମେ ଗଲି ନାଗାଲାଣ୍ଡର 'ଟୁଲି ପେପର ମିଲ' । ପାହାଡ଼ ଉପରେ ସୁନ୍ଦର ଅଥଚ ଛୋଟ କାରଖାନାଟି ଭୂମିକମ୍ପରେ ତିନି ଚାରି ବର୍ଷ ହେଲା ଅଚଳ ହେଇ ପଡ଼ିଥିଲେ ମଧ୍ୟ ତା'ର ସୁରମ୍ୟ ଗେଷ୍ଟ ହାଉସଟି ସବୁବେଳେ କର୍ମ ଚଂଚଳ । ସେଠି ଭି.ଆଇ.ପି.ର ଅଭାବ ନାହିଁ । ମୃତ କରାଖାନାର ଅତିଥି ଚର୍ଚ୍ଚାରେ ମଧ୍ୟ କାର୍ପଣ୍ୟ ନାହିଁ । ଦେଖିଲି ସେ ଅଂଚଳର ତେଲ ଓ ନେଚୁରାଲ ଗ୍ୟାସକୁ ଛାଡ଼ି ଦେଲେ ବାକି ସବୁ କାରଖାନା କ୍ଷତିରେ ଚାଲୁଛନ୍ତି କିମ୍ବା ବନ୍ଦ ଅଛନ୍ତି । ସ୍ୱାଧୀନତା ପରେ ପରେ ପଣ୍ଡିତ ନେହେରୁଙ୍କଦ୍ୱାରା ଯୋଉ ମହାନ୍ ପବ୍ଲିକ ସେକ୍ଟର ଘରୋଇ ପୁଞ୍ଜିବାଦୀ ବ୍ୟବସ୍ଥାକୁ ଚେଲେଞ୍ଜ୍ କରି ନୂଆ ଶିଳ୍ପାୟନର ଯୁଗ ଆରମ୍ଭ ହେଇଥିଲା ସେଥିରେ ଭଟ୍ଟା ପଡ଼ିବାର ସମୟ ଆରମ୍ଭ ହେଇ ଯାଇଥିଲା ସତୁରୀ ଦଶକ ବେଳକୁ । ଅନୀତି ଭିତରେ ନୀତି କୋଉଠି ଉଧେଇ ପାରିବ? ପବ୍ଲିକ ସେକ୍ଟରକୁ ସମସ୍ତେ ଶୋଷଣ କଲେ ।

ମୁଁ ନାଗାଲାଣ୍ଡ,ତ୍ରିପୁରା ଏବଂ ଆସାମର ସବୁ ଅଂଚଳ ଭଲ ଭାବରେ ବୁଲିଦେଖିଚି । ତାକୁଦେଖି ମୁଗ୍ଧ ହେଇଛି ତାର ପ୍ରାକୃତିକ ଶୋଭା, ଫୁଲର ପସରା ଦେଖି । ଆସାମରେ

ବୋଧେ ସବୁଠୁ ବେଶୀ 'ପ୍ଲାୟ ଉଡ୍' କାରଖାନା ଅଛି । ଚା' ବଗିଚା ଓ ଚା' କାରଖାନା ସବୁଠି । ତ୍ରିପୁରାର ଶେଷ ସୀମା 'ବେଲୋନିଆ' ଯାହା ବ୍ରହ୍ମଦେଶକୁ ଛୁଇଁଛି ଏବଂ ଅନ୍ୟ ଦିଗରେ ଯାହା ବାଂଲାଦେଶକୁ ଛୁଇଁଛି ଏସବୁ ସ୍ଥାନକୁ ମୁଁ ଯାଇଛି । ପ୍ରାୟସବୁ ଦର୍ଶନୀୟ ସ୍ଥାନ ବୁଲିଦେଖିଛି । ମଂଚା ଉପରେ ଘର, ଘର ଭିତରେ (ନାଗାଲେଣ୍ଡରେ) ଚୁଲୀ ଉପରେ କୁକୁରର ଝୁଲନ୍ତା ଅଧାଶରୀର ଯୋଉଥିରୁ ଖଣ୍ଡେ ଖଣ୍ଡେ ମାଂସ କାଟି ଖିଆଯାଏ, ତାକୁ ମଧ୍ୟ ଦେଖିଛି । ସେମାନଙ୍କ ଘରେ କଞ୍ଚା ଚା' ପତ୍ରର ଚା' ମଧ୍ୟ ପିଇଛି । ସେମାନଙ୍କ ଅତ୍ୟାଧୁନିକ ସଭ୍ୟତା, ପୋଷାକ ପରିଛଦ, ଇଂରାଜୀରେ ଦକ୍ଷତା, ତଥାପି ଆମେ ତାଙ୍କୁ ଆଦିବାସୀ କହୁ । ସେଇ ନାଗାଲେଣ୍ଡର ଅତ୍ୟାଧୁନିକ ଆଦିବାସୀ ନେତାଟିଏ ଆମ ଓଡ଼ିଶାର ରାଜ୍ୟପାଳ ଥିଲେ ।

ଏ ପ୍ରତ୍ୟେକଟି କଥା ମୁଁ ମୋର ପ୍ରଥମ ଭ୍ରମଣ କାହାଣୀ 'ଉପତ୍ୟକାର ଉପକଥା'ରେ ବିସ୍ତାରିତ ଭାବରେ ଲେଖିଚି । ଆସାମରେ ମୋର ସାଢ଼େ ଦିନି ବର୍ଷର ରହଣୀ ମୋ ଜୀବନର ମହାର୍ଘ ଇତିହାସଟିଏ । ସେଥିରେ ଅଛି କେବଳ ଆସାମ କଥା । ଏ ବହିର ଏ ଯାବତ୍ ଦୁଇଟି ସଂସ୍କରଣ ବାହାରି ଶେଷ ହେଲାଣି । ତୃତୀୟ ପାଇଁ ଏବେ ଚିନ୍ତା କରୁଚି । ଦ୍ୱିତୀୟ ସଂସ୍କରଣ ମଧ୍ୟ ରାଜା ରାମମୋହନ ରାୟ ଫାଉଣ୍ଡେସନ ନେଇ ସବୁ ଲାଇବ୍ରେରୀକୁ ଦେଇ ସାରିଛି । ସେଇ ଆସାମରେ ଥିଲାବେଳେ ମୁଁ ଆସାମ ବାହାରେ ଅର୍ଥାତ୍ ନାଗାଲେଣ୍ଡ, ମଣିପୁର, ତ୍ରିପୁରା, ମେଘାଳୟ, ଅରୁଣାଚଳ ସହିତ ଭୁଟାନର କିଛି ଅଂଶ ଓ ଦାର୍ଜିଲିଂ ପ୍ରଭୃତି ମଧ୍ୟ ଦେଖିଚି । ତା' ଉପରେ ଆଉ ଖଣ୍ଡେ ଭ୍ରମଣ କାହାଣୀ 'ଅପୂର୍ବ ପୂର୍ବ' (ଓଡ଼ିଶା ବୁକ୍ ଷ୍ଟୋର) ମଧ୍ୟ ପ୍ରକାଶ ପାଇଚି । ସମଗ୍ର ଉତ୍ତରପୂର୍ବାଂଚଳକୁ ମୁଁ ଏ ଦୁଇଖଣ୍ଡ ବହିରେ ବାନ୍ଧି ରଖିବାକୁ ଚେଷ୍ଟାକରିଚି । ତାକୁ ମୁଁ ଭ୍ରମଣ କାହାଣୀ ନ କହି ବରଂ ସ୍ମୃତି ସମ୍ବାଦ କହିବା ଠିକ୍ ହେବ ।

ମୁଁ ଆଗରୁ କହିଚି, ଅଳ୍ପ ଦିନ ଭିତରେ ମୋର ଅସମୀୟା ଓ ବୋଡ଼ୋମାନଙ୍କ ସହିତ ଏତେ ନିବିଡ଼ ସମ୍ପର୍କଟିଏ ମୁଣ୍ଡ ଟେକି ଉଠିଲା ଯେ ସେଥିରେ ମୁଁ ଅଭିଭୂତ ହେଇ ପଡ଼ିଲି । ଦିନକୁ ଦୁଇ ତିନିଟା ବୋମା ବିସ୍ଫୋରଣ । ଟ୍ରେନ ଓ ବସରେ ବିସ୍ଫୋରଣ ସହିତ ୩୬ ଓ ୭୨ ଘଂଟିଆ 'ଆସାମ ବନ୍ଦ' ଭିତରେ ମୋ କାମ ଯେ ଏତେ ସ୍ୱାଭାବିକ ହେଇ ପାରିବ ସେ ଧାରଣା ମୋର ନଥିଲା । ପୋଲିସ ଓ ସୁରକ୍ଷା ବାହିନୀ ସନ୍ତ୍ରାସବାଦୀଙ୍କର ସମ୍ମୁଖ ଯୁଦ୍ଧ ମୋତେ ମୋଟେ ବ୍ୟସ୍ତ ବିବ୍ରତ କରୁ ନଥିଲା । ଗୋଟାଏ ଅଭ୍ୟାସରେ ପରିଣତ ହେଇଯାଇଥିଲା । ସେମାନଙ୍କ ଆନ୍ଦୋଳନର ସମ୍ପୂର୍ଣ୍ଣ ବାହାରେ ଆମ ସିଆଇଏସଏଫ । ଅଥଚ ମୁଁ ପ୍ରାୟ ଦେଖୁଥିଲି ପୋଲିସ ଓ ମିଲିଟାରୀ ଭେନରେ ବିସ୍ଫୋରଣ ଏବଂ ସେମାନଙ୍କ ଶୋଚନୀୟ ମୃତ୍ୟୁ ।

ଅଏଲ ରିଫାଇନେରୀଟା ସମ୍ପୂର୍ଣ୍ଣ ଅଟୋମେଟିକ । ସମ୍ପୂର୍ଣ୍ଣ 'ବନ୍ଦ' ସମୟରେ ସବୁଠୁ କମ୍ ଲୋକରେ ମଧ୍ୟ କାମ ଚାଲୁଥିଲା । କାରଖାନାରୁ ସେମିତି କିଛି ବଡ଼ ଧରଣର ଚୋରି ମଧ୍ୟ ନଥିଲା । ତେବେ ତେଲ ଟେଙ୍କରରୁ ଅଭିନବ ଉପାୟରେ ତେଲ ଚୋରିକୁ ଥରେ ଆମେ ଧରି ଦେଇଥିଲୁଁ । ଟେଙ୍କର ତଳେ ସିକ୍ରେଟ ଚେମ୍ବର ଭିତରେ ବଡ଼ ବଡ଼ ପଥର ରଖି ସେହି ଓଜନର ତେଲ ନେଇ ସେମାନେ ବିକ୍ରି କରୁଥିଲେ । ଏଥିରେ ଥରକେ ଦୁଇ ତିନି ଗେଲନ ରିଫାଇନ ତେଲ ବାହାରକୁ ଯାଉଥିଲା । ଆମର ଏ ସଫଳତାକୁ ସେତେବେଳେ ସିଆଇଏସଏଫର ହେଡ଼କ୍ୱାର୍ଟର ମଧ୍ୟ ପ୍ରଶଂସାକରି ଅନ୍ୟମାନଙ୍କୁ ସି.ଆଇ.ଏସ୍.ଏଫ୍.ବୁଲେଟିନ (ସେନ୍ଟିନେଲ) ମାଧ୍ୟମରେ ଜଣାଇ ଦେଇଥିଲା । ଏବେ ବିଦାୟର ସମୟ ପାଖେଇ ଆସିଲା । ଏଯାଏ ମୋର ବଡ଼ ନାତୁଣୀ 'ଚିକୁ' (ବଡ଼ ଝିଅର ବଡ଼ ଝିଅ ମୋ ପାଖରେଥିଲା) ତା'ର ସ୍କୁଲ ଶିକ୍ଷା ସେଇଠୁ ଆରମ୍ଭ । ମୋ ସହିତ ସବୁବେଳେ ବାହାରକୁ ବୁଲିବାକୁ ଯାଏ । ସେ ଆମ ସହିତ ଏତେ ମିଶି ଯାଇଥିଲା ଯେ ଆମକୁ ବାବୁଜୀ ବୋଉ ବୋଲି ଡାକୁଥିଲା ଏବଂ ତା' ବାପା ବୋଉକୁ ମୋଟେ ଚିହ୍ନୁ ନଥିଲା । ଅଧିକନ୍ତୁ ସେମାନଙ୍କୁ ଆଉଟ ସାଇଡର ବୋଲି ମନେ କରୁଥିଲା ।

ବି.ଆର.ପି.ଏଲ୍. ସି.ଆଇ.ଏସ୍.ଏଫ୍. ୟୁନିଟଟା ଅନେକ ଦିନ ଗୋଟିଏ ଛୋଟ କେମ୍ପସ ଭିତରେ କାମ କରୁଥିଲା । ବେରେକ ଭିତରେ ଅଫିସ ଥିଲା । ଆଗରୁ ବି.ଆର.ପି.ଏଲ୍. ପାଇଁ ଫୋର୍ସ ସଂଖ୍ୟା ପ୍ରାୟ ଚାରିଶହ ଥିଲା । ତେଣୁ ଛୋଟ ପରିସର ଭିତରେ ୟୁନିଟ ମୁଖ୍ୟ ଓ ଉପମୁଖ୍ୟଙ୍କ କାମ ଚଳି ଯାଉଥିଲା । କିନ୍ତୁ ପରେ ବୋଡ଼ୋ ଓ ଉଲ୍‌ଫା (ୟୁନାଇଟେଡ ଲିବେରେସନ ଫ୍ରଂଟ ଅଫ୍ ଆସାମ) ଆନ୍ଦୋଳନ ବଢ଼ିବାରୁ ଓ ମୋ ଆସିବା ପରେ ଫୋର୍ସ ସଂଖ୍ୟା ଆଖାପାଖି ଦୁଇଶହ ଅଧିକ ବଢ଼ିବାରୁ ଅଫିସ ଗୃହ ବଢ଼ିବାର ଆବଶ୍ୟକତା ପଡ଼ିଲା । ମୁଁ ନୂଆ ଅଫିସ ଗୃହ ପାଇଁ ଅନୁରୋଧ କଲି । ତାହା ମଞ୍ଜୁର ହେଲା ଏବଂ ସେଇ କେମ୍ପସ ପରିସରରେ ନୂଆ ବିଲଡିଂ ତିଆରି ହେଲା । ମୁଁ ବିଦାୟ ନେବାର ପ୍ରାୟ ମାସକ ପୂର୍ବରୁ କାମ ସରିଗଲା ଏବଂ ଚେଆରମେନଙ୍କ ଦ୍ୱାରା ମୁଁ ତା'ର ଉଦ୍‌ଘାଟନ ମଧ୍ୟ କରେଇ ନେଲି । କିନ୍ତୁ ସାମାନ୍ୟ କେତେକ ରଙ୍ଗ କାମ ବାକି ଥିବାରୁ ଅଫିସ ସେଠାକୁ ଯାଇ ପାରି ନଥିଲା । ମୁଁ ବିଦାୟ ନେଲି । ଅଫିସ ପାଇଁ ଚାରିଟା କଂପ୍ୟୁଟର ମଧ୍ୟ ଆଣି ଥିଲି । ତାର ଟ୍ରେନିଂ ଆରମ୍ଭ ହେଇ ଯାଇଥିଲା ।

ସେଇ ନୂଆ ହଲରେ ମୋର ବିଦାୟ ସମ୍ବର୍ଦ୍ଧନା ଅନୁଷ୍ଠିତ ହେଲା । ତା' ପୂର୍ବରୁ ମେନେଜମେଂଟ ତରଫରୁ ବିଦାୟ ସଭା ଗେଷ୍ଟ ହାଉସରେ ହେଲା । କମ୍ପାନୀର ଡିରେକ୍ଟର ଫିନାନ୍ସ ଓ ଅନ୍ୟ କେତେକ ଅଫିସର ଥିଲେ । ଏହି ସଭାରେ ପାଟନାର ଗ୍ରୁପ୍ କମାଂଣ୍ଡାଟ୍, ଉତ୍ତର ପୂର୍ବାଂଚଳର ସବୁ ଆସିଷ୍ଟାଂଟ କମାଂଣ୍ଡାଟ୍ ଯୋଗ ଦେଇଥିଲେ । ଡିରେକ୍ଟର,ଫିନାନ୍ସ

ତାଙ୍କ ଭାଷଣରେ କହିଲେ ଯୋଉପରି ବିପଜ୍ଜନକ ପରିସ୍ଥିତିରେ ଜଣେ ଡେପୁଟି କମାଣ୍ଡାଟ୍ ସୁରୁଖୁରୁରେ ଏବଂ ସମ୍ପୂର୍ଣ୍ଣ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ଭିତରେ କାମ କରିଗଲେ ତାହା ବରାବର ଆମ ପାଇଁ ଗୋଟିଏ ଉଦାହରଣ ହେଇ ରହିଯିବ । ଏହି ସଭାରେ ମୋ'ସ୍ତ୍ରୀ ଉପସ୍ଥିତ ନଥିଲେ ମଧ୍ୟ ମେନେଜମେଣ୍ଟ୍ ତରଫରୁ ତାଙ୍କୁ ଗୋଟିଏ ହାତବନ୍ଧା ଘଡ଼ି ଉପହାର ଦିଆ ଯାଇଥିଲା । ଘଡ଼ିଟା ଏବେ ମଧ୍ୟ ସେ ବ୍ୟବହାର କରୁଛନ୍ତି ।

ତାର ଦୁଇ ଦିନ ପୂର୍ବରୁ ଆସାମ ସାହିତ୍ୟ ସଭାର ଢ଼ଲିଗାଓଁ ଶାଖା ତରଫରୁ ବିଦାୟ ସଭା ଆୟୋଜିତ ହେଲା । ଏଥିରେ କବି, ଲେଖକ, ଲେଖିକା ମିଶି ପ୍ରାୟ ୩୦ଜଣ ଉପସ୍ଥିତ ଥିଲେ । ଅମଲ ଦାସ, ଡଃ ହାଜାରିକା ଓ କେତେକ ସାହିତ୍ୟିକ ମଧ୍ୟ ଏଥିରେ ଯୋଗ ଦେଇଥିଲେ

ଶେଷ ବିଦାୟ ସଭା ଥିଲା ଆମ ସିଆଇଏସଏଫ ୟୁନିଟ ତରଫରୁ । ସେଇ ନୂଆ ହଲରେ ପ୍ରାୟ ୧୦୦ଜଣ ବସିବାର ଚେଆର ବ୍ୟବସ୍ଥା ଥିଲା । ପ୍ରାୟ ୨୦୦ଜଣ ବସିବାର ହଲ ହେଇଥିଲେ ମଧ୍ୟ ଅଧିକ ଚେଆର ନଥିଲା । ତେଣୁ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟିହେଲା । ସିଆଇଏସଏଫ କେମ୍ପସଟା ଟାଉନସିପ ଭିତରେ ଥିବାରୁ ସେମାନଙ୍କ ପରିବାର ଓ ସିଆଇଏସଏଫ ପରିବାର ସମସ୍ତେ ଏଠାକୁ ଚାଲିଆସିଲେ । ହଲ ଭର୍ତ୍ତି ବସିବାକୁ ଜାଗା ନାହିଁ । ବହୁଲୋକ ଠିଆହେଇ ରହିଲେ । ସଭା ସରିଲାବେଳକୁ ପଛରୁ ଜଣେ ଅସମିୟା ମହିଳା ଭିଡ଼ କାଟି ଆଗେଇ ଆସିଲେ । ହାତରେ କିଛି ଗୋଟାଏ ଧରିଥିଲେ । ମୋ ସାମନାକୁ ଆସି କହିଲେ (ହାତ ଠାରି) ମୁଣ୍ଡ ତଳକୁ କରନ୍ତୁ । ମୁଁ ଟିକିଏ ଝୁଙ୍କି ପଡ଼ିଲି । ସେ ଆସାମବାସୀଙ୍କର ଅତ୍ୟନ୍ତ ଶ୍ରଦ୍ଧା, ସମ୍ମାନ ଓ ପ୍ରେମର ପ୍ରତୀକ 'ଗାମୁଛା'ଟିଏ ମୋ ବେକରେ ଲମ୍ବେଇଦେଇ ଛଳଛଳ ଆଖିରେ ଦୁଇ ହାତଯୋଡ଼ି ନମସ୍କାର କଲେ । ମୁଁ ଭାବବିହ୍ୱଳ ହେଇପଡ଼ିଲି । ପାଟିରୁ କଥା ବାହାରିଲାନି । ସେତେବେଳକୁ ସେ ତଳକୁ ମୁହଁପୋତି ଚାଲି ଯାଇଥିଲେ । ସମଗ୍ର ସଭାସ୍ଥଳରେ ସମସ୍ତେ ନିରବ । ମୋ ଜୀବନର ଏପରି ମହାର୍ଘ ମୁହୂର୍ତ୍ତ ଆଉ କେବେ କୋଉଠି ଭେଟିନାହିଁ । ସେ ଭଦ୍ରମହିଳା ଥିଲେ ଆମ ଡିପାର୍ଟମେଂଟ୍ର ଜଣେ କନ୍ଷ୍ଟେବଲଙ୍କ ସ୍ତ୍ରୀ ।

ସେ ଦିନ ସନ୍ଧ୍ୟାବେଳେ ମୁଁ ଆସିଲି ମୋର ପରବର୍ତ୍ତୀ ଅଫିସରକୁ କିଛି ଫାଇଲ ଓ ଚାବି ହସ୍ତାନ୍ତର କରିବାକୁ । ବାରଣ୍ଡାକୁ ଉଠି ଦେଖିଲି ମୋ ଡିପାର୍ଟମେଂଟର ଜଣେ ଚତୁର୍ଥଶ୍ରେଣୀ କର୍ମଚାରୀ ଓ ତା'ର ସଦ୍ୟ ବିବାହିତା ଝିଅ ଠିଆ ହେଇଛନ୍ତି । ଝିଅଟି ମୋ ପାଦ ଛୁଇଁଲା ।

ମୁଁ ସେମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲିନାହିଁ । କାରଣ ସେମାନେ ମୋତେ ଦେଖା କରିବାକୁ ଆସିଥିଲେ ।

ଏଇ ପ୍ରାୟ ଦୁଇମାସ ତଳର କଥା । ଝିଅଟିର ବାପାର ନାମ ବୋଧେ ସନାତନ, ଆମ ଡିପାର୍ଟମେଂଟର ସୁଇପର(ଝାଡୁଦାର) ହିସାବରେ କାମ କରେ । ଜାତିରେ ହରିଜନ । ଥରେ ସେ ଆସି ମୋ ଆଗରେ ଠିଆ ହେଲା । ମୁଁ ଜାଣେଁ ତା'ର ପରିବାର ଟିକିଏ ବଡ଼ । ତିନୋଟି ଝିଅ ଓ ଦୁଇଟି ପୁଅ । ଅଭାବ ଯୋଗୁଁ ପ୍ରତି ବର୍ଷ ସେ ୨/୩ଥର ପ୍ରଭିଡେଂଟ୍ ଫଣ୍ଡରୁ ଲୋନ ନିଏ ।

ସେଥର ସେ ଯେମିତି ଆସି ଠିଆହେଲା ମୁଁ ପଚାରିଲି 'କଅଣ କିରେ, ଲୋନ ନେବୁ' ?

ସେ ସାମାନ୍ୟ ହସିଲା ତା'ପରେ କହିଲା 'ନେବି ଯେ ... କିନ୍ତୁ '...

ମୁଁ ତାକୁ ଅନେଇଲି । କିନ୍ତୁଟା ପୁଣି କଅଣ ?

ସେ କହିଲା 'ମୋ ଝିଅ ପାଇଁ ପ୍ରସ୍ତାବଟିଏ ଅଛି । ବାହାଘର ପ୍ରସ୍ତାବ' ।

'ଭଲ କଥା, ଫାଇନାଲ ହେଲାଣି ?'

'ସାର, ସେଇଠି ଅଟକି ଯାଇଛି '।

ମାନେ ? ମୁଁ ପଚାରିଲି ।

ସେ କହିଲା 'ଆମର ସେଇ କୌସ୍ତୁଭ ଦାସ । ୱାଟର କେରିଅର । ଆପଣ ତାକୁ ଜାଣନ୍ତି । ସେ ଚାହୁଁଛି ମୋ ଝିଅକୁ ବାହା ହେବ । କିନ୍ତୁ ଆମେ ତ ଅଲଗା ଜାତି । ସେ କାୟସ୍ଥ ଓ ମୁଁ ଅଛବ' ।

ମୁଁ ଗୁମମାରି ବସିଗଲି । ପଚାରିଲି, 'ତେବେ ତୋର ଅସୁବିଧା କୋଉଠି ? ତା' ବାପା ମାଆ ରାଜି ଅଛନ୍ତି' ? ସେ କହିଲା ମୁଁ ଜାଣେନି ।

ମୁଁ ସେ ପିଲାକୁ ଡକାଇଲି । ମୁଁ ଝିଅ ପୁଅ ଦୁହିଙ୍କୁ ଦେଖିଚି । ଭଲ ମେଚ କରିବ । ପଚାରିଲି, 'କିରେ ତୁ ରାଜି ଅଛୁ ? ତା' ଜାତି ଜାଣିଚୁତ' ?

'ହଁ ସାର, ସବୁ ଜାଣେ' ।

'ତୋ ବାପା ମାଆ ଜାଣନ୍ତି '? ସେ ମନା କଲା ।

ସେମାନେ ସମସ୍ତେ ବଙ୍ଗାଳୀ । ଭାଷା ଓ ସଂସ୍କୃତିଗତ ସମତା ବହୁ ମଣିଷଙ୍କୁ ଗୋଟିଏ କରେ । ମୁଁ କହିଲି ତୋ'ବାପାକୁ ମୋ ନାମରେ ଚିଠିଲେଖ । ସବୁ କଥାଲେଖ । ସେଠୁ ଉତ୍ତର ଆସିଲେ ବାକି କଥା । ସେଠୁ ଉତ୍ତର ଆସିଲା "ସେ ଦୁହେଁ ଯଦି ରାଜି ଏବଂ ଆପଣଙ୍କ ଆଶୀର୍ବାଦ ଯଦି ଅଛି, ଆମର ଆପତ୍ତି ନାହିଁ ।"

ମୁଁ ଏକଥା ଜାଣିଲା ପରେ ଖୁସି ହୋଇଗଲି । ସ୍ଥାନୀୟ ଜଣେ ଓକିଲଙ୍କ ସହିତ କଥାବାର୍ତ୍ତା କରି ଜଣେ ଇନ୍ସପେକ୍ଟରଙ୍କୁ ନିଜ ପକେଟରୁ ଦୁଇଶହ ଟଙ୍କାଦେଇ ଝିଅର ବାପ ସହିତ ଆଉ ୩/୪ଜଣ ଏବଂ ବରକନ୍ୟାଙ୍କୁ କୋର୍ଟ ପଠେଇ ଦେଲି । ବାହାଘର ସରିଲା ।

ସେ ଦିନ ସନ୍ଧ୍ୟାରେ ସମସ୍ତଙ୍କୁ ଚା ଭୋଜି ପାଇଁ ଡାକି ଦେଲି ।

ଆମେ ଦୁହେଁ ମଝିରେ ବସିଲୁଁ ଉଭୟଙ୍କ ଗାର୍ଜନ ହୋଇ । ସେ ଦିନ ପୁଣି ଥରେ ଝିଅ ମୁଣ୍ଡରେ ହାତ ଦେଇ ଆର୍ଶୀବାଦ କଲି ।

ଆମ ଦୁହିଙ୍କ ଆଖିରେ ଲୁହ ଟଳମଳ ।

ଏସବୁ ସତ୍ୱେ ମୋ ଭିତରେ ସେ କେତେଦିନ ହେଲା ରାତି ନାହିଁ ଦିନ ନାହିଁ ସବୁବେଳେ ଗୋଟାଏ ଅଜଣା ଘା'ର ଯନ୍ତ୍ରଣା ପରି ରୁଗୁ ହେଉଥାଏ । ସେଇଟା ହେଲା ପ୍ରାୟ ମାସକ ପୂର୍ବରୁ ଗୋଟିଏ ଶ୍ରମିକ ଆନ୍ଦୋଳନରେ ଶ୍ରମିକମାନେ ଅଫିସରେ ପଶି ଭଙ୍ଗାରୁଜା କରିବାରୁ ସେମାନଙ୍କ ଉପରେ ଲାଠିଚାର୍ଜ କରିଦେଲି । ଜୀବନର ପ୍ରଥମ କରି ଏପ୍ରକାର ଘଟଣାର ଅପରାଧ ବୋଧ ମୋତେ ଜର୍ଜରିତ କରି ପକାଉଥିଲା ।

ତିନି ବର୍ଷ ରହଣି ପରେ ସମସ୍ତଙ୍କ ସହିତ ଗୋଟେ ଆତ୍ମୀକ ସମ୍ପର୍କ ବାନ୍ଧି ହୋଇଗଲା ବେଳେ ଏବଂ ବିଦାୟର ଗୋଟେ ସୁଖଦ ସମୟରେ ଏପରି ଘଟଣାଟିଏ ଘଟିବ ଏହା ମୋର ଚିନ୍ତାର ବାହାରେ ଥିଲା । ପୋଲିସ ଆସିଲା ବେଳକୁ ରଣକ୍ଷେତ୍ର ସମ୍ପୂର୍ଣ୍ଣ ଶାନ୍ତ ପଡ଼ି ଯାଇଥିଲା । ଉଭୟ ପକ୍ଷରୁ ବେଶ କିଛି ଲୋକଙ୍କୁ ଆମ ଗାଡ଼ିରେ ହସପିଟାଲ ପଠାଇ ସାରିଥିଲି । ସେଦିନ ପୋଲିସର ଆଗମନ ଗୋଟାଏ ଇଚ୍ଛାକୃତ ଡେରି ବୋଲି ମନେ ହେଉଥିଲେ ମଧ୍ୟ ମୁଁ ସେ ବିଷୟ ଚିନ୍ତା କରୁ ନଥିଲି । ମୁଁ ମୋ ଲୋକମାନଙ୍କୁ କମ୍ପାନୀ ହସପିଟାଲକୁ ନ ପଠାଇ ସରକାରୀ ହସପିଟାଲକୁ ପଠାଇ ସେମାନଙ୍କର ଚିକିତ୍ସା କରାଇଥିଲି ।

ଅନ୍ୟ ଦିଗରେ ସଙ୍ଗେ ସଙ୍ଗେ ଘୋଷଣା କରି ଦେଲି ଯେ ଦୁଇ ଜଣ ଷ୍ଟାଫଙ୍କୁ ସସ୍‌ପେଣ୍ଡ କରିଦିଆ ଯାଇଛି ।

ସେ ଦିନ ସନ୍ଧ୍ୟାରେ ମୁଁ ହସପିଟାଲ ଗଲି ଓ ଆହତ ଶ୍ରମିକମାନଙ୍କୁ ଦେଖି ପୁଣି ସେମାନଙ୍କ ଘରକୁ ଯାଇ ତାଙ୍କ ପରିବାର ବର୍ଗଙ୍କୁ ଭେଟି ସମବେଦନା ଜଣାଇଲି ।

ପରଦିନ କଲିକତାରୁ ଓଡ଼ିଆ ଆଇ.ଜି. ପି.କେ. ସେନାପତି ଆସି ପହଂଚିଲେ । ଗୌହାଟି ବାଟେ ବଂଗାଇଗାଓଁ ପହଂଚିଲା ପରେ ସେ ଘଟଣାସ୍ଥଳ ଦେଖିବାକୁ ଗଲେ । ଦେଖିଲା ପରେ ସେ ସନ୍ତୋଷ ପ୍ରକାଶ କଲେ ଏବଂ କହିଲେ ଯୋଉ ଭାବରେ ଭଙ୍ଗାରୁଜା

ହୋଇଛି ସେଥିରେ ସି.ଆଇ.ଏସ.ଏଫ.ର କାମ ଯଥାର୍ଥ ମନେହୁଏ । କମ୍ପାନୀ କର୍ତୃପକ୍ଷ ମୋତେ ଆଗରୁ ସମର୍ଥନ କରିଥିଲେ । ପୋଲିସ ଡେପୁଟି କମିଶନର ମଧ୍ୟ ଥିଲେ ମୋ ସପକ୍ଷରେ ।

ଏସବୁ ସତ୍ୱେ ସେ ଅପରାଧବୋଧ ଏବେବି ମୋତେ କଷ୍ଟ ଦିଏ । ମୁଁ ନିରୁପାୟ ଅପରାଧୀଟିଏ ପରି ସେଠୁ ଆସିଲି ।

# ତିନି ରାଜ୍ୟପାଳଙ୍କ କଥା ଓ ଓଡ଼ିଆ ଅସ୍ମିତା

ମୁଁ ଆସାମରେ ଥିଲାବେଳେ, ମୋର ସୌଭାଗ୍ୟ ଯେ ତିନିଜଣ ଦକ୍ଷ ଓଡ଼ିଆ ରାଜନୀତିଜ୍ଞ ତଥା ଜନନେତା ଉତ୍ତର ପୂର୍ବାଂଚଳରେ ରାଜ୍ୟପାଳ ଥିଲେ । ମୁଁ ଏଇଟାକୁ ସୌଭାଗ୍ୟ ଏଇଥି ପାଇଁ କହୁଛି ଯେ ଆମ ଓଡ଼ିଆମାନଙ୍କ ମଧ୍ୟରେ ରାଜ୍ୟପାଳ ପଦରେ କିଏ କାହିଁକି ରହୁ ନାହାନ୍ତି ବୋଲି କଥାଟା ପ୍ରାୟ ଉଠିଥାଏ । ଆଲୋଚନା ସମାଲୋଚନା ମଧ୍ୟ ସଂବାଦ ପତ୍ରରେ ପ୍ରକାଶ ପାଏ । ମୁଁ ତ ସେଇ ସଂସ୍କୃତିର ମଣିଷଟିଏ । ମୁଁ ଯେତେବେଳେ ଦେଖିଲି ତିନିଜଣ ରାଜ୍ୟପାଳଙ୍କ ଭିତରୁ ମୁଁ ଅନ୍ତତଃ ଦୁଇଜଣଙ୍କୁ ଭଲ ଭାବରେ ଜାଣେ, ମୋ ଭିତରେ ଅନନୁଭୂତ ଅନୁଭବଟି ଉଙ୍କି ମାରିଲା । ଅମାୟିକ ବଂଧୁମାନଙ୍କୁ କଥାଛଳରେ କହିଦେଲି ମୋର ଦୁଇ ଜଣଙ୍କ ସାଥିରେ ପରିଚୟ ଅଛି ।

ତିନିଜଣଙ୍କ ଭିତରୁ ଆସାମରେ ଲୋକନାଥ ମିଶ୍ର, ଅରୁଣାଚଳରେ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ମଣିପୁରରେ ଚିନ୍ତାମଣି ପାଣିଗ୍ରାହୀ । ଚିନ୍ତାମଣିଙ୍କ କଥା ମୁଁ ଆଗରୁ ଲେଖିଛି । ତାଙ୍କୁ ମୁଁ 'ପଂଚମୀ' ପୁସ୍ତକ ପାରାଦୀପରେ ଦେଇଥିଲି । ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସହିତ ସାମାନ୍ୟ ସଂପର୍କ ମୋର ରାଉରକେଲାରୁ । ତେଣୁ ତିନିଜଣଙ୍କୁ ମୁଁ ତିନିଟା ଚିଠି ଲେଖିଲି । ଲୋକନାଥ ମିଶ୍ରଙ୍କୁ ସାକ୍ଷାତ କରି ମୋର ପୁସ୍ତକଟିଏ ଦେବାକୁ, ଚିନ୍ତାମଣି ପାଣିଗ୍ରାହୀଙ୍କୁ ମଣିପୁର ବୁଲିଯିବା ପାଇଁ ଏବଂ ସୁବିଧା ହେଲେ ସାକ୍ଷାତ କରିବାକୁ ଓ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କୁ ଲେଖିଲି, ମୁଁ ଅରୁଣାଚଳ ବୁଲି ଦେଖିବି ଓ ଆପଣ କେବେ ରାଉରକେଲା ଗଲେ ମୁଁ ମଧ୍ୟ ଯିବି ଏବଂ ମୋର ଖଣ୍ଡେ ଗପ ବହି ଆପଣ ସେଠି ଉନ୍ମୋଚନ କରିବେ । କିନ୍ତୁ ଦୁଃଖର କଥା ଚିନ୍ତାମଣି ପାଣିଗ୍ରାହୀ ମୋତେ ଉତ୍ତର ଦେଲେ ନାହିଁ । ଲୋକନାଥ ମିଶ୍ରଙ୍କ ପ୍ରାଇଭେଟ ସେକ୍ରେଟେରୀ ଠାରୁ ଚିଠି ପାଇଲି ପ୍ରାୟ ମାସକ ପରେ । ଗୌହାଟି ଯାଇ ସାକ୍ଷାତ କରିଥିଲି । କିନ୍ତୁ ମାତ୍ର ସାତ ଦିନ ଭିତରେ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ଠାରୁ ନିଜ ହାତଲେଖା ଚିଠି ପାଇଲି । ତାହା ଥିଲା ଅତ୍ୟନ୍ତ ସୌହାର୍ଦ୍ଦପୂର୍ଣ୍ଣ । ସେ ଲେଖିଥିଲେ ମୁଁ ମୋ ପି.ଏସ୍.କୁ କହିଦେଉଛି ତୁମେ ଆସିଲେ ମୁଁ ଥାଏ କି ନଥାଏ, ତୁମେ ରାଜଭବନରେ

ଅତିଥି ହିସାବରେ ଦୁଇଦିନ ରହିପାରିବ । ଦ୍ୱିତୀୟରେ ମୁଁ ଅମୁକ ତାରିଖରେ ରାଉରକେଲା ଯିବି ସେତିକି ବେଳକୁ ତୁମେ ଗଲେ ବହିର ଉନ୍‌ମୋଚନ କାମ କରିଦେବା । ମୁଁ ଖୁସି ହୋଇଗଲି ।

ସେ କାମ କଲଚରାଲ ଏକାଡ଼େମୀରେ ହେଲା ଓ ମୋର ତୃତୀୟ ଗଳ୍ପ ସଂକଳନ 'ଗୋଟିଏ ମେଣ୍ଢାପଲ' ବେଶ୍ ଜାକଜମକରେ ହେଇଗଲା । କିନ୍ତୁ ତାଙ୍କ ବିଷୟରେ କଥାଟା ଏଇଠି ସରୁନାହିଁ ।

ଶ୍ରୀ ଦ୍ୱିବେଦୀ ସଂପୂର୍ଣ୍ଣ ଅବସର ନେଲା ପରେ ଆସି ରାଉରକେଲାରେ ହେମନ୍ତ ମିଶ୍ରଙ୍କ (ଜୋଇଁ) ଘର ପାଖରେ ଷ୍ଟିଲପ୍ଲାଂଟ୍ ଦେଇ ଥିବା ଗୋଟିଏ ସ୍ୱତନ୍ତ୍ର ଘରେ ରହିଲେ । ମୁଁ ପୁଣି ସଂପର୍କ ଯୋଡ଼ିଲି । ଥରେ ସେ ମୋତେ କହିଲେ 'କେତେବର୍ଷ ତଳେ ଆମେ ଓଡ଼ିଆରେ କ୍ରାନ୍ତିପଥ ପତ୍ରିକା ପ୍ରକାଶ କରୁଥିଲୁ । ସୂର୍ଯ୍ୟକାନ୍ତ ତାର କାମ ଦେଖୁଥିଲା, ମୁଁ ତାକୁ ଆଉଥରେ ଚାଲୁ କରିବାକୁ ଚାହୁଁଛି' । ଅଶୀଦଶକର ପ୍ରଥମ ଭାଗବେଳକୁ 'କ୍ରାନ୍ତିପଥ' ଭୁବନେଶ୍ୱରରୁ ପ୍ରକାଶ ପାଉଥିଲା । ସେତେବେଳେ ଏଥିରେ ପ୍ରତ୍ୟେକ ସଂଖ୍ୟାରେ ଦେଶର ଅର୍ଥନୀତି, ରାଜନୀତି, ସମାଜ ବିଜ୍ଞାନ, ଗଣତାନ୍ତ୍ରିକ ବ୍ୟବସ୍ଥା, କୃଷି, ଶିଳ୍ପ ଓ ଶିକ୍ଷା ତଥା ଆହୁରି ଅନେକ ବିଷୟବସ୍ତୁ ଉପରେ ପ୍ରବନ୍ଧ ପ୍ରକାଶ ପାଉଥିଲା । ପ୍ରତ୍ୟେକ ସଂଖ୍ୟାରେ ଏହିପରି ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ଭିନ୍ନ ଭିନ୍ନ ଲେଖକ ନିଜ ମତପୋଷଣ କରୁଥିଲେ । ଏଥିରେ ନିୟମିତ ଯେଉଁମାନେ ଲେଖୁଥାନ୍ତି ସେମାନେ ହେଲେ, ବୈଦ୍ୟନାଥ ମିଶ୍ର, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ସୂର୍ଯ୍ୟକାନ୍ତ ଦାସ, ବେଣୁଧର ପ୍ରଧାନ, ବାସୁଦେବ ସାହୁ, ବିଷ୍ଣୁ ଚରଣ ରାଉତ, ଶ୍ରୀରାମ ଚନ୍ଦ୍ର ଦାଶ, ବାମାଚରଣ ଦାସ ଓ ଆହୁରି ଅନେକ ଶିକ୍ଷାବିତ୍ । ପ୍ରତ୍ୟେକ ପ୍ରବନ୍ଧର ମାନ ଅତି ଉଚ୍ଚକୋଟୀର । ଓଡ଼ିଆ ଭାଷାରେ ଏପରି ପତ୍ରିକା ଆଉ ବାହାରୁ ନାହିଁ । ମୁଁ ସେତେବେଳେ ଥିଲି ଏହାର ନିୟମିତ ଗ୍ରାହକ ଓ ପାଠକ । 'ତମକୁ ସେ କାମ ଦେବି ଓ ତୁମେ ସୂର୍ଯ୍ୟକାନ୍ତ ସହିତ କଥାବାର୍ତ୍ତା କରି ତାକୁ ପୁଣି ଚଳୁକର । ଆର୍ଥିକ ଦିଗ ମୁଁ ଦେଖିବି' ବୋଲି ଶ୍ରୀ ଦ୍ୱିବେଦୀ ମୋତେ କହିଲେ ।

ସେ ତାର କିଛି କାଗଜ ପତ୍ର ମୋତେ ଦେଲେ । ମୁଁ ଦ୍ୱନ୍ଦରେ ପଡ଼ିଲି । ମୁଁ ମୋ ନିଜକୁ ସୂର୍ଯ୍ୟକାନ୍ତ ଦାସଙ୍କ ସହିତ ମାପିଲି । ପରେ ଭୁବନେଶ୍ୱର ଯାଇ ତାଙ୍କ ସହିତ ପରାମର୍ଶ କଲି । ସେ ଖୁସି ହେଲେ ଓ କହିଲେ ଆପଣ କାମ ଆରମ୍ଭ କରନ୍ତୁ, ମୁଁ ଲେଖା ଆଣିବାରେ ସାହାଯ୍ୟ କରିପାରିବି ।

କିନ୍ତୁ ହାୟ ମାନସିକ ସ୍ତରରେ ଗୋଟାଏ ପ୍ରସ୍ତୁତି ଆରମ୍ଭ କଲା ବେଳକୁ ଆଗ ପଛ ହେଇ ସେ ଦୁହେଁ ଚାଲି ଗଲେ ।

ପତ୍ରିକା ପ୍ରକାଶନ ପ୍ରସ୍ତାବ ସେଇଠି ରହିଗଲା । ତାଙ୍କର ସେ କାଗଜପତ୍ର ଅନେକ ଦିନ ଯାଏ ମୋ ପାଖରେ ଥିଲା କେବଳ ତାଙ୍କ ସ୍ମୃତିକୁ ନେଇ ।



# ଗୋପନ ବାର୍ଷିକ ଚରିତ୍ର ପଞ୍ଜିକା

ଓଡ଼ିଆରେ ତାକୁ ଗୋପନ ବାର୍ଷିକ ଚରିତ୍ର ପଞ୍ଜିକା ବୋଲି କହିବା ଠିକ୍ ହେବ, ଯଦିଓ ତାର ଓଡ଼ିଆ ନାମକରଣ ଏଯାଏଁ ସୃଷ୍ଟି ହେଇନାହିଁ । ହେବାର ଆବଶ୍ୟକତା ମଧ୍ୟ ନାହିଁ ।

କେନ୍ଦ୍ର ସରକାରଙ୍କର ଏହା ପ୍ରଥମେ ଇଂରେଜ ଅମଳରେ ସୃଷ୍ଟି ହେଇଥିଲା । କର୍ମଚାରୀମାନଙ୍କର ଆଚରଣ ବିଧି ଯାହା ଉପରେ ନିର୍ଭର କରେ ଜଣେ କର୍ମଚାରୀର ପଦୋନ୍ନତି ବା ଭବିଷ୍ୟତ । ସେ ଚାକିରି ହରେଇପାରେ ଯଦି ତା'ର ଏ.ସି.ଆର. ଭଲ ନ ଥାଏ । ତେଣୁ ଏ.ସି.ଆର. ଲେଖିବା ପାଇଁ ସରକାର ନିର୍ଦ୍ଦିଷ୍ଟ କେତୋଟି ନୀତି ପ୍ରଣୟନ କରିଛନ୍ତି । ସେ ନୀତିରେ ଏ.ସି.ଆର. ଲେଖିବା ଅଧିକାର ପ୍ରାପ୍ତ ଅଧିକାରୀ ତାଙ୍କ ଅଧସ୍ତନ କର୍ମଚାରୀଙ୍କ ବାର୍ଷିକ ଗୋପନ ପଞ୍ଜିକା ଲେଖିଲାବେଳେ ସଂପୂର୍ଣ୍ଣ ନିରପେକ୍ଷ ଓ ବସ୍ତୁନିଷ୍ଠ ହୋଇ ଲେଖିବେ । ସେ କୌଣସି ବାହ୍ୟ ବା ଶୁଣାଶୁଣି କଥାରେ ପ୍ରଭାବିତ ହେବେନାହିଁ । ମନ୍ତବ୍ୟ କେବଳ ତାଙ୍କର ସରକାରୀ କାମର ପରିସରଭୁକ୍ତ ହେଉଥିବା ଆବଶ୍ୟକ ଇତ୍ୟାଦି । ଏସବୁ ସତ୍ତ୍ୱେ ଅଫିସରମାନେ ଅନେକ ସମୟରେ ଖାମଖିଆଲି ଭାବରେ ଏବଂ ନିଜର ବ୍ୟକ୍ତିଗତ ସଂପର୍କକୁ ଆଧାର କରି ଏ.ସି.ଆର. ଲେଖନ୍ତି । ଫଳରେ କର୍ମଚାରୀମାନେ ପରେ ନ୍ୟାୟ ପାଇବାକୁ କୋର୍ଟର ଦ୍ୱାରସ୍ଥ ହୁଅନ୍ତି । ସେତେବେଳେ ସରକାର ଅଡୁଆରେ ପଡ଼ନ୍ତି ଏବଂ ଅଯଥା ଖର୍ଚ୍ଚାନ୍ତ ହୁଅନ୍ତି । ନ୍ୟାୟୋଚିତ ଭାବରେ ଏ.ସି.ଆର. ଲେଖାଯାଇ ନଥିଲେ କର୍ମଚାରୀ ହତୋତ୍ସାହିତ ହୁଏ ଏବଂ ଆଗକୁ ଭଲକାମ କରିବାରେ ଆଗ୍ରହ ପ୍ରକାଶ କରେ ନାହିଁ । ଏଥିରେ ସରକାରଙ୍କର କ୍ଷତିହୁଏ । ଭଲ, କର୍ମଠ, ସାହସୀ, ସଚ୍ଚୋଟ ତଥା ଉତ୍ସାହୀ କର୍ମୀ ମିଳନ୍ତି ନାହିଁ ।

ମୁଁ ଏବେ ମୋ ନିଜ କଥାକୁ ଆସୁଚି । ମୁଁ ସି.ଆଇ.ଏସ୍.ଏଫ୍. ରେ ଯୋଗ ଦେଲି ୧୯୭୧ ମସିହାରେ ଯେତେବେଳେ କେନ୍ଦ୍ର ସରକାର ରାଉରକେଲା ଉସ୍ପାତ କାରଖାନାରେ ସି.ଆଇ.ଏସ୍.ଏଫ୍. ନିଯୁକ୍ତ କଲେ । ଏ.ସି.ଆର.ର ନିୟମ ଆମକୁ ସେଇ ଠାରୁ ଲାଗୁ ହେଲା ବୋଲି ଧରାଯିବ । କିନ୍ତୁ ଏ.ସି.ଆର. ଲେଖିବାର ନିୟମାବଳୀ ସେତେ ଜୋରଦାର ନଥିଲା ବୋଲି ଆମେ ସେ ଦିଗରେ ସେମିତି ଧ୍ୟାନ ଦେଉ ନ ଥିଲୁ । ଆମର ଧାରଣା ଥିଲା "କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ ।"କାମ କରି ଯିବା, ଫଳ ମନକୁ ମନ ଆସିବ । କିନ୍ତୁ ଆପ୍ତ ବାକ୍ୟ କେବେଠୁ ତାର ଅର୍ଥ ହରେଇଲାଣି ।

ସେ ସବୁ ପୁରୁଣା କଥା । ଏକ ବିଂଶ ଶତାବ୍ଦୀରେ ନୀତି ଉପରେ ବିଶ୍ୱାସ ଥାଇପାରେ କିନ୍ତୁ ତାକୁ ସର୍ବୋଚ୍ଚ ସୀମା ବୋଲି ଧରି ହେବନାହିଁ । ଜଣେ ହୁଏତ ନିଃସ୍ୱାର୍ଥପର ଭାବରେ କାମ କରୁଥାଇ ପାରେ କିନ୍ତୁ ଆକଳନ ଆଉ ଜଣେ କରେ । ସିଏ ଯଦି ତୁମ ଲାଇନରେ ନଥାଏ ତେବେ ତୁମ କାମ ତୁମ ପାଖରେ ରହିଯିବ ।

ମୁଁ ରାଉରକେଲାରୁ ଗଲି ରାଞ୍ଚି । ସି.ଆଇ.ଏସ୍.ଏଫ୍. ଆରମ୍ଭ ବେଳେ ରାଉରକେଲାରେ ମୋତେ କଠିନ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପୁରୁଣା ଷ୍ଟାଫଙ୍କ ଧର୍ମଘଟ । ମାଲି ମକଦ୍ଦମା, ମୋ ପାଇଁ ଖଣ୍ଡା ଧାରରେ ଚାଲିବା ପରି ହେଉଥିଲା । ମୁଁ ଥିଲି induction ସପକ୍ଷରେ ଅର୍ଥାତ୍ ସରକାରଙ୍କ ସପକ୍ଷରେ । ସେ ସମସ୍ୟା ସବୁ ସେ ସମୟର ଡି.ଆଇ.ଜି. ଜି.ସି. ସେନାପତି ଜାଣନ୍ତି । ସେଇ ସମୟ ଠାରୁ ୧୯୭୯ ପର୍ଯ୍ୟନ୍ତ ରାଉରକେଲାରେ କ୍ରାଇମ୍ ଓ ଇଣ୍ଟେଲିଜେନ୍ସ ୱିଙ୍ଗ୍‌ର ଇନ୍ସପେକ୍ଟର ଭାବେ ମୋର କୃତି ସମସ୍ତେ ଜାଣନ୍ତି । ମୁଁ ସମ୍ମାନର ଶିଖରରେ ।

୧୯୭୯ ରୁ ୧୯୮୦ ରାଞ୍ଚି ହେଭି ଇଞ୍ଜିନିୟରିଂରେ । ସେଠୁ ଗଲି ୩/୪ ମାସ ପାଇଁ SHAR ସେଂଟର, ଶ୍ରୀହରିକୋଟାକୁ । ରାଞ୍ଚିରେ ଅଲ୍‌ଇଣ୍ଡିଆ ପୋଲିସ ଷ୍ଟ୍ରାଇକ୍ । ତାକୁ ଦମ୍ଭର ସହିତ ସମ୍ମୁଖୀନ ହେଲି । ସେଠି ମଧ୍ୟ ପ୍ରଶଂସିତ । ସବୁ କଥା ପୂର୍ବ ଅଧ୍ୟାୟ ମାନଙ୍କରେ ଲେଖିଚି । ଏଇ ସମୟ ପର୍ଯ୍ୟନ୍ତ ମୁଁ ଏ.ସି.ଆର. କଥା ଚିନ୍ତା ମଧ୍ୟ କରି ନାହିଁ । ମୋ ନିଜ କାମରେ ମୁଁ ସନ୍ତୁଷ୍ଟ ।

୧୯୭୯ ଶେଷ ଭାଗ ବେଳକୁ ଅର୍ଥାତ୍ ଅଲ୍ ଇଣ୍ଡିଆ ପୋଲିସ ଷ୍ଟ୍ରାଇକ୍ ପରେ,ଯୋଉଥିରେ ସି.ଆଇ.ଏସ୍.ଏଫ. ମଧ୍ୟ ସାମିଲ ଥିଲା,ସରକାର ତାଙ୍କ ନୀତିରେ ପରିବର୍ତ୍ତନ ଆଣିଲେ । ଆରମ୍ଭ ହେଲା ପ୍ରମୋଶନ ପାଲା । ମୁଁ ଅନ୍ୟ ଦୁଇ ଜଣଙ୍କ ସାଥିରେ ଦିଲ୍ଲୀ ଗଲି ଡି.ପି.ସି. ସାକ୍ଷାତକାରରେ ଯୋଗଦେବାକୁ । ସେଇଠି ଜାଣିଲି ମୋର ଏ.ସି.ଆର. ସମେତ ସ୍ୱତନ୍ତ୍ର ନୋଟ୍‌ଟିଏ ମଧ୍ୟ ଦେଇଛନ୍ତି SHAR ସେଂଟରର କମାଣ୍ଡାଟ ମେଜର ଆର.ସି. ରାମେୟା । ସେଥିରେ ମୁଁ ଯେ ଜଣେ ଲେଖକ ସେ କଥା ମଧ୍ୟ ଲେଖା ଅଛି ।

ଜଣକର କଳା, ସାହିତ୍ୟ, ସଂଗୀତ ଓ କ୍ରୀଡ଼ା ସମ୍ବନ୍ଧୀୟ ବିଶେଷ କୃତିକୁ ମଧ୍ୟ ଏ.ସି.ଆର. ରେ ଲେଖାଯାଏ । ମୁଁ ଡି.ପି.ସି. ରେ ବୋର୍ଡ଼କୁ ସନ୍ତୁଷ୍ଟ କରିପାରିଛି ଏକଥା ପ୍ରମୋଶନ ଅର୍ଡ଼ର ପାଇଲା ପରେ ଜାଣିଲି । ମେଜର ରାମେୟାଙ୍କୁ ମୁଁ ମନେମନେ ଧନ୍ୟବାଦ ଦେଇ ପକେଇଲି । ମେଜର ରାମେୟା ଜଣେ ତାମିଲ ଭଦ୍ରବ୍ୟକ୍ତି । ତାଙ୍କ ଠାରେ ମୋର ରହଣୀ ମାତ୍ର ୩/୪ ମାସ । ଗୋଟାଏ ସଂକ୍ଷିପ୍ତ ସମୟ । ମୋର ସେଠି ପୋଷ୍ଟିଂ ନ ଥିଲା । ଥିଲା ଏଟାଚମେଂଟ୍ ଡିଉଟି । ତାଙ୍କ ସହିତ ସିଧାସଳଖ କୌଣସି ସଂପର୍କ ନ ଥାଇ ମଧ୍ୟ

ସେ ଯେମିତି ମୋତେ ଆକଳନ କଲେ ତାହା ଥିଲା ଅନନ୍ୟ । ସେଇଟା ମୁଁ ମୋଟେ ଆଶା କରି ନଥିଲି ଯେ ରାମେୟାଙ୍କ ପରି ଜଣେ ସ୍ୱଳ୍ପ ପରିଚିତ ବ୍ୟକ୍ତି ଏତେ ଉଚ୍ଚ ପ୍ରଶଂସା କରି ନୋଟଟିଏ ଦିଲ୍ଲୀକୁ ପଠାଇବେ ଯାହା ଥିଲା ମୋର ପ୍ରମୋଶନର ମୂଳ ଆଧାର ।

କିନ୍ତୁ ପାରାଦୀପ ମୋ ନିଜ ଦେଶ । ମୁଁ ସେଠି ବେଶୀ ପରିଚିତ । ଆଦୃତ ମଧ୍ୟ । ପାରାଦ୍ୱୀପ ଅଧ୍ୟାୟରେ ମୁଁ ସବୁ ନିଜେ ଲେଖିଛି ବିଶେଷ କରି ମୋର ପ୍ରଶଂସା ଯୋଗ୍ୟ କାମ ବିଷୟରେ । ମୋର ପାରାଦ୍ୱୀପ ବଦଳି ପୂର୍ବରୁ ମୋର କର୍ମକୁଶଳତାର ସୂଚନା ଡେପୁଟି ଚେୟାରମେନ୍ ରାଧାନାଥ ଶତପଥୀ ହିଁ ଦେଇଥିଲେ ଏବଂ ତାକୁ ଭିତ୍‌ତି କରି କମାଂଣ୍ଡାଟ୍ ମୋର ପାରାଦୀପ ବଦଳି ପାଇଁ ସୁପାରିଶ କରିଥିଲେ ବୋଲି ସେ ନିଜେ ମୋତେ କହିଥିଲେ । ଅଥଚ ମୋର ଅନେକ ଗୁଡ଼ିଏ ପ୍ରଶଂସାଯୋଗ୍ୟ କାମ ସତ୍ତ୍ୱେ ମୋତେ ସାଧାରଣ ଏ.ସି.ଆର. କେହି ଜଣେ ଦେଇଦେଲା । ତାକୁ ଉଦ୍ଦେଶ୍ୟମୂଳକ ବା ଅଯଥାର୍ଥ ଛଡ଼ା ଆଉ କ'ଣ କହି ହେବ ?

ମୁଁ ଜଣେ ଜଣାଶୁଣା ଲେଖକ ଏ କଥା ତ ମୋର ସବୁ ବସ୍ ନିଶ୍ଚୟ ଜାଣନ୍ତି । ମୋର ପ୍ରଥମ ଗଳ୍ପ ସଂକଳନ ଦୁର୍ଗାମାଧବ ମିଶ୍ରଙ୍କ ଦ୍ୱାରା ସେଇ ପାରାଦୀପରେ ଉନ୍ମୋଚିତ ହୋଇଥିଲା । ଲେଖକଟିଏ ହେଇଥିବାରୁ ମୋର ଲୋକ ସଂପର୍କ ଉନ୍ନତମାନର ବୋଲି ସମସ୍ତେ ଜାଣନ୍ତି । ପୋର୍ଟର ଅଫିସର ମହଲ, ଚେୟାରମେନ୍ ସମେତ, ସ୍ଥାନୀୟ ଶ୍ରମିକ ଅନୁଷ୍ଠାନ, କର୍ମଚାରୀ ସମସ୍ତଙ୍କ ସହିତ ମୋର ଭଲ ସଂପର୍କ । ଏ କଥା ସମସ୍ତେ ଜାଣନ୍ତି । ପାରାଦୀପ ଛୋଟ ସ୍ଥାନ ହେଲେ ମଧ୍ୟ ତାର ସାହିତ୍ୟିକ ବାତାବରଣ ମଧ୍ୟ ଭଲ । ମୁଁ ସମସ୍ତଙ୍କର ଶ୍ରଦ୍ଧା ଭାଜନ ।

ପାରାଦ୍ୱୀପରେ ଦୁଇବର୍ଷର ରହଣି ଭିତରେ ମୁଁ ଯେଉଁ କେତେଜଣ ଆଇ.ପି.ଏସ୍.ଅଫିସରଙ୍କ ସଂସ୍ପର୍ଶରେ ଆସିଛି, ସେହି ସମୟ ଭିତରେ ମୁଁ ଅନେକ ଭଲ କାମ କରିଛି ବୋଲି ଗର୍ବର ସହିତ କହିବି । ତେଣୁ ମୁଁ କରିଥିବା ଭଲ କାମର ଶ୍ରେୟ ସେମାନେ ବି ପାଇନାହାନ୍ତି କି ? ବେଦଖଲ ଥିବା ଘରକୁ ଦଖଲ କରିବା ପରେ ଚେୟାରମେନ୍ ନିଜେ ପ୍ରଶଂସା କଲେ । ସି.ଆଇ.ଏସ୍.ଏଫ୍. ଷ୍ଟାଫ୍‌ଙ୍କ ଦୁର୍ନୀତିର ରାକେଟକୁ ଧରିଥିବାରୁ କମାଣ୍ଡାଣ୍ଟ୍ ମଧ୍ୟ ପ୍ରଶଂସା କଲେ । ଡି.ଜି.ଙ୍କ ପରାମର୍ଶ ଅନୁସାରେ ଚେୟାରମେନ୍‌ଙ୍କୁ ପ୍ରବର୍ତ୍ତାଇ ଟ୍ରେନିଂ ସ୍କୁଲ ପାଇଁ ସ୍ଥାନ ନେବା ଏବଂ ସେଠି ଡି.ଜି. ଓ ଗୃହମନ୍ତ୍ରୀଙ୍କ ଦ୍ୱାରା ଶୁଭ ଦିଆଯିବା କାମରେ ମୋର ଯାହା ଅବଦାନ ଥିଲା ତାହା ସମସ୍ତେ ଜାଣନ୍ତି । ଅଥଚ ସେହି ବିଜ୍ଞ ଅଫିସର ମାନଙ୍କ ନଜରରେ ଏହା ପ୍ରଶଂସା ଯୋଗ୍ୟ ହୋଇପାରିଲା ନାହିଁ ? ମୋ ଏ.ସି.ଆର. ରେ ଲେଖକ ହିସାବରେ ମୋତେ ପ୍ରଶଂସାର ଧାଡ଼ିଟିଏ ମଧ୍ୟ ଲେଖା ଯାଇ ପାରିଲାନି ? ତେଣୁ ସେହି କେତେଜଣଙ୍କ ମଧ୍ୟରୁ କେହି

ଜଣେ କରିନି କି ଏପରି କାମ ଯେଉଁଥିପାଇଁ ମୁଁ ପ୍ରମୋସନରୁ ବଂଚିତ ହୋଇଥିଲି । ଭାରତୀୟ ସଂବିଧାନ ସାହିତ୍ୟ,କଳା, ସଂଗୀତ, ନୃତ୍ୟ ଏବଂ କ୍ରୀଡ଼ାରେ ପ୍ରାଧାନ୍ୟ ଲାଭ କରିଥିବା ମହାନ ବ୍ୟକ୍ତିତ୍ୱମାନଙ୍କୁ ସଂସଦରେ ସ୍ଥାନ ଦେଇଛି । ରାଷ୍ଟ୍ରୀୟ ସମ୍ମାନରେ ସମ୍ମାନିତ କରିଛି । ଏ ସବୁ ଉଦାହରଣର ଅଭାବ ଅଛି କି ? ଆମ ସରକାରୀ ନିୟମ କ'ଣ ଆମ ଅଫିସରମାନଙ୍କୁ ଆଉ ଥରେ କହିବାକୁ ପଡ଼ିବ ?

ଆମ ଏ.ସି.ଆର.ର ତିନୋଟି ପାହାଚ ଅଛି । ଜଣେ ଲେଖିବ (ନିୟମ ଅଛି ନିରପେକ୍ଷ ଭାବରେ) ଆଉ ଜଣେ ତାକୁ ରିଭ୍ୟୁ କରିବ ଏବଂ ଶେଷରେ ଫାଇନାଲ ଅଥରିଟି ତାକୁ ମଞ୍ଜୁରୀ ଦେବେ । ଅର୍ଥାତ୍ ମୋ କ୍ଷେତ୍ରରେ କମାଂଣ୍ଡାଟ, ଡି.ଆଇ.ଜି ଏବଂ ଆଇ.ଜି । କିନ୍ତୁ ଦୁର୍ଭାଗ୍ୟର କଥା କେହି ମୋର ଏଇ ବିଶେଷ ଯୋଗ୍ୟତା କଥା ମନକୁ ନେଇ ନାହାନ୍ତି ଯଦିଓ ସମସ୍ତେ ଡି.ଜି.ଙ୍କ ଗସ୍ତବେଳେ ମୋ କାମକୁ ବାରମ୍ବାର ଦେଖିଛନ୍ତି । ଅନ୍ତତଃ ଟ୍ରେନିଂ ସ୍କୁଲର ଉଦ୍‌ଘାଟନ ବେଳେ ଯୋଉ ବିରାଟ ଆୟୋଜନ ହୋଇଥିଲା ତାକୁ ତ ସମସ୍ତେ ଦେଖିଛନ୍ତି । ମୁଁ ଏକୁଟିଆ ସେ ସବୁ କାମ କରିଛି । ଏକୁଟିଆ କାରଣ ସେତେବେଳେ କମାଂଣ୍ଡାଟ କେହି ନଥିଲେ ଏବଂ ମୁଁ ସବୁକାମ କରୁଥିଲି ଡି.ଆଇ.ଜି.ଙ୍କ ପ୍ରତ୍ୟକ୍ଷ ନିର୍ଦ୍ଦେଶରେ । ଆଶ୍ଚର୍ଯ୍ୟର କଥା ଏହି ଯେ ସମସ୍ତେ ସବୁକଥା ଜାଣି ମଧ୍ୟ ନ ଜାଣିଲା ଭଳି କାମକଲେ ।

ବର୍ତ୍ତମାନ ଏ.ସି.ଆର୍. ଲେଖାର ପଦ୍ଧତି ଅବଶ୍ୟ ବଦଳି ଗଲାଣି । ଜଣକର performance ଅନୁସାରେ ତାକୁ outstanding/very good/good ଇତ୍ୟାଦି ପରିବର୍ତ୍ତେ 'ଗ୍ରେଡ'ଦିଆଯାଉଛି । ସେଥିପାଇଁ ଏବେ ଏହାକୁ ଆଉ ଏ.ସି.ଆର୍.ନ କହି ଏ.ପି.ଏ.ଆର୍.(Annual Performance Appraisal Report) ବୋଲି କୁହାଯାଉଛି । କିନ୍ତୁ ଆମ ସମୟରେ ଏ ପ୍ରକାର ପ୍ରଥା ନ ଥିବାରୁ ରିପୋର୍ଟିଂ ଅଫିସର ଏ.ସି.ଆର୍. ଲେଖିବା ସମୟରେ ମନଇଚ୍ଛା ଲେଖିପାରୁଥିଲା ।

ମୁଁ ଆଗରୁ କହିଛି ଦୁର୍ଗାମାଧବ ମିଶ୍ର ଥିଲେ ଜଣେ ପ୍ରତିଷ୍ଠିତ ଲେଖକ । ମୋ ସହିତ ତାଙ୍କର ସଂପର୍କ ସେଇ ଲେଖକ ହିସାବରେ ଅନେକ ଆଗରୁ । ସେ ସି.ଆଇ.ଏସ୍.ଏଫ୍. କୁ ଆସିବାର ଅନେକ ଆଗରୁ ଗୋଟାଏ ଲେଖକୀୟ ସଂପର୍କ । ଏଇ ସଂପର୍କ କ'ଣ ଦୋଷାବହ ହେବକି ଯେଉଁଥିପାଇଁ ମୋତେ ଦଣ୍ଡ ମିଳିବ ? ମୋର ଏ.ସି.ଆର. ଯଦି ସେଇ ସମୟରେ ବସ୍ତୁନିଷ୍ଠ ଭାବରେ ଲେଖା ଯାଇଥାନ୍ତା, ତେବେ ମୋତେ ହାଇକୋର୍ଟ ପର୍ଯ୍ୟନ୍ତ ଯିବାକୁ ପଡ଼ିନଥାନ୍ତା ।

ଖାଲି ଇର୍ଷା ପରାୟଣତା ନୁହେଁ, ସେତେବେଳେ ବାହାରୁ ଆସୁଥିବା କିଛି ଡେପୁଟେସନିଷ୍ଟ ନିଜକୁ ଜଣେ ଜଣେ ଅଧୀଶ୍ୱର ବୋଲି ମନେ କରୁଥିଲେ । ସେମାନଙ୍କ

ଡିପାର୍ଟମେଂଟ୍ ପ୍ରତି କିଛି ଅବଦାନ ଥାଉ ବା ନ ଥାଉ, ସି.ଆଇ.ଏସ୍.ଏଫ୍.ର ପର୍କ୍ (perk)ଓ ଅପେକ୍ଷାକୃତ ହାଲୁକା କର୍ମବୋଝ ସେମାନଙ୍କୁ ଆକର୍ଷିତ କରୁଥିଲା ତିନି ବର୍ଷପାଇଁ ନିଜର ସମୟ ବିତାଇବାକୁ । ଏ ପ୍ରକାର ପର୍କ୍ ରାଜ୍ୟ ପୋଲିସ୍ ଡିପାର୍ଟମେଂଟ୍‌ରେ ଦୁଃସ୍ୱପ୍ନ । ସେମାନେ ଯେ ଖାଲି ଆଖିବୁଜି କାମ କରୁଥିଲେ ତା ନୁହେଁ, ତଳସ୍ତରକୁ ଅନେକ ଅନୁଚିତ କାମ କରିବାକୁ ପ୍ରବର୍ତ୍ତାଉ ଥିଲେ । ନୀତି ନୈତିକତାକୁ ସେମାନେ ମୋଟେ ଦେଖୁ ନ ଥିଲେ । ନିଜକୁ ସର୍ବେସର୍ବା ଭାବିଲେ କ୍ଷମତାର ମୋହ ଅନ୍ଧ କରିଦିଏ । ତା'ପରେ ଜଣେ ଯାହା ଇଚ୍ଛା ତାହା କରିପାରେ । ସେମାନେ ଯେ ଭୁଲ୍ କରିପାରନ୍ତି ତାହା ଚିନ୍ତା ମଧ୍ୟ କରି ପାରନ୍ତି ନାହିଁ । ଆଉ ଈର୍ଷା ପରାୟଣତା ଓ ଅହଂଭାବ ସେମାନଙ୍କ ବିବେକକୁ ଏପରି ନଷ୍ଟ କରିଦିଏ ଯେ ସେମାନଙ୍କ ଅଧସ୍ତନ ଅଫିସର ବେମାର ହୋଇ ହସ୍ପିଟାଲରେ ଚିକିତ୍ସିତ ହେଉଥିଲେ ମଧ୍ୟ ସେମାନେ ତାକୁ ଦେଖିବାକୁ ଯିବା ତ ଦୂରର କଥା, ସୁସ୍ଥ ହୋଇ ଜଏନ୍ କରିବାକୁ ଆସିଲେ, କେମିତି ଅଛ ବୋଲି ପଚାରିବାର ନ୍ୟୁନତମ ସୌଜନ୍ୟତା ପ୍ରକାଶ କରିବାକୁ ମଧ୍ୟ କୁଣ୍ଠାବୋଧ କରନ୍ତି ।

ମୋର ଜଣେ ଉପରିସ୍ଥ ଅଫିସର ନିଜେ ଗୋଟାଏ ମାରାତ୍ମକ ଭୁଲ୍ କରି ପାରନ୍ତି ଏ କଥା ଦେଖି ମୁଁ ସେଦିନ ଆଶ୍ଚର୍ଯ୍ୟ ହୋଇଗଲି । ଘଟଣା ଘଟି ଥିଲା ଆସାମରେ ବଂଗାଇଗାଓଁ ୟୁନିଟ୍‌ରେ । ଦ୍ୱିତୀୟ ଥର ମୋର ପ୍ରମୋଶନ ପୁଣି ଅଟକି ଯିବାରୁ ମୁଁ ଆଶ୍ଚର୍ଯ୍ୟ ହେଲି । ଆସାମ ପୋଷ୍ଟିଂ ଥିଲା ଏକ ଚେଲେଞ୍ଜିଂ କାମ । ବୋଡୋ ଆନ୍ଦୋଳନରେ ବଂଗାଇଗାଓଁ ଥିଲା ଆନ୍ଦୋଳନର କେନ୍ଦ୍ରସ୍ଥଳୀ । ବୋଡ଼ୋ ଆନ୍ଦୋଳନ ସହିତ ଉଲଫା ଆନ୍ଦୋଳନ ମଧ୍ୟ ଚରମ ସୀମାରେ । ପୂର୍ବବର୍ତ୍ତୀ ଅଧ୍ୟାୟରେ ମୁଁ ଏସବୁ ଲେଖିଛି । ଏପରି ଅବସ୍ଥାରେ ବି.ଆର୍.ପି.ଏଲ୍.ପରି ସଂବେଦନଶୀଳ କାରଖାନାକୁ ସଂପୂର୍ଣ୍ଣ ସନ୍ତୋଷଜନକ ଭାବେ ସୁରକ୍ଷା ଯୋଗାଇଦେବା ସହିତ କାରଖାନା ପାଇଁ ନୂଆ ନୂଆ କାମ ହାତକୁ ନେବା (ଅବଶ୍ୟ ସି.ଆଇ.ଏସ୍.ଏଫ୍ କର୍ତ୍ତୃପକ୍ଷଙ୍କ ଅନୁମତି କ୍ରମେ) କମ୍ ସାହସିକତାର କାମନୁହେଁ । ସବୁଠାରୁ ବଡ଼ କଥାହେଲା ଏଥିପାଇଁ ଉଭୟ ବୋଡ଼ୋ ଓ ଅସମୀୟାଙ୍କ ସହିତ ଉତ୍ତମ ସଂପର୍କ ରକ୍ଷା ଏକ ଅସାଧାରଣ ବ୍ୟାପାର । ମୋର ଏଇ କାମକୁ ସେତେବେଳେ କମ୍ପାନୀ କର୍ତ୍ତୃପକ୍ଷ ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି ।

ଠିକ୍ ଏହି ସମୟରେ ସେହି ଅଫିସର ଜଣକ କଲିକତାରୁ ୟୁନିଟ୍ ପରିଦର୍ଶନରେ ଆସିଥିଲେ । ତାଙ୍କୁ ଉପଯୁକ୍ତ ସୁରକ୍ଷା ଦେଇ ଗୁଆହାଟିରୁ ବଂଗାଇଗାଓଁ ଅଣାଗଲା । ତାଙ୍କର ଦେଢ଼ଦିନ ରହଣି ଭିତରେ ଫେମିଲି ୱେଲ୍‌ଫେୟାର ସେଂଟର'ର ପରିଦର୍ଶନର କାର୍ଯ୍ୟକ୍ରମ ମଧ୍ୟ ଥିଲା । ତାକୁ ଦେଖି ସାହେବ ଖୁବ୍ ଖୁସି ହେଲେ । ସେଠି ଗୋଟାଏ 'ଭିଜିଟର ବୁକ'ଥାଏ । ସେଥିରେ ସାହେବ ଅତି ଉଚ୍ଚ ପ୍ରଶଂସା କରି ମନ୍ତବ୍ୟ ଦେଲାବେଳେ

ସନ୍ତ୍ରାସବାଦ ଶୀର୍ଷରେ ଥିଲାବେଳେ ଡେପୁଟି କମାଂଣ୍ଡାଟ୍‌ଙ୍କ କାମକୁ ମଧ୍ୟ ଉଚ୍ଚ ପ୍ରଶଂସା କରିଥିଲେ । ଗୋଟାଏ ପରିଚ୍ଛେଦ ସେ ଡେପୁଟି କମାଂଣ୍ଡାଟ୍‌ଙ୍କ କାମରେ ପ୍ରଶଂସା କରି ଲେଖିଲେ । କିନ୍ତୁ ଅତ୍ୟନ୍ତ ଦୁର୍ଭାଗ୍ୟର କଥା ଯେ ସେହି ସାହେବ ଯେତେବେଳେ ବର୍ଷ ଶେଷରେ ଡେପୁଟି କମାଂଣ୍ଡାଟ୍‌ଙ୍କ ଏ.ସି.ଆର. ଲେଖିଲେ ସେତେବେଳେ ଆଉ ସେ କଥା ମନେ ପକେଇଲେ ନାହିଁ ଯାହା ଫଳରେ ମୋର ପ୍ରମୋଶନ ପୁଣି ଅଟକିଗଲା । ମୁଁ ଏଥିରେ ବ୍ୟଥିତ ହୋଇ ଯେତେବେଳେ ସ୍ମାରକ ପତ୍ରଟିଏ ଡି.ଜି.ଙ୍କ ଠାକୁ ପଠାଇଲି ସେତେବେଳେ ମୋ ପାଖକୁ ଉତ୍ତର ଆସିଲା ଯେ ଆପଣଙ୍କ ଏ.ସି.ଆର. ଗତ ୩/୪ ବର୍ଷ ଭିତରେ benchmark କୁ ଆସୁନଥିବାରୁ ପ୍ରମୋଶନ ପାଇଁ ବିଚାର ଯୋଗ୍ୟ ହେଇ ପାରୁନାହିଁ ।

ମୁଁ ସେତେବେଳେ ଆହୁରି ମର୍ମାହତ ହେଲି ଏବଂ ଆତ୍ମପକ୍ଷ ସମର୍ଥନ ପାଇଁ ସେଇ ଭିଜିଟର ବୁକ୍ ମନ୍ତବ୍ୟର ଜେରକ୍ସ କପି ଡି.ଜି.ଙ୍କ ଠାକୁ ପଠାଇ ଲେଖିଲି ପ୍ରକୃତ କାମର ନିରପେକ୍ଷ ସମୀକ୍ଷା ନ କରି ଯଦି ଏ.ସି.ଆର.ଲେଖାଯାଏ ତେବେ ନ୍ୟାୟ କୋଉଁଠୁ ମିଳିବ ? ପରେ ଅବଶ୍ୟ ମୋ ଠାକୁ ଚିଠି ଆସିଲା ଯେ ଆପଣଙ୍କ ଚିଠି ଅନୁସାରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଛି । ଅବଶ୍ୟ ତାର ମୂଲ୍ୟ ମୋ ପାଇଁ କିଛି ନଥିଲା । କାରଣ ସେତେବେଳକୁ ମୋର ଚାକିରିର ଶେଷ ସମୟ ପାଖେଇ ଆସିଥିଲା । ତା ସତ୍ତ୍ୱେ ମୁଁ ପୁଣି ଥରେ ହାଇକୋର୍ଟର ଆଶ୍ରୟ ନେବାକୁ ସ୍ଥିର କଲି । କିନ୍ତୁ ମୋର ଓକିଲ ମୋତେ କହିଲେ ଏବେ କୋର୍ଟରେ ମାମଲା ଟିଏ ଦାୟର ହେଇଗଲେ ତାର ଫଇସଲା ନ ହେବା ଯାଏଁ ଆପଣଙ୍କ ପେନସନ ଅଟକିବ ।

ଏଇଟା ମୋତେ ଚିନ୍ତାରେ ପକାଇଲା । ପେନ୍‌ସନ୍ ଉପରେ ନିର୍ଭର କରିବା ଛଡ଼ା ମୋର ଅନ୍ୟ ଉପାୟ ନାହିଁ । ଲୁଲୁ ସେତେବେଳକୁ ନୂଆ କରି ଚାକିରିଟିଏ ପାଇଛି । ପୋଷ୍ଟିଂ ତାର ଦିଲ୍ଲୀରେ । ତାର ବାହାଘର ହେଇ ନାହିଁ । ଗୋଟାଏ ବଡ଼ ଦାୟିତ୍ୱ ସେଇଟା । ନିଜର ଘରଟିଏ ନାହିଁ ।

ମୁଁ ଆଉ ଥରେ ନ୍ୟାୟଳୟର ଦ୍ୱାରସ୍ଥ ହେବି ଏ କଥା ମନରୁ ପୋଛି ଦେଲି ।

କିନ୍ତୁ କାହିଁକି ଏପରି ହେଲା । ସେହି ଅଫିସର ମହୋଦୟଙ୍କୁ ଏଯାଏଁ ଗୋଟାଏ ଭଲ ମଣିଷ ବୋଲି ମୁଁ ଭାବୁଥିଲି । ଅଥଚ ସେ ଏପରି ଅହେତୁକ ଆଚରଣ କାହିଁକି ପ୍ରଦର୍ଶନ କଲେ ? ମୁଁ ଅନ୍ତତଃ ତାଙ୍କ ଠାରୁ ଏପରି ଆଶା କରୁ ନଥିଲି । ତାଙ୍କ ଠାରୁ ନ୍ୟାୟୋଚିତ ମନ୍ତବ୍ୟ ହିଁ ଆଶା କରୁଥିଲି ।

ଗୋଟାଏ କଥା ମୋ ମନକୁ ଆସିଲା । ଉତ୍ତର ପୂର୍ବାଂଚଳ ରାଜ୍ୟ ମାନଙ୍କରେ ସେତେବେଳେ କେତୋଟି ଛୋଟଛୋଟ ୟୁନିଟ୍ ଥିଲା । ସେ ଗୁଡ଼ିକର ୟୁନିଟ୍ ହେଡ୍

ଥିଲେ ଜଣେ ଜଣେ ଆସିଷ୍ଟାଂଟ୍ କମାଂଣ୍ଡାଟ୍ । କେବଳ ବଂଗାଇଗାଓଁରେ ଡେପୁଟି କମାଂଣ୍ଡାଟ୍ଣ୍ଥିଲେ ।

ହଠାତ୍ ମୋ ପାଖକୁ ଖଣ୍ଡେ ଚିଠି ଆସିଲା ଗୁଆହାଟି ସି.ଆଇ.ଏସ୍.ଏଫ୍. ୟୁନିଟରେ ମୁଖ୍ୟ ସହକାରୀ କମାଂଣ୍ଡାଟଙ୍କ ଠାରୁ । ସେଥିରେ ସେ ଲେଖିଥିଲେ ତଥାକଥିତ ଅଫିସରଙ୍କ ଏବେ ବଦଳି ହୋଇ ଯାଇଛି । ସେ ଖୁବ୍ ଶୀଘ୍ର ତାଙ୍କ ନିଜ କ୍ୟାଡ଼ରକୁ ଫେରିଯିବେ । ତେଣୁ ତାଙ୍କ ପାଇଁ ଏଠି ଗୋଟାଏ ମିଳିତ ସମ୍ବର୍ଦ୍ଧନାର ବ୍ୟବସ୍ଥା ହେବ । ଭଲ ମେମେଣ୍ଟୋ ମଧ ଦିଆଯିବ । ସମ୍ବର୍ଦ୍ଧନାରେ ବହୁ ଅତିଥି ଯୋଗଦେବେ । ସମସ୍ତେ କିଛି କିଛି ଚାନ୍ଦା ଦେଲେ ଭଲ ହେବ । ଏଥିରେ ସାଂସ୍କୃତିକ କାର୍ଯ୍ୟକ୍ରମର ବ୍ୟବସ୍ଥା ମଧ ଅଛି । ମୁଁ ଏ ବିଷୟରେ ତାଙ୍କ ସହିତ କଥାବାର୍ତ୍ତା କରି ତାରିଖ ଠିକ୍ କରିବି ।

ଗୁଆହାଟିର ଏ ଭଦ୍ରଲୋକଙ୍କୁ ମୁଁ ଆଗରୁ ଜାଣିଥିଲି । ଏ ସବୁ କାମରେ ସେ ବେଶ ପାରଙ୍ଗମ ।

ବିଦାୟ ସମ୍ବର୍ଦ୍ଧନାର ସଂସ୍କୃତି ସବୁଠି ଅଛି । ତେବେ ଆର୍ମି, ପୋଲିସ୍ ଓ ପାରା ମିଲିଟାରୀ ଅନୁଷ୍ଠାନମାନଙ୍କରେ ତାର ଚାକଚକ୍ୟ ଆଉ ଟିକିଏ ବେଶୀ - ବେଳେବେଳେ ଆବଶ୍ୟକତାରୁ ବଳି ପଡ଼େ । ବଳି ପଡ଼େ ଏଇଥିପାଇଁ ଯେ ତା ଭିତରର ଅଦୃଶ୍ୟ ଦୃଶ୍ୟଟା ଉପରକୁ ଦେଖାଯାଉ ନଥାଏ । ତାର ସ୍ୱରୂପ ମଧ ସହଜ ନୁହେଁ । ଗୋଟାଏ ସ୍ୱଚ୍ଛ ମାନସିକତା ଥିଲା ଭଳିଆ ମନେ ହୁଏନାହିଁ ।

ମୋର ମନେ ପଡ଼ିଲା ଓଡ଼ିଶା କଥା । ଯୋଉଠି ଗୋଟାଏ ଜାଗାରେ ବିଦାୟୀ ଆଇ.ପି.ଏସ୍. ଅଫିସ୍‌ର ଜଣକ ଉପହାର ମାଗିଥିଲେ ମୂଲ୍ୟବାନ ରୂପା ତାରକସୀ କାମର ରଥ । ନିଜେ ଦୋକାନରୁ ଏହାକୁ ବାଛିଲା ପରେ କିଣାଯାଇ ତାଙ୍କୁ ଦିଆଯାଇ ଥିଲା ।

ସରକାରୀ "କଣ୍ଡକ୍ଟ ରୁଲ୍" ଏ ସବୁର ବିରୋଧ କରେ । ତା ସତ୍ତ୍ୱେ ସବୁଠି ଅଛି ଓ ସବୁ ହୁଏ ମଧ ।

ସେଦିନ ଗୁଆହାଟିର ପ୍ରସ୍ତାବକୁ ମୁଁ ବିରୋଧ କରିଥିଲି । କହିଥିଲି କଣ୍ଡକ୍ଟ ରୁଲ୍ ଅନୁସାରେ ଏତେ ଦାମିକା ଉପହାର ଦେବା ଉଚିତ୍ ହେବନାହିଁ କିମ୍ବା କାର୍ଯ୍ୟକ୍ରମକୁ ଏତେ ଚକ୍‌ମକ୍ ମଧ କରି ହେବନାହିଁ । ମୋର ବିରୋଧର କାରଣ ଥିଲା ଏତେ ଟଙ୍କା କୋଉଠୁ ଆସିବ ? ଜୱାନମାନଙ୍କୁ ମାଗିବା କି ? ପ୍ରଶ୍ନ ଉଠିପାରେ ଆପଣ ଓଡ଼ିଶାରେ ଦେଲେ ଏଠି କାହିଁକି ମନା କରୁଛନ୍ତି ?

ଓଡ଼ିଶାର ସେହି ଜାଗାରେ ସେ କାମ ମୋ କର୍ତ୍ତୃତ୍ୱ ବାହାରେ ଥିଲା । ବିଶ୍ୱସ୍ତ ଅଧସ୍ତନ କର୍ମଚାରୀ ଅର୍ଥ କୁଆଡୁ ଆସିଲା ସେ କଥା କହି ପାରିବେ । ମୁଁ ତ ବିଶ୍ୱସ୍ତ ନ ଥିଲି । ତା'ର

ଫଳ ପାଉଛି । ଆସାମରେ ମଧ ତାହାହିଁ ହେଲା । ସାହେବ ଜଣକ ଭିଜିଟ୍ର୍ ବୁକ୍‌ରେ ମୋର ଉଚ୍ଚ ପ୍ରଶଂସା କରିଥିଲେ ମଧ୍ୟ ଏ.ସି.ଆର. ଲେଖିଲାବେଳେ ସେ କଥା ମନେ ପକେଇବାକୁ ବାଧ କି ? ସବୁ ଓଲଟି ଗଲା । ତା ସହିତ ଏକାନ୍ତ ଭାବେ ଜଡ଼ିତ ଥିବା ମୋ ଜୀବନୀ ଓ ଜୀବନ ପଞ୍ଜିକା ।

ତଥାପି ମୋର ଦୁଃଖ ନାହିଁ । ଯେଉଁମାନେ ସେ ଦିନ ମୋ ଜୀବନ ପଞ୍ଜିକା ଲେଖିଥିଲେ, ସତ୍ୟର ପ୍ରେକ୍ଷାପଟରେ ଭିନ୍ନ ଛାୟାବାଦଟିଏ ସୃଷ୍ଟି କରିଥିଲେ, ଆଜି ମୁଁ ଅନ୍ତତଃ ସେମାନଙ୍କର ଗୁପ୍ତ ଜୀବନୀ ପଞ୍ଜିକା ଲେଖୁଚି ଯାହା ସମସ୍ତେ ଜାଣିବେ ।

ମୁଁ ଲେଖକଟିଏ, ଲେଖକ ହିଁ ସର୍ବଶକ୍ତିମାନ । ଏପରିକି ଈଶ୍ୱରଙ୍କ ଠାରୁ ମଧ । ରାମାୟଣରେ ରାମ ବଡ଼ ନୁହେଁ, ବଡ଼ ବାଲ୍ମିକୀ, ମହାକବି । ମହାଭାରତରେ କୃଷ୍ଣ ବଡ଼ ନୁହନ୍ତି, ମହାକବି ବ୍ୟାସ । ବ୍ୟାସଙ୍କ ଲେଖନୀ ଯୋଗୁ କୃଷ୍ଣ ଭଗବାନ ଓ ପ୍ରଭୃତ ଶକ୍ତିର ଅଧିକାରୀ । ରାମାୟଣରେ କିଏ ବଡ଼ ? ରାମ ନା ରାବଣ ? ରାମଙ୍କୁ ବାଲ୍ମିକୀ ବହୁତ ବଡ଼ କରିଥିଲେ ମଧ ରାଜନୀତି ଓ ବେଦ ଶୁଣିବା ପାଇଁ ତାଙ୍କୁ ରାବଣଙ୍କ ପାଦ ପାଖରେ ବସେଇଲେ ।

ରାମାୟଣକୁ ସେଥିପାଇଁ ଗୋଟାଏ ବାଲାନ୍‌ସ୍‌ଡ୍ କାବ୍ୟ ବୋଲି କୁହାଯାଏ । ଲେଖକର ମର୍ଯ୍ୟାଦା ଏଇଥିପାଇଁ ସମସ୍ତଙ୍କ ଉର୍ଦ୍ଧ୍ୱରେ ।

ପଣ୍ଡିତ ନେହେରୁ ସାହିତ୍ୟ ଏକାଡେମୀ ସୃଷ୍ଟି କଲା ପରେ ଯେତେବେଳେ ଚେଆରମେନ୍‌ରୁ ପ୍ରେସିଡେଂଟ୍ ହେଲେ ସେତେବେଳେ କହିଲେ ତଥାପି ପ୍ରଧାନମନ୍ତ୍ରୀ ଜବାହାରଲାଲ୍ ନେହେରୁ, ଏକାଡେମୀର ସଭାପତି ନେହେରୁଙ୍କ ଅଧୀନରେ ରହିବେ । ଏ ମହାନୁଭବତା କେବଳ ନେହେରୁଙ୍କ ଠାରେ ହିଁ ଦେଖିବାକୁ ମିଳିଥାଏ । ଲେଖକ ନେହେରୁ, ପ୍ରଧାନମନ୍ତ୍ରୀ ନେହେରୁଙ୍କ ଉପରେ ବୋଲି ସେ ନିଜେ ପ୍ରତିପାଦିତ କରିଛନ୍ତି ।

ମୋ ଜୀବନରେ ମୁଁ ବହୁ ଘାତ ପ୍ରତିଘାତ ଭିତରଦେଇ ଗତି କରିଛି । ଚାକିରିଟିଏ ଅନୁସନ୍ଧାନରେ ମୁଁ ବହୁ ଜାଗା ବୁଲିଚି । କିନ୍ତୁ କୋଉଠି ଅସୁବିଧାର ସମ୍ମୁଖୀନ ହେଇନାହିଁ କି କେବେବି ଅନୈତିକତାର ରାସ୍ତାରେ ପାଦ ଦେଇନି । ଶିକ୍ଷକତାରୁ ପୋଲିସ୍, ପୋଲିସ୍‌ରୁ ପ୍ରାଇଭେଟ୍ କଂପାନୀ । ସେଠୁ ପୁଣି ପବ୍ଲିକ୍ ସେକ୍ଟର ଏବଂ ଶେଷରେ କେନ୍ଦ୍ର ସରକାରର ଗେଜେଟେଡ କ୍ଲାସ୍‌ୱାନରେ ଅବସର । କୋଉଠି ଟିକିଏ ବ୍ରେକ୍ ନାହିଁ କି ଖସି ଯାଇନି । ସାଧାରଣଭାବେ ଯାହା ପାଇଛି ତାକୁ ଆପଣେଇ ନେଇଛି । ୪୫ଟଙ୍କା ଦରମାରେ ଜୀବନ ଆରମ୍ଭ କରି ପରିବର୍ତ୍ତନ ଭିତରେ ୧୪୫ ଟଙ୍କାରେ ମଧ ତିନୋଟି ପିଲାଙ୍କୁ ନେଇ ପରିବାର ଚଳେଇଛି । ପିଲାମାନଙ୍କୁ ଉଚିତ ଶିକ୍ଷା (ଖୁବ୍ ବେଶୀ ନୁହେଁ) ଦେଇଛି ଏବଂ ସେମାନେ ଏବେ ବେଶ ଯୋଗ୍ୟ ଜାଗାରେ । ତେଣୁ ଦୁଃଖନାହିଁ । ଅଭାବର ପାହାଡ଼ ଗଦାତଳେ ରହି

ମଧ୍ୟ ଚିନ୍ତାନାହିଁ କାରଣ ଆବଶ୍ୟକତା ଅପେକ୍ଷା ବେଶୀ କେବେବି ଆଶା କରିନି । ସଂଘର୍ଷମୟ ଜୀବନରେ ଯାହାକିଛି ପାଇଛି ବା ଉପଲବ୍ଧ ହୋଇଛି, ତାହା ନିଜର ଯତ୍ ସାମାନ୍ୟ ଯୋଗ୍ୟତା ଓ କର୍ମ ବଳରୁ;କିନ୍ତୁ କାହା ଅନୁଗ୍ରହରୁ ନୁହେଁ ।

ପ୍ଲାଟୋଙ୍କ 'ରିପବ୍ଲିକ୍'ରେ ଲେଖାଅଛି ଯାହାର ଯେତିକି ଦରକାର ତାକୁ ସେତିକି ଦିଆଯିବ । ସରକାରରେ ଥିବା ଲୋକ ମଧ୍ୟ । କିନ୍ତୁ ଏବେ ସେ କଥା ହେଉନାହିଁ । ସମସ୍ତେ ନିଜର ଆବଶ୍ୟକତା ଅପେକ୍ଷା ଢ଼େର ବେଶୀ ଖୋଜନ୍ତି । ଚାଣକ୍ୟ ସେଇ କଥାକୁ କହିଥିଲେ "ଶତୀ ସହସ୍ରମ୍ୟଛନ୍ତି" । ଯାହାର ଶହେ ଅଛି ସେ ହଜାରେ ଖୋଜେ । ତାକୁ ମଧ୍ୟ ଶାସ୍ତ୍ରରେ କୁହାଯାଇଛି ଲୋଭ ଆବଶ୍ୟକତା ଅପେକ୍ଷା ବେଶୀ ଖୋଜିବାକୁ ଲୋଭ ଏବଂ ଏଇ ଲୋଭକୁ 'ପାପ' ଏବଂ ପାପରୁ ମୃତ୍ୟୁ କଥା କୁହାଯାଇଛି ।

ତା ସତ୍ତ୍ୱେ ମଣିଷ ଚେତେ ନାହିଁ । ସେ ବେଶୀ ଖୋଜେ କେବଳ ବିଳାସ ପାଇଁ। ତାକୁ ହିଁ କୁହାଯାଏ ଆଧୁନିକତା । ଆଧୁନିକତାରୁ ମଧ୍ୟ ସୃଷ୍ଟିହୁଏ ଅନୈତିକତା। ଆମ ବୁରୋକ୍ରାଟମାନେ ଏ ସବୁ ନୀତିବାକ୍ୟ ଭଲଭାବେ ଜାଣିଥିଲେ ମଧ୍ୟ ଏବଂ ଅନ୍ୟକୁ ଏ ସବୁ ବୁଝାଉଥିଲେ ମଧ୍ୟ ନିଜେ ଭିନ୍ନ କରନ୍ତି । ବିଚିତ୍ର ମାନସିକତା ।

ନୀତି ନୈତିକତାକୁ କୌଣସି ସୀମା ରେଖା ଭିତରେ ଆବଦ୍ଧ କରି ରଖା ଯାଇ ପାରିବ ନାହିଁ । ତାହା ମଣିଷର ମାନସିକତାର ନ୍ୟାୟିକ ରୂପରେଖ ମାତ୍ର । ପ୍ଲାଟୋ ହୁଅନ୍ତୁ, ବା ଏବର ସରକାରଙ୍କ କଣ୍ଡକ୍ଟରୁଲ୍ ହେଉ ତାକୁ ନିର୍ଦ୍ଦିଷ୍ଟ କରି ହେବନାହିଁ । ମଣିଷ ମନର ଦୁର୍ନୀତି ପ୍ରବଣତା ପ୍ରତି ମୁହୂର୍ତ୍ତରେ ନୂଆ କାୟା ଖୋଲି ନୂଆ ରୂପରେ ଠିଆ ହୁଏ ।

ସମୟ ଇତି ମଧ୍ୟରେ ଅନେକ ବଦଳି ଗଲାଣି । ସରକାରୀ ବ୍ୟବସ୍ଥାରେ ଏ.ସି.ଆର. ଅବଶ୍ୟ ଥିଲା ଓ ଅଛି । କେନ୍ଦ୍ର ସରକାରରେ ଆଉ ଟିକିଏ ମପାଚୁପା । ସି.ଆଇ.ଏସ୍.ଏଫ୍. ନୂଆ ବିଭାଗଟିଏ । ୧୯୬୯ରେ ତାର ଜନ୍ମ ବହୁ ଝଡ଼ଝଞ୍ଜା ଭିତରେ । ତେଣୁ ସରକାରୀ ଆବଶ୍ୟକତା ଭିତରେ ନୂଆ ଫୋର୍ସକୁ ପଶି ଆସିଲେ ବାହାରୁ ଅନେକ ଲୋକ । ତା ଭିତରେ ବହୁ ବାଞ୍ଛିତ ଓ ଅବାଞ୍ଛିତ ମଧ୍ୟ ଥିଲେ । ପାଣି ଗୋଳିଆ ଥିଲେ ଜଣକୁ ଯେମିତି ଭଲ ଲାଗେ ସେଥିରେ କାଦୁଅ ଥିଲେ ଘୁଷୁରୀକୁ ସ୍ୱର୍ଗ ସୁଖ ମିଳେ । ଆରମ୍ଭବେଳେ ସି.ଆଇ.ଏସ୍.ଏଫ୍.ରୁ ସେଇ ସ୍ୱର୍ଗସୁଖର ଫାଇଦା ଉଠାଇବାକୁ କିଛି ଲୋକ ଚେଷ୍ଟା କରିଥିଲେ । ସେଥିପାଇଁ ସେମାନେ ଏ.ସି.ଆର.କୁ ଗୋଟାଏ ଅସ୍ତ୍ର ହିସାବରେ ବ୍ୟବହାର କଲେ । ଏବେ ମଧ୍ୟ ସେ କଥାହେଉଛି ଯଦିଓ ବ୍ୟବସ୍ଥା ବଦଳୁଛି ।

ଗୋଟାଏ ସର୍ବଜନ ବିଦିତ ବ୍ୟଙ୍ଗ ଆମ ଡିପାର୍ଟମେଂଟ୍‌ରେ ପ୍ରଚଳିତ ରହିଛି । ଜଣେ ଇନ୍‌ସିପେକ୍ଟର ପଦର ଅଧିକାରୀ ତାଙ୍କ ଉପର ଅଫିସରଙ୍କୁ କହିଲେ ସାର୍ ଏ ବର୍ଷ

ମୋ ଏ.ସି.ଆର. ରେ ଆଉଟ୍‌ଷ୍ଟାଣ୍ଡିଂ ଲେଖିଦେବେ । ଅଫିସର ଜଣକ କହିଲେ ଆଉଟ୍‌ଷ୍ଟାଣ୍ଡିଂ ଲେଖିବା ପୂର୍ବରୁ କିଛି ଅଣ୍ଡରଷ୍ଟେଣ୍ଡିଂ ମଧ୍ୟ ହେବା ଦରକାର ।

ଗୁଆହାଟିରେ ସିନା ବିଦାୟକାଳୀନ ସମ୍ବର୍ଦ୍ଧନା ପାଇଁ ରାଜକୀୟ ଆୟୋଜନ ଚାଲିଥିଲା କିନ୍ତୁ ଏବେତ ସ୍ୱାଗତକାଳୀନ ସମ୍ବର୍ଦ୍ଧନାକୁ ଆହୁରି ଜୋରଦାର କରାଗଲାଣି । ସେଇଟା ମଧ୍ୟ ଭବିଷ୍ୟତ ପାଇଁ ରାସ୍ତା ତିଆରି କରେ । ବେଳେବେଳେ ସେଥିରେ ପ୍ରତିଯୋଗିତା ମଧ୍ୟ ହୁଏ । କିଏ କେତେ ଦୂରତ୍ୱ କମେଇ ପାରୁଛି ତା'ର ପ୍ରତିଯୋଗିତା କିଏ କେତେ ବିଶ୍ୱସନୀୟତାର ସ୍ୱତନ୍ତ୍ର ବଳୟ ସୃଷ୍ଟି କରି ପାରୁଛି ତାର ପ୍ରତିଯୋଗିତା ।

ବିଶ୍ୱସନୀୟତାର ଏ ମୂଳ କଥାଟି କ'ଣ ? ତାର ମୂଳ କଥାଟି ହେଲା ହେଁସ ସରକାରଙ୍କର, ମୁଁ ମୁତିବି, ତୁ ବି ମୁତିବୁ । ହେଁସ ଯେମିତି ଅଛି ସେମିତି ଥିବ । ଧୋଇବା କାହିଁକି ?

ଗୋଟାଏ କୁତ୍ସିତ କଲୋନୀଆଲ କଲଚର ଆମକୁ ଆମର ସମଗ୍ର ଜନଜୀବନକୁ ପୁରୁଷାନୁକ୍ରମେ କଳଙ୍କିତ କରି ରଖିଛି । ଆମର ବ୍ୟୁରୋକ୍ରେଟିକ୍ ସଂସ୍କୃତି ଗଙ୍ଗା ନଦୀର ନାଁରେ ବହି ଚାଲିଛି ଯୁଗରୁ ଯୁଗକୁ ଏବଂ ସେଇ ଗଙ୍ଗାକୁ ବିଶୋଧନ କରିବା ନାଁରେ ଆମେ ମଧ୍ୟ ଯୋଜନା ପରେ ଯୋଜନା ତିଆରି କରୁ ପ୍ରଶାସନିକ ସଂସ୍କାର ନାଁରେ ।

## ବଲାଣୀରେ ବାବୁଗିରି

ଚାକିରୀ ଶେଷ ପାଦରେ ମୁଁ ଆସି ପହଂଚିଲି ବଣ ପାହାଡ଼ ଘେରା ବଡ଼ବିଲ ପାଖରେ ଥିବା ବଲାଣୀରେ । ବଲାଣୀ 'ସେଲ'(ଷ୍ଟିଲ ଅଥରିଟି ଆଫ ଇଣ୍ଡିଆ ଲିମିଟେଡ) ଅଧୀନରେ ଗୋଟିଏ ଛୋଟ ଲୁହା ପଥର ଖଣି । ସେଠି ଡେପୁଟି କମାଂଣ୍ଡାଟ ପୋଷ୍ଟ କାହିଁକି ଅଛି କେଜାଣି ତେବେ ମୋପାଇଁ ସୁବିଧା ହେଲା । ମୁଁ ଇଚ୍ଛାକରି ଏଠାକୁ ଆସିଚି । ଏଠି ପାଖରେ କଳିଙ୍ଗ ଆଇରନ ୱାର୍କସ୍ । ସେଠି ସାନ ଝିଅ ରୁମି ଅଛି । ତା'ର ପୁଅ ରୁପୁ ବା ବିପ୍ଳବକୁ ତିନି ବର୍ଷ ହେଇଥଲା । ତେଣୁ ନାତି ପାଖରେ ରହିଲେ ଆମକୁ ଭଲ ଲାଗିବା ସ୍ୱାଭାବିକ । ମୋର ମଧ୍ୟ କାମ ବିଶେଷ ନାହିଁ । ଗୋଟାଏ ଭୟଙ୍କର କଠିନ ଏରିଆରୁ ଆସିବା ପରେ ଟିକିଏ ବିଶ୍ରାମ ଦରକାର । ଚାକିରି ଆଉ ଦୁଇ ବର୍ଷରୁ କମ୍ । ଗୋଟାଏ ବଡ଼କାମ ବାକି ଅଛି, ଲୁଲୁର ବାହାଘର । ସେ ବର୍ଷେ ହେଲା ଚାକିରୀପାଇ ଦିଲ୍ଲୀରେ ଅଛି । ରାଧାରାଣୀ ସେ ବାହାଘର ପାଇଁ ଚାପଦେଉଚି । ଏବେ ସେ କାମଟି ସାରିବାକୁ ହେବ ।

ଟାଉନସିପ ଭିତରେ ମୋତେ ଗୋଟାଏ ଭଲ ଘର ମିଳିଗଲା । ଥ୍ରୀ ବେଡରୁମ ବଙ୍ଗଳା ଟାଇପ । ଠିକ ପାହାଡ଼ ତଳେ ଘରଟା । ଚାରିପଟେ ବଗିଚା । ଅନେକ ଫୁଲ,

ଅନେକ ଫଳ ମଧ୍ୟ । ଭଲ ଜାତିଆ ଆମ୍ବଗଛ ଅନେକ । ମୁଁ ମୋଟାମୋଟି ଟିକେ ସେଟଲ କରିଯାଇ ମନର ମଣିଷମାନଙ୍କୁ ଖୋଜି ପକାଇଲି । ସାହିତ୍ୟର ମଣିଷ । ରାଉରକେଲା ପାଖ । ଅଳ୍ପଦିନ ଭିତରେ ପୁଣି ଖବର ମିଳିଲା ବଲାଣୀ ରାଉରକେଲା ଅଧୀନକୁ ଆସିଲା । ଆଗରୁ ଦୁର୍ଗାପୁର ଅଧୀନରେ ଥିଲା । ଡି.ଆଇ.ଜି. ରାଉରକେଲା ଅଧୀନରେ ଥିବା ସବୁ ଖଣି ଅଂଚଳ ସହ ମନ୍ଦିରା ଡେମକୁ ମଧ୍ୟ ମୋ ଅଧୀନକୁ ଦେଇ ଦେଲେ । ମୋର ବୁଲାବୁଲି ପାଇଁ ଆହୁରି ସୁବିଧା ହେଲା । ସେ ମୋତେ ରାଉରକେଲାକୁ ବଦଳି ହେବାକୁ ଚାହୁଁଥିଲେ । ମୁଁ ମନା କଲି । ଇତି ମଧ୍ୟରେ ବଲାଣୀ, ବଡ଼ବିଲ ଓ କିରିବୁରୁ ଅଂଚଳର କବି ଓ ଲେଖକମାନଙ୍କ ସହିତ ସଂଯୋଗ ସ୍ଥାପିତ ହେଇ ଗଲାଣି । 'ବନାନୀ ସାହିତ୍ୟ ସଂସଦ'ର ସଭାପତି ମଧ୍ୟ ହେଇଗଲି । କିନ୍ତୁ ପ୍ରକୃତ କାମ ଆରମ୍ଭ ହେଲା ଝିଅ ଖୋଜାରୁ । ଗୋଟିଏ ବିଜ୍ଞାପନ ଦିଆଗଲା 'ସମାଜ'ରେ । ସେତେବେଳେ ବାହାଘର ପାଇଁ ବିଜ୍ଞାପନ ଦେବା ପ୍ରଥା ଆରମ୍ଭ ହେଇଥାଏ ମାତ୍ର ଖୁବ ବେଶୀଲୋକ ପସନ୍ଦ କରୁ ନ ଥାଆନ୍ତି । ରାଧାରାଣୀ ବିଜ୍ଞାପନ ମାଧ୍ୟମରେ ବୋହୁ ଖୋଜାକୁ ମୋଟେ ପସନ୍ଦ କରୁନଥିଲା । ମୁଁ କିନ୍ତୁ ତା'ସହିତ ଏକମତ ନଥିଲି । କାରଣ ଏବର ସମୟ ଯେ ବଦଳିଲାଣି ସେକଥା ସେ ବୁଝେ ନାହିଁ । ସେ ଭଲ ବଂଶ ଓ ଭଲ ଜାତି ଉପରେ ଜୋର ଦେଉଥିଲାବେଳେ ମୁଁ ଶିକ୍ଷା, ଚାକିରି ଉପରେ ଜୋର ଦେଉଥିଲି । ଏବର ସମୟରେ ଦୁଇଜଣ ଚାକିରି ନକଲେ ଦିଲ୍ଲୀ ଭଳିଆ ଜାଗାରେ ଚଳି ପାରିବେ ? ଦ୍ୱିତୀୟରେ ଉଚ୍ଚଶିକ୍ଷା ଥିବା ଝିଅଟି କାହିଁକି ଘରେ ବସି ରହିବ ?

ବିଜ୍ଞାପନରୁ ପ୍ରାୟ ତିରିଶଟି ପ୍ରସ୍ତାବ ଆସିଲା । ମୁଁ ସେଥିରୁ ଦୁଇ ତିନଟିକୁ ବାଛି ଥରେ ଗଲି ଭୁବନେଶ୍ୱର । ସେମାନେ ଭୁବନେଶ୍ୱର ଓ କଟକ ଅଂଚଳର । ମୁଁ ଯୋଉ ପ୍ରଥମ ଝିଅକୁ ଦେଖିଲି, ସାଥିରେ ରାଧାରାଣୀ ମଧ୍ୟ ଥିଲା, ମୋର ପସନ୍ଦର ପରିଧି ଭିତରକୁ ଆସିଲା । ଏମ.ଏ.ପାଶ କରିଚି । ଏବେ ଏବେ ଏଲ.ଆଇ.ସି. ଚାକିରିରେ ଯୋଗ ଦେଇଚି । ବାପା ମଧ୍ୟ ଏଲ.ଆଇ.ସି.ରେ ଅଛନ୍ତି । ବାପା କହିଲେ ବାହାଘର ପରେ ଝିଅକୁ ଦିଲ୍ଲୀ ବଦଳି କରି ହେବ । ମୋ ପାଇଁ ଏଇଟା ଗୋଟାଏ ବଡ଼ ପ୍ଲସ ପଏଂଟ । ମୁଁ ଯେତେବେଳେ ଝିଅର ମାମୁଁ ଘର କଥା ପଚାରିଲି, ଏଇଟା ଥିଲା ରାଧାରାଣୀର ପ୍ରଶ୍ନ, ସେ କହିଲେ ତାଙ୍କୁ ତ ଆପଣ ଭଲ ଭାବରେ ଜାଣନ୍ତି । ଆଶ୍ଚର୍ଯ୍ୟ ହେଇ ତାଙ୍କୁ ଅନେଇଲି । ସେ କହିଲେ ବିଭୂତି ପଟ୍ଟନାୟକ । ଦ୍ୱିତୀୟ ପ୍ରଶ୍ନ 'ନିଜ ମାମୁଁ' ? ସେ କହିଲେ 'ନିଜ ମାମୁଁ' । 'ମୋ ନିଜ ଶଳା' । ଏଃ, ଏମିତି ଗୋଟାଏ କଅଣ କହୁଚନ୍ତି ? ଜଣେ ଖ୍ୟାତନାମା ଲେଖକ କଅଣ କାହାର ଶଳା ହେଇପାରେ ?ମୁଁ ମନେ ମନେ ଭାବିଲି ଭଦ୍ରଲୋକଙ୍କ ଔଦ୍ଧତ୍ୟପୂର୍ଣ୍ଣ ଗର୍ବ ଅଛି ।

ଆମେ ସେ ଦିନ ଆଉ ଦୁଇଟି ଝିଅଙ୍କୁ ମଧ୍ୟ ଦେଖିଲୁ । ମୋଟମୋଟି ସେମାନେ ମଧ୍ୟ ଆମ ପସନ୍ଦର ଏରିଆ ଭିତରେ ଥିଲେ ।

ନିଜର ମତାମତ ନ ଜଣାଇ ଲୁଲୁକୁ ସେ ଦିନ ଫୋନରେ କହିଲି ଆମେ ଦେଖି ସାରିଛୁ । କିନ୍ତୁ ତୁ ଆସି ଦେଖିଲାପରେ ଫାଇନାଲ କଥାବାର୍ତ୍ତା ହେବ । ପ୍ରାୟ ୮/୧୦ ଦିନପରେ ସେ ଦିଲ୍ଲୀରୁ ଆସିଲା ସିଧା ଭୁବନେଶ୍ୱର । ଆମେ ପୁଣି ଆସିଲୁ ବଲାଣୀରୁ । ତା'ର ପ୍ରଥମ ଦେଖାରେ ସେ ଯାହାକୁ ପସନ୍ଦ କଲା, ଆମେ ସେଥିରେ ରାଜି । ମୁଁ ତଥାପି ପଚାରିଲି, 'ଅନ୍ୟଝିଅ ତୁ ଦେଖିବାକୁ ଚାହୁଁଚୁ କି ?' ସେ ମନାକଲା ।

ବାହାଘର ସେଇଠି ହେଇଗଲା । ପୁଅ ବାହାଘର ପାଇଁ ଯେ ଆମେ ବାପ ପୁଅ ପ୍ରୋଭିଡେଂଟ୍ ଫଣ୍ଡରୁ ଲୋନ ନେଇଚୁ ଏକଥା କେହି ବିଶ୍ୱାସ କରୁନଥିଲେ ମଧ୍ୟ ଏହା ସତ୍ୟ । ଅତି ସାଧାସିଧା ବାହାଘର । ମୁଁ କହିଥିଲି ବାହାଘରେ ବେଣ୍ଡ୍ ବାଜିବନି କି ନାଚ ଗୀତ ଓ ଶୋଭା ଯାତ୍ରା ମଧ୍ୟ ହେବନି । ଝିଅଘର ଚମକି ପଡ଼ିଲେ । କହିଲେ, ଲୋକେ କଅଣ କହିବେ ? ଅସୁନ୍ଦର ଦିଶିବ । ଶେଷରେ କଥା ହେଲା ବେଣ୍ଡବାଜା କେବଳ କଲ୍ୟାଣ ମଣ୍ଡପ ଆଗରେ ବାଜିବ । ମୋର ଏସବୁରେ ମୋଟେ ବିଶ୍ୱାସ ନାହିଁ । କୋଷ୍ଠୀ ଦେଖାରେ ମଧ୍ୟ ମୋର ବିଶ୍ୱାସ ନାହିଁ । ମୋ ନିଜ ବାହାଘର ବେଳେ(୧୯୫୯) ମୁଁ ମାଆର ଏ ପ୍ରସ୍ତାବକୁ ଯେମିତି କାଟି ଦେଇଥିଲି, ମୋର ଦୁଇ ଝିଅର ବାହାଘର ବେଳେ ମଧ୍ୟ ମନା କରିଥିଲି । ଆଡ଼ମ୍ବରରେ ମୋର ମୋଟେ ବିଶ୍ୱାସ ନ ଥାଏ କି ବ୍ରାହ୍ମଣାଦି କ୍ରିୟା କର୍ମଣୀରେ ମଧ୍ୟ ବିଶ୍ୱାସ ନ ଥାଏ । କେବଳ ପରିବାରର ମନକୁ ନେଇ କିଛି କରିବାକୁ ପଡ଼େ ।

ବାହାଘରରେ ମୋର ପୁରୁଣା କିଛି ବନ୍ଧୁ ରାଉରକେଲାରୁ ଆସିଲେ । ଆଉ କିଛି ଦାଦାପୁଅ ଭାଇ ତାଙ୍କ ପରିବାର ସହିତ । ମୋ ଭଉଣୀ, ଭିଣୋଇ,ଶଳା ଓ ଶଳାଭାଉଜ ଆସିଲେ । ବଡ଼ଭାଇଙ୍କ ପୁଅ ଭୁବନେଶ୍ୱରରେ ବାହାଘର ବେଳେ ଆସିଥିଲା । ବାହାଘରର ସବୁ କାମ ସରିଲା ପରେ ମୁଁ ପୁଅବୋହୂଙ୍କୁ ଦିଲ୍ଲୀ ପଠେଇ ଦେଲି । କଳା ଛୁଟି ନେଇଥିଲା । ବାହାଘରବେଳେ ମୋତେ ପଚରାଗଲା ବୋହୂର ନାଁ ବଦଳ କରିବାକୁ ଚାହୁଁଚନ୍ତି ? ମୁଁ ମନା କଲି । ମୋର ଏଥିରେ ମଧ୍ୟ ବିଶ୍ୱାସ ନାହିଁ ।

ତାପରେ ଆମେ ତୀର୍ଥଯାତ୍ରାରେ ବାହାରିଗଲୁ । ମୋର ଶେଷ ଏଲ.ଟି.ସି. ବାକି ଥିଲା । ଅବସର ଆଉ ଛଅ ମାସ ବାକି । ଆମେ ଗଲୁ ଗୋଆ । ତାପରେ ବାଙ୍ଗାଲୋର, ମହୀଶୁର, ଉଟି ଇତ୍ୟାଦି । ଗୋଟିଏ ଗୁଳିରେ ଏତେଗୁଡ଼ିଏ ଚଢ଼େଇ ମାରିହେବ ମୋର ବିଶ୍ୱାସ ନଥିଲା । ଗୋଟିଏ ଦିନ ବାଙ୍ଗାଲୋରରେ ରହି ସବୁଯାକ ବୁଲି ଦେଖିଲୁଁ । ତାଆରି ଭିତରେ ଆଉ ଗୋଟିଏ ଦିନ ଉଟି, ଚନ୍ଦନ ବଣ ଓ ୟୁକାଲିପଟସ୍‌ର ଘଂଚ ଓ ଦୀର୍ଘ ବଣ ଭିତର ଦେଇ ଗଲା ବେଳେ ମୋର ଚନ୍ଦନ ଦସ୍ୟୁ ବୀରାପ୍ପାନ କଥା ମନେ ପଡୁଥିଲା ।

ଭୟ ମଧ୍ୟ ଥିଲା । ବସ ଡ୍ରାଇଭର ଆଗରୁ କହିଦେଇଥିଲେ ଯାହାର ଯୋଉ କାମ ଅଛି ସାରି ଦିଅନ୍ତୁ । କାରଣ ଚନ୍ଦନ ବଣ ଭିତର ଦେଇ ଯାଉଥିଲା ବେଳେ ୩/୪ ଘଂଟା ଗାଡ଼ି ମୋଟେ ଅଟକିବ ନାହିଁ । ସେଇଟା ହିଁ ବୀରାପ୍ପାନର ଏରିଆ । ସେତେବେଳେ ମନେ ହେଉଥିଲା, ଗାଡ଼ି ନ ଅଟକୁ ସେ ମହାନ୍ ଦସ୍ୟୁଟିକୁ ଥରେ ଦେଖି ହୁଅନ୍ତା ନି ? ବୀରପ୍ପାନ ଅବଶ୍ୟ ଆଜି ଆଉ ନାହିଁ । କିନ୍ତୁ ସେ ଥରେ ନିର୍ବାଚନ ଲଢ଼ିବ ବୋଲି କହୁଥିଲା । ଏବର ଗଣତନ୍ତ୍ରରେ ଜଣେ ବୀରପ୍ପାନ ପରି ବ୍ୟକ୍ତିତ୍ୱ ମଧ୍ୟ ନିର୍ବାଚନ ଲଢ଼ି ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ହେଇ ପାରିବ । ସେ ଦୃଷ୍ଟିରୁ ଦେଖିବାକୁ ଗଲେ ଏବେ କଅଣ କମ୍ 'ବୀରପ୍ପାନ' ଆମ ଦେଶରେ ଅଛନ୍ତି ? ଦିନ ଥିଲା ଯେବେ କୁହାଯାଉଥିଲା ଭାରତବର୍ଷ ଏକ କୃଷି ପ୍ରଧାନ ଦେଶ । ଏବେ କୁହା ଯାଉଚି ଭାରତବର୍ଷ ସ୍କାମ ପ୍ରଧାନ ଦେଶ । ଏହାହିଁ ଆମର ୭୦ ବର୍ଷର ତଥା କଥିତ ଗଣତନ୍ତ୍ରର ଇତିହାସ । ମୋର ସେତେବେଳେ ଆଉ ଗୋଟିଏ ଚିନ୍ତା ଥିଲା ରିଟାୟାର କଲାପରେ କୋଉଠି ରହିବି ? ଗାଁରେ ଘରନାହିଁ । ରାଉରକେଲାରେ ଗୋଟାଏ ଏତେ ଛୋଟଘର ଅଛି ଯେ ସେଇଟା ଏଇ ଅବସ୍ଥାରେ ବାସୋପଯୋଗୀ ନୁହେଁ । ମୋ ପାଖରେ ଥିବା ସାମାନ୍ୟ ଆସବାବ ପତ୍ର ମଧ୍ୟ ସେଥିରେ ରହିପାରିବ ନାହିଁ । ବେଳେ ବେଳେ ଭାବୁଥିଲି ଦିଲ୍ଲୀରେ ପୁଅ ପାଖରେ ଯାଇ ରହିବି । କିନ୍ତୁ ସେଇଟା ମଧ୍ୟ ସମ୍ଭବ ନୁହେଁ । ରାଉରକେଲାଠାରୁ ମୁଁ ଦୂରେଇ ଯାଇ ପାରିବି ତ ? କଲଚରାଲ ଏକାଡେମୀ ପ୍ରତି ଅଦମ୍ୟ ମୋହକୁ କେମିତି କାଟି ଥାଆନ୍ତି ?

ତା'ରି ଭିତରେ କେବେ ଅଗଷ୍ଟ ୩୧, ୧୯୯୩ ଆସିଗଲା ଓ ମୁଁ ଅବସର ନେଇଗଲି ଜାଣି ପାରିଲିନି । ତା' ପୂର୍ବରୁ ମୋର ବେଶ କିଛିଟା ସାହିତ୍ୟିକ କାର୍ଯ୍ୟକ୍ରମ ସେଠି ହେଇଗଲା । ଗୋଟିଏ ଚହଳ ସୃଷ୍ଟିକାରୀ ବହୁଭାଷୀ କବିତା ପାଠ, ଯୋଉଥିରେ ରାଉରକେଲାରୁ ବହୁକବି ଯାଇଥିଲେ । ଅନ୍ତତଃ ଦୁଇଥର କେନ୍ଦୁଝରରେ ରେଡିଓ କାର୍ଯ୍ୟକ୍ରମ ଏବଂ ଉତ୍କଳ ଦିବସରେ କବିତା ପାଠୋତ୍ସବ ଇତ୍ୟାଦି ସରିଥିଲା । ବଣ ପାହାଡ଼ ଘେରା ଅଂଚଳରେ ଯାହା କେବେବି ହେଇପାରି ନଥିଲା । ସେ ସବୁ ହେଲା । ଯୋଉ ଅଂଚଳ ମୁଁ କେବେବି ଦେଖିପାରି ନଥାଆନ୍ତି ସେ ସବୁ ଏଠାକୁ ଆସି ଦେଖିଲି । ମଧ୍ୟ ପ୍ରଦେଶର 'ସତନା' ଗଲି । ସେଠାର ଚୂନପଥର ଖଣିର ସିଆଇଏସଏଫ ୟୁନିଟ ମୋ ଅଧୀନରେ । ସେଠାକୁ ଯାଇ ମୁଁ ଗଲି 'ଖଜୁରାହୋ' ଦେଖିବାକୁ । ଭାରତର ଅନ୍ୟତମ ଶ୍ରେଷ୍ଠ ପର୍ଯ୍ୟଟନ ସ୍ଥଳୀ । ଠିକ୍ କୋଣାର୍କ ପରି । କିନ୍ତୁ ଆକାଶ ପାତାଳ ଫରକ ଏ ଦୁଇଟା ସ୍ଥାନ ଭିତରେ । ଖଜୁରାହୋରେ ଅନେକଗୁଡ଼ିଏ ଷ୍ଟାର ହୋଟେଲ ତ ଅଛି । ଅଧିକନ୍ତୁ ଦୈନିକ ଅନେକଗୁଡ଼ିଏ ଉଡ଼ାଜାହାଜ ମଧ୍ୟ ଯିବା ଆସିବା କରେ । ବମ୍ବେ ଓ ଦିଲ୍ଲୀ ସହିତ ସଂଯୋଗ ଅଛି । ସହରଟି ମଧ୍ୟ ଅତି ଚମତ୍କାର । ଆଉ କୋଣାର୍କ ?

ପରଦିନ ସେଇଠୁ ମଧ୍ୟ ଗଲି ହୀରାଖଣି ଦେଖିବାକୁ । ଅବସର ନେବାର ଅବ୍ୟବହିତ ପୂର୍ବରୁ ଏ ଜାଗା ଦେଖିବାର ସୁଯୋଗ ମିଳିଥିଲା । ହୀରାର ଟୁକୁରାଟିଏ ଖାଲି ନୁହେଁ । ହୀରା ଖଣି, ମାଟି ଗୋଡ଼ିରୁ ତା'ର ରୂପାନ୍ତର । ତା'ର ସ୍ୱର୍ଣ୍ଣବିଭା ଏସବୁ ମଧ୍ୟ ଦେଖିବାର ସୁଯୋଗ ପାଇଲି । କୋହୀନୁରର ଜନ୍ମ ଏଇଠି ? ସେ କଥା କିଏ କହିବ ? ଏବେ ସେହି କୋହୀନୁର ପାଇଁ ଆମେ ମୁଣ୍ଡ ବାଡ଼େଇ ହେଉଚୁଁ । ସତେ ଅବା ସେଇଟା ଆସିଲେ ଆମ ଚାଷୀ ମରିବେ ନାହିଁ । ବିଜୟ ମାଲ୍ୟା ଯେତିକି ମାରି ଦେଲେ ସେଥିରେ କେତୋଟି କୋହୀନୁର ହେଇପାରି ଥାଆନ୍ତା ? ଲଳିତ ମୋଦୀ କି ନୀରବ ମୋଦୀ ଯେତିକି ଖାଇଲେ ସେଥିରେ କେତେ କୋହୀନୁର ହେଇ ଥାଆନ୍ତା ? ଭାରତର ମନ୍ଦିର ମାନଙ୍କରେ ଯେତିକି ଗଚ୍ଛିତ ଅଛି ସେଥିରୁ କେତେ କୋହୀନୁର ଆମେ ପାଆନ୍ତେ ?

ଆତ୍ମସନ୍ତୋଷର ସହ ଅବସର ନେଲି । କୌଣସି ଅବଶୋଷ ନଥିଲା । ଚାକିରୀ ପରେ ଗୋଟାଏ ସୁଖର ଓ ଶାନ୍ତିପ୍ରଦ ସମୟ ବିତାଇବାକୁ ହିଁ ଜଣେ ଚାହିଁଥାଏ । ମୁଁ ସେତକ ପାଇବି ବୋଲି ଭାବୁଥିଲି ।

କେନ୍ଦ୍ର ସରକାର ଏବେ ପେନ୍‌ସନର ଯୋଉ ନୂଆ ବ୍ୟବସ୍ଥା କରିଛନ୍ତି ସେଥିରେ ଖୁସି ହେବାର କଥା । ପେନସନଟା ପାଂଚ ଟଙ୍କା ହେଲେ ମଧ୍ୟ ଠିକ୍ ମାସର ଶେଷ ଦିନ ବେଙ୍କକୁ ଆସେ ଓ ମୋବାଇଲରେ ମେସେଜ ଆସିଯାଏ । ମୋର ପେନ୍‌ସନର ସମସ୍ତ କାଗଜପତ୍ର ଅବସର ନେବାର ସାତଦିନ ଭିତରେ ଆସି ପହଂଚିଗଲା । ଯୋଉଟା ସବୁଠାରୁ ବଡ଼ ଚିନ୍ତା ଥିଲା, ସେତକ ଦୂରହେଲା । ଅବସର ନେବା ପୂର୍ବରୁ ମୋର ଅନ୍ୟାନ୍ୟ ପ୍ରାପ୍ୟ ପାଇ ସାରିଥିଲି । ଆମର ହେଲ୍‌ଥ ସ୍କିମ ମଧ୍ୟ ଚମତ୍କାର । ସ୍ୱତନ୍ତ୍ର ହସପିଟାଲରୁ ସବୁ ସୁବିଧା ମାଗଣାରେ ମିଳେ । ଏପରିକି ଶ୍ରବଣ ଯନ୍ତ୍ରଟିଏ ମଧ୍ୟ ମିଳିଚି । ନିୟମ ଅଛି ଷାଠିଏ ହଜାର ଟଙ୍କା ଯାଏ ମିଳି ପାରିବ । ଆମ ଦୁଇ ଜଣଙ୍କର ମେଡିକେଲ କାର୍ଡ଼ ଅଛି । ସବୁ ଔଷଧ ମାଗଣାରେ ମିଳେ । ଓଡ଼ିଶା ସରକାରଙ୍କର ପ୍ରାୟ ଏହି ପ୍ରକାର ନିୟମଟିଏ ଥିଲେ ମଧ୍ୟ କାହିଁକି ଯେ ଲୋକେ ବର୍ଷ ବର୍ଷ ଧରି ନ୍ୟାଯ୍ୟ ପେନ୍‌ସନ ଗଣ୍ଡାକ ଲାଗି ସରକାରୀ ଅଫିସକୁ ଦୌଡୁଥାନ୍ତି ବୁଝି ହୁଏନି । ହଜାରେ ଟଙ୍କାର ପେନ୍‌ସନ ପାଇଁ ପାଂଚ ହଜାର ଖର୍ଚ୍ଚ ହୁଏ ।

# ଯେତେ ସ୍ୱପ୍ନ ସେତେ ରାତି

ଯୋଉଦିନ ମୋତେ ମୋର ୟୁନିଟ ବିଦାୟ ଦେଲେ (୩୧ ଅଗଷ୍ଟ ୧୯୯୩) ତା' ପର ଦିନହିଁ ମୋର ବଲାଣୀ ଛାଡ଼ିବାର କଥା । କିନ୍ତୁ ସେ ଦିନ ସନ୍ଧ୍ୟାରେ ମେନେଜମେଂଟ୍ ତରଫରୁ ବିଦାୟ ସମ୍ବର୍ଦ୍ଧନାର ଆୟୋଜନ ହେଇଥିବାରୁ ପୁଣି ଗୋଟାଏ ଦିନ ଅଟକିଲି । ବିଦାୟ ନେବା ପରେ ଅଧିକ ଗୋଟାଏ ଦିନ ମଧ୍ୟ ରହିବାକୁ ଇଚ୍ଛା ନଥାଏ ।

ତା'ପର ଦିନ ଆମେ ବଲାଣୀ ଛାଡ଼ିଲୁ । ଜିନିଷପତ୍ର, ମୋ ଛୋଟ ଘରେ ଜାଗା ଅଭାବରୁ ମୁଁ କିଛି କଲଚରାଲ ଏକାଡେମୀ ଓ ଆଉ କିଛି ମୋର ବହୁ ପୁରୁଣା ବନ୍ଧୁ ନିତ୍ୟାନନ୍ଦ ପାତ୍ର ଓ ଗୌରାଙ୍ଗ ପାତ୍ରଙ୍କ ଘରେ ରଖି ଦେଲି । ମୋ ଘରେ ଯୋଉଟା ୧୯୮୩ରେ, ମୋ ମାଆ ମଲାବେଳେ ଭଉଣୀ ବନିଥିବା ବିଦୁ(ବିଦ୍ୟୁତ୍ ଲତା ବିଶ୍ୱାଳ) ଓ ଜୋଇଁ ନଳିନୀ ବିହାରୀ ଦ୍ୱାରା ଆର.ଡି.ଏ.ରୁ ମାତ୍ର ୨୨ ହଜାର ଟଙ୍କା ଏବଂ ସେତକ ପୁଣି ୩/୪ଟା ଇନଷ୍ଟାଲମେଣ୍ଟ୍ ରେ କରା ଯାଇଥିଲା,ସେଥିରେ ତିନିଟା ଖଟ ମାତ୍ର ରଖିଲି । ଦୁଇଟା ବେଡରୁମରେ ଓ ଗୋଟିଏ ଦାଣ୍ଡଘରେ ବସାଉଠା କରିବା ପାଇଁ । ଛୋଟିଆ ରୋଷେଇଘର । ଜିନିଷପତ୍ର ରଖିଦେଇ ଦୁହେଁ ଚାଲିଗଲୁଁ ଦିଲ୍ଲୀ । ଉଦ୍ଦେଶ୍ୟ ପୁଅବୋହୂ ନୂଆଘର କିପରି ବସେଇଛନ୍ତି ଦେଖିବାକୁ ।

କହିବା ବାହୁଲ୍ୟ ଯେ ଇତି ମଧ୍ୟରେ ସମୃଦ୍ଧି ତାଙ୍କ କଥା ରଖିଛନ୍ତି । ବିବାହର ମାସକ ଭିତରେ ସେ କଳାକୁ ଭୁବନେଶ୍ୱରରୁ ଦିଲ୍ଲୀକୁ ବଦଳି କରାଇ ଦେଲେ । ନେତାଜୀ ନଗରରେ ସେମାନେ ଗୋଟିଏ ଘର ଭଡ଼ା ନେଇ ରହୁଥିଲେ । ଛୋଟ ଘର, ସାମାନ୍ୟ ମଧ୍ୟ ଆସବାବ ପତ୍ର । ଆମେ ମାସେଖଣ୍ଡେ ସେଠାରେ ରହିଲୁ । ତୀର୍ଥ ଓ ଅତୀର୍ଥ ସବୁ ଜାଗା ବୁଲିଲୁଁ । ସତୀର୍ଥମାନଙ୍କୁ ମଧ୍ୟ ଭେଟିଲୁଁ । ଚାକିରିର ବ୍ୟସ୍ତତା ନାହିଁ । ତେଣୁ ବହୁତ ହାଲୁକା ଲାଗୁଥିଲା । ବିନା ବ୍ୟସ୍ତତା ଓ ବିନା ଆର୍ଥିକ ଦୁରବସ୍ଥା ଭିତରେ ଜୀବନର ପ୍ରଥମ ଅନୁଭବ ଥିଲା ମୁଁ ଏବେ ମୁକ୍ତ, ସଂପୂର୍ଣ୍ଣ ମୁକ୍ତ । କୌଣସି ପ୍ରକାର ଶୃଙ୍ଖଳ ମୋ ହାତରେ ନାହିଁ । ମୁଁ ଯେତେ ସମୟ ଇଚ୍ଛା ଶୋଇ ପାରିବି । ଯେତେ ଇଚ୍ଛା ବୁଲି ପାରିବି । ଦିଲ୍ଲୀରୁ ଫେରିବା ଟିକଟ ? ଦେଖିବା, ଯେତେବେଳେ ଯିବାକୁ ଇଚ୍ଛା ହେବ, ସେବେ କରିବା । ଗୋଟାଏ ଅଖଣ୍ଡ ସ୍ୱାଧୀନତା । ଏତେ ଖୁସି ବି ଥାଏ କି ମଣିଷର ? ଦୁଇ ଝିଅ ତାଙ୍କ ତାଙ୍କ ଜାଗାରେ ଭଲରେ ଅଛନ୍ତି । ବଡ଼ ଜୋଇଁ ଓଡ଼ିଶା ସରକାରରେ ପଦସ୍ଥ ପ୍ରାଣୀ ଡାକ୍ତର । ସାନ ଜୋଇଁ କଳିଙ୍ଗ ଆଇରନ ୱାର୍କସ୍‌ରେ ସେତେବେଳେ ସହକାରୀ ମେନେଜର । ସାନ ଝିଅ ମଧ୍ୟ ସ୍ଥାନୀୟ ଇଂଲିସ ମିଡିଅମ ସେଂଟ୍ ପଲ୍ ସ୍କୁଲରେ ଶିକ୍ଷକତା କରୁଚି । ତା'ର ପୁଅ ରୁପୁ ମୋ ପାଖରେ ଆସାମରେ ଜନ୍ମ ହେଇଥିଲା । ଏବେ ସ୍କୁଲ ଯିବା ଆରମ୍ଭ କଲାଣି । ଗାଁ ରେ ଥିବା ସାମାନ୍ୟ ଜମିବାଡ଼ି ଓ ଘରବାଡ଼ି ଅବଶ୍ୟ ଅଛି । କିନ୍ତୁ ଭାଗଚାଷୀଙ୍କ ଅଧୀନରେ । ସେମାନେ ଭାଗ କରୁଛନ୍ତି ପ୍ରାୟ ୩୦ ବର୍ଷ ହେଲା । ସେମାନେ ଯେ କେତେ ସାଧୁ ଓ ସଚ୍ଚୋଟ ସେ କଥା ଚିନ୍ତା କରି ହେବନି । ପ୍ରତି ବର୍ଷ ମାର୍ଚ୍ଚ ଏପ୍ରିଲ ବେଳକୁ ନୀଳକଣ୍ଠ ଚିଠି ଲେଖେ । ସବୁ ହିସାବ ଦିଏ । କୋଉ ଜମିରେ କଅଣ ହେଇଥିଲା । ବିକ୍ରିଲବ୍ଧ କେତେ ମିଳିଲା । ମନି ଅର୍ଡ଼ର କରିବି ନା ଆପଣ ଆସିବେ ? ଏଇ ଧାରା ଚାଲିଥାଏ । ନୀଳକଣ୍ଠ ଏବେବି ଅଛି । ଆଖିକୁ ଦିଶୁନି । ଠୁକୁଠୁକୁ କରି ଚାଲେ ।

ସେମାନଙ୍କ ଉପରେ ଅନେକ ଗପ ଲେଖିଛି । ବହିବି ହେଇ ସାରିଛି । ବାକି କଥା ପରେ କହିବି ।

ମାସକ ପରେ ଆମେ ଦିଲ୍ଲୀରୁ ଫେରିଲୁ । ବୁଲାବୁଲି ସରିଗଲା । ଆଉ ରହିବାକୁ ଭଲ ଲାଗିଲାନି । ସେମାନଙ୍କ ମନା ସତ୍ୱେ ଆମେ ଆସିଲୁଁ । ଲୁଲୁ ଆସି ଗାଡ଼ିରେ ଉଠେଇ ଦେଲା । ରାଉରକେଲାରେ ପହଂଚି ସେଇ ଦିଆସିଲି ଭଳି ଛୋଟଘରେ ଅଣନିଶ୍ୱାସୀ ଲାଗିଲା । ଭାବିଲି, ନା ଘରଟାକୁ ବଢ଼ାଇବାକୁ ପଡ଼ିବ । ଛୋଟଘର ହେଲେ ବି ତା'ର ଲୋକେଶନଟା ବହୁତ ଭଲ । ସାମନାରେ ବିରାଟ ମାର୍କେଟ କମ୍ପ୍ଲେକ୍ସଟାଏ ଗଢ଼ି ଉଠିଛି । ମୋର ଏଇ ଘରଟାକୁ ବଢ଼େଇବାକୁ ଆସାମରୁ ପ୍ଲାନଟାଏ ତିଆରି କରିଥିଲି । ତାକୁ ଏଠି ଆର.ଡି.ଏ.ଠାରୁ ମଞ୍ଜୁରୀ କରାଇ ଘର ତିଆରି ଆରମ୍ଭ କରିଦେଲି । ଘର ତିଆରି ବିଷୟରେ କିଛି ବି ଧାରଣା ନଥାଏ । ତିନି ମାସ ପରେ ଦେଖିଲି ଠିକାଦାର ମୋତେ ଶୋଷିବାକୁ ଆରମ୍ଭ କରିଚି । ଏଥିରେ ଘର କେବେବି ସରିବ ନାହିଁ । କାମ ବନ୍ଦ କରିଦେଲି । ମୋର ଜଣେ ସିଭିଲ ଇଂଜିନିଅର ବନ୍ଧୁଙ୍କ ସହିତ ପରାମର୍ଶ କଲି । ରିଟାୟାର୍ଡ଼ ପୋଲିସ ଲେଖକ ଡି.ଏସ.ପି.ଙ୍କୁ କହିଲି । ତାପରେ ସେ ଠିକାଦାରକୁ ଛାଡ଼ି ଅନ୍ୟ ଜଣକୁ କାମ ଦେଲି । ସୁରୁଖୁରୁରେ କାମ ଚାଲିଲା । ବର୍ଷକ ପରେ କାମ ସରିଲା । ଉପର ମହଲାରେ ଦୁଇଟା କୋଠରୀ, ଗୋଟିଏ ଡାଏନିଂ କମ୍ ଡ୍ରଇଂ, ଗୋଟିଏ ଟୟଲେଟ୍,ଭଲ କିଚେନଟିଏ । ହଜାରେ ସ୍କୋୟାର ଫୁଟ ଜାଗାରେ ଆଉ କେତେ ହୁଅନ୍ତା । ଆଃ ଏବେ ଆମେ ଶାନ୍ତିରେ । ଦି ଜଣକ ପାଇଁ କେତେ ଦରକାର ? ଅଳ୍ପ ଛଡ଼ା ମୋତେ କେବେବି ବେଶୀ ମିଳିନି । ଆତ୍ମସନ୍ତୋଷ ସେତିକିରେ ।

ଏ ଭିତରେ ଲୁଲୁର ଭୁବନେଶ୍ୱର ବଦଳିପାଇଁ କଥା ଉଠିଲା । ଜାତୀୟ ଅଭିଲେଖାଗାରର ପୂର୍ବାଂଚଳ ଶାଖା ଭୁବନେଶ୍ୱରରେ ଖୋଲିବାକୁ କେନ୍ଦ୍ର ସଂସ୍କୃତି ବିଭାଗ ସ୍ଥିର କଲେ । ସେତେବେଳେ ସୀତାକାନ୍ତ ମହାପାତ୍ର ସଂସ୍କୃତି ବିଭାଗ ସେକ୍ରେଟାରୀ । ଏ ପ୍ରସ୍ତାବ ବହୁ ପୂର୍ବରୁ ବିଚାରଧୀନ ଥିଲେ ମଧ୍ୟ ତାହା ନାଲିଫିତା ମଧ୍ୟରେ ଆବଦ୍ଧ ଥିଲା । ବିଭୁତି ପଟ୍ଟନାୟକ ସେ କଥା ସୀତାକାନ୍ତ ମହାପାତ୍ରଙ୍କୁ ମନେ ପକାଇଦେବାରୁ ସେ ପ୍ରସ୍ତାବକୁ ତ୍ୱରାନିତ କରାଇଥିଲେ । ଏହି ପୂର୍ବାଂଚଳ ଶାଖା ବଂଗଳା କିମ୍ବା ବିହାରରେ ନ ହୋଇ ଓଡ଼ିଶାରେ କାହିଁକି କରାଯିବ ତାହାର ଏକ ପ୍ରଭାବଶାଳି ନୋଟ୍ ଜାତୀୟ ଅଭିଲେଖାଗାର ତରଫରୁ ପୁଣିଥରେ ସଂସ୍କୃତି ବିଭାଗକୁ ଦିଆଗଲା । ସୀତାକାନ୍ତ ମହାପାତ୍ରଙ୍କ ଛଡ଼ା ସେ ସମୟରେ ପ୍ରଖ୍ୟାତ କବି ଅଶୋକ ବାଜପେୟୀ ଥିଲେ ସଂସ୍କୃତି ବିଭାଗର ଯୁଗ୍ମ ସଚିବ । ସେ ମଧ୍ୟ ଏ ପ୍ରସ୍ତାବକୁ ଦୃଢ଼ ସମର୍ଥନ କଲେ । ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଏବଂ ରାଜେନ୍ଦ୍ର କିଶୋର ପଂଡା ଓ ବିମଳେନ୍ଦୁ ମହାଂତି ଯଥାକ୍ରମେ ରାଜ୍ୟ

ସଂସ୍କୃତି ସଚିବ ଓ ନିର୍ଦ୍ଦେଶକ । କେନ୍ଦ୍ର ଓ ରାଜ୍ୟ ଉଭୟର ସଂସ୍କୃତିପ୍ରେମୀ ପ୍ରଶାସକ ଓ ମୁଖ୍ୟମନ୍ତ୍ରୀଙ୍କ ପ୍ରଚେଷ୍ଟାରୁ ଏହା ସମ୍ଭବ ହୋଇପାରିଥିଲା ଯାହାକି ଏକ ବିରଳ ସଂଯୋଗ । କେନ୍ଦ୍ରର ନୀତିଗତ ନିଷ୍ପତ୍ତି ପରେ ରାଜ୍ୟ ସଂସ୍କୃତି ବିଭାଗ ସଙ୍ଗେ ସଙ୍ଗେ ଅସ୍ଥାୟୀ ଭାବରେ ରାଜ୍ୟ ଅଭିଲେଖାଗାରର କିଛି ଜାଗା ଦେଇଦେଲା । ଅଫିସ୍ ସ୍ଥାପନା ପରେ ଲଲାଟେନ୍ଦୁ ସଙ୍ଗେ ସଙ୍ଗେ ଦିଲ୍ଲୀରୁ ଆସି ନୂଆ ଅଫିସରେ ଦାୟିତ୍ୱ ଗ୍ରହଣ କଲା ୧୯୯୬ରେ । ସେ ହିଁ ଏହାର ପ୍ରତିଷ୍ଠାତା ଅଧିକାରୀ ।

ଏବେ ସମସ୍ୟା ପୁଣି କଳାର । ତାକୁ ପୁଣି ଭୁବନେଶ୍ୱର ଫେରେଇ ଆଣିବାକୁ ହେବ । ସେ ଦାୟିତ୍ୱ ପୁଣି ସମୁଦି ନେଲେ । ଯା'ହେଉ ସେତିକି ମଧ୍ୟ ତାଙ୍କଦ୍ୱାରା ହୋଇଗଲା । ଏସବୁ ବିଷୟରେ ତାଙ୍କୁ ପ୍ରଶଂସା କରିବାକୁ ହେବ ।

ଆମେ ଆହୁରି ନିଶ୍ଚିନ୍ତ ହୋଇଗଲୁଁ । ଭୁବନେଶ୍ୱର ଯିବା ଆସିବା ବଢ଼ିଲା । ଯା ଭିତରେ ମୁଖ୍ୟମନ୍ତ୍ରୀ ଜାନକୀବାବୁ ନିକୋ ପାର୍କ ପାଖରେ ଗୋଟାଏ ବିରାଟ ଜାଗା ମାଗଣାରେ ଜାତୀୟ ଅଭିଲେଖାଗାରକୁ ଯୋଗାଇ ଦେବାକୁ ଆଦେଶ ଦେଲେ । ଲୁଲୁ ଏହି ଜମି ପାଇଁ ପ୍ରାୟ ଦୁଇବର୍ଷ ବହୁ ଚେଷ୍ଟା କରିଥିଲା ଓ ତାହାର ଏହି ଚେଷ୍ଟାପ୍ରତି ସେତେବେଳର ସଂସ୍କୃତି ସଚିବ ଧୀରେନ୍ଦ୍ର ନାଥ ପାଢ଼ୀ ବିଶେଷ ସହାନୁଭୂତିଶୀଳ ଥିଲେ । ଅର୍ଥ ବିଭାଗର ଆପତ୍ତି ସତ୍ତ୍ୱେ ତାଙ୍କରି ଦୃଢ଼ ଅନୁମୋଦନକୁ ସହମତି ଦେଇ ଜାନକୀ ବାବୁ ସେ ଜମିକୁ ମାଗଣାରେ ଜାତୀୟ ଅଭିଲେଖାଗାରକୁ ଯୋଗାଇଦେବାକୁ ଆଦେଶ ଦେଲେ । ଏବେ ସେଠି ବିରାଟ କୋଠା । ସାରା ଓଡ଼ିଶାର ଗବେଷକ, ଐତିହାସିକ, ବୁଦ୍ଧିଜୀବୀ, ଜ୍ଞାନୀ ଓ ଗୁଣୀମାନଙ୍କର ଏହା ଗୋଟାଏ ପୀଠ । ଭୁବନେଶ୍ୱର ଜାତୀୟ ଅଭିଲେଖାଗାର ସମଗ୍ର ପୂର୍ବଭାରତ ଓ ଆଣ୍ଡାମାନ ନିକୋବର ଦୀପପୁଞ୍ଜରେ ଥିବା ସମସ୍ତ କେନ୍ଦ୍ରୀୟ ସରକାରୀ ଅନୁଷ୍ଠାନମାନଙ୍କର ରେକର୍ଡ଼ ମେନେଜ୍‌ମେଂଟ୍ ପ୍ରୋଗ୍ରାମକୁ ନିୟନ୍ତ୍ରଣ କରେ । ଏହି କାମ ଯେ ଲୁଲୁ ସୂଚାରୁ ରୂପେ କରିପାରୁଛି, ତାର ପ୍ରମାଣ ସେଠାକୁ ସେହିସବୁ ରାଜ୍ୟମାନଙ୍କରୁ ଆସିଥିବା ଲକ୍ଷାଧିକ ଆର୍କାଇଭାଲ୍ ରେକର୍ଡ଼ ଓ ବିରଳ ପୁସ୍ତକ । ଏସବୁ ସେ ଓଡ଼ିଶା, ଝାଡ଼ଖଣ୍ଡ, ପଶ୍ଚିମବଙ୍ଗ ଓ ଉତ୍ତର ପୂର୍ବାଂଚଳ ରାଜ୍ୟମାନଙ୍କର କେନ୍ଦ୍ର ସରକାରୀ ଅନୁଷ୍ଠାନ ମାନଙ୍କରୁ ସଂଗ୍ରହ କରିଛି । ବର୍ତ୍ତମାନ ଭୁବନେଶ୍ୱରର ବୁଦ୍ଧିଜୀବୀ ମହଲରେ ଏହି ଅଭିଲେଖାଗାର ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିସାରିଛି ।

## ସାହିତ୍ୟର ଜୀବନ ଓ ଜୀବନର ସାହିତ୍ୟ

ଅବସର ନେବା ପରେ ମୁଁ ପୁଣି ଲେଖା ଲେଖିରେ ମନଦେଲି । ଲୁଲୁ ଭୁବନେଶ୍ୱର ଫେରି ଆସିବା ସହିତ ମୋ ପାରିବାରିକ ସମସ୍ୟା ମଧ୍ୟ ଶେଷ ହୋଇ ଯାଇଥିଲା ।

||ଜୀବନୀ-୨୦୧୮||

ପ୍ରତ୍ୟେକ ମଣିଷ ପ୍ରକୃତରେ ଦୁଇଟି ମଣିଷ । ଗୋଟାଏ ଭିତରେ ଥାଏ ଓ ଅନ୍ୟଟି ବାହାରେ । ମୋ ବାହାର ମଣିଷଟି ଏ ଯାଏ ଜୀବନ ଓ ତା'ର ଯନ୍ତ୍ରଣା ଭିତରେ ଆତଯାତ ହେଉଥିଲା । ସ୍ଥିତି ଓ ସଂଘର୍ଷ ଭିତରେ ସେ ପ୍ରତିଦିନ ମରୁଥିଲା ଓ ଜିଉ ଥିଲା । ସେ ମଣିଷଟିର ମଧ୍ୟ ସ୍ୱାଧୀନତା ବୋଲି କିଛି ନଥିଲା । ସେ ଯାହା କହୁଥିଲା ବା କରୁଥିଲା ସେଥିରେ ତା'ର କିଛି କର୍ତ୍ତୃତ୍ୱ ନଥିଲା । ସେ ଅନ୍ୟ ଏକ ଶକ୍ତିଦ୍ୱାରା ଯେମିତି ପରିଚାଳିତ ହେଉଥିଲା । ସେ ଶକ୍ତି ମଣିଷକୁ ଭୁଲ ଓ ଠିକ୍‌ର ସୀମାରେଖାକୁ ଲୁଚେଇଦେଇ ତା' ଭିତରକୁ ଠେଲିଦିଏ । ମୋର ସେଇ ଦୀର୍ଘ ୩୦/୩୫ ବର୍ଷର ଚାକିରୀରେ ଅବୋଧ ମଣିଷଟି ଏ ଯାଏ ସେଇ ଭୁଲ ଠିକ୍‌କୁ ଜାଣି ମଧ୍ୟ ଜାଣୁ ନଥାଏ ।

ଏବେ ସେ ମଣିଷଟି ତା' ଭିତରୁ ବାହାରି ଆସିଲା ପରେ, ସେ ସେଥିରୁ ସମ୍ପୂର୍ଣ୍ଣ ମୁକ୍ତ ହେଲା ପରେ ନୂଆ ରୂପରେ ଠିଆ ହେଲା । ସେ ରୂପଟି ଗୋଟିଏ ଲେଖକର । ଯେ ନିଜପାଇଁ ଚିନ୍ତା ନକରି ଅନ୍ୟପାଇଁ ଚିନ୍ତା କରେ ବେଶୀ । ସମଗ୍ର ମଣିଷ ପାଇଁ । ଜୀବ ଜଗତ ପାଇଁ । ସମାଜ ପାଇଁ । ଜାତି ପାଇଁ । ଦେଶ ପାଇଁ । ସାହିତ୍ୟର ମଣିଷଟି ମୋ ଭିତରେ ଚେଇଁ ଉଠିଲା ପରେ ମୁଁ ପୁଣି ପଛକୁ ଦେଖିଲି ।

୧୯୫୯ର କଥା । ମୁଁ ଗୋଟିଏ ତଥାକଥିତ ପୋଲିସ ଚାକିରି ଛାଡ଼ି ଯେତେବେଳେ ଆସି ରାଜଗାଙ୍ଗପୁର ସିମେଂଟ କାରଖାନାରେ ଯୋଗ ଦେଲି ସେତେବେଳେ ଭେଟହେଲା ବିଷ୍ଣୁ ରାଉତରାୟ ସହିତ । ଜଣେ ସଚ୍ଚାଲେଖକର ପ୍ରାଣନେଇ ବିଷ୍ଣୁ ରାଉତରାୟ ଥିଲେ ଶ୍ରମିକଟିଏ । ଗୋଟାଏ ଶ୍ରମଜୀବୀ ପ୍ରାଣହିଁ ଲେଖକକୁ ଆଗକୁ ବଢ଼ିବାକୁ ପ୍ରେରଣା ଦିଏ । ଆମେ ଦୁହେଁ ଏକ ହେଇଗଲୁଁ । କାଁ ଭାଁ ଅନୁଷ୍ଠିତ ହେଉଥିବା ଜୟନ୍ତୀ ସଭାର ଗନ୍ଧବାରି ସେଠାରେ ଯାଇ ପହଂଚି ଯାଉଥିଲୁ । ବେଳେବେଳେ ପଦ ମାଗିଯାଚି ମଂଚରେ ଠିଆହେଇ କହୁଥିଲୁଁ ମଧ୍ୟ । ମାତ୍ର ସେ ସବୁ ଥିଲା ସମ୍ପୂର୍ଣ୍ଣ ଅସ୍ଥାୟୀ । ପ୍ରାୟ ବର୍ଷକ ପରେ ସେ ଚାଲି ଆସିଲା ରାଉରକେଲା ଷ୍ଟିଲ ପ୍ଲାଂଟକୁ । ତା' ପରେ ପରେ ମୁଁ ମଧ୍ୟ ଆସିଗଲି ସେଇ ଷ୍ଟିଲ ପ୍ଲାଂଟକୁ । ଯୋଗ ଦେଲି ସିକ୍ୟୁରିଟି ଡିପାର୍ଟମେଂଟ୍‌ରେ । ବିଷ୍ଣୁ ସହିତ ସମ୍ପର୍କ ତ ଆଗରୁ ଥିଲା । ଜୁଟିଗଲେ ଆଉ କିଛି ସାହିତ୍ୟ ନିଶାଖୋର । କବି ହରେକୃଷ୍ଣ ଦାସ, ଲେଖକ ବଂଶୀଧର ମହାପାତ୍ର, ମହେଶ୍ୱର ପଣ୍ଡା, କୁମୁଦ ପାଣି ଏମିତି କେତେକ । ଆଗରୁ ଗୋଟିଏ ସାହିତ୍ୟ ଚକ୍ର ଥିଲା ନାଁ କୁ ମାତ୍ର । ଠିକ୍ ରୂପ ନେଲା ରଜନୀକାନ୍ତ ଦାସ ଓ ଲକ୍ଷ୍ମୀଧର ନାୟକଙ୍କ ଯୋଗଦାନ ପରେ । ଲକ୍ଷ୍ମୀଧର ସେତେବେଳକୁ ଓଡ଼ିଶାର ଜଣେ ପ୍ରତିଷ୍ଠିତ ଲେଖକ । ରଜନୀବାବୁ ଲେଖକ ଓ ସାମ୍ବାଦିକ । ଦୁହେଁ ଆମର ଗୁରୁ ସ୍ଥାନୀୟ । ମୁଁ ତ ଯା ଭିତରେ ଏ ଦୁଇ ମହାନ ବ୍ୟକ୍ତିତ୍ୱଙ୍କ ଉପରେ ଦୁଇଟି ସଙ୍କଳନ କରିସାରିଚି।

ତେଣୁ ଲେଖୁଚି ଏଠି ସଂକ୍ଷେପରେ । ୧୯୬୦ରୁ କାଁ ଭାଁ ଆରମ୍ଭ ହେଇଥିବା ସାହିତ୍ୟ ଚକ୍ର ୧୯୬୨ ମସିହାରେ ବିଧିବଦ୍ଧ ଭାବରେ ଅନୁଷ୍ଠାନର ରୂପ ନେଲା ସେଇ ଲକ୍ଷ୍ମୀଧର ବାବୁଙ୍କ ପ୍ରେସରେ । ତା'ର ନାମ ସେଇଠି ରଖାଗଲା 'କଲଚରାଲ ଏକାଡେମୀ' । ତା'ର ମୁଖପତ୍ରଟିଏ ପ୍ରକାଶ ପାଇବା କଥା ମଧ୍ୟ ସ୍ଥିର ହେଲା । 'ନବପତ୍ର' ପ୍ରକାଶ ପାଇଲା ୪/୬ ମାସ ପରେ । ତାପରେ ଆମେ ଆଉ ପଛକୁ ଦେଖିନାହୁଁ । ପ୍ରତି ରବିବାର ଆମର ସାହିତ୍ୟ ଚକ୍ର ବସେ । ଆଜି ୟା'ଘରେ । କାଲି ତା'ଘରେ । ତଳେ ମସିଣା ପାରି ବସିଯାଉଁ । ଚା'ର ପ୍ରଚଳନ ସେତେବେଳେ ପ୍ରାୟ ନଥିଲା । ସମସ୍ତେ ଲେଖା ଆଣୁଥିଲେ । ପଢୁଥିଲେ । ଆଲୋଚନାରେ ଆଗରେ ଥିଲେ ବାଣୀପଦ ଦାଶ, ବ୍ରଜ ପ୍ରଧାନ, ହରିବାବୁ । ଗଳ୍ପ କବିତା ଉଭୟ ପଢ଼ା ହେଉଥିଲା । ବେଳେ ବେଳେ ରଜନୀବାବୁ ଓ ଲକ୍ଷ୍ମୀଧରବାବୁ ଆସୁଥିଲେ । କହୁଥିଲେ ସାହିତ୍ୟ କଅଣ ଲେଖିବ ଓ କାହିଁକି ଲେଖିବ ? ସାମାଜିକ ପ୍ରତିବଦ୍ଧତା କଥା ସେଇଠୁ ଜାଣିଲି । ଫୂର୍ତ୍ତି ଆଉ ସଉକ ପାଇଁ ସାହିତ୍ୟ, ସାହିତ୍ୟ ନୁହେଁ । ଆମର ମୂଳଦୁଆ ସେଇଠି ପଡ଼ିଲା କହିବା ଠିକ୍ ହେବ । ବାର୍ଷିକ ଉତ୍ସବମାନଙ୍କରେ ଆସିଲେ ବଡ଼ ବଡ଼ ସାହିତ୍ୟିକ, କବି ଲେଖକ । ମାୟାଧର ମାନସିଂହ, ଗୋପୀନାଥ ଓ କାହ୍ନୁ ଚରଣ ମହାନ୍ତି, କାଳିନ୍ଦୀ ଚରଣ ପାଣିଗ୍ରାହୀ ଓ ବିନୋଦ ନାୟକ । ଶିଳ୍ପାଂଚଳ ସାହିତ୍ୟ ସମ୍ମିଳନୀ (୧୯୬୮) ଗୋଟାଏ ବିରାଟ କାର୍ଯ୍ୟକ୍ରମ । ସାରା ଓଡ଼ିଶାର ସବୁ ଲେଖକ ଏକାଠି । ଜୀବନ ଓ ସମାଜ ସହିତ ସାହିତ୍ୟର ସମ୍ପର୍କ ଉପରେ ଗୁରୁତ୍ୱ ଦିଆଗଲା । ସେତେବେଳକୁ ଲକ୍ଷ୍ମୀଧର ବାବୁ ଅବଶ୍ୟ ରାଉରକେଲା ଛାଡ଼ି ସାରିଥିଲେ । ଶିଳ୍ପାଂଚଳ ସାହିତ୍ୟ ସମ୍ମିଳନୀ ପ୍ରକାଶ କଲା ସ୍ୱତନ୍ତ୍ର ସ୍ମରଣିକାଟିଏ । କାଳିନ୍ଦୀ ପାଣିଗ୍ରାହୀ ତା'ର ସମ୍ପାଦକ । ବିଷୟ ଥିଲା ଶିଳ୍ପାୟନରେ ସାହିତ୍ୟର ପ୍ରଭାବ ଇତ୍ୟାଦି । ଏସବୁ ଏବକୁ ଗୋଟାଏ ଗୋଟାଏ ଐତିହାସିକ ଦଲିଲ ।

ସେତେବେଳେ କଲଚରାଲ ଏକାଡେମୀର ଗୋଷ୍ଠୀକୁ ସ୍ୱତନ୍ତ୍ର ଗୋଷ୍ଠୀ କୁହାଗଲା । ଆମେ ପ୍ରାୟ ପ୍ରତିଦିନ ଭେଟୁଥିଲୁ । ଆମର ଖଟିଥିଲା କାରଖାନା ମେନ ଗେଟ ସାମନା ରିଂ ରୋଡ଼ ଛକ ପାଖରେ ଥିବା ୫/୬ଟା ଚା' ଜଳଖିଆ ଦୋକାନ । ସେ ନାଳ ଏବେ ଆଉନାହିଁ । ଲଂଚ୍ ସମୟରେ ଆମେ ସେଠି ଜୁଟି ଯାଉଁ । ଗୋଟିଏ ବଙ୍ଗାଳୀ ହୋଟେଲ କରିଥାଏ । ସେଠି ଚା' ଜଳଖିଆ ସହିତ କେହିକେହି ଭାତବି ଖାଆନ୍ତି । ଗୋଟିଏ ଟ୍ରାଞ୍ଜିଷ୍ଟର ସେଠି ଥାଏ । ହିନ୍ଦୀ ବଙ୍ଗଳା ଗୀତ ସହିତ କ୍ରିକେଟର ଧାରା ବିବରଣୀ ପ୍ରଚାର ହୁଏ । ମୁଁ ତ କ୍ରିକେଟ୍ କଥା କିଛି ବୁଝେନି । ଦିନେ ସେ ଖଟିରୁ ଫେରିଲା ବାଟରେ ମୋର ଦେଖାହେଲା ଜଣେ ବନ୍ଧୁଙ୍କ ସହିତ । ସେ ଖଟିକୁ ଯାଉ ଥାଆନ୍ତି, ଖାସ୍ କ୍ରିକେଟ ପାଇଁ । ମୋତେ ପଚାରିଲେ କେତେ ରନ୍ ହେଲାଣି ? ମୁଁ କହିଲି ୭ ହଜାର ତିନ । ସେ ପଛକୁ

ଫେରି ମୋତେ ଡାକିଲେ ଭୂପେନ୍ ବାବୁ ଶୁଣନ୍ତୁ । ମୁଁ ଆଉ ଅଛି ? ତରତରରେ ପଳାଇ ଆସିଲି । ସେଠି କିନ୍ତୁ ସାହିତ୍ୟ କଥା ବେଶୀ ଆଲୋଚନା ହୁଏ । ହରି ବାବୁ ଓ ଅନ୍ୟମାନେ ବଙ୍ଗଳା 'ଦେଶ୍' ପତ୍ରିକା ବେଶୀ ପଢ଼ନ୍ତି । ଦେଶରେ ପ୍ରଚୁର ବଙ୍ଗଳା ସାହିତ୍ୟ ପ୍ରକାଶ ପାଏ । ଆମ ଭିତରେ ମଧ୍ୟ ଥାଆନ୍ତି ନୀଳମଣି ସେନଗୁପ୍ତ । ଜଣେ ବାମପନ୍ଥୀ ଚିନ୍ତାଧାରାର ଲେଖକ । ସେମାନଙ୍କ ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ ଥାଏ, ବୋଧେ 'କୋଏଲ' । ଆମ ଭିତରେ ଯେଉଁମାନେ ଥାଆନ୍ତି ସେମାନେ ମଧ୍ୟ ଏକ ପ୍ରକାର ବାମପନ୍ଥୀ । ଜବରଦସ୍ତ ଆଲୋଚନା ହୁଏ । ଠିକ୍ କଥା କହିବାକୁ ଗଲେ ସେଇଟା ଗୋଟାଏ ସମୟ ଯେତେବେଳେ କଲଚରାଲ ଏକାଡେମୀକୁ ସବୁ ବାମପନ୍ଥୀମାନେ ନିଜର କରିବାକୁ ଚେଷ୍ଟା କରୁଥିଲେ । ଏସ.ୟୁ.ସି.ଆଇ., ସି.ପି.ଆଇ., ସି.ପି.ଆଇ(ଏମ୍) ଇତ୍ୟାଦି । ତାପସ ଦତ୍ତ, ନିତ୍ୟାନନ୍ଦ ପଣ୍ଡା, ସୁରେନ୍ଦ୍ର ମୁଦାଲି ସମସ୍ତେ ଚାହୁଁଥିଲେ ଏକାଡେମୀରେ ପଶିବାକୁ । କିନ୍ତୁ ୧୯୬୫/୬୬ ବେଳକୁ ଲକ୍ଷ୍ମୀଧର ନାୟକ ରାଉରକେଲା ଛାଡ଼ି ଚାଲି ଯିବାରୁ ରଜନୀବାବୁ ହେଲେ ସର୍ବେସର୍ବା । ତାଙ୍କୁ ସମସ୍ତେ ଯଥେଷ୍ଟ ସମ୍ମାନ ଦେଉଥିଲେ । ପ୍ରାୟ ୩୦ ବର୍ଷ ଯାଏଁ ସେ ଏକାଡେମୀର ସଭାପତି ଓ ନବପତ୍ରର ସମ୍ପାଦକ ହେଇ ରହିଲେ । ସେ ହିଁ ଏକାଡେମୀ ପାଇଁ ମେନେଜମେଂଟ୍‌ରୁ ସ୍ଥାୟୀ (ସେକ୍ଟର-୫) ବିରାଟ ଘରଟିଏ ଆଣି ଦେଇଥିଲେ । ପ୍ରଥମେ ସେକ୍ଟର-୨ରେ ପରେ ସେକ୍ଟର-୩ରେ (ଯୋଉଟା ଏବେ ପ୍ରେସ କ୍ଲବ ଅଛି) ଏବଂ ୧୯୯୦ ବେଳକୁ ଏକାଡେମୀ ସେକ୍ଟର-୫କୁ ଆସିଲା । ଏତେ ବଡ଼ କମ୍ପ୍ଲେକ୍ସ ମାଗଣାରେ ଆଉ କାହାରି ନାହିଁ । ଏକାଡେମୀକୁ ଘର ମିଳିବାଠାରୁ ସାହିତ୍ୟିକ କାର୍ଯ୍ୟକ୍ରମ ଜୋରସୋରରେ ଚାଲିଲା । ଏଥିପାଇଁ ହରେକୃଷ୍ଣ ଦାସ ଓ ବିଷ୍ଣୁ ରାଉତରାୟଙ୍କ ଦାନ ଅତୁଳନୀୟ । ହରିବାବୁ ମୃତ୍ୟୁ ପର୍ଯ୍ୟନ୍ତ ସବୁକାମ ତୁଳାଉଥିଲେ ।

## ସଂଘମ୍‌ର ଜନ୍ମ

ଏଇଠି ଗୋଟିଏ କଥା କହିବା ଦରକାର । ନ କହିଲେ କଥାଟା ରହିଯିବ । କଲଚରାଲ ଏକାଡେମୀ ଦୁଇ ଚାରି ବର୍ଷ ଠିକ୍ ଭାବରେ ଚାଲିଲା ପରେ ବୋଧେ ଆମ ଭିତରେ କିଛିଟା ଦ୍ୱନ୍ଦ୍ୱସୃଷ୍ଟି ହେଲା । ରଜନୀବାବୁଙ୍କ ନେତୃତ୍ୱ କେତେ ଜଣଙ୍କୁ ଭଲ ଲାଗିଲାନି । ସେତେବେଳକୁ ଲକ୍ଷ୍ମୀଧର ନାୟକ ବିଦାୟ ନେଇ ସାରିଥାଆନ୍ତି । ମୁଁ ଆଗରୁ କହିଚି ଆମ ଭିତରେ ବାମପନ୍ଥୀ ଚିନ୍ତା ପ୍ରବେଶ କରିଥାଏ । ସାହିତ୍ୟରେ ନୀତି ଓ ଆଦର୍ଶ ସହିତ ସାମାଜିକ ବାସ୍ତବବାଦ ଇତ୍ୟାଦି ଗଜା ମାରୁଥାଏ । ଏତିକିବେଳେ ରଜନୀବାବୁଙ୍କ ନେତୃତ୍ୱକୁ କେତେଜଣ ବିରୋଧ କଲେ । ସେମାନଙ୍କ ଭିତରେ କୃଷ୍ଣଚନ୍ଦ୍ର ମିଶ୍ର, ଅମୀୟ ବସୁ ପ୍ରମୁଖ । ଏକାଡେମୀର ସଦସ୍ୟତା ସେ ଯାଏ ଗ୍ରହଣ କରି ନଥିବା ଦେବେନ୍ଦ୍ର ମହାନ୍ତି

ଓ ରବି କାନୁନଗୋ ସେମାନଙ୍କୁ ସମର୍ଥନ ଦେଲେ । ଶିବ ପ୍ରସାଦ ମହାପାତ୍ର ମଧ୍ୟ ତାଙ୍କ ସାଥିରେ ରହିଲେ । କୃଷ୍ଣବାବୁଙ୍କ ନେତୃତ୍ୱରେ ନୂଆ ଅନୁଷ୍ଠାନଟିଏ ଗଢ଼ା ହେଲା । ତା' ନାମ ରହିଲା 'ସଂଘମ୍' । କୃଷ୍ଣବାବୁଙ୍କ ଘରେ ତାର ଅଫିସ ହେଲା । କୃଷ୍ଣବାବୁ ସେତେବେଳେ ସାତ ନମ୍ବର ସେକ୍ଟର କମ୍ୟୁନିଟି ସେଂଟର ସାମନାରେ ରହୁଥିଲେ । ଅମୀୟ ବାବୁ ମଧ୍ୟ ସେଇ ସାତ ନମ୍ବରରେ । ସେମାନଙ୍କର ପ୍ରଥମ କାମ ହେଲା 'ଗର୍କୀ ସେଂଟିନେରୀ' ପାଳନ । ଖୁବ୍ ଭଲ ହେଲା । ବେଶ ବଡ଼ ଆୟୋଜନ । ସେମାନେ ପତ୍ରିକା ପ୍ରକାଶ ନକରି ଗଳ୍ପ ସଂକଳନ ପ୍ରକାଶ କଲେ । ତା'ର ନାମ ଥିଲା 'ଏ ମାଟି ବନ୍ଧ୍ୟା ନୁହେଁ' । ୧୩୨ ପୃଷ୍ଠାର ବହିର ପ୍ରକାଶନ ସଂଘମ୍ (ପ୍ରଗତିବାଦୀ ଲେଖକ ସଂସ୍ଥା), ସି-୩୦, ସେକ୍ଟର-୭, ରାଉରକେଲା-୩ । ମୁଦ୍ରଣ- କଳିଙ୍ଗ ମୁଦ୍ରଣୀ, ୫୦, ନୁର ମହମ୍ମଦ ଲେନ, କଲିକତା-୯ । ଦା'କୁ ନେଇ ହାତ ଟେକିଥିବା ପ୍ରଚ୍ଛଦ ଆଙ୍କି ଥିଲେ ଶିଳ୍ପୀ ଓ କବି ବ୍ରଜ ବଲ୍ଲଭ ପ୍ରଧାନ । ମୂଲ୍ୟ ଥିଲା ଦୁଇ ଟଙ୍କା । ପ୍ରଥମ ମୁଦ୍ରଣ ୧୯୬୮ ରେ । ୧୦ଟି ଗଳ୍ପ ଥିଲା । ସେଥିରେ ଲେଖି ଥିଲେ କୃଷ୍ଣଚନ୍ଦ୍ର ମିଶ୍ର, ଦେବେନ୍ଦ୍ର ନାଥ ମହାନ୍ତି, ରାଧାନାଥ ରାଉତ, ସୁଷମା ଦେବୀ ମହାପାତ୍ର, ଭଗବାନ ରାଉତ, ଭୁପେନ୍ ମହାପାତ୍ର, ରବୀନ୍ଦ୍ର କୁମାର କାନୁନ୍‌ଗୋ, ଶିବପ୍ରସାଦ ମହାପାତ୍ର, ଅସିତ ମିଶ୍ର(କୃଷ୍ଣ ମିଶ୍ରଙ୍କ ଛଦ୍ମନାମ) ଓ ଅମୀୟ କୁମାର ବସୁ ।

ଏଥିରେ ମୋର ଗଳ୍ପଟିଏ ଥିଲେ ମଧ୍ୟ ମୁଁ ସଂଘମ୍‌ରେ ଯୋଗ ଦେଇ ନଥିଲି । କିନ୍ତୁ କୃଷ୍ଣ ମିଶ୍ରଙ୍କ ଘରେ ବସୁଥିବା ସାପ୍ତାହିକ ବୈଠକରେ ବେଳେବେଳେ ଯୋଗ ଦେଉଥିଲି । ତାର କାରଣ ମୁଁ ମଧ୍ୟ ସାତ ନମ୍ବର ସେକ୍ଟରରେ ରହୁଥିଲି ବୋଲି ଏମାନଙ୍କ ସହିତ ସମ୍ପର୍କ ଟିକେ ପାଖାପାଖି ଥିଲା । କୃଷ୍ଣ ମିଶ୍ରଙ୍କ ପୁଅ ଓ ମୋ ପୁଅ ଲୁଲୁ ଏକାଠି ପଢୁଥିଲେ । ସେ ସମ୍ପର୍କକୁ ଏଡ଼ି ହେଉ ନଥିଲା । ମୋର ଆତ୍ମୀୟତା କିନ୍ତୁ ଥିଲା କଲଚରାଲ ଏକାଡେମୀ ଠାରେ । ବିଷ୍ଣୁ ଓ ହରିବାବୁଙ୍କୁ ମୁଁ ଛାଡ଼ିବାକୁ ଚାହୁଁ ନଥିଲି ।

ସଂଘମ୍ ଦୁଇ ତିନିବର୍ଷ ବେଶ୍ ଭଲ ଚାଲିଲା । ଏସ.ୟୁ.ସି.ଆଇ.ର ଜଣେ ଦିଜଣ ପ୍ରଗତିବାଦୀ ଲେଖକ ସେମାନଙ୍କ ପଛରେ ଥିଲେ । ତା'ର ଗର୍କୀ ଶତବାର୍ଷିକୀ ଏବେବି ମନେ ଅଛି । କେତୋଟି ଭଲ ଲେଖାକୁ ନେଇ ସେମାନେ ପ୍ରକାଶ କରିଥିଲେ 'ଗର୍କୀ ମାନସ' । ସେଇଟି ମଧ୍ୟ ମୋ ପାଖରେ ଅଛି । ଏସ.ୟୁ.ସି.ଆଇ. ର କେତେଗୁଡ଼ିଏ ବହି ଏବେ ମଧ୍ୟ ମୋ ପାଖରେ ଅଛି । ସଂଘମ ଦ୍ୱାରା ପ୍ରକାଶିତ 'ଏ ମାଟି ବନ୍ଧ୍ୟା ନୁହେଁ' ପୂର୍ବରୁ ପ୍ରକାଶ ପାଇଥିଲା 'ସେମାନେ ବି ବଞ୍ଚିବେ'। ତାକୁ ପଢ଼ି ରବି ସିଂ ପ୍ରଶଂସା କରିଥିଲେ । ଚିତ୍ତରଞ୍ଜନ ଦାସ ଓ ମନୋଜ ଦାସ ପ୍ରଭୃତି ମଧ ପ୍ରଶଂସା କରିଥିଲେ ।

କିନ୍ତୁ ପ୍ରଶ୍ନ ଉଠୁଛି ଏ ବିଭାଜନ କାହିଁକି ହେଲା ? ମୁଁ ଭାବୁଛି ବାମପନ୍ଥୀମାନେ ଟିକେ ତେଢ଼ା ନୁହନ୍ତି କି ? ସେମାନେ ତେଢ଼ା ନ ହେଇଥିଲେ ଚୀନ ଯୁଦ୍ଧ ପରେ ସେମାନେ ଭାରତରେ ଭାଗଭାଗ ହେଇ ଥାଆନ୍ତେ ? ନକ୍ସଲମାନେ ଭାଗ ଭାଗ ହେଲେ । ଏବେ ମାଓବାଦୀ ମଧ୍ୟ ଭାଗ ଭାଗ ହେଉଛନ୍ତି । ଚୀନ-ରୁଷିଆ ଭାଗ ଭାଗ ହେଲେ, ପୂର୍ବ ୟୁରୋପୀୟ ଦେଶ ମଧ୍ୟ ଅଲଗା ହେଲେ ।

ରଜନୀ ବାବୁଙ୍କୁ ଲକ୍ଷ୍ମୀଧର ଭଲ ଲାଗି ନଥିବେ ବା ଠିକ୍ ସେମିତି କୃଷ୍ଣ ଅମୀୟ ମାନଙ୍କୁ ରଜନୀ ଭଲ ଲାଗି ନଥିବେ । ପରେ ଅବଶ୍ୟ ସଂଘମ୍ ଗୋଷ୍ଠୀ ଏକାଡେମୀ ସଙ୍ଗରେ ମିଶିଗଲେ । ଥିଲେ ଗୋଟିଏ, ହେଲେ ଗୋଟିଏ ।

# ମୁଁ ଓ ମୋର ସାହିତ୍ୟ

ଲେଖାଲେଖିରେ ମୁଁ ଏଇଠି ଜୀବନଟିଏ ଗଢ଼ିଛି ଏ କଥା ଅସ୍ୱୀକାର କରି ହେବ ? 'ନବପତ୍ର ' ହିଁ ଆମକୁ ଏବେ ମଧ୍ୟ ପ୍ରେରଣା ଯୋଗାଉଛି । ଏବକୁ ସେ ସବୁ ଇତିହାସ ହେଇଗଲାଣି । ସେଇଠି ମୂଳଦୁଆଟି ପଡ଼ିଥିଲା ବୋଲି ଏବେ ଅନ୍ତତଃ ଓଡ଼ିଶାରେ ଖାଲି ନୁହେଁ ଓଡ଼ିଶା ବାହାରେ ମଧ୍ୟ ଲୋକେ ଜାଣିଛନ୍ତି ଇଏ ଲେଖକଟିଏ । ଏକାଡେମୀ ପାଇଁ ଅନ୍ୟମାନେ ଯେତେ କାମ ମୂଳରୁ କରି ପାରିଛନ୍ତି, ସ୍ୱୀକାର କରିବାରେ ଦ୍ୱିଧା ନାହିଁ ଯେ ମୁଁ ଏତେ କାମ କରି ପାରିନାହିଁ । ତଥାପି ମୁଁ ଥିଲି ଓ ଅଛି । ଯେତେବେଳେ ଏକାଡେମୀ ତାର କାମରେ ଶୀର୍ଷରେ, ଠିକ୍ ସେତିକି ବେଳେ ଅର୍ଥାତ୍ ୧୯୭୯ ଜାନୁଆରୀରେ ମୋର ରାଉରକେଲାରୁ ବଦଳିହେଲା ରାଞ୍ଚି । ଚାଲିଗଲି ସିନା କିନ୍ତୁ ସମ୍ପର୍କ କଟିଲା ନାହିଁ । ବରଂ ଦୃଢ଼ ହେଲା । ୧୯୭୯ରୁ ୧୯୯୨ ପର୍ଯ୍ୟନ୍ତ ମୁଁ ବାରବୁଲା ସାଜି ସବୁଠି ବୁଲିଲି । କିନ୍ତୁ ଚିଠିପତ୍ର ଦିଆନିଆ ବରାବର ହେଉଥାଏ । ରଜନୀବାବୁ ଓ ହରିବାବୁଙ୍କର ଅନେକ ଚିଠି ଏବେ ମଧ୍ୟ ସାଇତା ହେଇ ରହିଚି । ବହୁ ଦୁଃଖ କଷ୍ଟ ଓ ସଂଘର୍ଷର ଇତିହାସ ସେ ସବୁ ବହନ କରେ । ପଛକୁ ସେ ସବୁବି ଇତିହାସ ହେବ ।

ମୁଁ ଭାରତର ଯେଉଁଠି ଥିଲେବି ଲୋକ ନାଟକ ବେଳକୁ ନିଶ୍ଚୟ ଆସେଁ । ନବପତ୍ରକୁ ସବୁବେଳେ କିଛି ନା କିଛି ସାହଯ୍ୟ ପଠାଏଁ । ସେଇଟା ମୁଖ୍ୟତଃ ବିଜ୍ଞାପନ ମାଧ୍ୟମରେ । ଶକ୍ତି ମୁତାବକ, ଯେତେବେଳେ ଯେମିତି ସୁବିଧା ହେଇଚି ।

୧୯୯୦ ବେଳକୁ କଲଚରାଲ ଏକାଡେମୀ ଉଠିଆସିଲା ତିନି ନମ୍ବର ସେକ୍ଟରରୁ ପାଂଚଜ୍ଞନମ୍ବର ସେକ୍ଟର ଅରବିନ୍ଦ ସ୍କୁଲ ପାଖକୁ । ଏତେ ବଡ଼ ଘର ଓ ବିରାଟ ଏରିଆ । ଏତକ ମଧ୍ୟ ହେଲା ରଜନୀବାବୁଙ୍କ ଦ୍ୱାରା କାରଣ ବାକି ସମସ୍ତେ ଷ୍ଟିଲ ପ୍ଲାଂଟ୍‌ର ଅଧସ୍ତନ କର୍ମଚାରୀ । ବଡ଼ ଅଫିସର ମହଲରେ ସେମାନେ ସ୍ନେହଶ୍ରଦ୍ଧାର (ଲେଖକ ହିସାବରେ)

ଅଧିକାରୀ ହେଲେ ମଧ୍ୟ ଅନୁଷ୍ଠାନ ପାଇଁ କିଛି କରିବା ପାଇଁ ଭେଟିବା ସ୍ୱାଭାବିକ ହୋଇପାରେନା । ତେଣୁ ସେ କାମ ରଜନୀବାବୁଙ୍କର । ରାଉରକେଲା ଷ୍ଟିଲ ପ୍ଲାଂଟ୍‌ର ପଦସ୍ଥ ଅଧିକାରୀଙ୍କଠାରୁ ଆରମ୍ଭ କରି, ପଦସ୍ଥ ସରକାରୀ ଅଫିସର ଓ ସ୍ଥାନୀୟ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଯାଏ ସେ ସମସ୍ତଙ୍କର ଯଥେଷ୍ଟ ସମ୍ମାନର ଅଧିକାରୀ । ଧୋତି ପଞ୍ଜାବୀର ସମ୍ପୂର୍ଣ୍ଣ ସାଧାସିଧା ମଣିଷ । ନିଷ୍ଠାପର ଗାନ୍ଧୀବାଦୀ, କିନ୍ତୁ ଭିତରେ ମାର୍କ୍ସ । ସତ୍ୟ ଛଡ଼ା ଛଳ କପଟର ଧାର ଧରୁ ନଥିବା ରଜନୀବାବୁ ଥିଲେ ସମସ୍ତଙ୍କର ଆଦରର ପାତ୍ର । ଯେତେବେଳେ ଦେଖାଗଲା ଲୋକନାଟକ ମହୋତ୍ସବ ଓ ବିଶେଷ କରି ସ୍କୁଲ ଅଫ ଫାଇନ ଆର୍ଟ ଏବଂ ଅନ୍ୟାନ୍ୟ ସାହିତ୍ୟିକ କାର୍ଯ୍ୟକ୍ରମ ପାଇଁ ତିନି ନମ୍ବର ସେକ୍ଟରର ଗୋଟାଏ ସାମାନ୍ୟ ଟୁ ବେଡ୍‌ରୁମ ଘର ଯଥେଷ୍ଟ ହେଉନାହିଁ ସେତେବେଳେ ବଡ଼ ଘରଟିଏ ପାଇଁ କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରାଗଲା । ରାଉରକେଲା ଷ୍ଟିଲ ପ୍ଲାଂଟର ସୃଷ୍ଟିଠାରୁ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରଚାର୍ ଓ ପ୍ରସାର ପାଇଁ ଏବଂ ବିଶେଷ କରି ଅଣଓଡ଼ିଆ ସଂସ୍କୃତିର ପ୍ରାଧାନ୍ୟ ବଢୁଥିବାବେଳେ ମାଟିର ମୂଳ ସଂସ୍କୃତିର ପ୍ରସାର ପାଇଁ ଏକାଡେମୀର ପ୍ରଚେଷ୍ଟା ତାର ସ୍ୱତନ୍ତ୍ର ସ୍ଥାନଟିଏ ସୃଷ୍ଟି କରୁଥିଲା ଏବଂ ସେ ସବୁର ମୂଳରେ ଥିଲେ ରଜନୀବାବୁ । ତେଣୁ ମେନେଜମେଂଟ୍‌ର ଉଚ୍ଚ ପଦାଧିକାରୀମାନେ ତାଙ୍କ କଥାକୁ ଟାଳି ପାରି ନଥିଲେ । ଟାଉନସିପର ସର୍ବୋତ୍କୃଷ୍ଟ ସ୍ଥାନଟା, ସେଥିରେ ଥିବା ବିରାଟ ବିଲଡିଂ ସମେତ, କଲଚରାଲ ଏକାଡେମୀକୁ ହସ୍ତାନ୍ତର କରି ଦେଲେ, ସାମାନ୍ୟ ମାତ୍ର ଭଡ଼ାରେ, ମାସକୁ ଏକ ଟଙ୍କା ମାତ୍ର । ଏତେବଡ଼ ବଦାନ୍ୟ ଆମେ ମୋଟେ ଆଶା କରି ନଥିଲୁ । ମୁଁ ସେତେବେଳେ ଆସାମରେ । କିଛି ବନ୍ଧୁ ସେତେବେଳେ ଏ ନୂତନ ଘରକୁ ଆସିବାକୁ ଅମଙ୍ଗ ହେଉଥିଲେ । ସେମାନେ କହିଲେ ଏତେ ବଡ଼ ଘର ଆମେ ମେଣ୍ଟେନ୍ କରି ପାରିବୁନି । ଏତେ ପଇସା କାହିଁ ? ଆଜବେଷ୍ଟସ ଛାଉଣୀ ଓ ପ୍ଲାୟଉଡ୍‌ର ସିଲିଂ ଆଉ ପାଂଚଛଅଟା ବେଡରୁମର ଘରଟା ଥିଲା ରାଉରକେଲା ଷ୍ଟିଲ ପ୍ଲାଂଟର ପ୍ରଥମ ମୁଖ୍ୟ ପ୍ରଜେକ୍ଟ ଡାଇରେକ୍ଟରଙ୍କର । ମୂଳଦୁଆ ପଡ଼ିବା ସମୟର କଥା । ଏବକୁ ସେଇଟା ଗୋଟାଏ ଐତିହ୍ୟ । ରଜନୀବାବୁ ଥିଲେ ପ୍ରଚୁର ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତି । ଘରପାଇଁ ଅନ୍ତତଃ ଆସନ୍ତା ୫୦ ବର୍ଷ ପାଇଁ ଆମେ ନିଶ୍ଚିନ୍ତ ହୋଇ ଯାଆନ୍ତେ । ମୋ ପାଖକୁ ଚିଠି ଗଲା, ଆପଣ ଟିକେ ବନ୍ଧୁମାନଙ୍କୁ ବୁଝାନ୍ତୁ । ମୁଁ ଏଥିରେ ଏକ ମତ ଥିଲି । ଏକାଡେମୀ ହେବା ପୂର୍ବରୁ ସେଇଟା ଥିଲା 'ଗୋପବନ୍ଧୁ କେନ୍ଦ୍ରୀୟ ଲାଇବ୍ରେରୀ' । ମୁଁ ସେଠାକୁ କେତେ ଥର ଯାଇଚି । ସେ ଲାଇବ୍ରେରୀ ତା'ର ନୂଆ ଘରକୁ ଉଠିଗଲା । ମୁଁ ବନ୍ଧୁମାନଙ୍କୁ ଚିଠି ଲେଖିଲି । ସ୍କୁଲପାଇଁ ଉପଯୁକ୍ତ ଜାଗା । ଆମ ନିଜସ୍ୱ ଲାଇବ୍ରେରୀ ଓ ସାହିତ୍ୟ ଆଲୋଚନା ପାଇଁ ଯଥେଷ୍ଟ ସ୍ଥାନ । ବନ୍ଧୁମାନେ ଶେଷରେ ରାଜିହେଲେ । ଏକାଡେମୀ ଉଠି ଆସିଲା । ଲୋକ ନାଟକ ବେଳକୁ ମୁଁ ଆସିଲି । ଆଠଦିନ

କାଳ ସେଇଠି ରହିଲି । ଖିଆପିଆ ତ ସେଇଠି ହେଉଥାଏ । ଲୋକ ନାଟକରେ ମୋର ବିଶେଷ ଭୂମିକା ହେଲା ସିଭିକ ସେଂଟରର ଭି.ଆଇ.ପି. ଗେଟ୍‌ର ମୁଁ 'ଦ୍ୱାରପାଳ'। ଏ କାମ ମୁଁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପ୍ରାୟ ୨୫ବର୍ଷ ଯାଏ କରିଚି । ସାଙ୍ଗ ସାଥିମେଳରେ କାମ କରିବାର ଆନନ୍ଦ ଆଉ କୋଉଠି ମିଳେନାହିଁ। ଭି.ଆଇ.ପି.ମାନଙ୍କୁ ଠିକ୍ ଜାଗାରେ ବସେଇବା କାମ ମୋର । ସାମାନ୍ୟ ତୃଟି ହେଲେ ମୁସ୍କିଲ ହେଇଯିବ। ଲୋକନାଟକ ବେଳେ ହିଁ ଟିକେଟ ବିକ୍ରିହୁଏ। ପ୍ରବଳ ଭିଡ଼ହୁଏ। ଗେଟ୍‌ରେ ମୁଁ ନାକେଦମ ହେଇଯାଏଁ। ଏଇଟା ବୋଧେ ନବେ ଦଶକ ପ୍ରଥମ ଭାଗର କଥା ।

ଥରେ ତ ଏମିତି ହେଇଥିଲା । ସୋ ଆରମ୍ଭ ହେବା ସମୟ ହେଲାଣି । ମୁଁ ଗେଟରେ ଅତିଥିମାନଙ୍କୁ ପାସ ଦେଖି ଛାଡ଼ିବାରେ ବ୍ୟସ୍ତ । ଏତିକିବେଳେ ଆସିଲେ ଜଣେ ସୁଟ୍ ପିନ୍ଧା ବ୍ୟକ୍ତି । ତାଙ୍କୁ ଆଗରୁ କେବେ ଦେଖିଥିଲା ପରି ମନେ ହେଲାନି । ମାଗି ଦେଲି ପାସ । କହିଲେ ପାସ ନାହିଁ। ତେବେ ଯାଆନ୍ତୁ ସେ ରୁମରେ ଅଛନ୍ତି ଶ୍ରୀଧର ମିଶ୍ର , ତାଙ୍କଠୁ ପାସ ଆଣନ୍ତୁ । ସେ ଗରଗର ହେଇ ଫେରୁଥିବା ବେଳେ ଶ୍ରୀଧର ମିଶ୍ର ତାଙ୍କୁ ଦେଖିପାରି ଡାକିଲେ । କହିଲେ ଭୂପେନ୍ ବାବୁ ଆପଣଙ୍କୁ ଚିହ୍ନି ନାହାନ୍ତି । ସେ କିନ୍ତୁ ଚାଲିଗଲେ ତମତମ ହେଇ ।

ଏଇ ବିଷୟରେ କଥାଟାକୁ ଆଉ ଟିକିଏ ସ୍ପଷ୍ଟ କରିଦେବା ଦରକାର । କଟକର ଜଣେ ସୁପରିଚିତ ପ୍ରକାଶକଙ୍କଠାରେ ମୁଁ ବହିଟିଏ ପ୍ରକାଶ କରିବାକୁ ଦେଇଥିଲି । ତାଙ୍କ ସହିତ ଭଲ ସମ୍ପର୍କ ମୋର ଆଗରୁ ଥିଲା । ସେ ମୋର ପ୍ରଥମ ବହି ବିନା ମୂଲ୍ୟରେ ଛାପିଥିଲେ। ଦ୍ୱିତୀୟ ପାଣ୍ଡୁଲିପିଟି ଦେଲା ବେଳକୁ ମାଲିକଙ୍କ ପୁଅ ମାଲିକ ହେଇ ଯାଇଥିଲେ; ତାଙ୍କର ଲେଖକମାନଙ୍କ ପ୍ରତି ବ୍ୟବହାର ନିମ୍ନମାନର । ତାଙ୍କ ପାଖକୁ ଗଲେ ସେ ମୁହଁ ଟେକି ଚାହାନ୍ତି ନାହିଁ। ବାରମ୍ବାର ରାଉରକେଲାରୁ ତାଙ୍କ ପାଖକୁ ଗଲା ପରେ ଥରେ ସେ କହିଲେ ମହାବାତ୍ୟାରେ (୧୯୯୯) ଦୋକାନ ଘର ଭାଙ୍ଗି ପାଣି ପଶି ଯିବାରୁ ଆର୍ଥିକ ଅବସ୍ଥା ଦୁର୍ବଳ ହେଇ ଯାଇଚି। କିଛି ସାହାଯ୍ୟ କରନ୍ତୁ। ଅବଶ୍ୟ ଆମେ ଫେରେଇ ଦେବୁ। ମୁଁ ଏଥିରେ ରାଜି ହେଲି । କଥା ଅନୁସାରେ ତିନି ହଜାର ଟଙ୍କାର ଚେକ୍ ପଠାଇଲି। ତାପରେ ମଧ୍ୟ ସେଇ ଅବସ୍ଥା । ଧରାଛୁଆଁ ଦେଲେନି। ଉଦ୍ଦେଶ୍ୟ ମନ୍ଦ ମନେ ହେବାରୁ ରାଉରକେଲା କଂଜ୍ୟୁମର କୋର୍ଟରେ କେସ କଲି । ସମନ ପାଇ ଆସିଲେ ମୋ ଘରକୁ । କମ୍ପ୍ରମାଇଜ କରିବାକୁ କହିଲେ । ମୁଁ ମନା କଲି । ଦୁର୍ଭାଗ୍ୟକୁ ଯୋଉ କୋର୍ଟରେ ମାମଲା ଥିଲା ସେହି ବିଚାରକ ମହାଶୟଙ୍କୁ ସେ ଦିନ ମୁଁ ସିଭିକ ସେଂଟରରୁ ନାଟକ ବେଳେ ଫେରେଇ ଦେଇଥିଲି। ଫଳ ପାଇଲି। ସେ ମାମଲା କଂଜ୍ୟୁମର ଆଇନରେ ଆସୁନାହିଁ କହି ଖାରଜ କରି ଦେଲେ । ମୁଁ କଟକ ଷ୍ଟେଟ କଂଜ୍ୟୁମର କୋର୍ଟରେ ଅପିଲ କଲି ଓ ଜିତିଲି କ୍ଷତି ପୂରଣ ସହ ।

ଏକାଡେମୀ ପାଇଁ ଏବଂ ବିଶେଷ କରି 'ନବପତ୍ର' ପ୍ରକାଶନର ପ୍ରଥମାବସ୍ଥାରେ ଆମେ ଟାଉନସିପରେ ଘର ଘର ବୁଲି ଓ ଖାସ କରି ଓଡ଼ିଆମାନଙ୍କ ଘରକୁ ଯାଇ ନବପତ୍ର ବିକ୍ରି କରୁଥିଲୁଁ । ସେଇଟା ଗୋଟାଏ ସମୟ ଯେତେବେଳେ ଆମର ସାଇକେଲଟି ଏକ ମାତ୍ର ସାଥୀ । ସ୍କୁଟର,ମଟର ସାଇକେଲ ପ୍ରାୟ କାହାରି ନଥିଲା । ସକାଳ ହେଲେ ବିଶେଷ କରି ସିଫ୍ଟ ଆରମ୍ଭ /ଶେଷ ବେଳେ ରିଂରୋଡ଼ରେ ସାଇକେଲ ଆରୋହୀଙ୍କ ଲମ୍ବା ଓ ଅସରନ୍ତି ଶୋଭାଯାତ୍ରା ଦେଖିବାକୁ ମିଳୁଥିଲା । ଆମ୍ଭେମାନେ ବିଷ୍ଣୁ ରାଉତରାୟ, ହରେକୃଷ୍ଣ ଦାସ, କୁମୁଦ ପାଣି, କୃଷ୍ଣଚନ୍ଦ୍ର ମିଶ୍ର ପ୍ରଭୃତି ସାଇକେଲରେ ପଛରେ ଆଉ ଜଣକୁ ବସେଇ ସେକ୍ଟରରେ ବୁଲୁଥିଲୁ । ବେଳେବେଳେ ରଜନୀବାବୁ ମଧ୍ୟ ଯାଉଥିଲେ । ବିଜ୍ଞାପନ ସଂଗ୍ରହ ପାଇଁ ମଧ୍ୟ ସେଇ ଅବସ୍ଥା । ଆମେ ଥରେ ଥରେ ସାଇକେଲରେ ଲାଠିକଟା ଓ କୁଆଁରମୁଣ୍ଡା ଯାଏ ଯାଇଛୁ ଅନ୍ୟ ଜଣକୁ ପଛରେ ବସାଇ । ସେତେବେଳେ ଆମ ଭିତରେ ଗୋଟିଏ ନୂଆ ଉତ୍ସାହ ଓ ଉଦ୍ଦୀପନା କାମ କରୁଥିଲା । ଷ୍ଟିଲ ଟାଉନସିପରୁ ସାରନଗରୀର ଦୂରତ୍ୱ ମୋଟେ ଜଣା ପଡୁ ନଥିଲା । ମୋତେ ମୋଟେ ବାଧୁ ନଥିଲା । ପ୍ରଥମରୁ ଥିଲି ସ୍ପୋର୍ଟସମେନ- ଫୁଟବଲ ଖେଳାଳି । ପୋଲିସ ଟ୍ରେନିଂବେଳେ ସମ୍ବଲପୁର ରିଜର୍ଭ ଲାଇନରୁ କ୍ରସ କଣ୍ଟ୍ରିରେ ବାହାରି ହୀରାକୁଦ ଯାଏ ଯାଇ ପୁଣି ଫେରିଛି । ରାଜଗାଙ୍ଗପୁରରେ ଥିଲା ବେଳେ ଦୁଇଟା ସାଇକେଲ ନେଇ ମୁଁ ଓ ପୂର୍ଣ୍ଣ ପଟ୍ଟନାୟକ ରାଜଗାଙ୍ଗପୁରରୁ ରାଉରକେଲା ଯାଇ ଫେରିଛୁଁ । ଏସବୁ ମୋ ପାଇଁ ଅତି ସହଜ ଥିଲା । ଯିଏ ଫୁଟବଲ ମେଚରେ ପାଖାପାଖି ଘଂଟାଏ କାଳ ପଡ଼ିଆରେ ଅବିଶ୍ରାନ୍ତ ଭାବରେ ଦୌଡ଼ିପାରେ ତାକୁ ଏବର ସାଇକେଲ ଚଢ଼ା କାହିଁକି ବାଧିବ? ଚାଲିବା ଅଭ୍ୟାସ ମୋର ପିଲାକାଳୁ ଥିଲା । ୧୦/୧୫ କିଲୋମିଟର ଯାଇ ପୁଣି ସଙ୍ଗେ ସଙ୍ଗେ ଆସିବା ଥିଲା ମୋ ପାଇଁ ସାଧାରଣ କଥା । କୋଟସାହିରୁ ରାଇବଣିଆ ୧୫କିଲୋମିଟର । ପୁଣି ଡଙ୍ଗାରେ ସୁବର୍ଣ୍ଣରେଖା ପାରି ହେବାକୁ ହୁଏ ।

ଦେହଟା ବୋଧେ ସେଇ ଦିନଠୁ ବାନ୍ଧି ଯାଇଛି । କୌଣସି ପ୍ରକାର ନିଶା ଦ୍ରବ୍ୟର ମୁଁ ପାଖ ମାଡ଼େ ନାହିଁ । ମାଡ୍ରାସ ପୋର୍ଟରେ ଥିଲାବେଳେ ମୁଁ ଚାହିଁଥିଲେ ପେଟି ପେଟି ବିଦେଶୀ ମଦ ମିଳି ଥାଆନ୍ତା । ମୁଁ ବରାବର ସେସବୁ ଠାରୁ ଦୂରରେ । ମାଡ୍ରାସରେ ଥିଲା ବେଳେ ଫରେନ ସିଗାରେଟ (ଡନହିଲ୍) ପ୍ରଭୃତି କିଛି କିଛି ଟାଣିଛି ବନ୍ଧୁଙ୍କ ମେଳରେ । ତା ପରେ ଛାଡ଼ିଲି ।

## ଏବଂ 'ସୁବର୍ଣ୍ଣରେଖା'

ଅବସର ନେଇ ଆସିଲା ପରେ ମୁଁ ପ୍ରଥମେ ଏନ.ଜି.ଓ.ଟିଏ ଗଢ଼ିବାକୁ ଚିନ୍ତା କଲି । ସମାଜ ସେବାରେ 'ରକ୍ତଦାନ' ଓ 'ଶବପୋଡ଼ା' ପରି କେତେକ କାମରେ ମୋର ବରାବର

ଆଗ୍ରହ ଥାଏ । ରାଞ୍ଚିରେ ଅଛବଙ୍କୁ ରକ୍ତଦାନ ଓ ଆସାମରେ ଦଳିତର ବାହାଘର କଥା ମୁଁ ଆଗରୁ ଲେଖିଛି । 'ଟାଇମ୍‌ସ ଚକ୍ଷୁ ବେଙ୍କ'କୁ ମୁଁ ଓ ମୋ ସ୍ତ୍ରୀର ଚକ୍ଷୁଦାନ ଅନେକ ଆଗରୁ ହୋଇସାରିଛି । ରିଟାୟାର କଲା ପରେ ସଂପୂର୍ଣ୍ଣ ଶରୀର ଦାନ ପାଇଁ ଇଚ୍ଛା ହେଲା । ବ୍ରାହ୍ମଣବାଦୀ ସଂସ୍କୃତିରେ ମୋର ମୋଟେ ବିଶ୍ୱାସ ନଥାଏ । ଗୋଟିଏ ଏନ.ଜି.ଓ. ଦ୍ୱାରା ଏହା ସମ୍ଭବ । ଆମ ଭୋଗରାଇ ଅଂଚଳର ମନୋରଞ୍ଜନ ଦାସ ମୋତେ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ସମାଜ ସେବାରେ ତାଙ୍କର ମଧ୍ୟ ଆଗ୍ରହ । କେବଳ ବାଲେଶ୍ୱର ଅଂଚଳର କିଛି ଲୋକଙ୍କୁ ନେଇ ଅନୁଷ୍ଠାନଟିଏଁ ଗଢ଼ିବାର ପ୍ରଚେଷ୍ଟା ଆରମ୍ଭ ହେଲା । ତାର କାରଣ ଭଦ୍ରକବାସୀ ଆଗରୁ 'ଧାମରା' ଗଢ଼ି ସାରିଥିଲେ । ଆମ ଲୋକଙ୍କ ସମାଜ ସେବାରେ ବେଶୀ ଆଗ୍ରହ ଏ କଥା ଜଣାଥାଏ । ଆମ ଭିତରେ ବେଶ କିଛି ଡାକ୍ତର ମଧ୍ୟ ଅଛନ୍ତି । କାମ ପାଇଁ ସୁବିଧା ହେବ । ମୋ ଘର ଛାତ ଉପରେ ମିଟିଂ ଆରମ୍ଭ ହେଲା । ଅନୁଷ୍ଠାନର ନାମ 'ସୁବର୍ଣ୍ଣରେଖା' ଦେଲି ଏବଂ ତାହାର ସମ୍ବିଧାନ ଚିଠା ମଧ୍ୟ ମୁଁ ତିଆରି କଲି । ପରେ ତାକୁ ରେଜିଷ୍ଟ୍ରେସନ ପାଇଁ ଦିଆଗଲା । ଗାଁ ଗଣ୍ଡା ଓ ସହରତଳିକୁ ଯାଇ ବେଶ କେତେଗୁଡ଼ିଏ ହେଲ୍‌ଥ କେମ୍ପ କରାଗଲା । ରକ୍ତଦାନ ପାଇଁ ଆମ ସଦସ୍ୟମାନଙ୍କର ବ୍ଲଡ ଗ୍ରୁପ କରାଯାଇ ତାର ସ୍ଥାୟୀ ରେଜିଷ୍ଟର୍ ତିଆରି ହେଲା । ମାତ୍ର ବର୍ଷକ ଭିତରେ ପ୍ରାୟ ଦୁଇଶହ ସଦସ୍ୟ ଓ ତାଙ୍କ ପରିବାର ଏଥିପାଇଁ ଆଗ୍ରହ ପ୍ରକାଶ କଲେ । ତାର ପ୍ରଥମ ବାର୍ଷିକ ଉତ୍ସବ ହେଲା ସିଭିକ୍ ସେଂଟରରେ । ବ୍ଲଡ ଗ୍ରୁପିଂ ସେଇଠି ହେଲା । ଆଇଜିଏଚ ଓ ଆରଜିଏଚରେ କହି ଦିଆଗଲା ରକ୍ତ ଆବଶ୍ୟକ ହେଲେ ଆମକୁ ଫୋନ କରନ୍ତୁ । ପ୍ରାୟ ତିନି ବର୍ଷଯାଏ ମୁଁ ତାର ସଭାପତି ଥିଲି । ମୋତେ ଏସବୁ କାମରେ ଯିଏ ବେଶୀ ସାହାଯ୍ୟ କରିଥିଲେ ସେମାନେ ହେଲେ ମନୋରଞ୍ଜନ ଦାସ, ନିତ୍ୟାନନ୍ଦ ପାତ୍ର, ଅବନୀ ଦେଓ ପ୍ରଭୃତି । ସମାଜ ସେବା ପାଇଁ ସ୍ୱତଃ ପ୍ରବୃତ୍ତ ହୋଇ ଏତେ ଲୋକ ଆଗେଇ ଆସିବା ଦେଖି ମୁଁ ଉତ୍ସାହିତ ହେଲି । 'ସୁବର୍ଣ୍ଣରେଖା'ର ବାର୍ତ୍ତା ଖୁବ୍ ଶୀଘ୍ର ରାଉରକେଲା ଓ ବାଲେଶ୍ୱରରେ ପ୍ରଚାରିତ ହେଲା । ମୁଁ ଯଦିଓ ଏବେ ତାର ସକ୍ରିୟ ସଦସ୍ୟ ନୁହେଁ ତଥାପି ମୁଁ ତାର ଲାଇଫ ମେମ୍ବର । ଅନୁଷ୍ଠାନଟି ଅନେକ ଆଗକୁ ବଢ଼ି ଗଲାଣି । ଏବେ ତାହା 'ଫକୀରମୋହନ ସାହିତ୍ୟ ଓ ଗବେଷଣା ପରିଷଦ' ନାମରେ କାମ କରୁଛି । ଡିଏଭି ପୋଖରୀ ପାଖରେ ଗୋଟିଏ ଜାଗା ନେଇ ତା' ଉପରେ ଘରଟିଏ ମଧ୍ୟ ତିଆରି ସରିଚି । ମୂଳ ଲକ୍ଷ୍ୟ ଓ ଉଦ୍ଦେଶ୍ୟଠାରୁ ଅନୁଷ୍ଠାନ ଦୂରେଇ ଯାଉଛି ବୋଲି ମନେହୁଏ । ଏଥିରେ ମୋର ଆଗ୍ରହ କମିଲା ।

ସମାଜ ସେବା ପାଇଁ କିଛି ଭଲ ଲୋକଙ୍କୁ ନେଇ ଅନୁଷ୍ଠାନଟିଏ ଗଢ଼ିଥିଲେ ମଧ୍ୟ ମୁଁ ମୋର ଚିରାଚରିତ ସାହିତ୍ୟ ସେବାରୁ ପଛେଇ ନଥିଲି । ସମାଜ ସେବା ଓ ସାହିତ୍ୟ

ସେବା ଏଗୁଡ଼ିକ ସମାନ୍ତରାଳ ଭାବରେ ଚାଲିଲେ ଭଲ । ବସ୍ତିମାନଙ୍କରେ ଥିବା ଲୋକଙ୍କ ସହିତ ମିଶିବାକୁ ସୁଯୋଗ ମିଳିବ । ସେଇମାନେତ ମୋ ସାହିତ୍ୟର ପ୍ରଥମ ଉତ୍ସ । କିନ୍ତୁ ସେତକ ମୋତେ ବେଶୀ ଦିନ ମିଳିଲା ନାହିଁ । ମୋତେ ଛାଡ଼ି ଦେବାକୁ ପଡ଼ିଲା । ସମାଜ ସେବା ପାଇଁ ସଂଗଠନ ସବୁବେଳେ ଆବଶ୍ୟକ ନଥାଏ । ସଂଗଠନ ନଥାଇ ମଧ୍ୟ ମୁଁ ଆବଶ୍ୟକ ବେଳେ ଅନ୍ୟକୁ ସାହାଯ୍ୟ କରି ପାରୁଚି । ମୋର ସେଥିରେ ଆନନ୍ଦ । ମୋର ମୃତ୍ୟୁ ପରେ ମୋର ପୁଅ କଅଣ କରିବ ସେକଥା କବିତା ଆକାରରେ ମୁଁ କହି ସାରିଚି । ମୋର ବିଶ୍ୱାସ ବ୍ରାହ୍ମଣବାଦ ଯେମିତି ମଣିଷର ମୃତ୍ୟୁ ପରେ ଆତ୍ମାକୁ ସ୍ୱର୍ଗରେ ପହଂଚାଇ ପାରେନାହିଁ, କୌଣସି ଏନ୍‌ଜିଓ ଅନୁଷ୍ଠାନ ସେମିତି ସ୍ୱାର୍ଥବାଦୀ ହେଲେ ସମାଜ ସେବାରେ ସାହାଯ୍ୟ କରେନାହିଁ । ସ୍ୱାର୍ଥକୁ ଆଖି ଆଗରେ ରଖି ସମାଜସେବା କରି ହୁଏନାହିଁ । ମୁଁ ତ ଏବେମଧ୍ୟ ଆର୍ତ୍ତ ପୀଡ଼ିତଙ୍କ ପାଖକୁ ଯାଇ ସାହାଯ୍ୟ ଦେଇ ପାରୁଛି । ଯେ ପର୍ଯ୍ୟନ୍ତ ପାରୁଥିବି ସେ କାମ କରୁଥିବି ।

ଅବସର ପରେ ମୋର ସାହିତ୍ୟ କର୍ମ ବେଶ ଆଗେଇ ଚାଲିଲା ବରଂ ଅଧିକ ଦ୍ରୁତ ଗତିରେ । ବିଭିନ୍ନ ପତ୍ର ପତ୍ରିକାରୁ ଅନୁରୋଧ ଆସିଲା ଏବଂ ବିଶେଷ ଭାବରେ ମୋର ଗଳ୍ପ ଲେଖା ବଢ଼ିଲା । ଏଇ ସମୟରେ ମୁଁ ଲେଖିଥିବା 'ଖୋଳ' ଗଳ୍ପଟି ପାଠକୀୟତାର ଶୀର୍ଷକୁ ଉଠି ଥିଲା । ଗୋଟିଏ ମାନବବାଦୀ ଗଳ୍ପ ହିସାବରେ ତାହା ପରବର୍ତ୍ତୀ ସମୟରେ ଅନ୍ୟ କେତୋଟି ପତ୍ରିକାରେ ପୁଣି ଥରେ ପ୍ରକାଶ ପାଇଲା । ୨୦୦୦ ମସିହା ଭିତରେ ମୋର ଗଳ୍ପ ସଂକଳନର ସଂଖ୍ୟା ମଧ୍ୟ ବଢ଼ିଗଲା । 'ଖୋଳ' ଗଳ୍ପ ସଂକଳନ ଏ ଦିଗରୁ ଗୁରୁତ୍ୱପୂର୍ଣ୍ଣ । ଓଡ଼ିଶା ଲେଖକସମବାୟ ସମିତିର ସେତେବେଳେ ସାତକଡ଼ି ହୋତା ଥିଲେ ସଭାପତି । ଅନୁଷ୍ଠାନଟି ଖୁବ୍ ଭଲରେ କାମ କରୁଥିଲା । ସେମାନେ ଅନେକଗୁଡ଼ିଏ ଉନ୍ନତମାନର ପୁସ୍ତକ ପ୍ରକାଶ କରିଥିଲେ । ତାର ବିକ୍ରି ବଜାର ମଧ୍ୟ ଭଲ ଭାବରେ ଚାଲୁଥିଲା । ରାମମୋହନ ରାୟ ଫାଉଣ୍ଡେସନ ତାର ବହି କିଣୁଥିଲା । ସାତକଡ଼ି ହୋତା ମୋର 'ଖୋଳ' ବହିଟିକୁ ଲେଖକ ସମବାୟ ସମିତି ତରଫରୁ ପ୍ରକାଶ କରିବାକୁ ରାଜି ହେଲେ । ଖୁବ୍ କମ୍ ସମୟ ମଧ୍ୟରେ ବହିଟି ବଜାରକୁ ଆସିଗଲା । ତା'ର ଉନ୍ମୋଚନ ଉତ୍ସବରେ ସାତକଡ଼ି ହୋତା, ବିଭୂତି ପଟ୍ଟନାୟକ, ପ୍ରଫେସର ପ୍ରଫୁଲ୍ଲ ମହାନ୍ତି ପ୍ରଭୃତି ଯୋଗଦେଇ ବହିର ପ୍ରଶଂସା କରିଥିଲେ । ଏ ବହିଟି ମୋତେ ବେଶ ସମ୍ମାନର ଉପରକୁ ନେଇଗଲା ।

ଏହି ସମୟରେ ମଧ୍ୟ ମୁଁ ଉପନ୍ୟାସ, ଭ୍ରମଣ କାହାଣୀ ଓ କିଛି ପ୍ରବନ୍ଧ ଲେଖିଲି । ସମ୍ବାଦପତ୍ରରେ ସ୍ତମ୍ଭ ଲେଖିବା ମୋର ଆସାମରେ ଥିବାବେଳୁ ଅର୍ଥାତ୍ ପ୍ରାୟ ୧୯୯୦ରୁ ଆରମ୍ଭ ହେଇଥିଲା । ଅଳ୍ପ କେତୋଟି ରଜନୀକାନ୍ତ ଦାସଙ୍କ ସମ୍ପାଦିତ ପାକ୍ଷିକ 'ରାଉରକେଲା ରିପୋର୍ଟର'ରେ ପ୍ରକାଶ ପାଇଲା ପରେ 'ସମ୍ବାଦ'ର ଗୌରହରି ଦାସଙ୍କ ଅନୁରୋଧରେ

ମଧ୍ୟ ଲେଖିଲି । ସେତେବେଳେ 'ଆସାମ ସାହିତ୍ୟ ସଭା' ଉପରେ ମୋର ଲେଖାଗୁଡ଼ିକ ପ୍ରଚୁର ପାଠକୀୟତା ହାସଲ କଲା । ଆସାମର ସାହିତ୍ୟ, ସଂସ୍କୃତି ଓ ତା'ର ଜାତୀୟତାକୁ ଓଡ଼ିଆ ପାଠକମାନଙ୍କ ପାଖରେ ପହଞ୍ଚାଇବା ଥିଲା ପ୍ରଥମ ଉଦ୍ଦେଶ୍ୟ । ଗୋଟିଏ ସାହିତ୍ୟାନୁଷ୍ଠାନ ଯେ ସେଠାର ସରକାରକୁ ଆଙ୍ଗୁଳି ଆଗରେ ନଚାଇପାରେ ଏ ସବୁର ଆଖିଦେଖା ହାଲ ମୁଁ ସେଥିରେ ବର୍ଣ୍ଣନା କରିଛି । ଏ ସବୁ ଏବେ ମଧ୍ୟ ପାଠକମାନଙ୍କୁ ବିସ୍ମିତ କରେ । ଏ ସମସ୍ତ କଥାକୁ ନେଇ ଆସାମ ଉପରେ ମୁଁ ଲେଖିଛି ମୋର ପ୍ରଥମ ଭ୍ରମଣ କାହାଣୀ ପୁସ୍ତକ 'ଉପତ୍ୟକାର ଉପକଥା'। ବହିର ଲୋକପ୍ରିୟତା ଏତେ ବଢ଼ିଗଲା ଯେ ଅଳ୍ପଦିନ ପରେ ତାର ଦ୍ୱିତୀୟ ସଂସ୍କରଣ ମଧ୍ୟ ପ୍ରକାଶ ପାଇଲା ଓ ସେତକ ମଧ୍ୟ ରାମମୋହନ ରାୟ ଫାଉଣ୍ଡେସନ ନେଲା ପରେ ଏବେ ତୃତୀୟ ସଂସ୍କରଣ କଥା ଚିନ୍ତା କରୁଚି । ସାରା ଉତ୍ତର ପୂର୍ବାଂଚଳ ରାଜ୍ୟ ତ ବୁଲିଛି । ତେଣୁ ଆସାମ୍‌କୁ ଛାଡ଼ି ମୋର ଦ୍ୱିତୀୟ ଭ୍ରମଣ କାହାଣୀ 'ଅପୂର୍ବ ପୂର୍ବ' ମଧ୍ୟ ପ୍ରକାଶ ପାଇଛି । ସେଇଟି ମଧ୍ୟ ଆଉ ମିଳୁନି ।

ଏଇ ସମୟରେ ମଧ୍ୟ ମୋର ଉପନ୍ୟାସ ଲେଖା ଚାଲିଲା; ଗଳ୍ପ, ଅନ୍ୟାନ୍ୟ ଲେଖା ଓ ଅନୁବାଦ ସହିତ ସମାନ୍ତରାଳ ଭାବରେ । ନିଜକୁ ସମ୍ପୂର୍ଣ୍ଣ ଭାବେ ସାହିତ୍ୟରେ ନିୟୋଜିତ କରି ଦେଲି । ତା'ରି ଭିତରେ ମୁଁ 'ସମାଜ' ଓ 'ସମୟ'ର ମଧ୍ୟ ସ୍ତମ୍ଭ ଲେଖିଲି । ମୁଁ ଦେଖିଲି ଯାହା ଗଳ୍ପୋପନ୍ୟାସ ମାନଙ୍କରେ କହି ନ ହୁଏ ତାକୁ ସହଜରେ ସ୍ତମ୍ଭ ମାନଙ୍କରେ କହିହୁଏ । ତା'ରି ଭିତରେ ମଧ୍ୟ 'ଅନୁପମ ଭାରତ' ଓ 'ପ୍ରଗତିବାଦୀ'ରେ ଲେଖିଲି । ମୋର ମନେ ହୁଏ ସାହିତ୍ୟରେ ମୋତେ ପାଠକୀୟତା ଯେତେ ମିଳିଛି ସ୍ତମ୍ଭ ଲେଖନରେ ମୋତେ ତା'ଠୁ ଢ଼େର ବେଶୀ ମିଳିଛି । ଅବଶ୍ୟ ଏସବୁ ସ୍ୱାଭାବିକ । କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ମୁଁ ସମ୍ବାଦପତ୍ରରେ ସ୍ତମ୍ଭ ଲେଖନ ଛାଡ଼ିଦେଲି । ବାଲେଶ୍ୱରରୁ ପ୍ରକାଶିତ 'ଧ୍ୱନି ପ୍ରତିଧ୍ୱନି'ରେ ୧୦୦ଟି ସାପ୍ତାହିକ ସ୍ତମ୍ଭ ଲେଖିଲା ପରେ ତାକୁ ବନ୍ଦକଲି । କେତେକ କହିଲେ ସ୍ତମ୍ଭର ହାତ ମୌଳିକ ସାହିତ୍ୟର ହାତକୁ ଦୁର୍ବଳ କରିଦିଏ । କଥାଟା ବୋଧେ ସତ ନୁହେଁ । ସମାଜରେ ଘଟୁଥିବା ଦୈନନ୍ଦିନ ଘଟଣାକୁ ନେଇ ସ୍ତମ୍ଭପାଇଁ ବ୍ୟସ୍ତ ରହିଲେ ଗଳ୍ପ ଉପନ୍ୟାସର ସୂକ୍ଷ୍ମ କଳାର ମାନସିକତା ମ୍ଳାନ ପଡ଼ି ଆସିବା କଥାରେ ମୋର ବିଶ୍ୱାସ ନାହିଁ, କାରଣ ସ୍ତମ୍ଭ ଲେଖନରୁ ଦୂରେଇ ନଯାଇ ମଧ୍ୟ ଅନେକ ଗୁଡ଼ିଏ ଭଲ ଗଳ୍ପ ଲେଖିପାରିଛି । ଭାରତର ବହୁ ବଡ଼ ବଡ଼ ଲେଖକ ମଧ୍ୟ ସ୍ତମ୍ଭ ଲେଖନ୍ତି ।

## ସି. ପି. ବେଜବରୁଆ - ବନ୍ଧୁତ୍ୱର ଅଲିଭା ସ୍ୱାକ୍ଷର

ମୁଁ ଚାକିରିରୁ ଅବସର ନେଲାପରେ ମଧ୍ୟ ଆସାମର କେତେଜଣ ବନ୍ଧୁଙ୍କ ସହ ମୋର ସମ୍ପର୍କ ଥାଏ । ସେତେବେଳେ ମୁଖ୍ୟତଃ ଚିଠି ଓ କେବେକେବେ ଫୋନରେ

କଥାବାର୍ତ୍ତା ହେଉଥାଏ । ମୋବାଇଲ ସେଯାଏ ବଜାରକୁ ଆସି ନଥାଏ କି ଏସ୍.ଟି.ଡି.ର ଟେଲିଫୋନ ମଧ୍ୟ ସହଜ ଲଭ୍ୟ ନଥାଏ । ଚିଠିପତ୍ର ମାଧ୍ୟମରେ ବିଶେଷକରି ବେଜବରୁଆ, ଅମଲ ଦାସ ଓ ଡାକ୍ତର ହାଜାରିକା ସହ ମୋର ସମ୍ପର୍କ ଥାଏ । ତେବେ ବେଜବରୁଆ ସହିତ କେମିତି କେଜାଣି ଗୋଟାଏ ଭିନ୍ନ ଆତ୍ମିକ ସମ୍ପର୍କ ଗଢ଼ି ଉଠିଥାଏ; ତାର ଗୋଟିଏ ଭିନ୍ନ କାରଣ ଅଛି । ସେଇଟା ହେଲା, ତା'ସହିତ ପ୍ରଥମ ସାକ୍ଷାତ ହେଲା ବି.ଆର.ପି.ଏଲ କାରଖାନାର ସେଂଟ୍ରାଲ ଲେବୋରେଟୋରିରେ । ସେଦିନ ସେଇ ପ୍ରଥମ ସାକ୍ଷାତରୁ ମୁଁ ତା'ଠାରୁ ପାଇଥିଲି ତା'ର ସାମାନ୍ୟ ସାହିତ୍ୟିକ କାର୍ଯ୍ୟର ସୂଚନା, ଯାହା ମୋ ସହିତ ମିଶିବାର ଇଚ୍ଛାକୁ ଦୃଢ଼କଲା । ସେ କହିଲା, "ମୁଁ ଲେଖକ ନୁହେଁ କିନ୍ତୁ ଲେଖକମାନଙ୍କ ସହିତ ଥାଏ । ଭାଷଣ ଶୁଣେ ଓ ତାଳି ମାରେ । ମଝିରେ ମଝିରେ ଅନୁବାଦ କରେ, ଇଂରାଜୀରୁ ଅସମୀୟା ଓ ଅସମୀୟାରୁ ଇଂରାଜୀ"।

ବାସ, ଦୁଇଟି ହୃଦୟ ଯୋଡ଼ିବାରେ ଆଉ କଅଣ ଦରକାର ?

ମୁଁ କିନ୍ତୁ ଯୋଉ ଦ୍ୱିତୀୟ ସମ୍ପର୍କର କାରଣଟି ପାଇଲି ସେଇଟା ଥିଲା ମୋର ବୃତ୍ତିଗତ କଥା ପ୍ରସଙ୍ଗରେ । ସେ ମୋତେ ଗୋଟିଏ ବିଶୋଧନାଗାରର କୋଉ କୋଉ ଜାଗାରେ ମାରପେଞ୍ଚର (ପିଲଫେରେଜ) ସମ୍ଭାବନା ଥାଏ ତାର କିଛି ସୂଚନା ଦେଲା । ଏହା ମୋ କାମରେ ଯେତେ ସାହାଯ୍ୟ କରିବ, କମ୍ପାନୀର ସୁରକ୍ଷା ବ୍ୟବସ୍ଥାରେ ଅଧିକ ସାହାଯ୍ୟ କରିବ ।

ସେଇ ବନ୍ଧୁତାର ପ୍ରଥମ ସୋପାନରେ ସେ ମୋତେ ଆସାମରେ ନ ହେଲେ ମଧ୍ୟ ବଂଗାଇଗାଓଁରେ ମୋର ପରିଚୟ ସୃଷ୍ଟି କରିବାକୁ ୨/୩ଟି କବିତା ଅସମୀୟାରେ ଅନୁବାଦ କରି ପ୍ରକାଶ କରାଇଥିଲା । ସେ ପତ୍ରିକା ଓ କବିତା ଏବେ ବି ଅଛି । ଆମ ବନ୍ଧୁତାର ବନ୍ଧ ଏଇଠୁ ଦୃଢ଼ ହେବାକୁ ଆରମ୍ଭ କଲା । ସେଇଠୁ ଆମେ ଅଧିକ ନିକଟତର ହେଲୁଁ । ପାରିବାରିକ ସମ୍ପର୍କ ଗଢ଼ିଉଠିଲା । ତା' ସ୍ତ୍ରୀ ଇନ୍ଦିରା ଅତ୍ୟନ୍ତ ମେଳାପୀ, ମୋ ସ୍ତ୍ରୀ ସହିତ ମିଶିଗଲା । ପର୍ବ ପର୍ବାଣୀରେ ଅସମୀୟାମାନେ ଯେମିତି ନିଜ ସଂସ୍କୃତିକୁ ସମ୍ମାନ ଦିଅନ୍ତି ତାହା ଉଦାହରଣ ସ୍ଥାନୀୟ । ପିଠାପଣାରେ ଆମେ ଅଭିଭୂତ ହେଇ ପଡ଼ିଲୁ । ବିହୁରେ ପ୍ରଚୁର ପିଠା ଖାଇଛୁଁ । ସେମାନଙ୍କ ପର୍ବ ପର୍ବାଣୀକୁ ସେମାନେ ଯେମିତି ମାନନ୍ତି ଓ ପାଳନ କରନ୍ତି ଏସବୁ କଥାତ ମୁଁ ମୋ 'ଉପତ୍ୟକାର ଉପକଥା'ରେ ଲେଖିଛି ।

'ବିହୁ' ସେମାନଙ୍କ ମହାନ୍ ପର୍ବ । ବିହୁ ନାଚ ଓ ଗୀତ ଏବେ ସାରା ଦେଶରେ ପରିଚିତ ହେଇ ସାରିଲାଣି । ବାହାରକୁ ମଧ୍ୟ ଗଲାଣି । ଏବେତ ଓଡ଼ିଶାରେ ସବୁଠୁ ପ୍ରିୟ ।

ବିହୁର ନାଚ ଓ ଗୀତ ତାଙ୍କ ଜାତୀୟତାର ପ୍ରତୀକ । ନାଚ ଓ ଗୀତ ଜାଣି ନଥିବା ଝିଅ ଆସାମର ନୁହେଁ କିମ୍ବା ନିଜ ତନ୍ତରେ ଲୁଗା ବୁଣି ପାରୁ ନଥିବା ଝିଅ ମଧ୍ୟ ଅସମୀୟା ନୁହେଁ ।

ବାହାଘର ବେଳେ ଏମାନେ ବଛା ହେଇ ଯାଆନ୍ତି । ସେମାନଙ୍କୁ ବର ମିଳେନା ।

ରାଜସ୍ଥାନୀ ଝିଅର ସଂସ୍କୃତି ହେଲା ସେ କେତେ ଦୂରରୁ ମାଠିଆରେ ପାଣି ଆଣି ପାରୁଚି । ଯେତେ ଦୂରରୁ ଆଣି ପାରୁଥିବ ସେତେ ଭଲ । ବର ଘରର ବେଶୀ ପସନ୍ଦ । ଆଦିବାସୀ ଓ ସାନ୍ତାଳମାନଙ୍କ ଝିଅ କ୍ଷେତରେ ଚାଷ କରି ପାରୁଥିବ ଓ ମୁଣ୍ଡରେ ଧାନ ବିଡ଼ା ବୋହି ପାରୁଥିବ ।

ଅସମୀୟା ନାରୀମାନଙ୍କର ସୌନ୍ଦର୍ଯ୍ୟ ଅନୁପମ । ସେଥିରେ ପୁରୁଷମାନଙ୍କ ସାଥିରେ ନାଚିଲେ ଅପୂର୍ବ ଦୃଶ୍ୟ ସୃଷ୍ଟି ହୁଏ । ପର୍ବପର୍ବାଣୀରେ ତାଙ୍କ ନିଜ ହେଣ୍ଡଲୁମ ଶାଢ଼ୀ ସହ ନାଲି ବ୍ଲାଉଜ୍ ପରିଧାନ ତାଙ୍କର ପରମ୍ପରା । ତା ସାଥିରେ ମଧ୍ୟ ଓଠରେ ଥାଏ ଗାଢ଼ ନାଲି ଲିପ୍‌ଷ୍ଟିକ୍ । ଗୋରା ତକ୍‌ତକ୍ ରଙ୍ଗକୁ ଏସବୁ ବେଶ ମାନେ । ସେମାନେ ଇଣ୍ଡୋବର୍ମିଜ୍ ଟ୍ରାଇବ୍ ।

ବିହୁରେ ସମସ୍ତେ ମିଶି ନାଚିବା, ଅଂଟାକୁ ଅଂଟା ଧରି, ତାଙ୍କ ପରଂପରା । ମୁଁ ଏସବୁ ଦେଖି ବିହ୍ୱଳିତ ହେଇଛି । ଥରେ ତ ଏମିତି ହେଇଥିଲା । ଗୋଟାଏ ବିହୁ ନାଚ ଜାଗାରେ ମୁଁ ଦର୍ଶକ ଭାବରେ ଅନ୍ୟମାନଙ୍କ ସାଥିରେ ଠିଆ ହେଇଥିଲି । ହଠାତ୍ ଦଳେ ମୋତେ ଟାଣି ନେଇଗଲେ ସେ ବୃତ୍ତାକାର ନୃତ୍ୟ ଭିତରକୁ । ମୋତେ ଫାଶରେ ପକାଇ ଦେଇଛନ୍ତି ବୋଲି ସେମାନଙ୍କ କୁରୁଳି ଉଠୁଥିବା ଆନନ୍ଦ ଭିତରେ ମୋର ସଲଜ୍ଜ ଅସହାୟତା ମୋତେ ଆବୋରି ପକାଇଥିଲା । ମୁଁ ନା କାହା ଅଂଟାରେ ହାତଦେଇ ପାରିଲି ନା ପାଦରେ ପାଦ ମିଳାଇପାରିଲି । ତା ସତ୍ତ୍ୱେ ମୁଁ କୁଆଡ଼େ ଭଲ ସହଯୋଗ ଦେଇ ପାରିଛି ।

ସି.ପି. ଠାରୁ(ଏଇ ନାଁରେ ସି.ପି. ବେଜବରୁଆ ବେଶୀ ପରିଚିତ) ମୁଁ ସବୁଠୁ ବେଶୀ ସାହାଯ୍ୟ ପାଇଲି ଆସାମର ବହୁ ଦର୍ଶନୀୟ ସ୍ଥାନ ବୁଲି ଦେଖିବାରେ । ପ୍ରତ୍ୟେକ ସ୍ଥାନର ଇତିହାସ ଓ ତା ପଛରେ ଥିବା ସଂସ୍କୃତିଗତ ତଥ୍ୟ ସେ ମୋତେ ଯୋଗେଇ ଦିଏ । ଅନେକ ସମୟରେ ଆମ ସାଥିରେ ଇନ୍ଦିରା ଓ ମୋ ସ୍ତ୍ରୀ ରାଧାରାଣୀ ମଧ୍ୟ ଯାଆନ୍ତି । ଆମର ବୁଲିବାରେ ଗାଡ଼ିର ଯେପରି ଅସୁବିଧା ନଥାଏ, ରହଣୀ ପାଇଁ ଗେଷ୍ଟ୍ ହାଉସର ମଧ୍ୟ ଅସୁବିଧା ନଥାଏ । ମୁଁ ତ ଆଗରୁ କହିଚି ମୋର ବୋଡ଼ୋ ଆନ୍ଦୋଳନ କିମ୍ବା ଅସମୀୟାଙ୍କ ବନ୍ଦ ଡାକରାକୁ ମୋଟେ ଭୟ ନଥାଏ । ସତେ ଅବା ମୁଁ ଗୋଟିଏ ମୁକ୍ତ ବିହଙ୍ଗ ।

ସି.ପି. ସହିତ ସାଙ୍ଗ ହେବାଦ୍ୱାରା ମୋର ସବୁଠୁ ବେଶୀ ଲାଭ ହେଲା ମୁଁ ପ୍ରଥମେ ସ୍ତମ୍ଭ ଲେଖନ ଆରମ୍ଭ କଲି । ରଜନୀବାବୁଙ୍କ ପ୍ରେରଣାରେ ପ୍ରଥମେ ଆରମ୍ଭ କରିଥିଲେ ମଧ୍ୟ ଗୌରହରି ଦାସଙ୍କଦ୍ୱାରା ସେ ସବୁ ନିୟମିତ 'ସମ୍ବାଦ'ରେ ପ୍ରକାଶ ପାଇଲା ଓ ପ୍ରଚୁର ପାଠକୀୟ ଶ୍ରଦ୍ଧା ଲାଭକଲା । ତାର କିଛି ଅଂଶ ମଧ୍ୟ ସେଇ "ଉପତ୍ୟକାର

ଉପକଥା'ରେ (ଦ୍ୱିତୀୟ ସଂସ୍କରଣ)ରହିଛି । ଏତେଗୁଡ଼ାଏ ଉପକାର ପାଇଥିବା ସି.ପି.କୁ କେବେବି ଭୁଲିବାର ନୁହେଁ । ସେ ବି ତ ମୋତେ ଥରେ ଲେଖିଥିଲା 'ତୁମେ ରାଉରକେଲାରେ ରହି କ'ଣ ଲେଖୁଛ, ବରଂ ଏଠାକୁ ଚାଲି ଆସ (ବଂଗାଇଗାଓଁ) ମୁଁ ତୁମକୁ ମୋର ଉପର ଘର ଛାଡ଼ିଦେବି । ତୁମେ ଯେତେଦିନ ରହିବ ରୁହ । ଏଇଠି ଲେଖା ଲେଖି କର' । ସେ ଚିଠି ତ ଏବେବି ମୋ ପାଖରେ ଅଛି । ମୋ ପାଖରେ ଥିବା ପ୍ରାୟ ଏକ ହଜାର ହାତ ଚିଠି, ବହୁ ସାଧାରଣ ପାଠକମାନଙ୍କଠାରୁ ବଡ଼ ବଡ଼ ଲେଖକଙ୍କ ପର୍ଯ୍ୟନ୍ତ, ଲେମିନେଟେଡ ହେଇ ଆଲବମ ଆକାରରେ ରଖାଯାଇଚି ।

ସେଇ ସି.ପି.ଠାରୁ ସେଦିନ ହଠାତ୍ ଫୋନ୍‌ଟିଏ ପାଇ ଆଶ୍ଚର୍ଯ୍ୟ ହେଲି । ମୁଁ ଭୁବନେଶ୍ୱରରେ ଥାଏ । ଲୁଲୁ ପାଖରେ । ସେ କହିଲା ମୁଁ ତୁମ ଭୁବନେଶ୍ୱର ଆସୁଛି । ଆସନ୍ତା କାଲି ସକାଳେ ପୁରୀ ଏକ୍ସପ୍ରେସରେ ପହଂଚିବି । ତୁମେ ମୋତେ ଗୋଟିଏ ଦିନ ଭିତରେ ଭୁବନେଶ୍ୱରର ସବୁ ଅଂଚଳ ଓ କୋଣାର୍କ ବୁଲାଇ ଦେବ । ମୁଁ ପୁରୀ ଆଗରୁ ଦେଖିଛି ।

ମୁଁ ପଚାରିଲି ତୁମେ ଏବେ କୋଉଠି ?

ମୁଁ କଲିକତା ଏଆରପୋର୍ଟରେ । ଏକୁଟିଆ ଆସିଛି । କଲିକତାରେ କିଛି କମ୍ପାନୀର କାମ ସାରି ରାତି ଗାଡ଼ିରେ ଭୁବନେଶ୍ୱର ଯିବି । ତମେ ଷ୍ଟେସନକୁ ଆସିଥିବ । ସେ ଫୋନ ଛାଡ଼ି ଦେଲା । ମୋ ଉପରେ ଗୋଟାଏ ଅଧିକାର ସାବ୍ୟସ୍ତ କଲା ଭଳିଆ କଥା ।

ମୁଁ ଆଶ୍ଚର୍ଯ୍ୟ ହେଲି । ଗୋଟାଏ ଦିନରେ ଭୁବନେଶ୍ୱର ଓ କୋଣାର୍କ ଦେଖି ହେବ ? କେମିତି ସମ୍ଭବ ? ସେ ବୋଧେ ଭାବି ଥିବ ଯେ କୋଣାର୍କଟା ଭୁବନେଶ୍ୱର ପାଖରେ । ମନେ ମନେ ଭାବିଲି ରେ ମୂର୍ଖ, ଦୁଇବର୍ଷ ପରେ ଦେଖାହେଲେ ତ ଖାଲି ଗପରେ ଦିନ ପାହି ଯିବ । ସେ ସବୁତ କେବଠୁ ଜମି ରହିଛି । ତୋ କଥା କ'ଣ ସରିବ ? ମୁଁ ତୋତେ ଜାଣିନି ? ତଥାପି ଲୁଲୁକୁ କହିଲି ତୋ ଗାଡ଼ିଟା ତୁ ରେଡିକରି ରଖିଥା । ଯେତିକି ସମ୍ଭବ କରିବା ।

ପରେ ପରେ ଆଉ ଗୋଟାଏ ଫୋନ ଆସିଲା- ଇନ୍ଦିରାର । କହିଲା 'ଭାଇସାବ ! ଇଏ ଯାଇଛନ୍ତି କଲିକତା । ସେଠୁ ଯିବେ ଆପଣଙ୍କୁ ଭେଟିବାକୁ । ଦେଖିବେ କୋଣାର୍କ ଓ ଭୁବନେଶ୍ୱର' ।

ମଜା କରିବାକୁ ପଚାରିଲି 'ଇଏ' କିଏ । ସେ ହସିଲା ।

ଭାରତୀୟ ନାରୀମାନଙ୍କୁ ଏ ଅନ୍ଧାର ଘର ଭିତରୁ କିଏ ବା ମୁକ୍ତି ଦେଇ ପାରିବ ? ଯିଏ ଯେତେ ପାଠ ପଢ଼ିଥାଉ ନା କାହିଁକି ନିଜକୁ ଯେତେ ଅତ୍ୟାଧୁନିକ ବୋଲି କହୁଥାଉନା

କାହିଁକି, ଆଧୁନିକତା କେବଳ ବେଶ ପୋଷାକରେ ଏବଂ ଖୁବ୍ ବେଶୀରେ ଟିକେ କଥାବାର୍ତ୍ତାରେ, ତା'ଠୁ ବେଶୀ ନୁହେଁ। ଆଚରଣରେ ମୋଟେ ନୁହେଁ। ମନୁବାଦୀ ସଂସ୍କୃତିରେ ଓଡ଼ିଆଣୀ ଓ ଅସମୀୟାଣୀ ସବୁ ଗୋଟିଏ । ସ୍ୱାମୀର ନାଁ ଉଚ୍ଚାରଣ କରି ହେବନାହିଁ । ମୋ ଜାଣିବାରେ ଇନ୍ଦିରା ବି.ଏ. ପାଶ କରିଛି । ଲେଡିଜ୍ କ୍ଲବରେ ନାରୀର ସମସ୍ୟା ଉପରେ ଭଲ ଦି'ପଦ କହିପାରେ ମଧ୍ୟ । ଇଏ ସେଇ ଇନ୍ଦିରା ।

ଜାଣେନି ମନୁବାଦର ଗୁମ୍ଫା ଭିତରୁ ବାହାରିବାକୁ ଭାରତୀୟ ନାରୀମାନଙ୍କୁ ଆଉ କେତେ ବର୍ଷ ଲାଗିବ । ଆଜିକୁ ତିରିଶ ବର୍ଷ ହେଲା ସେମାନେ ପ୍ରତିନିଧି ସଭାମାନଙ୍କରେ ୩୩ ପରସେଂଟ ରିଜରଭେସନ ଆଇନକୁ ପାଶ କରାଇପାରୁ ନାହାନ୍ତି । ଯଦିଓ ଏହା ଭିତରେ ଜଣେ ପ୍ରଚଣ୍ଡ କ୍ଷମତାଶାଳୀ ମହିଳା ପ୍ରଧାନମନ୍ତ୍ରୀ ଓ ଆଉ ଜଣେ ମହିଳା ରାଷ୍ଟ୍ରପତି ମଧ୍ୟ ମହା ଧୂମଧାମରେ ତାଙ୍କ ସମୟ ଅତିକ୍ରମ କରି ଗଲେଣି । ବେଜବରୁଆକୁ ସେ ଦିନ ଯଥାଯଥ ଭାବରେ ଭୁବନେଶ୍ୱର ଷ୍ଟେସନରୁ ରିସିଭ କରାଗଲା ଏବଂ ସାମାନ୍ୟ ଜଳଖିଆ ପରେ ରାଜଧାନୀର ସବୁ ଅଂଚଳ, ମନ୍ଦିର, ଗୁମ୍ଫା ଇତ୍ୟାଦି ବୁଲେଇ ଦେଖେଇ ଦେଲୁ ଆମେ ଦି' ଜଣ । ଲୁଲୁ ସବୁ ସ୍ଥାନର ଇତିହାସ କହୁଥାଏ । କିନ୍ତୁ ସେ ଯେତେବେଳେ ଜାଣିଲା ତା'ର ଫେରିବା ସମୟ ପୂର୍ବରୁ ସେ କୋଣାର୍କ ଦେଖିପାରିବ ନାହିଁ ସେ ଦୁଃଖରେ ଭାଙ୍ଗି ପଡ଼ିଲା ।

ମୁଁ ତାକୁ ବୁଝେଇ ଦେଲି, 'ତୁମେ ଦୁଇଜଣ ପୁଣି ଥରେ ସମୟ ଦେଖିଆସ । ହାତରେ ଅନ୍ତତଃ ୩/୪ଦିନ ସମୟରଖ । ଖାଲି କୋଣାର୍କ ନୁହେଁ ଚିଲିକା ସମେତ ଅନେକ ଜାଗା ତୁମେ ଦେଖିପାରିବ' ।

ମୁଁ ଜାଣେ ତଥାପି ତା' ମନ ମାନିଲା ନାହିଁ । କୋଣାର୍କ ଦେଖି ନ ପାରିବାର ଦୁଃଖ ତାକୁ ବ୍ୟତିବ୍ୟସ୍ତ କରୁଥିଲା ।

ତାପରେ ମୋର ଆଉ ତା' ସହିତ ଦେଖା ହେଇନି । କିନ୍ତୁ ମଝିରେ ମଝିରେ ଫୋନରେ ଅଳ୍ପ କଥା ହେଉଥିଲୁ ।

ହଠାତ୍ ଦିନେ ଖବର ପାଇଲି ସେ ବମ୍ବେ ଯାଇଛି ଚିକିତ୍ସା ପାଇଁ । ଚିକିତ୍ସା ପାଇଁ ? ମୁଁ ଆଶ୍ଚର୍ଯ୍ୟ ହେଲି । ତା'ର ବ୍ରେନ ଟ୍ୟୁମର ହେଇଛି । ଇନ୍ଦିରା ହିଁ ମୋତେ ପ୍ରଥମେ କହିଲା । ମୁଁ ଚିନ୍ତିତ ହେଇ ପଡ଼ିଲି । କିନ୍ତୁ ଭାବିଲି ବମ୍ବେରେ ଏ ଚିକିତ୍ସା ହେଇ ପାରୁଚି । ପ୍ରାୟ ମାସକ ପରେ ପୁଣି ଖବର ପାଇଲି ସେ ଏବେ ସୁସ୍ଥ ଅଛି । ସେ ନିଜେ ମୋ ସହିତ କଥା ହେଲା । ମୁଁ ଆଶ୍ୱସ୍ତ ହେଲି । ଆଉ ଦିନେ ସେ ମୋତେ ଫୋନ କଲା । କହିଲା ମୁଁ ଭି. ଆର. ନେଇଗଲି ଏବେ ଗୁଆହାଟୀରେ ନିଜ ଘରେ ରହୁଛି । ମୁଁ ତା'ଘର ତିଆରିବେଳେ ଦେଖିଥିଲି । ଗୋଟାଏ ଭଲ ଲୋକେସନରେ । ଗୋଟାଏ ସମ୍ଭ୍ରାନ୍ତ ଏରିଆ ବୋଲି କହିହେବ।

ମୁଁ କହିଥିଲି ଏଥର ତୁମେ ବିଶ୍ରାମ ନିଅ । ପଢ଼ାପଢ଼ି କର । ସୁବିଧା ହେଲେ ମୁଁ ତୁମ ପାଖକୁ ଯିବି । ଏବକୁ ଅମଳ ଦାସ, ଡାକ୍ତର ହାଜାରିକା, ଏସ. କେ. ଦାସ, ଯିଏ ମୋର ପଡ଼ୋଶୀ ଥିଲେ ଏବଂ ଯାହାଙ୍କ ସ୍ତ୍ରୀ ମୁଁ ଆସାମରେ ପହଂଚିବା ପରଦିନ ମୋତେ ଖାଇବାକୁ ଦେଇଥିଲେ ଥାଳିଏ ବିହୁ ପିଠା, ଏମାନେ ସମସ୍ତେ ଗୁଆହାଟୀରେ ଘର କରି ସାରିଲେଣି। ତେଣୁ ମୁଁ ଗଲେ ସମସ୍ତଙ୍କୁ ଭେଟି ପାରିବି । ସେ କିନ୍ତୁ ବାରମ୍ୱାର କହୁଥାଏ ତମେ ଏବେ ଥରେ ଆସ । ମୁଁ କିନ୍ତୁ ସମୟ ସୁଯୋଗ ପାଉ ନଥାଏଁ । ହଠାତ୍ ଦିନେ ଶୁଣିଲି ତା' ଦେହ ପୁଣି ଖରାପ । ସେ ହସପିଟାଲରେ ଭର୍ତ୍ତି ହେଇଛି । କିନ୍ତୁ ଭଲ ଅଛି । ଏଇ ଦିନେ ଦି'ଦିନ ଭିତରେ ଘରକୁ ଆସିଯିବ । କିନ୍ତୁ ସେ ଦିନ ଇନ୍ଦିରା ହିଁ ମୋତେ ଜିଦ କରି କହିଲା ସେ ଆପଣଙ୍କୁ ଦେଖିବାକୁ ଚାହୁଁଛନ୍ତି । ମୋତେ କେତେ ଥର କହିଲେଣି ଆପଣଙ୍କୁ ଫୋନ କରିବାକୁ । ତାପରେ ସେ ଫୋନ ତାଙ୍କୁ ଧରାଇ ଦେଲା । କିନ୍ତୁ ମୋର ମନେ ହେଲା ସେ ଇନ୍ଦିରା ହାତରୁ ଫୋନ ଛଡ଼ାଇ ନେଲା ।

ତା'ର ସ୍ୱର ଥିଲା ବଡ଼ କ୍ଷୀଣ । ତୁମେ ଆସ । ଅନେକ କଥା କହିବାର ଅଛି । ମୁଁ ତାକୁ ସାନ୍ତ୍ୱନା ଦେବାକୁ କହିଲି, 'ଠିକ୍ ଅଛି ମୁଁ ଦୁଇଦିନ ଭିତରେ ଆସୁଛି' । ଗୋଟିଏ ଭୟଙ୍କର ଭୟ ମୋତେ ଅସ୍ଥିର କରି ପକାଉଥିଲା ।

୪/୫ ଦିନ ପରେ କେମିତି କେଜାଣି, ଦିନ ଗୋଟାଏରେ ମୁଁ ଫୋନ କଲି । ଇନ୍ଦିରା ଫୋନଧରି ଭୋ ଭୋ କାନ୍ଦିଲା । ମୋ ହାତ ଅବଶ ହେଇଆସିଲା । ସେ କହିଲା ଏଇ ବାରଟା ବେଳେ ସେ ଚାଲିଗଲେ । ଡେଡ୍‌ବଡି ଏବେ ଏବେ ସେମାନେ ନେଇଗଲେ । ମୁଁ ଥମ ହେଇଗଲି । ମୋ ଉପରେ ଅଭିମାନ କରି ଚାଲିଗଲା କି ଆଉ ?

ମୁଁ ତା'ର ୧୦ଦିନ ଦିନ ଯାଇ ପହଂଚିଲି । ବାରଣ୍ଡାରେ ରଖା ଯାଇଥିବା ଲାଇଫ ସାଇଜ ଫଟୋରେ ଆଞ୍ଜୁଳାଏ ଫୁଲ ଦେଇ ମୋର ଶେଷ ସମ୍ମାନଟି ତାକୁ ଦେଲି । ତା'ର ଦୁଇ ପୁଅ ଓ ଇନ୍ଦିରା ସେଇଠି ଠିଆ ହେଇ ଥାଆନ୍ତି ।

## ଅନୁବାଦ

ରବୀନ୍ଦ୍ରନାଥଙ୍କ ୧୦୭ ଚିଠିକୁ ଓଡ଼ିଆରେ ଅନୁବାଦ ପୁସ୍ତକ'ଚର୍ଚ୍ଚିତ ଚିଟାଉ'ମୋର ପ୍ରଥମ ଅନୁବାଦ ଗ୍ରନ୍ଥ ହେଲେ ମଧ୍ୟ ୧୯୭୯ରେ ମୁଁ ରାଞ୍ଚିରେ ଥିଲା ବେଳେହିଁ ଆର.କେ. ନାରାୟଣଙ୍କ ଗଳ୍ପ 'ଲେଖକର ଦୁଃସ୍ୱପ୍ନ'(ଏ ରାଇଟରସ୍ ନାଇଟ ମେଅର) ମୋର ପ୍ରଥମ ଅନୁବାଦ, ଯାହା ସେତେବେଳେ 'ପ୍ରଗତିବାଦୀ'ରେ ପ୍ରକାଶ ପାଇଥିଲା । ତା'ର ଅନେକ ଦିନ ପରେ ଅର୍ଥାତ୍ ବୋଧେ ୧୯୯୦ବେଳକୁ ମୋତେ ମିଳିଥିବା ବଙ୍ଗଳା 'ଦେଶ' ପତ୍ରିକାରୁ ରବୀନ୍ଦ୍ରନାଥଙ୍କ ଚିଠିର ଅନୁବାଦ କଲି । ଅବଶ୍ୟ କେତେକ ଜାଗାରେ ସେ

ସମୟର ବଙ୍ଗଳା ଶବ୍ଦ ବୁଝିବାରେ ଅସୁବିଧା ହେବାରୁ ମୁଁ ମୋର ହାଇସ୍କୁଲ ସମୟର ଶିକ୍ଷକ ଅମୀୟ ବସୁଙ୍କର ସାହାଯ୍ୟ ନେଇଥିଲି । ବଙ୍ଗଳା ପଢ଼ିବାରେ, କହିବାରେ ଓ ବୁଝିବାରେ ମୋର ଅସୁବିଧା ହୁଏନି । ମୋର ଚାକିରି କାଳ ଭିତରେ ମୁଁ ସବୁବେଳେ ବଙ୍ଗାଳୀଙ୍କ ସହିତ ରହି ଆସିଚି । ମୁଁ ଆଗରୁ କହିଚି ମୋ ମାଆ ହେଉଚି ମୋର ପ୍ରଥମ ବଙ୍ଗଳା ଭାଷାର ଶିକ୍ଷାଗୁରୁ । ମୋ ମାଆ ବଙ୍ଗଳା ମହାଭାରତ ପଢ଼ି ପାରୁଥିଲା । ଆମେ ଉତ୍ତର ବାଲେଶ୍ୱରବାସୀ ଭଲ ବଙ୍ଗଳା ପଢ଼ି ଓ କହିପାରୁ । ସେ ଯାହା ହେଉ 'ଚର୍ଚ୍ଚିତ ଚିଟାଉ' ଥିଲା ମୋର ପ୍ରଥମ ବଙ୍ଗଳାରୁ ଅନୁବାଦ । ପରବର୍ତ୍ତୀ କାଳରେ ମୋର ଅନ୍ୟ ଅନୁବାଦଟି ହେଲା 'ରାହୁଲ ସଂକୃତାୟନ'ଙ୍କ ଜୀବନୀ, ଯାହା ପ୍ରଭାକର ମାଚୱେଙ୍କଦ୍ୱାରା ହିନ୍ଦୀରେ ଲିଖିତ । ମୁଁ ହିନ୍ଦୀରେ ଖୁବ୍ ପାରଙ୍ଗମ ବୋଲି କହି ପାରିବିନାହିଁ ।

ଅନୁବାଦ କାମରେ ମୋତେ ସବୁଠାରୁ ବେଶୀ ଉତ୍ସାହିତ କରିଥିଲେ ହିନ୍ଦୀ ଅଧ୍ୟାପିକା ଡକ୍ଟର ବାସନ୍ତୀ ରଥ । ତାଙ୍କ ସହିତ ପରିଚୟ ମୋ ଜୀବନର ନୂତନ ଦ୍ୱାରଟିଏ ଖୋଲିଦେଲା । ମୋର ବହୁ ଚର୍ଚ୍ଚିତ 'ଖୋଳ' ଗଳ୍ପକୁ ସେ ହିନ୍ଦୀରେ ଅନୁବାଦ କରି କେନ୍ଦ୍ର ସାହିତ୍ୟ ଏକାଡେମୀର ସମକାଳୀନ ଭାରତୀୟ ସାହିତ୍ୟରେ ପ୍ରକାଶ କରାଇବା ଦ୍ୱାରା ସତ କହିବାକୁ ଗଲେ ମୁଁ ପ୍ରଥମ କରି ଓଡ଼ିଶା ବାହାରକୁ ଗଲି । ତାପରେ ସେ ଗଳ୍ପଟି ମୋର ଅନ୍ୟାନ୍ୟ ଅନେକ ଭାଷାରେ ଅନୁଦିତ ହେଇ ସାରିଛି । ପରେ ପରେ ବାସନ୍ତୀ ଦେବୀ ମୋର ଆଉ କେତୋଟି ଗଳ୍ପକୁ ଅନୁବାଦ କଲେ । ତାଙ୍କ ସହିତ ବିଶିଷ୍ଟ କବି ଓ ଅନୁବାଦକ କୁମାର ହାସନ ମଧ୍ୟ ମୋର ଆଉ କେତୋଟି ଗଳ୍ପକୁ ଅନୁବାଦ କଲାପରେ ତାହା ହିନ୍ଦୀରେ 'ଲୁ ତଥା ଅନ୍ୟ କହାନୀୟାଁ' ଗଳ୍ପ ସଂକଳନ ହେଇ ପ୍ରକାଶ ପାଇଲା । ତେଣୁ ଅନୁବାଦରେ ବାସନ୍ତୀ ଦେବୀ ମୋର ପ୍ରଥମ ପ୍ରେରଣାର ଉତ୍ସ ବୋଲି ମୁଁ ଅବଶ୍ୟ ସ୍ୱୀକାର କରିବି । ରାହୁଲ ସଂକୃତାୟନର ଅନୁବାଦ ପାଇଁ ମଧ୍ୟ ମୁଁ ତାଙ୍କଠାରୁ କିଛି ସାହାଯ୍ୟ ପାଇଛି । ଏସବୁ ସରିଲା ପରେ ମୋର ଅନୁବାଦ ପ୍ରତି ଗୋଟାଏ ସାହସ ଓ ଶ୍ରଦ୍ଧା ସୃଷ୍ଟିହେଲା । ଆର.କେ.ନାରାୟଣଙ୍କ ଗଳ୍ପର ପ୍ରେମରେ ମୁଁ ଅନେକ ଆଗରୁ ପଢ଼ିଥିଲି । ମାଡ୍ରାସରେ ଥିଲାବେଳେ ଯେତେବେଳେ ତାଙ୍କର ଯୁଗାନ୍ତକାରୀ ଉପନ୍ୟାସ 'ସ୍ୱାମୀ ଏଣ୍ଡ୍ ଫ୍ରେଣ୍ଡସ୍' ବହିଟି ପଢ଼ିଲି ମୋତେ ବହୁତ ଭଲ ଲାଗିଲା । ସେତେବେଳେ ଅବଶ୍ୟ ତାକୁ ଅନୁବାଦ କରିବା ଥିଲା ମୋ ସ୍ୱପ୍ନର ବାହାରେ । ମାଡ୍ରାସ ପରେ ମୁଁ ବହୁତ ଜାଗାକୁ ବଦଳି ହେଇ ଯାଇଚି । ତା ଭିତରେ ବହିଟି କେମିତି କେଜାଣି ହଜି ଯାଇଚି । ମୁଁ ମଧ୍ୟ ସେ କଥା ଭୁଲି ଯାଇଥିଲି । ପ୍ରାୟ ୨୦୦୦ ସମୟରେ ମୁଁ ପୁଣି ଥରେ ସେ ବହିକୁ ଭୁବନେଶ୍ୱର ବୁକ ଫେଆରରେ ଦେଖି କିଣିଲି । ସେତେବେଳେ ମୁଁ ରାହୁଲ ସଂକୃତାୟନଙ୍କ ସହିତ ବ୍ୟସ୍ତ ଥିଲି ଏବଂ ମଝିରେ ମଝିରେ ଅନ୍ୟାନ୍ୟ ଛୋଟ ଛୋଟ ଅନୁବାଦ କରୁଥିଲି । ଶେଷରେ ମୁଁ

ପୁଣି 'ସ୍ୱାମୀ ଏଣ୍ଡ୍ ଫ୍ରେଣ୍ଡସ୍' ପାଖକୁ ଫେରି ଆସିଲି । ଏଇ ନିକଟରେ ତାର ଅନୁବାଦ ସାରିଚି । ଏଯାଏ ପ୍ରେସକୁ ଯାଇ ନାହିଁ । ମନରେ ଗୋଟାଏ ଶାନ୍ତି ଆସିଚି ଯେ ଅନ୍ତତଃ ଖଣ୍ଡେ ଭଲ ବହି ଏବେ ମୁଁ ଓଡ଼ିଆ ପାଠକଙ୍କ ହାତରେ ଦେଇ ପାରିବି । ବୋଧେ ଏଇଟା ହେବ ମୋର ଶେଷ ଅନୁବାଦ । ଯାପରେ ଆଉ କୌଣସି ଭଲ କାମ (ଅନୁବାଦ) ମୁଁ ହାତକୁ ନେଇ ପାରିବି କି ନା ସନ୍ଦେହ ।

କିନ୍ତୁ ଯା ଭିତରେ କେତେଗୁଡ଼ିଏ ଭଲ ଗଳ୍ପ ମୁଁ ଅନ୍ୟ ଭାଷାରୁ ଓଡ଼ିଆକୁ ଆଣି ସାରିଚି। ସେ ଭାଷାଗୁଡ଼ିକ ହେଲା ତେଲୁଗୁ, ତାମିଲ, ମାଲାୟଲମ୍, ଅସମୀୟା, ବୋଡ଼ୋ, ହିନ୍ଦୀ, ଉର୍ଦ୍ଦୁ, ପଞ୍ଜାବୀ ଇତ୍ୟାଦି । ଅବଶ୍ୟ ଏସବୁ ଅନୁବାଦରେ ମୁଁ ଇଂରାଜୀ, ହିନ୍ଦୀ ଓ ବଙ୍ଗଳା ଭାଷାର ସାହାଯ୍ୟ ନେଇଚି । ଅନୁବାଦରେ ଅନ୍ୟଭାଷାର ସାହାଯ୍ୟ ନେବାରେ ଆପତ୍ତି ନାହିଁ । ପ୍ରତ୍ୟକ୍ଷରେ ନହେଲେ ମଧ୍ୟ ପରୋକ୍ଷରେ । ବାସନ୍ତୀ ରଥଙ୍କର ଗୋଟିଏ ଅନୁବାଦ ଗଳ୍ପ ସଂକଳନ 'ସମକାଳୀନ ଭାରତୀୟ ଗଳ୍ପ' ଯେତେବେଳେ ପ୍ରକାଶ ପାଇଲା ଆମେ ସେତେବେଳେ ତା'ର ଉନ୍ମୋଚନ ଉତ୍ସବ କଲଚରାଲ ଏକାଡେମୀରେ କରାଇଥିଲୁ । ସେଥିରେ ଥିବା ଗଳ୍ପଗୁଡ଼ିକ ଯେ ଅନବଦ୍ୟ ଏଥିରେ ସଂଦେହ ନାହିଁ । ଏହି ଗଳ୍ପ ଚୟନରେ ତାଙ୍କର ରୁଚିକୁ ପ୍ରଶଂସା କରିବା କଥା । ଡଃ ଅର୍ଜୁନ ଶତପଥୀ ଏ ସଭାରେ ଥିଲେ ମୁଖ୍ୟ ବକ୍ତା । ପୁସ୍ତକଟିର ଭୂୟସୀ ପ୍ରଶଂସା ସେ କରିଥିଲେ । ବାସନ୍ତୀ ମେଡମ୍‌ଙ୍କ ବହି ଦେଖି ମୁଁ ମଧ୍ୟ ଭଲ ଭଲ ଗଳ୍ପ ଦେଖି ଅନୁବାଦ କରିବାକୁ ସ୍ଥିର କଲି । ମୋର ପ୍ରିୟ ଲେଖକ କୃଷନ ଚନ୍ଦର, (ଉର୍ଦ୍ଦୁ) ବୈକମ ମହମ୍ମଦ ବାସିର ଓ ଏମ. ମୁକୁନ୍ଦମ(ମାଲାୟାଳୀ), କର୍ତାର ସିଂ ଦୁଗ୍‌ଗଲ (ପଞ୍ଜାବୀ), ମାଧବୀ କୁଟ୍ଟୀ ବା କମଳା ଦାସ (ଇଂରାଜୀ), ଭଗବତୀ ଚରଣ ବର୍ମା ଓ ଉଦୟ ପ୍ରକାଶ (ହିନ୍ଦୀ)ଙ୍କ ଗଳ୍ପକୁ ନେଇ ମୋର ଅନୁବାଦ ଗଳ୍ପ ସଂକଳନ 'ଈଶ୍ୱର ଯେତେବେଳେ ପିଲା ଥିଲେ ଓ ଅନ୍ୟାନ୍ୟ ଗଳ୍ପ' ଏଇ ଅଳ୍ପ ଦିନତଳେ ପ୍ରକାଶ ପାଇଛି । ବହୁ ବର୍ଷର ସ୍ୱପ୍ନ ଏବେ ସଫଳ ହେଲା । ଏବେ ସେଇ ବାସନ୍ତୀ ଦେବୀ ମୋର ଆଉ କେତୋଟି ଚର୍ଚ୍ଚିତ ଗଳ୍ପକୁ ଅନୁବାଦ କରିଛନ୍ତି ।

ଅନୁବାଦ ମଣିଷ ମଣିଷ ଭିତରେ, ଦେଶ ଦେଶ ଭିତରେ ଭୂଗୋଳର ସୀମାରେଖା ଡେଇଁ ଯେଉଁ ନୂତନ ସମ୍ପର୍କ ପ୍ରତିଷ୍ଠା କରେ ତାହା ନୂତନ ସମ୍ପର୍କରେ ପରିଣତ ହେଇଯାଏ । ଅନୁବାଦ ମାଧ୍ୟମରେ ରାମାୟଣ, ମହାଭାରତ ଯେମିତି ଆମ ପାଖରେ ପହଂଚିଛି ଫକୀର ମୋହନ ସେମିତି ଏବେ ଭାରତ ବାହାରେ ପହଂଚିଲେଣି ।

ମୁଁ ଏବେ ମୋର ଇଂରାଜୀ ଅନୁବାଦକୁ ଆସୁଚି ।

ମୋର ଓଡ଼ିଆ ଗଳ୍ପ 'ଏମ.କେ.ଗାନ୍ଧୀ'କୁ ପ୍ରଥମେ ଗୋଟିଏ ସମ୍ବାଦପତ୍ରର ସାପ୍ତାହିକ ପୃଷ୍ଠାକୁ ଦେଇଥିଲି । କିନ୍ତୁ ଗଳ୍ପଟା ସେଠି ବୋଧେ ପ୍ରକାଶକଙ୍କ ମନକୁ ପାଇଲା ନାହିଁ ।

ଗୋଟିଏ ମାସିକ ସାହିତ୍ୟ ପତ୍ରିକାକୁ ଦେଲି । ସେଠି ମଧ୍ୟ ଗାନ୍ଧୀଙ୍କୁ ସମ୍ପାଦକ ନୋ ଏଣ୍ଟ୍ରି କହିଦେଲେ । ତାପରେ ଗୋଟିଏ ତ୍ରୟମାସିକରେ ସେ ସ୍ଥାନ ପାଇଲା । ମୋ ମନ କିନ୍ତୁ ଏଥିରେ ମାନିଲା ନାହିଁ । ମୁଁ ତାକୁ ଇଂରାଜୀରେ ଅନୁବାଦ କରାଇବାକୁ ଚାହିଁଲି । ମୁଁ ଦେଖିଚି ଅନୁବାଦ କଥା କହିଲେ ଓଡ଼ିଶାରେ ଅଧିକାଂଶ ନାକ ଟେକି ଦିଅନ୍ତି । ସେମାନେ କହନ୍ତି ଅନୁବାଦ କଲେ ଲେଖାର ମୌଳିକତା ନଷ୍ଟହେବ । କଥାଟା ଠିକ୍ ନୁହେଁ । ମୁଁ ଇଂରାଜୀ କଥା କହୁଛି ।

ମୋର ସେତେବେଳକୁ ସୌଭାଗ୍ୟ କ୍ରମେ ବରେଣ୍ୟ ଲେଖକ ଡଃ ହୃଷୀକେଶ ପଣ୍ଡାଙ୍କ ମାଧ୍ୟମରେ ଲେଖିକା ଓ ସମାଲୋଚିକା ଲିପିପୁଷ୍ପା ନାୟକଙ୍କ ସହିତ ପରିଚୟ ହେଇ ଯାଇଥାଏ । ତାଙ୍କୁ ଅନୁରୋଧ କଲି 'ଏମ୍.ଏକ.ଗାନ୍ଧୀ'ର ଅନୁବାଦ ପାଇଁ । ସେ ତ ବହୁତ ବ୍ୟସ୍ତ ଲେଖିକା । ତଥାପି କଲେ । ମୁଁ ତାଙ୍କୁ ଲେଖାଟିକୁ 'ଇଣ୍ଡିଆନ ଲିଟରେଚର'କୁ ପଠେଇ ଦେବାକୁ କହିଲି । ସେ ବୋଧେ ସନ୍ଦେହରେ ପଡ଼ିଥିଲେ । ଯା ହେଉ ମୋର ଅନୁରୋଧରେ ସେ ତାକୁ ପଠେଇଲେ । ମୁଁ ଭାବୁଥିଲି ଗାନ୍ଧୀଙ୍କୁ ସିନା ଓଡ଼ିଶାରେ କେହି ଚିହ୍ନିଲେନି, ଦିଲ୍ଲୀରେ ନିଶ୍ଚୟ ଚିହ୍ନିବେ ।

ମୋର 'ଖୋଳ' ଗଳ୍ପବେଳେ ତ ଠିକ୍ ଏମିତି ହେଇଥିଲା । ଦୁଇ ଜାଗାରୁ ଫେରିଲା ପରେ ତୃତୀୟରେ ହିନ୍ଦୀରେ ପ୍ରକାଶ ପାଇଲା 'ସମକାଲୀନ ଭାରତୀୟ ସାହିତ୍ୟ'ରେ । ତା'ପରେ ସେ ଆଉ ପଛକୁ ଫେରିନାହିଁ । ବହୁ ଭାଷାରେ ଅନୁଦିତ ହେଇଗଲା । M.K.Gandhi ମାତ୍ର ଦୁଇଟା ମାସପରେ Indian Literature ରେ ସମ୍ପାଦକ ନିର୍ମଳକାନ୍ତି ଭଟ୍ଟାଚାର୍ଯ୍ୟଙ୍କ ଛୋଟ ସମ୍ପାଦକୀୟ ମନ୍ତବ୍ୟ ସହ ପ୍ରକାଶ ପାଇଲା । (IL234) ସେ ଯାହା ଲେଖିଥିଲେ ତାହା ଉଦ୍ଧାର କରୁଛି ।

I would like to draw the readers' attention to a quaint story boldly entitled 'M.K.Gandhi' by Bhupen Mahapatra behind the facade of an apparantly hilarious situation in which a young Oriya bureaucrat in charge of the public grievance cell suddenlly finds himself face to face with Gandhi who had come to lodge a complaint. The story exposes the absurdity of our present socio-political situation with tolerent humour and mild irony.

ନିର୍ମଳ ଭଟ୍ଟାଚାର୍ଯ୍ୟ ଜଣେ ଖ୍ୟାତନାମା ଲେଖକ ଓ ଆଲୋଚକ । ଇଣ୍ଡିଆନ ଲିଟରେଚରରେ ସେ ଅନେକ ଦିନ ସମ୍ପାଦକ ଥିଲେ । ତାଙ୍କ ମନକୁ ଏ ଗଳ୍ପଟି ଏମିତି ପାଇଲା ଯେ ପରବର୍ତ୍ତୀ ସମୟରେ ସେ ମଧ୍ୟ ଗୁଆହାଟୀରୁ (ଆସାମରୁ) ପ୍ରକାଶ ପାଉଥିବା 'ପୂର୍ବ ଦେଶ ସାହିତ୍ୟପତ୍ର' (ବଙ୍ଗଳା)ରେ ତାକୁ ଅନୁବାଦ କରି ପ୍ରକାଶ କରିବାକୁ

ଅନୁରୋଧ କରିଥିଲେ । ସେ ସମ୍ପାଦିକାଙ୍କ ଚିଠି ଏବେ ମଧ୍ୟ ମୋ ପାଖରେ ଅଛି । ତା ପରେ ପରେ ସେ ଗଳ୍ପଟି ଭାରତର ବହୁ ଭାଷାରେ ଅନୁବାଦ ହୋଇ ସାରିଚି ଏବଂ ଶେଷରେ ମହାରାଷ୍ଟ୍ରର ଜଳଗାଓଁ ବିଶ୍ୱବିଦ୍ୟାଳୟରେ ବି.ଏ.(ଇଂରାଜୀ) ପାଠ୍ୟକ୍ରମରେ ସ୍ଥାନିତ ହୋଇଚି । ମୁଁ ଲିପିପୁଷ୍ପଙ୍କଠାରେ କୃତଜ୍ଞ । ଇଂରାଜୀ ପାଠକମାନଙ୍କ ଠାରେ ସେ ମୋତେ ପ୍ରଥମେ ପରିଚିତ କରାଇଲେ ।

ଏବେ ମୋର ୧୨ଟି ଚର୍ଚ୍ଚିତ ଗଳ୍ପର ଇଂରାଜୀ ଅନୁବାଦ ହୋଇ M.K.Gandhi and other stories ନାମରେ ପ୍ରକାଶ ପାଇଛି ଦିଲ୍ଲୀର Authorspress ଙ୍କ ଦ୍ୱାରା। ଅନୁବାଦ କରିଛନ୍ତି ବିଶିଷ୍ଟ ଅନୁବାଦକ ପ୍ରଫେସର ଅଶୋକ ମହାନ୍ତି । ଅବଶ୍ୟ ଏଥିପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ଇଂରାଜୀ ବିଭାଗ ମୁଖ୍ୟ ତଥା ବିଶିଷ୍ଟ ଲେଖକ ପ୍ରଫେସର ଯତୀନ ନାୟକଙ୍କ ସହାନୁଭୂତି ପୂର୍ଣ୍ଣ ସାହାଯ୍ୟ କେବେବି ଭୁଲି ହେବ ନାହିଁ ।

ଏବେ ସୁଖର କଥା ଯେ ଏହି M.K.Gandhi ଗଳ୍ପଟିକୁ କେନ୍ଦ୍ର ସାହିତ୍ୟ ଏକାଡେମୀ ଡଃ ବିଭୂତି ପଟ୍ଟନାୟକଙ୍କ ମାଧ୍ୟମରେ ମୋଠାରୁ ତା'ର ସ୍ୱତ୍ୱ ସହିତ କିଣି ନେଇଛନ୍ତି । ମୋର ଅନ୍ୟ ଗୋଟିଏ ବହୁ ଚର୍ଚ୍ଚିତ ବ୍ୟଙ୍ଗ ଗଳ୍ପ 'ସ୍ୱର୍ଗରେ ବିପ୍ଳବ'କୁ ମଧ୍ୟ ବିଶିଷ୍ଟ ଲେଖକ ପୀତବାସ ରାଉତରାୟଙ୍କ ମାଧ୍ୟମରେ କେନ୍ଦ୍ର ସାହିତ୍ୟ ଏକାଡେମୀ ସ୍ୱତ୍ୱ ସହ କିଣି ନେଇଛନ୍ତି । ଉଲ୍ଲେଖ ଯୋଗ୍ୟ ଯେ ମୋର ଆଉ ଗୋଟିଏ ବହୁ ଚର୍ଚ୍ଚିତ ବ୍ୟଙ୍ଗ ଗଳ୍ପ 'କାଲମାନଙ୍କ ରାଜ୍ୟରେ' ବିଶିଷ୍ଟ ଲେଖକ ବିଜୟାନନ୍ଦ ସିଂହଙ୍କ ସମ୍ପାଦିତ ଓ ନେସନାଲ ବୁକ ଟ୍ରଷ୍ଟ ଦ୍ୱାରା ପ୍ରକାଶିତ 'ଚର୍ଚ୍ଚିତ ଓଡ଼ିଆ ବ୍ୟଙ୍ଗ ଗଳ୍ପ' ସଂକଳନରେ ସ୍ଥାନ ପାଇଛି ।



# ମୁଁ ଓ ମୋର ଈଶ୍ୱର

ଏଇ ପ୍ରକାର ଶିରୋନାମାଟିଏ ଦେଖିଲେ ମୋର ପାଠକ ବନ୍ଧୁମାନେ ହୁଏତ ଆଖି ଖୋଲି ଦେବେ । ତାର କାରଣ ସେମାନେ ଭାବୁଥିବେ ଯେ ମୁଁ ଈଶ୍ୱର ବିଶ୍ୱାସୀ ନୁହେଁ । ମୋର କେତେଗୁଡ଼ିଏ ଆଚରଣ ଓ ବିଶ୍ୱାସରୁ ସେମାନେ ଏମିତି ଭାବୁଥିବେ ।

ମୁଁ ପ୍ରାୟ ମନ୍ଦିରକୁ ଯାଏଁ ନାହିଁ । ଠାକୁର ଦର୍ଶନ ପ୍ରତି ମୋର ଆଗ୍ରହ ନଥାଏ । ପୂଜା ପଦ୍ଧତିକୁ ମୁଁ ବ୍ରାହ୍ମଣବାଦୀ କର୍ମ ଭାବରେ ଗ୍ରହଣ କରିଥାଏଁ । ଏ ବିଶ୍ୱାସ ଯେ ଖାଲି ମୋର ଅଛି ତାହା ନୁହେଁ । ଆର୍ଯ୍ୟ ସମାଜୀ ଓ ବୌଦ୍ଧଧର୍ମୀମାନେ ମୂର୍ତ୍ତି ପୂଜାରେ ବିଶ୍ୱାସ କରନ୍ତି ନାହିଁ । ହିନ୍ଦୁ ଧର୍ମରେ ମୂର୍ତ୍ତିହିଁ ଦେବତା । ବିଶିଷ୍ଟ ଉର୍ଦ୍ଦୁ ଲେଖକ କ୍ରିଷନ ଚନ୍ଦର ତାଙ୍କର 'ଈଶ୍ୱର ଯେତେବେଳେ ପିଲା ଥିଲେ' ଗଳ୍ପରେ (ମୁଁ ତାକୁ ଅନୁବାଦ କରିଚି) ଈଶ୍ୱର

ପ୍ରକୃତରେ କିଏ ଓ କଅଣ ତାକୁ ବର୍ଣ୍ଣନା କରି ଲେଖିଛନ୍ତି ଈଶ୍ୱର ପ୍ରଥମେ ଅଗ୍ନି ଥିଲେ । (ମଣିଷ ତାକୁ ପୂଜା କରୁଥିଲା । ତାପରେ ସେଇ ପ୍ରକ୍ରିୟାରେ ଗଛହେଲା, ତାପରେ କାଠ ପଥର ଓ ଶେଷରେ ଈଶ୍ୱର ହେଲା ।) ଆର୍ଯ୍ୟ ସମାଜୀମାନେ ଏଥିପାଇଁ ହୁଏତ ମୂର୍ତ୍ତି ପୂଜାରେ ବିଶ୍ୱାସ କରୁ ନଥିବେ । ବିବେକାନନ୍ଦଙ୍କ କଥାଟା ଅଧିକ ବିଶ୍ୱାସ ଯୋଗ୍ୟ ମନେହୁଏ । ସେ କହିଲେ ମଣିଷ ମନର ଭୟରୁ ଧର୍ମ କଥାଟା ଆସିଛି । ଧର୍ମରୁ ଈଶ୍ୱର କଥାଟା ଆସିଛି ।

ମଣିଷ ମନର ଭୟଟା ବହୁବିଧ କାରଣରୁ । ଲୋଭ, ପାପ (ଅନୀତି, ମିଛ, ଅସାଧୁତା ଇତ୍ୟାଦି) କାରଣରୁ ମନରେ ଭୟ ଜାତ ହୁଏ । ଛଳନାତ୍ମକ ଭାବରେ ସେଥିରୁ ରକ୍ଷା ପାଇବା ପାଇଁ ମଣିଷ ଖୋଜେ ଈଶ୍ୱରକୁ । ସବୁ ପ୍ରକାର ପାପରୁ ମଣିଷକୁ ମୁକ୍ତ କେବଳ ଈଶ୍ୱରହିଁ ଦେଇ ପାରିବେ ବୋଲି ତା'ର ଗୋଟାଏ ବିଶ୍ୱାସ । ଯାକୁ ଅନ୍ଧବିଶ୍ୱାସ ମଧ୍ୟ କହିହେବ । କାରଣ ସେ ପ୍ରକାର ବିଶ୍ୱାସ ସତ୍ୟ ବା ବିଜ୍ଞାନ ଆଧାରିତ ନୁହେଁ । ଏ ବିଶ୍ୱାସକୁ ଅଧିକ ଦୃଢ଼କରନ୍ତି ବ୍ରାହ୍ମଣ ଓ ସାଧୁମାନେ ବା ବାବାମାନେ । ତା' ମୂଳରେ ଥାଏ ସେମାନଙ୍କ ସ୍ୱାର୍ଥ । ବ୍ରାହ୍ମଣମାନେ କହନ୍ତି ଖାଲି ଈଶ୍ୱରଙ୍କଠାରେ ବିଶ୍ୱାସ ରଖିଲେ ହେବନାହିଁ, ତାଙ୍କୁ ଉପଯୁକ୍ତ ଭୋଗଦେଇ ପୂଜାକଲେ ସେ ସନ୍ତୁଷ୍ଟ ହେବେ ଏବଂ ତୁମର ମନକାମନା ପୂରଣ କରିବେ । ବାହାପିଆ ବ୍ରାହ୍ମଣମାନେ ଅଧିକ ପାଦେ ଆଗକୁ ଯାଇ କହନ୍ତି 'ମୁଁ ଏମିତି ପୂଜା କରିଦେବି ଯେ ତୁମେ ଯାହା ଚାହିଁବ ତାହା ହୋଇପାରିବ । ତେବେ ସେଥିପାଇଁ ବେଶୀ ଖର୍ଚ୍ଚହେବ'।

ପ୍ରକୃତ କଥା ହେଲା, ଏଇ ମୂକ ଠାକୁରମାନେ ଯଦି କଥା କହି ପାରୁ ଥାଆନ୍ତେ ତେବେ ତାଙ୍କପ୍ରତି କାହାରି ଭକ୍ତି ନଥାଆନ୍ତା କି ତାଙ୍କୁ କେହି ପୂଜା କରୁ ନଥା'ନ୍ତେ । ବ୍ରାହ୍ମଣବାଦୀ କର୍ମ ମଧ୍ୟ ସୃଷ୍ଟି ହେଇ ନଥା'ନ୍ତା ।

ଆମ ସାହିତ୍ୟରେ ଏ ସବୁର ଉଦାହରଣର ଅଭାବ ନାହିଁ । ତଥାପି ଆମ ମନ ମାନେନା । ଦୃଢ଼ ବିଶ୍ୱାସ ଯେ ପ୍ରଚୁର ଭୋଗରାଗ ଦେଇ ବିଶେଷ ପୂଜାକଲେ ଅର୍ଜିତ ସମସ୍ତ ପାପରୁ ମୁକ୍ତି ଅବଶ୍ୟମିଳିବ । ଦୁର୍ନୀତି ଅର୍ଜିତ ଧନରୁ ମନ୍ଦିର ତୋଳି ତା'ଭିତରେ ଠାକୁର ସ୍ଥାପନ କଲେ ଧର୍ମର ଅଭାବ ରହିବନାହିଁ । ଏଇ ବିଶ୍ୱାସରୁ ମନ୍ଦିର ତୋଳା ହୁଏ । ମୋର ବିଶ୍ୱାସ କିନ୍ତୁ ଭିନ୍ନ ।

ଏମିତି ଗୋଟିଏ ବିଶ୍ୱାସ ମୋର ପିଲାକାଳରୁ ଅଛି ଯେ ଯେତେ ଭୋଗ ଦେଲେ ମଧ୍ୟ ସେ କିଛି କରି ପାରିବେ ନାହିଁ । ମୋର ପ୍ରିୟ ବନ୍ଧୁ ସୁଲେଖକ ପୀତବାସ ରାଉତରାୟ ଜଣେ ପ୍ରଚଣ୍ଡ ଜଗନ୍ନାଥ ଭକ୍ତ । ଜଗନ୍ନାଥଙ୍କ ଉପରେ ସେ ଅନେକଗୁଡ଼ିଏ ସଂକଳନ କରି ସାରିଲେଣି । ଆହୁରି ମଧ୍ୟ କରୁଛନ୍ତି । ମୋତେ ଲେଖା ମାଗିଲେ । ମୁଁ ଦେଲି । ସେଇଟା

ମଧ୍ୟ ପ୍ରକାଶ ପାଇଲା । କିନ୍ତୁ ପରେ ଦେଖିଲି ପାଠକଙ୍କଠାରୁ ମିଶ୍ର ପ୍ରତିକ୍ରିୟା ଆସିଲା । କେହି ତାକୁ ଉଚ୍ଚ ପ୍ରଶଂସା କଲେ ଏବଂ ଆଉ କେହି କେହି ସ୍ପଷ୍ଟ ହେଲା ନାହିଁ ବୋଲି କହିଲେ । ମୁଁ ତାଙ୍କୁ ଉତ୍ତର ଆଧୁନିକ ଲେଖା ବୋଲି କହିଦେଲି । ତେବେ ସେ ଯା ହେଉ ସେ ଗପଟି (ଗପନୁହେଁ, ଅମୃତମୟ ଶ୍ରୀ ଜଗନ୍ନାଥ, ସଂପାଦନା - ପୀତବାସ ରାଉତରାୟ- ୨୦୧୦) ଏଯାଏ ତିନି ଚାରିଟି ପତ୍ରିକାରେ ପୁନଃ ପ୍ରକାଶିତ ହେଇ ସାରିଲାଣି । ଏଥିରେ ମୋର ଜଗନ୍ନାଥଙ୍କ ପ୍ରତି ଭକ୍ତି ପ୍ରକାଶ ପାଇଚି କି ନା କେଜାଣି । କିନ୍ତୁ ପାଠକମାନେ ପ୍ରଶଂସା କରି ସାରିଛନ୍ତି । ମୋର ବନ୍ଧୁ ପୀତବାସ ବାବୁ ମଧ୍ୟ ଖୁସ୍ । ଜଗନ୍ନାଥଙ୍କ ଉପରେ ତାପରେ ମୁଁ ଆଉ ଦୁଇଟି ଗପ ମଧ୍ୟ ଲେଖିଛି । 'ମହାପ୍ରଭୁଙ୍କୁ ଦେଖିଲା ପରେ' ଓ 'ଅନେକ ଖୋଜିଲା ପରେ' ଏ ଦୁଇଟି ମଧ୍ୟ ବେଶ ପ୍ରଶଂସିତ । ଅସଲ କଥା ହେଉଛି ଜଗନ୍ନାଥଙ୍କ ଉପରେ ଗପକୁ କିଏ ବା ନାପସନ୍ଦ କରିବ । ଜଗନ୍ନାଥଙ୍କ ଉପରେ ମୋର କବିତାଟିଏ ମଧ୍ୟ ଅଛି । ('ତାଙ୍କ ଠିକଣା', ଅଧିକାରରେ ପ୍ରକାଶିତ) ଅଭିଶାପ କବିତାରେ ମୁଁ ଈଶ୍ୱରଙ୍କୁ 'ଅଭିଶାପ' ଦେଇଚି ।

କିନ୍ତୁ ମୋର ପିଲା କାଳରୁ ଏ ପ୍ରଭୁମାନଙ୍କ ପ୍ରତି ଅଶ୍ରଦ୍ଧା ଥିଲା । ତାର କାରଣ- ମୁଁ ସେତେବେଳେ ବୋଧେ ୩/୪ ବର୍ଷର ହୋଇଥାଏଁ । ଆମ ଘରେ ଛୁଞ୍ଚିର ଆବଶ୍ୟକତା ଖୁବ୍ ବେଶୀ । ଯେ କୌଣସି କାମରେ ଓ ସମୟରେ ସିଲେଇର ଆବଶ୍ୟକତା ଥାଏ । ସିଲେଇ ମେସିନ ନଥାଏ । ସେତେବେଳେ ସିଲେଇ ମେସିନ କେବଳ ଦରଜୀମାନଙ୍କ ପାଖରେ ଥାଏ । ଗାଁରେ ଛୁଞ୍ଚିଟିଏ ସହଜରେ ମିଳେ ନାହିଁ । ଯଦିଓ ଆମେ ପିଲାକାଳେ ପଢ଼ିଚୁଁ ଭାରତର ଏକମାତ୍ର ଛୁଞ୍ଚି କାରଖାନା ବାଲେଶ୍ୱରରେ । ଗୋଟାଏ ଛୁଞ୍ଚି ହଜିଗଲେ (ଯୋଉଟା ଅତି ସହଜରେ ହଜେ) ଜରୁରୀ ସିଲେଇ ପାଇଁ ଆଉ ଗୋଟାଏ ପାଇବା ସହଜ ନୁହେଁ । ସାଧାରଣତଃ ପଡ଼ିଶା ଘରୁ ଛୁଞ୍ଚିଟାଏ ନିଜ କାମ ପାଇଁ ପାଇବା ସହଜ ନୁହେଁ । ତେଣୁ ମାଆ ତାକୁ ଗୋଟିଏ ତେଲ ବୋତଲରେ ରଖି କାନ୍ଥରେ ଗୋଟାଏ କଣ୍ଟା ମାରି ଝୁଲେଇ ଦେଇଥାଏ । ବିଶେଷ କରି ଆମ୍ଭମାନଙ୍କର ଅପହଞ୍ଚ ଜାଗାରେ । ସତେ ଅବା ସେଇଟା ମୁଣ୍ଡାଏ ସୁନା ।

ମୋର ସେ ଦିନ ଛୁଞ୍ଚିଟା ଦରକାର ପଡ଼ିଲା କୌଣସି ଜଣେ ନାମ ନଥିବା ଠାକୁରଙ୍କ ପୂଜା ପାଇଁ ଫୁଲମାଳ ଗୁନ୍ଥିବା ପାଇଁ । ମୋ ମାଆ ସେତେବେଳେ ଛୁଞ୍ଚିରେ ସୂତା ଭର୍ତି କରି ପାରୁ ନଥିଲା ବୋଲି ମୋର ସାହାଯ୍ୟ ଲୋଡୁଥିଲା । ମୁଁ ତାକୁ ଏ କାମରେ ସାହାଯ୍ୟ କରେ ବୋଲି ସେ ମୋତେ ବିଶ୍ୱାସକୁ ନେବ ବୋଲି ମୋର ଧାରଣା । ମୁଁ ତାକୁ ମାଗିଲି ମୋତେ ଛୁଞ୍ଚିଟା ଦେ, ମୁଁ ଠାକୁର ପାଇଁ ମାଳ ଗୁନ୍ଥିବି । ସେ ସିଧା ମନା କରି ଦେଲା । ପରେ ହୁଏତ ଭାବିଲା ଯାକୁ ଏବେ ନଦେଲେ ମୋ କାମବେଳେ ମୋତେ ଯଦି ସାହାଯ୍ୟ

ନକରେ? ପୁଣି ଭାବିଲା ଛୁଞ୍ଚିଟା ଥରେ ହଜିଗଲେ ଏବେ ସାତଦିନ ଭିତରେ ଆଉ ମିଳିବା ସମ୍ଭବ ନୁହେଁ । ନୂଆ ଛୁଞ୍ଚିଟିଏ କେବଳ ଶନିବାର ହାଟରୁ ମିଳିବ । ସେଠୁ ପୁଣି ଆଣିବ କିଏ? ଆହୁରି ମଧ୍ୟ ଭାବିଥିବ ଯାକୁ ଛୁଞ୍ଚିଟା ଦେଲେ ଆଉ କ'ଣ ଫେରିବ ? କିନ୍ତୁ ମୋର ସାହାଯ୍ୟଟା କେମିତି ଭୁଲିବ ? ଲୁଗା ସିଲେଇବେଳେ ମୋର ସାହାଯ୍ୟ ଏକାନ୍ତ ଜରୁରୀ । ଚିରା ଲୁଗାର ଗୋଟିଏ ପାଖ ଧରିଲେ ସେ ଅନ୍ୟପାଖରୁ ସିଲେଇ ଆରମ୍ଭ କରେ ।

ସେ ଅବଶ୍ୟ ଛୁଞ୍ଚିଟା ବାହାର କରିଦେଲା କିନ୍ତୁ କହିଲା ମନେରଖ ଛୁଞ୍ଚିଟା ହଜେଇଲେ ତୋ ପିଠିରୁ ଚମଡ଼ା ଉଠେଇ ଦେବି ।

ମୁଁ କହିଲି ହଃ, ଏମିତି ତ ସେ ସବୁବେଳେ କୁହେ । ମୁଁ ଛୁଞ୍ଚିଟା ନେଇ ଦୌଡ଼ି ପଳେଇଲି । କିନ୍ତୁ ହେ ପ୍ରଭୋ, ମାତ୍ର ପନ୍ଦର ମିନିଟ ଭିତରେ ଛୁଞ୍ଚିରେ ସୂତା ଲାଗିବା ପୂର୍ବରୁ ସେଇଟା ମୋ ହାତରୁ ଖସି ପଡ଼ିଲା ମସିଣା ଉପରେ ପଡ଼ିଥିବା ମେଞ୍ଚାଏ ଫୁଲ ଉପରେ । ତାପରେ ସେ ତଳକୁ ଯାଇ ଖଡ଼ି ମସିଣା ଦେହରେ ପଶିଗଲା । ଯେତେ ଖୋଜିଲେ ମିଳିଲାନି ।

ମୁଁ ଦେଖିଲି ବିପଦ ଆସନ୍ନ । ମାଡ଼ ଅବଶ୍ୟମ୍ଭାବୀ । ପିଠିରୁ ସତକୁସତ ଚମଡ଼ା ଉଠି ଯାଇପାରେ । ଏଥିରୁ କିଏ ମୋତେ ରକ୍ଷା କରିବ? ଆମ ଗାଁର କାଳି ବୁଢ଼ୀ କୁଆଡ଼େ ବହୁତ କ୍ଷମତାଶାଳୀ । ଯିଏ ତାକୁ ହାତଯୋଡ଼ି ଡାକିବ ସେ ଶୁଣିବେ । ମୁଁ ଗୋଟାଏ କାନ୍ଥ କୋଣରେ ଠିଆ ହେଇ ଆଖିବୁଜି ତାଙ୍କୁ ଡାକିଲି । ଖାଲି ଡାକିଲି ନୁହେଁ କହିଲି ଆମ ବାଡ଼ି ପଟେ ଯୋଉ ପାଚିଲା କଦଳୀ କାନ୍ଧି ପଡ଼ିଚି ସେଇଟା ପୂରାପୂରି ମୁଁ ତମକୁ ଦେବି । ଛୁଞ୍ଚିଟା ମୋତେ ଦେଖେଇଦିଅ ।

ମୋ ଆଗରେ ଯିଏ ଆସି ହାଜର ସେ କାଳୀ ନୁହେଁ, ମୋ ମାଆ । ସେତେବେଳେ ମୋ ମାଆ ଆହୁରି ଭୟଙ୍କର ଦେଖାଗଲା । ତା ପରେ ମାଆଙ୍କ ଆଶୀର୍ବାଦ ସବୁ ବିଧା ଚାପୁଡ଼ା ଆକାରରେ ମୋ ପିଠିରେ ପଡୁଥିଲା ।

ସେଇ ଦିନଠୁ ବୁଝିଲି ଏ ମାଆ ଫାଆ ସବୁ ମିଛ । କିଛି ଜାହିରା (କ୍ଷମତା) ମୋଟେ ନାହିଁ । କାନ୍ଧିଏ କଦଳୀ ଜାଗାରେ ସାମାନ୍ୟ ଛୁଞ୍ଚିଟାଏ ମୋ ହାତରେ ଦେଇ ପାରିଲନି ?

ପରବର୍ତ୍ତୀ ଅବସ୍ଥାରେ ମୁଁ ଯେତେବେଳେ ରାଉରକେଲା ଆସିଲି ସେତେବେଳେ ବନ୍ଧୁମାନଙ୍କ ସହିତ ମିଶି ମାର୍କସ୍ ଓ ଲେନିନଙ୍କୁ ଜାଣିଲି । ଜାଣିଲି ବି ଗାନ୍ଧୀ ଓ ନେହେରୁଙ୍କ ଧାର୍ମିକ ବିଶ୍ୱାସ ଓ ଅନ୍ଧ ବିଶ୍ୱାସ । ଆଲୋଚନା କଲି ବୈଜ୍ଞାନିକ ତଥ୍ୟ ও ତତ୍ତ୍ୱ ଉପରେ । କଲଚରାଲ ଏକାଡେମୀରେ ଥିଲେ କିଛି କମ୍ୟୁନିଷ୍ଟଙ୍କ ସମର୍ଥକ । ସେମାନେ ଆଲୋଚନା

କଲେ ସାମାଜିକ ବାସ୍ତବବାଦ । ଉଦାହରଣ ଦେଲେ ପ୍ରେମଚାନ୍ଦ ଓ ଭଗବତୀ ପାଣିଗ୍ରାହୀଙ୍କ ସାହିତ୍ୟ । ଗୋଟାଏ ଧାରାରେ ପଡ଼ିଗଲି । ବଳରାମ ଦାସଙ୍କ ଲକ୍ଷ୍ମୀପୁରାଣଠାରୁ ପଂଚସଖା ଯାଏ ସାହିତ୍ୟ ଗଢ଼ିଲା ।

ତା ଭିତରେ ମୋର ଧ୍ୟାନ ଧାରଣା, କିଏ ବିଶ୍ୱାସ ଓ ଅଂଧ ବିଶ୍ୱାସ, ତାହା ସ୍ପଷ୍ଟରୁ ସ୍ପଷ୍ଟତର ହେବାକୁ ଲାଗିଲା । ତା'ରି ଭିତରେ ଜନ୍ମ ନେଲା ଜଗନ୍ନାଥଙ୍କ ଉପରେ 'ଗପ ନୁହେଁ' ଗପ । ମୁଁ ଧର୍ମକୁ ବିରୋଧ କରେ ନାହିଁ କି ଦେବଦେବୀଙ୍କୁ ବିରୋଧ କରେ ନାହିଁ। କିନ୍ତୁ ସେଠି ହାତ ଯୋଡ଼ି ମଧ୍ୟ ଠିଆ ହୁଏ ନାହିଁ ।

ମୋ ସ୍ତ୍ରୀ ଘର ଭିତରେ ଘଣ୍ଟା ଘଣ୍ଟା ଠାକୁର ପୂଜାରେ ବ୍ୟସ୍ତ ଥାଆନ୍ତି । ମୁଁ ତାଙ୍କୁ ବିରୋଧ କରେ ନାହିଁ କି ସମର୍ଥନ ମଧ୍ୟ କରେନାହିଁ । କିନ୍ତୁ ସେ ଦିନ ଯେତେବେଳେ ମୋ ପୁଅ, ବୋହୂ ଓ ମୋ ସ୍ତ୍ରୀ ଯାଜପୁର ଯାଇ ବିରଜା ମନ୍ଦିର ଭିତରକୁ ମୋତେ ଡାକିଲେ ମୁଁ କହିଲି ମୁଁ ବାହାରେ ଅଛି । ଏଇ ଗଛମାନଙ୍କ ତଳେ ହାୱା ଖାଉଚି, ତମେମାନେ ଯାଅ । ସେମାନେ ଗଲେ । ବାହାରେ ଠିଆ ହୋଇଥିବା ବେଳେ ହଠାତ୍ ମନେ ପଡ଼ିଗଲା ଆମର ପୂର୍ବତନ ମନ୍ତ୍ରୀ ପ୍ରଫୁଲ୍ଲ ଘଡ଼େଇ କୁଆଡ଼େ ମାଆ ବିରଜାଙ୍କ ପିଣ୍ଡିକୁ ଅଧରାତ୍ରିରେ ତାଡ଼ି ତା'ତଳେ ତାନ୍ତ୍ରିକଙ୍କ ସାହାଯ୍ୟରେ ସୁନାର ପେଟି ପୋତୁଥିଲେ ବୋଲି ଖବର ପ୍ରକାଶ ପାଇଥିଲା । ହୁଏତ ଚାହୁଁଥିଲେ ନବୀନଙ୍କ ମନ୍ତ୍ରିମଣ୍ଡଳ ସ୍ଥାୟୀହେଉ ।

କିନ୍ତୁ ହାୟ, ସେଇ ପ୍ରଫୁଲ୍ଲ ଘଡ଼େଇ ତାର ମାତ୍ର କେଇମାସ ପରେ ମନ୍ତ୍ରିମଣ୍ଡଳରୁ ବିଦାୟ ନେଲେ । ବହୁ ମୂଲ୍ୟବାନ ସୁନାର ପ୍ଲେଟ ଦେବୀ ନେଇ ମଧ୍ୟ ତାଙ୍କୁ ସାହାଯ୍ୟ କରି ପାରିଲେନି । ଠାକୁର ଠାକୁରାଣୀଙ୍କୁ କିଛିଅଦେଇ ନିଜର ଉନ୍ନତି କାମନା କରିବା ପରି ବିକୃତ ମାନସିକତା କେବଳ ମଣିଷର ହିଁ ଥାଏ ।



# ଭିଟାମାଟି ଛାଡ଼ିଲି

ସେ ଦିନ ନୀଳକଣ୍ଠର ଚିଠିଟା ମୋତେ ଚିନ୍ତାରେ ପକାଇଲା । ଏମିତି ଗୋଟାଏ ସମୟ ଯେ ଆସିବ ଏବଂ ଏ କଥା ଥରେ ଦି'ଥର ମୋ ମନକୁ ଯେ ନ ଆସିଚି ତାହା ନୁହେଁ । କିନ୍ତୁ ସେତେବେଳେ ତା'ର କିଛି ସମାଧାନର ପନ୍ଥା ମୋ ମୁଣ୍ଡକୁ ନ ଆସିବାରୁ ମୁଁ ସେ ଚିନ୍ତାରୁ ନିଜକୁ ଦୂରେଇ ନେଇଚି । ମନରେ ଭୟ ବି ହୁଏତ ଥିଲା । ତାର ସମାଧାନର ଗୋଟିଏ ମାତ୍ର ରାସ୍ତା ଯେ ସେଥିରୁ ମାୟା ମମତା କଟେଇବା, ତାକୁ ପଛ କରିଦେବା, ତାକୁ ଭୁଲିଯିବା । ଭାବିଛି, ଆଃ, କଅଣ ଦରକାର ତାକୁ ନେଇ ଧନ୍ଦିହେବା ।

ପ୍ରିୟ ମମତାଗୁଡ଼ିକୁ ଯେତେ ପଛ କରି ହୁଏ ସେତେ ଭଲ । ସ୍ମୃତିର ଅତଳ ଗହ୍ୱର ଭିତରକୁ ଠେଲି ଦେଇ ପାରିଲେ ମଣିଷ ଟିକିଏ ନିଶ୍ଚିନ୍ତ ହେଇ ପାରନ୍ତା । ଶାନ୍ତିରେ ସମୟ କାଟନ୍ତା ।

କିନ୍ତୁ ସେତକ କଅଣ ସମ୍ଭବ ? ସମ୍ଭବ ଯୋଉଠି ମୋର ଏନ୍ତୁଡ଼ିଶାଳ ଏବେବି ଜଳ ଜଳ ହେଇ ଅନେଇଚି, ଯୋଉଠି ମୁଁ ଖେଳି ବୁଲି, ଡେଇଁ କୁଦି ସେ ମାଟିକୁ ଅଶେଷ ଯନ୍ତ୍ରଣାରେ ଜର୍ଜରିତ କରୁଥିଲି ପ୍ରତିଦିନ, ଯୋଉ ଘରେ ମୁଁ ମୋ ମାଆ କୋଳରେ ବସି ପ୍ରଥମ ବଙ୍ଗଳା ମହାଭାରତର ଛବି ଦେଖୁଥିଲି ପଞ୍ଚୁପାଣ୍ଡବଙ୍କର ବନବାସ ଯାତ୍ରା, ଶ୍ରୀକୃଷ୍ଣଙ୍କ ଯୁଦ୍ଧ ଡାକରା, ସଭାରେ ଦ୍ରୌପଦୀର ବସ୍ତ୍ର ହରଣ ଓ ଭୀଷ୍ମଙ୍କ ଶରଶଯ୍ୟା ଆଦି ।

ସେ ଲମ୍ବା ପିଣ୍ଡା, ଶୀତକାଳର ଅସ୍ତଗାମୀ ସୂର୍ଯ୍ୟର ମିଠା ମିଠା ଖରାକୁ ଆଦରି ଆମେ ମାଆ ପୁଅ ସେଇଠି ମସିଣା ଖଣ୍ଡେ ପକେଇ କେତେ ଶୀତକୁ ପିଠି କରିଛୁଁ ।

ସେଇ ଘରବାଡ଼ି ଯୋଉଟାକୁ ବାବା ଆଦିବାବୁ ଡିହ କହୁଥିଲେ ସେଇଟା ମୋର ଜଣେ ଜେଜେବାପା ଆଦିକନ୍ଦ ଦାସ ମହାପାତ୍ରଙ୍କ ଥିଲା । ସେ ତାଙ୍କ ପରିବାର ସହିତ ଗାଁ ଛାଡ଼ି ଅନ୍ୟ ଗାଁକୁ ଯିବା ପୂର୍ବରୁ ବାବାଙ୍କୁ ବିକିଦେଇ ଥିଲେ । ଆମ ଘର ସେ ଡିହକୁ ଲାଗିଥିଲା ବୋଲି ସେ ଆମକୁ ବିକିଲେ । ଦୁଇଟା ଡିହ ଲାଗିଗଲା ପରେ ସେଇଟା ବିରାଟ ଘେର ବାଡ଼ିରେ ରୂପାନ୍ତରିତ ହେଲା । ସେଇ ଘରବାଡ଼ି ସହିତ ଆଉ ଖଣ୍ଡେ ମିଶିଥିବା ଆମ କଟି ବଡ଼ବାଙ୍କ ଡିହ ମଧ୍ୟ ସେ ଆମକୁ ବିକିଦେଲେ । ଏଇ ଘରବାଡ଼ିମାନଙ୍କରେ ଥିଲା ଅନେକଗୁଡ଼ିଏ ଆମ୍ବ, ପଣସ, ନଡ଼ିଆ ଓ ନିମ ଗଛ ସହିତ ଗୋଟାଏ ବିରାଟ ଲିଚୁଗଛ । ପରିବା ଚାଷ ସେଠାରେ ନିୟମିତ ହେଉଥିଲା । ସେଠି ସନ୍ଧ୍ୟା ହେଲେ ବାଦୁଡ଼ିମାନଙ୍କର କୋଳାହଳ ଆମକୁ ରାତିଯାକ ବିରକ୍ତ କରୁଥିଲା । ସେ ସବୁ ପରିବା ଓ ଫଳ ମୋ ପେଟକୁ ଯାଇ ମୋତେ ମଣିଷ କରେଇଛି, ଛୋଟରୁ ବଡ଼ ହେଇଛି । ବାଦୁଡ଼ିମାନଙ୍କ ସହ ଯୁଦ୍ଧ ହେଉଥିଲା ବରାବର । ଏବଂ ସେଇଠି ବି ଅଛି ବାବା କିଣିଥିବା ଦେଢ଼ ଏକରର 'ଖାଣ୍ଡିବଣ' ଯାହା ମୋ ପିଲାଦିନେ ପ୍ରକୃତରେ ଗୋଟିଏ ବଣ ଥିଲା ଯେଉଁଠାରେ ଥରେ ଗୋଟାଏ ହେଟାବାଘ ରହି ଗାଁରେ ଉତ୍ପାତ କରୁଥିଲା । ବାବା ସେହି ଦେଢ଼ ଏକର ଜାଗା କିଣିଥିଲେ । ଜଙ୍ଗଲ କାଟି ସଫା କରେଇ ଘରବାଡ଼ିରେ ପରିଣତ କରେଇ ଥିଲେ ଏବଂ ସେଇଠି ଭଲ ଭାବରେ ବଡ଼ ଘରଟିଏ କରିବେ ବୋଲି କହୁଥିଲେ । କହୁଥିଲେ ପିଲାମାନେ ପାରି ଯାଆନ୍ତୁ, ଘର ସେମାନେ କରିବେ । ଗୋଟିଏ ଭଲ ଷ୍ଟ୍ରାଟେଜିକ ସ୍ଥାନ ସେଇଟା ।

ବାବାଙ୍କ ସ୍ୱପ୍ନ ସ୍ୱପ୍ନରେ ରହିଯିବ ? ସେଇ ଖାଣ୍ଡିବଣକୁ ଲାଗି ମଧ୍ୟ ଆମର କେତୋଟି ଚାଷଜମି । ସେସବୁ ଭାଗରେ ଲାଗିଛି । ଧାନ, ମୁଗ, ବିରି ସବୁ ହୁଏ ପ୍ରତି ବର୍ଷ ।

ବାବାଙ୍କ ପରେ ମାଆ ତାକୁ ଜଗିଚି । ସେ କହିଲା ମୁଁ ଏଘର ଛାଡ଼ି କୁଆଡ଼େ ଯିବି ନାହିଁ । ତାକୁ ଜଗିଥିବି ତୁମମାନଙ୍କ ପାଇଁ ।

ସେ ଦିନ ନୀଳକଣ୍ଠର ଚିଠି ମୋତେ ମୋର ବିଗତ ସତୁରି ବର୍ଷର ସ୍ମୃତିକୁ ପୁଣି ଆଣି ମୋ ଆଗରେ ଥୋଇଦେଲା ।

ସେ ଲେଖିଚି ଆଉ ପାରିବି ନାହିଁ । ମୋ ପୁଅମାନେ ମୋ ପାଖରେ ନାହାନ୍ତି ବୋଲି ମୋ ନିଜ ଘରର ଛାଉଣୀ ମୁଁ କରି ପାରୁନାହିଁ । ସେମାନେ ଟଙ୍କା ସିନା ଦେଉଛନ୍ତି, କାମ କରିବ କିଏ ? ମୋ ନିଜ ଜମି ରଖିବା ଅସମ୍ଭବ ହେଇ ପଡ଼ିଲାଣି । ଆପଣଙ୍କ ଜମି ରଖି ପାରିବିନି । ଆପଣ ଆସି ସେ ଦାୟିତ୍ୱ ନିଅନ୍ତୁ । ଅନ୍ୟ କାହାକୁ ଦିଅନ୍ତୁ । ନଚେତ୍ ବିକି ଦିଅନ୍ତୁ ।

ମୁଁ ଚିଠିଟାକୁ ଆଉ ପଢ଼ି ପାରିଲି ନାହିଁ । ଅଟକି ଗଲି ।

ବିକି ଦେବି ? ସେ ଘର, ବାଡ଼ି, ଡିହ, ଖଣ୍ଡିବଣ । ସବୁ ବିକି ଦେବି ? ତାପରେ ? ଲିଭେଇ ଦେବି ସବୁ ? ଲିଭାଇ ଦେବି ମୋ ପିଲାକାଳ । ମୋ ଷଠୀଘର । ମୋ କୁଆଁ କୁଆଁ ରାବ, ପେଟେଇବା, ଆଣ୍ଠେଇବା ପିଣ୍ଡା, ସବୁ ପୋଛି ଦେବି ଗୋଟିଏ ଗାରରେ ?

ତାପରେ ? ତାପରେ ମୋତେ ଅନ୍ଧାର ଦେଖାଗଲା । ଆଖିରେ ଆଖିଏ ଲୁହ ଗଦେଇ ହେଇ ପଡ଼ିଲା । ଲୁହର ବନ୍ୟା ଭିତରେ ବି ଦେଖିଲି ସେଇଘର ।

ଗୋଟିଏ ସାହା ଭରସା ଅଛି ଲୁଲୁ ପାଖରେ । ସେ ତ ଏବେ ଭୁବନେଶ୍ୱରରେ ଅଛି। କେତେ ବା ଦୂର । ଚାହିଁଲେ ପାରିବ । ସେ ବି ତ ବର୍ଷେ ଦୁଇ ବର୍ଷ ଯାଏଁ ସେଇ ମାଟିରେ ଗଡ଼ିଛି, ହଗିଛି, ମୁତିଛି ମୋ ଭଳିଆ ।

ମୋ ବାପା ଭରସା ରଖିଥିଲେ ମୋ ଉପରେ ।

ଏବେ ମୁଁ ଭରସା ରଖିଛି ମୋ ପୁଅ ଉପରେ ।

ପଳାୟନରୁ ମୁକ୍ତି ପାଇବା ଛଡ଼ା ଇଏ ଆଉ କ'ଣ ?

ଲୁଲୁକୁ ପଚାରିଲି ସେ ଦାୟିତ୍ୱ ନେବୁ କି ?

ନା ନା ସେ ଦାୟିତ୍ୱ ମୋତେ ଦିଅନ୍ତୁ ନାହିଁ । ସିଧା ମନା କଲା ।

ସତେ ତ ସେ କାହିଁକି ସେ ଦାୟିତ୍ୱ ନେବ ? ସେ ସମ୍ପତ୍ତି, ଘରବାଡ଼ି ସହିତ ତା'ର ସମ୍ପର୍କ କ'ଣ ? ସେଠି ତା'ର ଏନ୍ତୁଡ଼ିଶାଳ ନଥିଲା । ଖାଲି ଟ୍ରେନରେ ଯାଉଥିବାବେଳେ ଯାତ୍ରୀ ଓ ରେଳଗାଡ଼ିର ସମ୍ପର୍କପରି, ଗୋଟାଏ ଷ୍ଟେସନରୁ ଆଉ ଗୋଟାଏ ଷ୍ଟେସନ ପର୍ଯ୍ୟନ୍ତ ।

ମୁଁ ନୀଳକଣ୍ଠକୁ ଲେଖିଲି, 'ତୁ ଲୋକ ଠିକ୍ କର । ମୁଁ ସବୁ ବିକି ଦେବି' ।

ଥରେ ଗଲି ଗାଁ'କୁ । ବଡ଼ବାପା ପୁଅ ବିଭୂତି ଘରେ ବସି ଗାଁ'ର କିଛି ଲୋକଙ୍କୁ ଡକେଇଲି । ସେମାନଙ୍କୁ କହିଲି, 'ସବୁ ବିକିବି । କିଏ କୋଉଟା ନେବକୁହ'। ତେବେ ଯେଉଁମାନେ ଭାଗ କରୁଛନ୍ତି ସେମାନଙ୍କ କଥା ଆଗ । ଦରଦାମ କିଛିନାହିଁ । ପ୍ରଚଳିତ ହାରରେ ସେମାନଙ୍କୁ ପ୍ରଥମେ ଦେବି । ଯଦି ସେମାନେ ନନେଇ ପାରିବେ ତେବେ ଅନ୍ୟମାନଙ୍କ କଥା ପରେ ବିଚାର କରାଯିବ । ଗୋଟିଏ କଥାରେ କଥା ଛିଣ୍ଡିଲା । କେତେବା ଜମି । ସେଇଠି ସବୁ କଥା ସରିଲା । ରେଜିଷ୍ଟ୍ରିର ଦିନ ମଧ୍ୟ ଠିକ୍ ହେଲା । ମୁଁ ସେଦିନ ରାଧାରାଣୀକୁ ନେଇ ଜଳେଶ୍ୱର ଆସିଲି । ସବୁ କାମସାରି ପରଦିନ ରାଉରକେଲା ଫେରିଲି ।

ତାପରେ ଆଉ ଥରେ କୋଟସାହି ଯିବାକୁ ଯେତେଥର ମନ ହେଇଛି, ଗୋଟାଏ ବେଦନା ବୋଧର ହାତରେ ତାକୁ ଚାପି ଦେଇଛି ।

ପରେ ବାପାମାଆଙ୍କ ନାଁରେ ପ୍ରତି ବର୍ଷ ସ୍କୁଲର ବାର୍ଷିକ ଉତ୍ସବରେ ସବୁଠାରୁ ଭଲ ପଢୁଥିବା ପିଲାକୁ ପାଂଚଶହ ଟଙ୍କା ଲେଖାଏଁ ଦିଆ ହେଉଛି । ଏସବୁ ବିଷୟରେ ଯୋଗାଯୋଗ କରିବାକୁ ମୁଁ ବିଭୂତିର ପୁଅ ଟୁଟୁକୁ ଦାୟିତ୍ୱ ଦେଇଦେଲି ।



# ଅବକ୍ଷୟର ପଦଧ୍ୱନି

ନବେ ଦଶକ ବେଳକୁ ଏକାଡେମୀର କାର୍ଯ୍ୟକ୍ରମରେ କିଛି ପରିବର୍ତ୍ତନ ଆସିଲା । 'କାବ୍ୟ କବିତା ଦିବସ'(ମେହେର ଜୟନ୍ତୀ ଉପଲକ୍ଷେ)ଏବଂ 'କଥା ସାହିତ୍ୟ ଦିବସ' (ଫକୀର ମୋହନ ଜୟନ୍ତୀ ଅବସରରେ) ସହିତ ଗୌରୀଶଙ୍କର ରାୟଙ୍କ ଜନ୍ମ ଜୟନ୍ତୀ ଦିବସକୁ 'ପତ୍ର ପତ୍ରିକା ଦିବସ' ଭାବରେ ପାଳନ କରିବାକୁ ସ୍ଥିର କରାଗଲା । ଏହାକୁ ଏକାଡେମୀର ନୂତନ ପ୍ରାଣ ସଂଚାର ବୋଲି କହି ହେବ । ସାପ୍ତାହିକ ସାହିତ୍ୟ ଚକ୍ର କେବେଠୁ ବନ୍ଦ ହେଇ ଯାଇଥିଲା । ପରେ ମାସିକ ଆସରଟିଏ ଆରମ୍ଭ ହେଲା । ତା'ର ନାମଥିଲା 'ଆଲୋକ ଉତ୍ସବ'। ଦୀପାବଳୀ ଦିନ ତାର ଉଦ୍‌ଘାଟନ ହେଇଥିଲା ମଧ୍ୟ । ଯାହା ଏବେ ମଧ୍ୟ ଚାଲିଛି । କିନ୍ତୁ ସେ ନାମ ନାହିଁ କି ପୂର୍ବ ମାନସିକତା ଥିଲା ଭଳି ମନେ ହେଉନି । ହରିବାବୁ, ବଂଶୀଧର ଓ ରଜନୀବାବୁଙ୍କ ପରେ ଗୋଟାଏ ସ୍ଥାଣୁତ୍ୱ ଆସିଗଲା । ସାହିତ୍ୟିକ ଆଲୋଚନାରେ ସେ ପୂର୍ବ ଔଜ୍ଜ୍ୱଲ୍ୟ ଦେଖା ଗଲାନି । ତାର ଆଉ ଗୋଟାଏ କାରଣ ହେଇପାରେ ଏବେ ଓଡ଼ିଆ ପାଠକୀୟତା ହ୍ରାସ ପାଇଛି କିମ୍ୱା ଆମ ଭିତରୁ ସାହିତ୍ୟିକ ଚରିତ୍ର ହ୍ରାସ ପାଉଛି । ଆଉ ଗୋଟିଏ କାରଣ ବି ହେଇପାରେ ଯେ

ଏବେତ ରାଉରକେଲାରେ ଅନେକଗୁଡ଼ିଏ ସାହିତ୍ୟ ଅନୁଷ୍ଠାନ ଗଢ଼ି ଉଠିଲାଣି । ଲେଖକ କବିମାନେ ବାଣ୍ଟି ହୋଇ ଯାଉଛନ୍ତି । ସାହିତ୍ୟ ପ୍ରଚାର ସର୍ବସ୍ୱ ହୋଇଯାଉଛି । ଏଇଥିରୁ ସୃଷ୍ଟି ହୋଇଥିବ କଥାଟିଏ,'ଏବେ ଦୁଇ ପ୍ରକାର ଲେଖକ ଏରାଜ୍ୟରେ ଅଛନ୍ତି । ଦଳେ କେବଳ ଲେଖୁଥାଆନ୍ତି ଓ ଅନ୍ୟ ଦଳକ ପୁରସ୍କାର ପାଉଥାଆନ୍ତି'। ସେମାନଙ୍କର ଲେଖା ଲେଖି ସହିତ ସମ୍ପର୍କ ନଥାଏ । ଏମିତି ଗୋଟାଏ ସମୟ ଏବେ ଆରମ୍ଭ ହୋଇଚି । ଗୋଟାଏ lacklustre ସମୟ ଆରମ୍ଭ ହୋଇଗଲେ ଜଣେ ପ୍ରଚାର ସର୍ବସ୍ୱ ହେବା ସ୍ୱାଭାବିକ।

କଲଚରାଲ ଏକାଡେମୀରେ ମୋତେ ତିନିଥର ତାର ପଦ ପଦବି ମଣ୍ଡନ କରିବାକୁ ସୁଯୋଗ ମିଳିଥିଲା । ରଜନୀକାନ୍ତ ଦାସ ସଭାପତି ଥିଲେ ୧୯୬୬ ରୁ ୧୯୭୧, ୧୯୭୪ ରୁ ୧୯୮୧ ପୁଣି ଥରେ ୧୯୮୨-୮୩ ଏବଂ ଶେଷରେ ୧୯୮୬-୧୯୯୩ । ସେଇବର୍ଷ ସେ ନବପତ୍ରରୁ ମଧ୍ୟ ବିଦାୟ ନେଲେ ଗୋଟିଏ ଅନୌପଚାରିକ ଭାବରେ । ଏକାଡେମୀ ସହିତ ତାଙ୍କର ସମ୍ପର୍କ ପ୍ରାୟ ଆଉ ରହିଲାନି । ତାକୁ ଅବକ୍ଷୟର ସମୟ ବୋଲି କୁହାଯାଉ ଥିଲେ ମଧ୍ୟ ପରିବର୍ତ୍ତନର ସମୟ ମଧ୍ୟ କହି ହେବ । ଦୁଃଖର କାରଣ ହେଲା 'Like Minded' ବା ସମଭାବାପନ୍ନ ଲୋକ ହିଁ ଆମ ଅନୁଷ୍ଠାନରେ ରହି ପାରିବେ' ଏଇଯୋଉ ନୀତି ଆମେ ପ୍ରଥମରୁ ଅନୁସରଣ କରି ଆସୁଥିଲୁଁ ସେଥିରେ ଭଟ୍ଟା ପଡ଼ିଯାଇଥିଲା । ସେ ଭାବୁଥିଲେ ସାହିତ୍ୟର ଧାରା ଏଥିରେ ହୁଏତ ବଦଳି ଯିବ । ରଜନୀବାବୁଙ୍କ ସେ ଚିଠି ମୁଁ ଏବେବି ରଖିଚି ଏବଂ ତାଙ୍କ ଉପରେ ସଂକଳିତ ବହିରେ ମଧ୍ୟ ଲେଖିଚି । ତାଙ୍କ ଆଶଙ୍କା ପୂରାପୂରି ଭୁଲ ବୋଲି କହି ହେବ ନାହିଁ । ସମଭାବାପନ୍ନ ଲୋକମାନଙ୍କୁ ଅନୁଷ୍ଠାନକୁ ଅଣାଯିବ ନା ଲୋକମାନଙ୍କୁ ଆଣି ସେମାନଙ୍କୁ ସମଭାବାପନ୍ନ କରାଯିବ ଏପରି ଦୁଇଟା କଥା ଅଛି । ଏହା 'ଡ୍ରବନ' ପରି କଥାଟିଏ । ସବୁ ଲୋକକୁ ଡ୍ରବନ ମାଧ୍ୟମରେ ଧର୍ମକୁ ଆଣି ହେବନାହିଁ । ମୌଳିକ ଚରିତ୍ରରେ ପରିବର୍ତ୍ତନ ଆସିବା ଉଚିତ । ନବପତ୍ରର ମାନ ତଳକୁ ଖସିଲା ଦ୍ରୁତ ଗତିରେ । ଏହା ସାରା ଓଡ଼ିଶାର ଲେଖକ/ପାଠକମାନେ ସ୍ପଷ୍ଟ ଭାବରେ ଅନୁଭବ କଲେ ମଧ୍ୟ ବାରମ୍ବାର ନବପତ୍ରର କର୍ମକର୍ତ୍ତା ବଦଳିଲେ । ପ୍ରଥମେ ପ୍ରଥମେ ଅର୍ଥାତ୍ ରଜନୀବାବୁ ବିଦାୟ ନେଲା ପରେ ଆମେ ନୀତି ନିର୍ଦ୍ଧାରଣ କରିଥିଲୁଁ ଯେ ପ୍ରଥମ ଧାଡ଼ିରେ ଥିବା କର୍ମକର୍ତ୍ତା ଥରକେ ଦୁଇ ବର୍ଷରୁ ଅଧିକ ରହିପାରିବେ ନାହିଁ । କିନ୍ତୁ ପରେ ସେ ନିୟମ ବଦଳିଲା । କାରଣ ପଦବୀ ମଣ୍ଡନ କରିବାକୁ କେହି ରାଜି ହେଲେନି । ସାହିତ୍ୟିକ କୃତି ନଥାଇ ପଦ ମଣ୍ଡନକଲେ ବି ଅସୁବିଧା । ଏଇଠି ମୋର ମନେ ପଡୁଥିଲା ରଜନୀବାବୁଙ୍କ ଚିଠିକଥା । ଗୋଟାଏ ପ୍ରତିଷ୍ଠିତ ସାହିତ୍ୟାନୁଷ୍ଠାନର ସଭାପତି ଓ ସାଧାରଣ ସଂପାଦକ, ଏପରିକି ଉପସଭାପତି ମଧ୍ୟ ଜଣେଜଣେ ପ୍ରତିଷ୍ଠିତ ସାହିତ୍ୟିକ ହେବାକଥା । କିନ୍ତୁ ଦୁର୍ଭାଗ୍ୟର କଥା ସେତକ ସମ୍ଭବ ହେଲାନାହିଁ ।

ଜଣେ ନିୟମିତ ଓ ସଚ୍ଚୋଟ ଲେଖକକୁ ପଦପଦବୀର ଲାଳସା ଆକୃଷ୍ଟ କରି ନ ଥାଏ । ଅବସର ପରେ ମୋ ହାତରେ କାମ ପ୍ରଚୁର । ଜଣେ ପ୍ରେଷାଦାର ଲେଖକ ଭଳିଆ ମୋର ଗୋଟିଏ ରୁଟିନ ବନ୍ଧା କାମ । ମୁଁ ସେତେବେଳେ ଅନୁରୋଧ ଅନୁସାରେ ନିୟମିତ 'ସମ୍ବାଦ'ରେ ମାସକୁ ଗୋଟିଏ ଲେଖାଏଁ ସ୍ତମ୍ଭ ଲେଖିବା ସହିତ 'ସମୟ'ରେ ମଧ୍ୟ ନିୟମିତ ଲେଖୁଥାଏ । ମାସକୁ ଥରେ 'ଅନୁପମ ଭାରତ'ରେ ମଧ୍ୟ ଲେଖୁଥାଏ । ଏଇସବୁ ସମ୍ବାଦପତ୍ର ସହିତ ମୋର ନିବିଡ଼ ସମ୍ପର୍କ । ସମାଜର ପଦାରବିନ୍ଦ ମହାପାତ୍ର ଓ ମନୋରମାଙ୍କ ସହିତ ଯେମିତି ସମ୍ପର୍କ, 'ସମୟ'ର ସାତକଡ଼ି ହୋତା ଓ ଅନୁପମ ଭାରତର କାଳୀପଦ ପଣ୍ଡାଙ୍କ ସହିତ ସେମିତି ସମ୍ପର୍କ । ଅନୁପମ ଭାରତ ଆରମ୍ଭ ବେଳେ କାଳୀବାବୁ ଦିନେ ହଠାତ୍ ଅନ୍ୟ କେତେ ଜଣଙ୍କ ସାଥିରେ ଆସି ଆମ ଘରେ ପହଞ୍ଚିଲେ ଏବଂ ଲେଖା କଥା କହିଲେ । ସେତେବେଳେ ସେ କାଗଜରେ ମନୋଜ ଦାସ ଓ ବିଭୂତି ପଟ୍ଟନାୟକ ମଧ୍ୟ ଲେଖୁ ଥାଆନ୍ତି । 'ସମୟ'ରେ ମୁଁ ଅନେକ ଦିନ ଯାଏ ମାସକୁ ଦୁଇଟା ଲେଖାଏଁ ସ୍ତମ୍ଭ ଲେଖିଚି । ଏହି କାଗଜ ମୋର ପ୍ରତ୍ୟେକ ଲେଖାପାଇଁ ମୋର ପ୍ରାପ୍ୟ ଦେଇଥିଲାବେଳେ ଅନୁପମ ଭାରତ ମଧ୍ୟ ବର୍ଷକୁ ଥରେ ଉପହାର ଆକାରରେ ଦେଇଥାଏ ।

ଏମିତି ଗୋଟିଏ ସମୟରେ ମୋତେ ଥରେ କଲଚରାଲ ଏକାଡେମୀର ସଭାପତି ପଦ ନେବାକୁ ପଡ଼ିଲା ।(୧୯୯୯) ମୋର ବ୍ୟସ୍ତତା ସେତେବେଳେ ବହୁତ ବେଶୀ । ସ୍ତମ୍ଭ ସହିତ ନିୟମିତ ଗଳ୍ପ, ଉପନ୍ୟାସ ଇତ୍ୟାଦିର କାମ ଜୋରସୋରରେ ଚାଲିଥାଏ । ୨୦୧୨ ଯାଏ ମୋର ବ୍ୟସ୍ତତା ଶୀର୍ଷରେ । ଦିନକୁ ୬/୭ ଘଣ୍ଟା ଲେଖାଲେଖିରେ । । ବୋଧହୁଏ ସବୁଠାରୁ ବେଶୀ ଗଳ୍ପ, ଉପନ୍ୟାସ(ମାତ୍ର ପାଂଚ ଖଣ୍ଡ)ମୁଁ ସେଇ ସମୟରେ ଲେଖିଛି । ଭୁବନେଶ୍ୱର ଯାଇ ଛପାଛପିର କାମ ମଧ୍ୟ ଦେଖିବାକୁ ପଡୁଥାଏ । ଏ ଅବସ୍ଥାରେ କଲଚରାଲ ଏକାଡେମୀର ସଭାପତିତ୍ୱ ପରି ବିରାଟ ବୋଝ ନେବାକୁ ମୁଁ ଅନିଚ୍ଛୁକ ହେଉଥିଲେ ମଧ୍ୟ ବନ୍ଧୁମାନଙ୍କର ଚାପ(ବିଶେଷ କରି ଅଦ୍ୱୈତବାବୁଙ୍କ ଚାପ) ଏଡ଼ି ହେଲାନାହିଁ । ଅଦ୍ୱୈତବାବୁ ସେଥର ସାଧାରଣ ସମ୍ପାଦକ ହେଲେ । ଏଇ ସମୟ ଭିତରେ ମୋର ପ୍ରଥମ କାମ ଥିଲା କେନ୍ଦ୍ର ସାହିତ୍ୟ ଏକାଡେମୀର 'ଅସ୍ମିତା' କାର୍ଯ୍ୟକ୍ରମ କରାଇବା । ସେତେବେଳେ ରମାକାନ୍ତ ରଥ ଥିଲେ ତା'ର ସଭାପତି । ମୁଁ ଥରେ ତାଙ୍କ ଘରକୁ ଯାଇ ଏଥିପାଇଁ ଅନୁରୋଧ କଲି । ସେ ସଙ୍ଗେ ସଙ୍ଗେ ରାଜି ହେଲେ ।। ପ୍ରତିଭା ଶତପଥୀଙ୍କ ନେତୃତ୍ୱରେ ପାଂଚଜଣ କବିୟତ୍ରୀ ଆସିଲେ । ସମ୍ପୂର୍ଣ୍ଣ ଖର୍ଚ୍ଚ କେନ୍ଦ୍ର ସାହିତ୍ୟ ଏକାଡେମୀର । ଅସ୍ମିତାର କାର୍ଯ୍ୟକ୍ରମ ଏବେ ବନ୍ଦ ହେଇଗଲାଣି । କିନ୍ତୁ କବିତା ବିଷୟରେ ଚମତ୍କାର ଆଲୋଚନାଟିଏ ସେଦିନ ହେଲା । ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ ପର୍ଯ୍ୟାୟରେ ରାଉରକେଲାର

ଏକାଡେମୀର ଉଦୀୟମାନ କବିମାନେ ଅତି ଉନ୍ନତମାନର ଆଲୋଚନା କରି ଏପରି କାର୍ଯ୍ୟକ୍ରମ ପୁଣି ଥରେ କରିବାକୁ ପ୍ରସ୍ତାବ ଦେଇଥିଲେ । କବିତାର ଆଧୁନିକତା ଓ ଉତ୍ତର ଆଧୁନିକତା ବିଷୟରେ କବିମାନେ ସ୍ପଷ୍ଟ ଧାରଣା ପାଇ ପାରିଥିଲେ । କଲଚରାଲ ଏକାଡେମୀ ପାଇଁ ଖାଲି ନୁହେଁ ରାଉରକେଲା ପାଇଁ ଏହା ଏକ ଇତିହାସ ସୃଷ୍ଟିକରିଛି । ତା'ପରଠୁ ବୋଧେ ଏ ଯାଏଁ ରାଉରକେଲାରେ କେନ୍ଦ୍ରୀୟ ସାହିତ୍ୟ ଏକାଡେମୀ ଦ୍ୱାରା ଅନ୍ୟ କୌଣସି କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇନାହିଁ ।

ପରବର୍ତ୍ତୀ ଅବସ୍ଥାରେ ୨୦୦୩ରେ ମୋତେ ଥରେ ଅବସ୍ଥା ଚକ୍ରରେ ପଡ଼ି ସାଧାରଣ ସମ୍ପାଦକ ପଦ ନେବାକୁ ପଡ଼ିଲା । ସେତେବେଳେ କୁହାଗଲା ଯେ ଜଣେ ଦୁଇଥରରୁ ବେଶୀ ପଦାଧିକାର କରି ରହିବା ଉଚିତ ନୁହେଁ । ଏଇଟା ଗୋଟାଏ ସମୟ ଯେତେବେଳେ ସାଧାରଣ ପରିଷଦ ବୈଠକରେ କେତେ ଜଣ ସଦସ୍ୟ ଏକାଉଣ୍ଟସ୍ ଓ ଅଡିଟ୍ ଉପରେ ଖୁବ୍ ବେଶୀ ଆଲୋଚନା କରୁଥିଲେ । ଅନାବଶ୍ୟକ ଦୋଷ ତ୍ରୁଟି ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରିବା ଫଳରେ କୌଣସି ସଦସ୍ୟ କୋଷାଧ୍ୟକ୍ଷ ପଦ ନେବାକୁ ରାଜି ହେଉ ନଥିଲେ । ଅବଶ୍ୟ ସରକାରୀ ଅଡିଟ୍ ଯାହା ଆଗରୁ ଅନ୍ତତଃ ହରିବାବୁ ଥିବା ଯାଏ, ପ୍ରାୟ ଠିକ୍ ସମୟରେ ହେଉଥିଲା ତାହା ବନ୍ଦ ହେଇ ଯାଇଥିଲା । କୋଷାଧ୍ୟକ୍ଷ ପଦ ପୂରଣ ନହେଲେ କମିଟି ଗଠିତ ହେଇ ପାରିବନି । ବେଶ୍ କିଛି ଦିନ ଏହା ସମସ୍ୟା ସୃଷ୍ଟି କଲା । ସେ ବର୍ଷ ଅମୀୟବାବୁ ସଭାପତି ଓ ମୁଁ ସାଧାରଣ ସମ୍ପାଦକ ହେବା ପରେ ସେଇ ପ୍ରଶ୍ନ ଉଠିଲା । କେହି କୋଷାଧ୍ୟକ୍ଷ ପଦ ନେବାକୁ ରାଜି ହେଲେନି । ଅନେକ ଆଲୋଚନା ଓ କିଛି କଥା କଟାକଟି ମଧ୍ୟ ହେଲା । ଏହା CAG ଅଡିଟ୍‌କୁ ବଳି ଯାଉଛି ବୋଲି କେହି କେହି କହିଲେ । ଜଣେ ଏମିତି କହିଲେ, ଯୋଉମାନେ ଏପରି ଯୁକ୍ତି କରୁଛନ୍ତି ସେମାନେ ଏକାଡେମୀର ନୀତି ଓ ଆଦର୍ଶ କେତେ ଜାଣନ୍ତି ଓ ତାଙ୍କର ଏକାଡେମୀକୁ ଦାନ କେତେ ? ଶେଷରେ ମୁଁ ବନ୍ଧୁ କୀର୍ତ୍ତନ ପରିଡ଼ାଙ୍କୁ ଅନୁରୋଧ କରିବାରୁ ସେ ଅନେକ କଷ୍ଟରେ ରାଜି ହେଲେ । କୀର୍ତ୍ତନ ବାବୁ ଥିଲେ ରାଜନୀତିରେ SUCIର ସମର୍ଥକ । କିନ୍ତୁ ଜଣେ ଭଲ ପ୍ରାବନ୍ଧିକ ଓ ପ୍ରଗତିଶୀଳ ଆଲୋଚକ । ଏକାଡେମୀର ସଦସ୍ୟ ପଦ ନେବାକୁ ତାଙ୍କୁ ମୁଁ ହିଁ ପ୍ରଥମେ ଅନୁରୋଧ କରିଥିଲି । କାରଣ ଏକାଡେମୀରେ କେବଳ ତାଙ୍କରି ପରି ଲେଖକହିଁ ଆବଶ୍ୟକ, ହାତ ଟେକିବା ଲୋକ ନୁହେଁ । କୀର୍ତ୍ତନବାବୁ ମୋଟେ ରାଜି ହେଉ ନଥିଲେ । ଅନେକ କଷ୍ଟରେ ସେ ରାଜିହେଲେ ।

ଗୋଟିଏ ଭଲ ଗଳ୍ପରୁ ମୁଁ ପଶୁପତି ନାଥ ଚାଟାର୍ଜୀଙ୍କୁ ଆବିଷ୍କାର କଲି ଓ ତାଙ୍କୁ ମଧ୍ୟ ଅନେକ କଷ୍ଟରେ ଏକାଡେମୀକୁ ଆଣିଲି । କିନ୍ତୁ ସେ ତ ରାଜନୀତିର ସମର୍ପିତ ବ୍ୟକ୍ତି । ତାଙ୍କର ଆଲୋଚନାରୁ ଅନେକ କିଛି ଜାଣିବାର ଅଛି ।

ଏକାଡେମୀର ସମସ୍ତ ଆୟ ବ୍ୟୟ ପାଇଁ ସାଧାରଣ ସମ୍ପାଦକ ଓ କୋଷାଧ୍ୟକ୍ଷ ହିଁ ଦାୟୀ । ମୁଁ କୀର୍ତ୍ତନ ବାବୁଙ୍କୁ କହିଲି, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଆମ ପାଖରେ ସାମାନ୍ୟ ମାତ୍ର ଅନୈତିକତାର ଚିହ୍ନ ନ ଥଲା ବେଳେ ଭୟ କାହିଁକି ? ସମ୍ପୂର୍ଣ୍ଣ ସାମ୍ବିଧାନିକ ନିୟମ ଅନୁସାରେ କାମ କରିବା ।

ସେ ବର୍ଷ କେନ୍ଦ୍ର ସଂସ୍କୃତି ବିଭାଗର ଗୋଟିଏ ବିଜ୍ଞାପନ ଅନୁସାରେ ଆମେ 'ପୂର୍ବାଂଚଳ ସାହିତ୍ୟ ସମ୍ମିଳନୀ'(ବହୁ ଭାଷିକ) କରିବୁ ବୋଲି ଦରଖାସ୍ତ କଲୁ । ସେଠୁ ମଞ୍ଜୁରୀ ଆସିଲା ପଚାଶ ହଜାର ଟଙ୍କାର ଏବଂ ୩୭୫୦୦ ଟଙ୍କା ଅଗ୍ରୀମ ଆସିଲା । ସେତେବେଳେ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି ନିୟମିତ ରାଉରକେଲା ଆସୁଥାଆନ୍ତି । ସେ ଥିଲେ ମୋର ସମ୍ପର୍କୀୟ ସମୁଦି । ତାଙ୍କ ଝିଅ ଲିପି ମୋ ପୁଅର ଶଳା ଭାଉଜ । ମୁଁ ଯତୀନବାବୁଙ୍କ ସାହାଯ୍ୟ ଲୋଡ଼ିଲି । ତାଙ୍କରି ପରାମର୍ଶ ଅନୁସାରେ କାର୍ଯ୍ୟକ୍ରମ ସ୍ଥିରହେଲା । ଦୁଇ ଦିନର କାର୍ଯ୍ୟକ୍ରମରେ ଓଡ଼ିଶାର ବିଭିନ୍ନ ଆଡୁ ବିଭିନ୍ନ ଭାଷାର ଲେଖକମାନେ ଆସିଲେ । କେନ୍ଦ୍ର ସାହିତ୍ୟ ଏକାଡେମୀ କଲିକତା ଶାଖାରୁ ଜଣେ ପ୍ରତିନିଧି ମଧ୍ୟ ଆସିଲେ । ଦୁଇଦିନ କାଳ ଭଲ ଆଲୋଚନା ହେଲା । ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ ସାହିତ୍ୟରେ । ଆଦିବାସୀ ଭାଷା ମଧ୍ୟ ମିଶିଥିଲା । ଯତୀନବାବୁଙ୍କ ସାହାଯ୍ୟ ଆମ ପକ୍ଷେ ଅପରିହାର୍ଯ୍ୟ ହେଲା । ଆମର ସକଳ ସଫଳତାର ପୁରସ୍କାର ତାଙ୍କର ଶ୍ରେୟ । ସେ ଆଜି ନଥିଲେ ମଧ୍ୟ ମୁଁ ସ୍ୱୀକାର କରୁଚି । କଲଚରାଲ ଏକାଡେମୀର ଏଇଟା ମଧ୍ୟ ଇତିହାସର ପୃଷ୍ଠା । କାମସବୁ ସରିବା ପରେ ଦିନେ ମୁଁ, କୀର୍ତ୍ତନବାବୁ ଓ ଦେବେନ୍ଦ୍ର ମହାନ୍ତି ବସି ସବୁ କାଗଜପତ୍ର ସରକାର ଦେଇଥିବା ନିୟମ ଅନୁସାରେ ତିଆରି କରି ସଂସ୍କୃତି ବିଭାଗକୁ ପଠାଇ ଦେଲୁ । କଥା ଥିଲା ସବୁ ଖର୍ଚ୍ଚର ହିସାବ ପାଇଲା ପରେ ସଂସ୍କୃତି ବିଭାଗ ବାକି ଟଙ୍କା ଆମଠାକୁ ପଠାଇବେ ।

ବର୍ଷେ ପୂରିବା ପରେ ମୋ କାମ ସରିଲା । ନୂଆବର୍ଷ ପାଇଁ ନୂଆ କର୍ମକର୍ତ୍ତା ଆସିଲେ । କିନ୍ତୁ ସଂସ୍କୃତି ବିଭାଗରୁ ବାକି ଟଙ୍କା ଆସିଲା ନାହିଁ । ବାରମ୍ବାର ଚିଠି ଲେଖିଲେ ମଧ୍ୟ ତାର ଉତ୍ତର ମିଳିଲା ନାହିଁ । ପ୍ରାୟ ବର୍ଷକ ପରେ ମୁଁ RTIରେ ଖଣ୍ଡେ ଚିଠି ଲେଖିଲି । ସଙ୍ଗେ ସଙ୍ଗେ ସେଠୁ ଉତ୍ତର ଆସିଲା ଆପଣଙ୍କ ନାଁରେ CBI ରେ ଅଭିଯୋଗ ଅଛି, ତେଣୁ ବାକି ଅର୍ଥ ଦିଆ ଯାଉନାହିଁ । ମୁଁ ପୁଣି କହିଲି 'ଶୀଘ୍ର ତାର ତଦନ୍ତ କରାଯାଉ'। ମୋ ଚିଠି ପାଇବା ପରେ ସେମାନେ ରାଜ୍ୟ ସଂସ୍କୃତି ବିଭାଗକୁ ତାର ତଦନ୍ତ ଦାଇତ୍ୱ ଦେଲେ । ଦୁଇଜଣ ଅଫିସର ଆସି ତଦନ୍ତ କଲେ ଓ ସବୁ କାଗଜପତ୍ର ଦେଖି ସମ୍ପୂର୍ଣ୍ଣ ସନ୍ତୁଷ୍ଟ ହେଲେ । ପରେ ମୁଁ ପଚାରିଲି ଅଭିଯୋଗ କିଏ କରିଛି ? ସେ କହିଲେ ଆପଣଙ୍କ ଭିତରୁ କେହିଜଣେ । ସେ ମୋତେ ଚିଠିର କପି ଦେଖେଇଲେ । ସେଥିରେ ଥିଲା ଜଣକର ନାଁ । ତାଙ୍କ ଠିକଣା ମୋତେ ମାଗିଲେ । ମୋ ଠାରୁ ଠିକଣା ନେଇ ସେମାନେ କୋଏଲ ନଗରରେ ତାଙ୍କ

ଘରକୁ ଗଲେ । ତାଙ୍କୁ ପଚାରିବାରୁ ସେ କହିଲେ, ମୁଁ ସେ ଅଭିଯୋଗ ବିଷୟରେ କିଛି ଜାଣେନି । ମୋତେ ଜଣେ ବିଜଣ (ଜଣକର ନାଁ ମଧ୍ୟ କହିଲେ) କହିବାରୁ ମୁଁ ଦସ୍ତଖତ କରି ଦେଲି । ସମ୍ପୂର୍ଣ୍ଣ ମିଥ୍ୟା ଅଭିଯୋଗ ପଛରେ କେଉଁମାନେ ଥିଲେ ସେ କଥା ଜଣା ପଡ଼ିଲା । ତେବେ ସେ ଯାହା ହେଉ ସଂସ୍କୃତି ବିଭାଗରୁ ଶେଷରେ ବାକି ଟଙ୍କା ଆସିଲା । ଅଣସାହିତ୍ୟିକମାନଙ୍କର ଚେହେରା ଅଭିଯୋଗକାରୀମାନଙ୍କ ଚରିତ୍ରତ ବହୁ ଆଗରୁ ଜଣାଥିଲା । ଏକାଡେମୀରେ ଏହିମାନଙ୍କ ପ୍ରବେଶକୁ ହିଁ ସେତେବେଳେ ବିରୋଧ କରାଯାଉଥିଲା । ମୁଁ ଯଦି ସେତେବେଳେ RTI ର ସାହାଯ୍ୟ ନେଇ ନଥାନ୍ତି ତେବେ ହୁଏତ ଚିର ଦିନକୁ ମୁଁ କଳଙ୍କର ବୋଝଟିଏ ବୋହିଥାଆନ୍ତି । କଲଚରାଲ ଏକାଡେମୀରେ ଖାଲି ନୁହେଁ ଯେ କୌଣସି ସାମାଜିକ ଅନୁଷ୍ଠାନରେ ଅନ୍ତତଃ ଯେଉଁଠି କିଛି ଆର୍ଥିକ ସ୍ୱଚ୍ଛଳତା ଥାଏ ତା' ଭିତରକୁ ଅସାଧୁ ଲୋକଙ୍କର ପ୍ରବେଶକୁ ରୋକି ହେବ ନାହିଁ । ସମଭାବାପନ୍ନ ମାନଙ୍କ ଭିତରେ ଯେ ଲୋଭ, ତାହା ଆସନ ପାଇଁ ହେଉ ବା ଅର୍ଥ ପାଇଁ ହେଉ, ଉଦ୍ରେକ ନହେବ ସେ କଥା କିଏ କହିବ ? ମିଥ୍ୟା ଅଭିଯୋଗଟିଏ ମୋ ବିରୁଦ୍ଧରେ ସିବିଆଇକୁ ପଠାଇଲେ ସେମାନଙ୍କୁ କୋଉ ପର୍ଯ୍ୟାୟଭୁକ୍ତ ଆମେ କରିପାରିବା ? ଏହାଦ୍ୱାରା ଯେ କେବଳ ସାହିତ୍ୟର ବା କଲଚରାଲ ଏକାଡେମୀର କ୍ଷତି ହେଲା ତା'ନୁହେଁ ଏହା ସମଗ୍ର ସାହିତ୍ୟ ସମାଜର କ୍ଷତିହେଲା । ଏମାନଙ୍କୁ ଜାତିର କଳଙ୍କ କହିବା ଠିକ୍ ହେବ । ସାହିତ୍ୟ ମଣିଷର ଏକ ପବିତ୍ରତମ ଉଚ୍ଚାରଣ । ତାକୁ ଅସାଧୁତା ବା ଅର୍ଥବଳରେ ଅଧିକାର କରି ହୁଏ ନାହିଁ । ଏକ ନୈସର୍ଗିକ ଭାବନାର ବିକାଶରେ ହିଁ ତାହା ସମ୍ଭବ । ଏଇଟାହିଁ ଏକମାତ୍ର କାରଣ ଯୋଉଥିପାଇଁ ରଜନୀବାବୁ ସବୁବେଳେ କହୁଥିଲେ, 'ବ୍ୟକ୍ତି ଚରିତ୍ର ଓ ସାହିତ୍ୟିକ ଚରିତ୍ର ଗୋଟିଏ ହେବା ଉଚିତ । ଏହା ଭିନ୍ନ ହେଇ ପାରେନା । ଏବକୁ ଲକ୍ଷ୍ମୀଧର ନାୟକ ଓ ରଜନୀକାନ୍ତ ଦାସ ଯେଉଁମାନେ ଏକାଡେମୀର ଷାଠିଏ ଦଶକରେ ମୂଳଦୁଆ ପକେଇଥିଲେ ଏବଂ ଲକ୍ଷ୍ମୀଧରଙ୍କ ପରେ ରଜନୀବାବୁ ତାର ହର୍ମ୍ୟ ନିର୍ମାଣ କରେଇ ଥିଲେ, ସେମାନେ ମଳିନ ପଡ଼ି ଗଲେଣି । ସାହିତ୍ୟରେ ସେ ଲିଗେସି ମଧ୍ୟ ନାହିଁ। ଗାନ୍ଧୀ ଲିଗେସି ଆଉ ଅଛି କି ?

ଏସବୁ ସତ୍ତ୍ୱେ ମୁଁ ଏକାଡେମୀରୁ ଅଲଗା ହେଇ ନଥିଲି କି ଏବେ ମଧ୍ୟ ହେଇନାହିଁ। କିନ୍ତୁ ମନ ପ୍ରାଣ ଦେଇ ଯେମିତି କାମ କରୁଥିଲି ସେ ସ୍ପୃହା ଆଉ ରହିଲା ନାହିଁ । ମୁଁ ଆଶା କରୁଥିଲି ବନ୍ଧୁମାନେ ଅନ୍ତତଃ ସବୁକଥା ପ୍ରମାଣ ହେଇସାରିଲା ପରେ ଅପରାଧ କରିଥିବା ବ୍ୟକ୍ତି ବା ବ୍ୟକ୍ତିମାନଙ୍କୁ ଦଣ୍ଡ ଦେବେ । ଦଣ୍ଡ ଦେବା ଆମ ଏକାଡେମୀର ସଂବିଧାନ ଅନ୍ତର୍ଗତ । ଅନ୍ତତଃ କମିଟିରେ ପକେଇ ସତର୍କ କରି ଦିଆ ଯାଇ ପାରିଥାଆନ୍ତା । ସେତକ ମଧ୍ୟ ହେଲା ନାହିଁ ।

ମୋ ମନ ଏଥିରେ ଭାଙ୍ଗିଗଲା । ମୁଁ ନିଜକୁ ଦୂରେଇ ରଖିବାକୁ ଚେଷ୍ଟା କଲେ ମଧ୍ୟ ପାରୁଛି କୋଉଠି ? ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱସମୟର ସମ୍ପର୍କକୁ କ'ଣ ସହଜରେ ଛାଡ଼ି ହୁଏ ?ଏଥିରେ ହୁଏତ ଅନେକଙ୍କର ଧାରଣା ହେଉଥିବ ଯେ ମୁଁ ସମ୍ପର୍କ କାଟିଦେଉଛି । କାରଣ ଏଇ ସମୟରେ ମୁଁ କ୍ୱଚିତ୍ ଏକାଡେମୀକୁ ଯାଉଥିଲି । ଅନ୍ୟ ଦିଗରେ ଏକାଡେମୀ ଭିତରେ ମଧ୍ୟ ଅନ୍ତର୍ଦ୍ୱନ୍ଦ୍ୱ ବଢ଼ିବାରେ ଲାଗିଲା । କେହି କେହି ସାହିତ୍ୟିକ ଯୋଗ୍ୟତା ମୋଟେ ନଥାଇ ମଧ୍ୟ ଏକାଡେମୀର ସଦସ୍ୟତା ପାଇଲେ ଯାହା ବାହାରକୁ ସଂକେତ ଦେଲା ଯେ ହୁଏତ ଗୋଟାଏ ଗୋଟାଏ ଦଳ ସୃଷ୍ଟି ହେଉଛି । ଯେମିତି ରାଜନୀତିରେ ହୁଏ ଭୋଟ ବେଙ୍କ ପାଇଁ ।

ଶଶି ଭୂଷଣ ରଥ ଜଣେ ନିଷ୍କାପଟ ସାହିତ୍ୟ କର୍ମୀ । କଂପାନୀର ଜଣେ ପଦସ୍ଥ ଅଧିକାରୀ । ସେ ମଧ୍ୟ PENର ସଦସ୍ୟ । ମୁଁ ତାଙ୍କୁ ଏକାଡେମୀର ସଦସ୍ୟ କରାଇଥିଲି । ଠିକ୍ ସେମିତି ଅଧ୍ୟାପିକା ଡଃ ସ୍ୱର୍ଣ୍ଣ ଦେବୀ । ସେ ମଧ୍ୟ ଜଣେ ଭଲ ଗାଳ୍ପିକା, ରାଜ୍ୟ ସ୍ତରରେ ତାଙ୍କ ନାଁ ଅଛି । ତାଙ୍କୁ ମଧ୍ୟ ଏକାଡେମୀର ସଦସ୍ୟ କରାଇଥିଲି । କୀର୍ତ୍ତନ ପରିଡ଼ା ଓ ପଶୁପତି ନାଥଙ୍କ କଥା ମୁଁ ଆଗରୁ କହିଚି । ମୋର ଏକାଡେମୀ ସହିତ ସମ୍ପର୍କ କଟି ଆସୁଥିବା ଦେଖି ଏବଂ ମୋ ବିରୁଦ୍ଧରେ ହେଇଥିବା ମିଛ ଅଭିଯୋଗ ଓ ସେ ସମୟରେ ସୃଷ୍ଟି ହେଇଥିବା ଦୂଷିତ ବାତାବରଣକୁ ଦେଖି ସ୍ୱର୍ଣ୍ଣଦେବୀ ଓ ଶଶିଭୂଷଣ ରଥ ଆସ୍ତେ ଆସ୍ତେ ଏକାଡେମୀରୁ ଦୂରତ୍ୱ ରଖିବାକୁ ଆରମ୍ଭ କଲେ । ଗୋଟାଏ ସାହିତ୍ୟିକ ବାତାବରଣ ଫେରେଇ ଆଣିବା ଉଦ୍ଦେଶ୍ୟରେ ମୁଁ ଏ ଦୁଇଜଣଙ୍କୁ ଭିନ୍ନ ଭିନ୍ନ ସମୟରେ ଉପସଭାପତି କରାଇଥିଲି । କିନ୍ତୁ ମୁଁ ଦେଖିଲି ସେମାନଙ୍କୁ ସବୁବେଳେ ଗୋଟାଏ ଅଲୋଡ଼ା ଅଙ୍ଗ ଭାବରେ ବ୍ୟବହାର କରାଗଲା । ଗୀତାଞ୍ଜଳି ପତ୍ରୀ ମଧ୍ୟ ଜଣେ ଭଲ ଲେଖିକା । ଯେ କୌଣସି ସାହାଯ୍ୟ ପାଇଁ ସେ ଆଗ ହାତ ବଢ଼ାଇ ଦେଉଥିଲେ । ତାଙ୍କୁ ମଧ୍ୟ ମୁଁ ଏକାଡେମୀକୁ ଆଣିଥିଲି । ସେତେବେଳେ ଏକାଡେମୀର ଛୋଟ ଛୋଟ ସାହିତ୍ୟ ଆସର ପାଇଁ ଆମ ପାଖରେ ଚେଆର ନଥିଲା । ମୁଁ ତାଙ୍କୁ କହି ପଚାଶଟି ଚେଆର କିଣି ଆଣିଥିଲି । କିନ୍ତୁ ସେ ମଧ୍ୟ ପରବର୍ତ୍ତୀ ଅବସ୍ଥାରେ ନିଜକୁ ଦୂରେଇ ନେଲେ ।

ଏକାଡେମୀର ପ୍ରଥମରୁ ଗୋଟାଏ ଅଲିଖିତ ନିୟମ ରଖା ଯାଇଥିଲା ଯେ ଏକାଡେମୀର ସଦସ୍ୟ ମାନେ ଅନ୍ୟ କୌଣସି ଅନୁଷ୍ଠାନର ସଦସ୍ୟତା ନେବେ ନାହିଁ । କିନ୍ତୁ କିଛି ସଦସ୍ୟ ତାକୁ ଅଗ୍ରାହ୍ୟ କରି ଲୁଚାଛପାରେ ଅନ୍ୟ ଅନୁଷ୍ଠାନରେ ମଧ୍ୟ ରହିଲେ । ଉପଦେଷ୍ଟା ହେଲେ କିଛି କ୍ଷତି ନାହିଁ ବୋଲି କହିଲେ ।

ଅଦ୍ୱୈତ ବିଶ୍ୱାଳ ଜଣେ କର୍ମଠ ଏବଂ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କଲା ଭଳି ବ୍ୟକ୍ତି । ସାଧାରଣ ସମ୍ପାଦକ ଥିଲା ବେଳେ ସେ ଅନେକଗୁଡ଼ିଏ କାମ କରିଥିଲେ, ଯୋଉ କାମ

ହୁଏତ ଅନ୍ୟ କେହି କରିପାରି ନଥିଲେ । କିନ୍ତୁ କେତେ ଜଣଙ୍କୁ ଏହା ମୋଟେ ସହ୍ୟ ହେଲା ନାହିଁ । ଅତି ସ୍ପଷ୍ଟ ଭାବେ ଜଣା ଯାଉଥିଲା ଯେ କେତେ ଜଣ ତାଙ୍କ ବିରୁଦ୍ଧରେ ଚକ୍ରାନ୍ତ କରୁଛନ୍ତି । ଶେଷରେ ସେ ଚକ୍ରାନ୍ତର ଶିକାର ହେଲେ । ସାଧାରଣ ସମ୍ପାଦକ ଥିଲାବେଳେ ସେ ବଜେଟ ବାହାରେ ଅର୍ଥଖର୍ଚ୍ଚ କରିଛନ୍ତି କହି ଜଣେ ଦି'ଜଣ ମିଟିଂରେ ବହୁ ଯୁକ୍ତିତର୍କ କଲେ । ଶେଷରେ ତାଙ୍କୁ କୌଣସି ପଦ ପଦବୀରେ ରଖାଯିବ ନାହିଁ ବୋଲି ନିଷ୍ପତ୍ତି ନିଆଗଲା । ଏପରିକି ଥରେ ଘଟଣାର ଅନେକ ଦିନ ପରେ ସେ ଭୁଲରେ କାର୍ଯ୍ୟକାରୀ ସମିତିକୁ ନିର୍ବାଚିତ ହୋଇଥିବାରୁ ପରେ ଦୁଇ ତିନି ଜଣ ସଦସ୍ୟ ତାଙ୍କ ଘରକୁ ଯାଇ ଅଦ୍ୱୈତ ବାବୁଙ୍କୁ ନିଜ ପଦବୀରୁ ଓହରି ଯିବାକୁ ଅନୁରୋଧ କରିଥିଲେ । ଅଦ୍ୱୈତ ବାବୁ ସେଇ ଦିନଠୁ ଏକ ପ୍ରକାର ଅଛବ ଭଳିଆ ଅଛନ୍ତି । ଅବଶ୍ୟ ଏବେ କିଛିଟା ବଦଳୁଛି ।



# ଲେଖକ ସାମ୍ମୁଖ୍ୟ ଗଠନ

ଏଇପରି ଏକ ସ୍ଥିତିରେ ଛେଣ୍ଡ କଲୋନୀରେ ଓ ତା'ର ପାଖାପାଖି ଏରିଆରେ ବାସ କରୁଥିବା କିଛି ଲେଖକ ଥରେ ମୋତେ କହିଲେ ଆମେ ଛେଣ୍ଡ୍ କଲୋନୀରେ ଗୋଟାଏ ଅନୁଷ୍ଠାନ କଲେ ହୁଅନ୍ତାନି । କଲଚରାଲ ଏକାଡେମୀଟା ଛେଣ୍ଡ୍ରୁ ଅନେକ ଦୂର ହେଇଯାଉଚି । ସେତେବେଳକୁ ଛେଣ୍ଡରେ ପ୍ରାୟ ୬/୭ ଜଣ ଲେଖକ ସ୍ଥାୟୀ ଭାବରେ ବସବାସ କଲେଣି । ପାଖାପାଖି ଅଂଚଳ କହିଲେ ଉଦିତ ନଗର, ସିଭିଲ ଟାଉନସିପ ଓ ତା' ଭିତରେ ସରକାରୀ କଲେଜ, ମ୍ୟୁନିସିପାଲ କଲେଜ ଓ ଉଦିତ ନଗର ହାଇସ୍କୁଲ ମଧ୍ୟ ଆସିବ । ଏଇ ସବୁ ଜାଗାରେ ବେଶ କିଛି କବି ଲେଖକ ଅଛନ୍ତି । ପାଖାପାଖି ସେକ୍ଟର ଆଠ, ନଅ, ତେର ଓ ଚଉଦ ମଧ୍ୟ ଅଛି । ପ୍ରସ୍ତାବଟା ମୋତେ ପ୍ରଥମେ ସୁନୀଲ ମହାନ୍ତି ହିଁ ଦେଇଥିଲେ । ତାଙ୍କର ଉତ୍ସାହ ଥିଲା ବେଶୀ । ଆମେ ଏ ବିଷୟରେ ଅନ୍ୟମାନଙ୍କ ସହ କଥାବାର୍ତ୍ତା କଲୁ । ସେତେବେଳେ ଓଡ଼ିଶାର ଜଣେ ଜଣା ଶୁଣା ଲେଖକ ରାଜ୍ୟ ବର୍ଦ୍ଧନ ଧଳ ମହାପାତ୍ର ସେଇ ଛେଣ୍ଡରେ ରହୁଥିଲେ । ସେ କୌଣସି ଗୋଟିଏ ବେଙ୍କରେ ଚାକିରି କରୁଥିଲେ । ତାଙ୍କ ସ୍ତ୍ରୀ ପୁଷ୍ପା ମଧ୍ୟ ଲେଖାଲେଖି କରନ୍ତି । ସ୍ୱର୍ଣ୍ଣ ଦେବୀ, ଗୀତାଞ୍ଜଳି ପତ୍ରୀ, ଜ୍ୟୋସ୍ନା କୁମାରୀ ନାୟକ ଏ ସମସ୍ତେ ଛେଣ୍ଡରେ ।

କଥାଟା ସମସ୍ତଙ୍କ ମନକୁ ପାଇଲା । ସମସ୍ତେ ମଧ୍ୟ ଆଗ୍ରହ ପ୍ରକାଶ କଲେ । ଛେଣ୍ଡ କୁଆଡ଼େ ଏସିଆର ବୃହତ୍ତମ କଲୋନୀ । ତେବେ ଏଠି ନୂଆ ସାହିତ୍ୟାନୁଷ୍ଠାନଟିଏ ଗଢ଼ି ଉଠିଲେ କ୍ଷତି କଅଣ ? କବି ଓ ଲେଖକମାନେ ହେଲେ ନିଶାଖୋର । ଛୋଟ ହେଉ

ବରଂ ସେମାନେ ଅନ୍ତତଃ ମାସରେ ଥରେ ଏକାଠି ହେବେ ଏବଂ ନିଜ ନିଜ ଲେଖା ପଢ଼ିବେ । ପରସ୍ପରକୁ ଜାଣିବେ, ବୁଝିବେ । ମନର ଏଇ ଖାଦ୍ୟଟା ଛେଣ୍ଡରେ ମିଳୁ ନଥିଲା । ସେ ଅଭାବ ପୂରଣର ଆବଶ୍ୟକତା ଥିଲା । ସୁନୀଲ ମହାନ୍ତି ହିଁ ମୋ ନାମରେ ପ୍ରଥମ ମିଟିଂଟିଏ ଡାକିଲେ ୨୦୦୮ ଜାନୁଆରୀ ୫ ତାରିଖ ସନ୍ଧ୍ୟାରେ ଛେଣ୍ଡର ଗୋପବନ୍ଧୁ ପାଠାଗାରରେ । ପାଠାଗାରର ସାଧାରଣ ସମ୍ପାଦକ ହରିହର ଶତପଥୀ ମଧ୍ୟ ବେଳେ ବେଳେ କବିତା ଲେଖନ୍ତି । ଆଗ୍ରହ ଅଛି କବିତା ପ୍ରତି । ବାସ୍ ସେଇ ଦିନହିଁ ଅନୁଷ୍ଠାନଟିଏ ଗଢ଼ାହେଲା । ରାଜ୍ୟ ବର୍ଦ୍ଧନ ବାବୁଙ୍କ ପ୍ରସ୍ତାବ ଅନୁସାରେ ତାର ନାମ ରଖାଗଲା 'ସୁନ୍ଦରଗଡ଼ ଜିଲ୍ଲା ଲେଖକ ସାମ୍ମୁଖ୍ୟ, ରାଉରକେଲା' । ମୁଁ ପ୍ରଥମରୁ କହିଥିଲି ଏପରି ଅନୁଷ୍ଠାନ ହେଉ ଯା'ର ପରିସର ସମଗ୍ରଜିଲ୍ଲାକୁ ବ୍ୟାପୀ ଥିବ । ସବୁ ଲେଖକ, କଳାକାର, ଚିତ୍ରଶିଳ୍ପୀ ଗୋଟିଏ ଛତା ତଳେ ରହିବେ । ପରେ ତା'ର କ୍ଷେତ୍ର ବଢ଼ିବ । କାର୍ଯ୍ୟକ୍ରମ ମଧ୍ୟ ବଢ଼ିବ । ପ୍ରବଳ ଉତ୍ସାହ ସମସ୍ତଙ୍କଠାରେ । ସେଇଦିନ ହିଁ ପ୍ରେସ ବିଜ୍ଞପ୍ତି ପଠେଇ ଦିଆଗଲା । ଅନୁଷ୍ଠାନର ସଂବିଧାନ ଚିଠା ତିଆରି ପାଇଁ ସେଇ ରାଜ୍ୟବର୍ଦ୍ଧନ ବାବୁଙ୍କୁ ଦାୟିତ୍ୱ ଦିଆଗଲା । ଗୋଟିଏ ଦୁଇ ଜଣିଆ କମିଟି ଗଠିତ ହେଲା ।

କଥାଟା ରାଉରକେଲାର ସାହିତ୍ୟ ମହଲରେ ଚହଳ ସୃଷ୍ଟି କଲା । ମୋତେ ପ୍ରଥମେ ଦେବେନ୍ଦ୍ର ମହାନ୍ତି ହିଁ ପଚାରିଲେ, 'ନୂଆ ଅନୁଷ୍ଠାନଟିଏ ଗଢ଼ିଲେ କି?' ମୁଁ ହସିଲି । କି ଉତ୍ତର ଦେବି ? ମୋର ସେ ଅତି ଆପଣାର । ଚମତ୍କାର ଗଳ୍ପଲେଖନ୍ତି । ମୁଁ କହିଲି ନିରୁତା ସାହିତ୍ୟ ମରିମରି ଆସୁଥିବା ବେଳେ ଭାବୁଚି ତାକୁ ବଂଚେଇ ରଖିବାକୁ ଗୋଟାଏ ଚେଷ୍ଟା। ସେ କହିଲେ ଭଲ ହେବ । ଏଇଠି ମୁଁ ରଜନୀକାନ୍ତ ଦାସଙ୍କ ଗଠିତ ବେଦବ୍ୟାସ ଫାଉଣ୍ଡେସନ୍ ଆଭିମୁଖ୍ୟକୁ ସାମନାକୁ ଆଣୁଚି । ବିନୋଦ ନାୟକ ଥିଲେ ତାର ସଭାପତି ଓ ମୁଁ ଥିଲି ସାଧାରଣ ସଂପାଦକ । ଠିକ୍ କଥା କହିଲେ ଏହି ଫାଉଣ୍ଡେସନରୁ ହିଁ ଲେଖକ ସାମ୍ମୁଖ୍ୟର କଳ୍ପନା ।

ସେ ଯାହେଉ, ଠିକ୍ ତା'ପର ମାସ ଫେବୃଆରୀ ୧୭ରେ ଛେଣ୍ଡର ରାମକୃଷ୍ଣ ହାଇସ୍କୁଲରେ ସମଗ୍ର ସୁନ୍ଦରଗଡ଼ ଜିଲାର ଲେଖକମାନଙ୍କୁ ନେଇ ଗୋଟାଏ ଆଲୋଚନା ଚକ୍ରର ଆୟୋଜନ ହେଲା । ରାଜ୍ୟବର୍ଦ୍ଧନବାବୁ ସଭାପତିତ୍ୱ କଲେ । ମୁଁ ଥିଲି ସଂଯୋଜକ । ସୁନ୍ଦରଗଡ଼, ବଣେଇ ଓ ବୀରମିତ୍ରପୁର ସମେତ ରାଉରକେଲାର ସବୁ ଅନୁଷ୍ଠାନ ମଧ୍ୟ ଏଥିରେ ଯୋଗ ଦେଲେ । ଏପ୍ରକାର ସାହିତ୍ୟ ସଭା ରାଉରକେଲାରେ ପ୍ରଥମ । ଆଲୋଚନାର ବିଷୟ ଥିଲା 'ସୁନ୍ଦରଗଡ଼ର ଭାଷା ଓ ସାହିତ୍ୟ' । ପ୍ରବନ୍ଧ ପଢ଼ିଲେ ଦେବେନ୍ଦ୍ର ମହାନ୍ତି, ଡଃ ସ୍ୱର୍ଣ୍ଣ ଦେବୀ ଓ ଡଃ ସୁପ୍ରିୟା ପାଲ । ମୁଖ୍ୟ ଅତିଥି ଓ ମୁଖ୍ୟ ବକ୍ତା ଯଥାକ୍ରମେ ସୋମନାଥ ମିଶ୍ର ଓ ଡଃ ଦେବେନ୍ଦ୍ର ମୋହନ ପ୍ରହରାଜ । ଅପୂର୍ବ ସଫଳତା ବୋଲି

ସମସ୍ତେ କହିଲେ । ଏକ ଦିବସୀୟ ସଭାରେ ଗିରି ଦଣ୍ଡସେନା ଓ ରମେଶ ବେହେରା ମଧ୍ୟ ଭାଗନେଲେ ଏବଂ ସମସ୍ତେ ଆଗେଇ ଯିବାକୁ ଉପଦେଶ ଦେଲେ । ସାହାଯ୍ୟର ହାତସବୁ ଆଗେଇ ଆସିଲା ।

ସେ ବର୍ଷ ସୁନ୍ଦରଗଡ଼ରେ ହେଲା ମହାସମାରୋହରେ ବିନୋଦ ନାୟକ ଜୟନ୍ତୀ । ଗୋଟାଏ ବିରାଟ ଶୋଭାଯାତ୍ରାରେ କବି ଓ ଲେଖକମାନେ ଯୋଗ ଦେଲେ କବିଙ୍କ ଜନ୍ମସ୍ଥାନରେ । ବିରାଟ ସଭା ହେଲା ପ୍ରଗତି ହଲରେ । ଲେଖକ ସାମ୍ମୁଖ୍ୟ ଆଉ ପଛକୁ ଦେଖିନାହିଁ । ୨୦୧୧ରେ ଆତ୍ମ ପ୍ରକାଶ କଲା ତ୍ରୟୋମାସିକ ସାହିତ୍ୟ ପତ୍ରିକା 'ନାଗରା' । ଏବେ ତା'ର ଅଷ୍ଟମ ବର୍ଷ ସରିବାକୁ ବସିଛି । ଲେଖକ ସାମ୍ମୁଖ୍ୟ ଯେମିତି ସୁନ୍ଦରଗଡ଼ ଜିଲା ଅତିକ୍ରମ କରି ସମ୍ବଲପୁର, ଝାରସୁଗୁଡ଼ା, ଦେବଗଡ଼ ଓ କେନ୍ଦୁଝରରେ ପହଂଚି ସାରିଲାଣି । ଠିକ୍ ସେମିତି 'ନାଗରା'ମଧ୍ୟ ଓଡ଼ିଶା ଅତିକ୍ରମ କରି ଦିଲ୍ଲୀ, କଲିକତା, ମୁମ୍ବାଇ, ବାଙ୍ଗାଲୁରୁ ପ୍ରଭୃତି ସ୍ଥାନରେ ଆଦର ଲାଭ କରି ସାରିଲାଣି । ଗୋଟାଏ ସମ୍ଭ୍ରାନ୍ତ ପତ୍ରିକା ହିସାବରେ ପାଠକ ମହଲରେ ପରିଚୟ ସୃଷ୍ଟି କଲାଣି । ମୁଁ ତା'ର ସମ୍ପାଦକ ।

ଏ ସବୁ ଆମକୁ ଏତେ ଉତ୍ସାହିତ କଲା ଯେ ଆମେ ସେଇଠି ଘୋଷଣା କଲୁଁ ଲେଖକ ସାମ୍ମୁଖ୍ୟ ପ୍ରତି ବର୍ଷ ସୁନ୍ଦରଗଡ଼ରେ ହିଁ କବି ବିନୋଦ ନାୟକ ଜୟନ୍ତୀ ପାଳନ କରିବ ଏବଂ ଅନ୍ୟାନ୍ୟ ଜୟନ୍ତୀ ଯଥା ଫକୀରମୋହନ, ଗଙ୍ଗାଧର ଜୟନ୍ତୀ ପ୍ରଭୃତି ଜିଲାର ଅନ୍ୟାନ୍ୟ ସ୍ଥାନରେ ଅନୁଷ୍ଠିତ ହେବ । ମନରେ ଗୋଟାଏ ଦମ୍ଭ ଆସିଲା ଯେ ଯା' ହେଉ ପ୍ରଥମ ଥର ପାଇଁ ରାଉରକେଲାରେ ଗୋଟାଏ ଜିଲାସ୍ତରୀୟ ସାହିତ୍ୟ ଅନୁଷ୍ଠାନଟିଏ ଗଢ଼ା ହେଇପାରିଛି । ଅଳ୍ପ ଦିନ ଭିତରେ ତାର ପବ୍ଲିସିଟି ମଧ୍ୟ ଖୁବ୍ ବଢ଼ିଗଲା । ପ୍ରତି ମାସରେ ନିୟମିତ ଭାବରେ ମାସିକ ଆସର ହେଉଥାଏ । (ଏବେ ଏହି ଅନୁଷ୍ଠାନର ସମସ୍ତ କାର୍ଯ୍ୟର ବିବରଣୀ ମିଳିବ ତାର ପେପର କଟିଂ ରେଜିଷ୍ଟାରରୁ) ।

ଏକାଡେମୀ ସହିତ ସମ୍ପର୍କ ପୂର୍ବପରି । ନିହାତି ବେଳେବେଳେ ଡକରା ପଡ଼ିଲେ ଯିବା କଥା । ମାସିକ ଆସରକୁ ମଧ୍ୟ ଯାଏଁ । ଆଜିକାଲି ସାଧାରଣତଃ କବିତା ପାଠୋତ୍ସବମାନଙ୍କରେ ଯାହା ହୁଏ ସେକଥା ସମସ୍ତେ ଜାଣନ୍ତି । ଯୋଉମାନେ କେବେ କବିତା ନଲେଖନ୍ତି ସେମାନେ ସେଠି ଯାଇ କବିତା ପଢ଼ନ୍ତି ଏବଂ ଯୋଉମାନେ ସାହିତ୍ୟର ଧାର ଧାରନ୍ତି ନାହିଁ ସେମାନେ କବିତାର ଉତ୍ତର ଆଧୁନିକତା ଉପରେ ବୌଦ୍ଧିକ ଭାଷଣ ଦିଅନ୍ତି । ସାରା ଓଡ଼ିଶାରେ ଏ ଛବି ବିଛାଡ଼ି ହେଇ ପଡ଼ିଛି । ସାହିତ୍ୟ ପତ୍ରିକାର ସଂଖ୍ୟା ମଧ୍ୟ ଆଶାତୀତ ଭାବରେ ବୃଦ୍ଧି ପାଇଛି । ମନକୁ ସ୍ୱାଭାବିକ ଭାବେ ଆସେ 'କି ଥିଲା ଏରାଜ୍ୟ କି ହୋଇଛି ଆଜ /ଦେଖୁ ନାହାନ୍ତି କି ମନେ ବହି ଲାଜ ?'

ଯିଏ ରାଜନୀତି ଜାଣି ନଥିବ, ସମାଜସେବା ଶବ୍ଦର ନାଁ ଶୁଣି ନଥିବ, ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ପ୍ରତି ସଂବେଦନ ହେଉ ନଥିବ ତାକୁ ଯଦି ହଠାତ୍ ରାଜସିଂହାସନରେ ବସେଇ ଦିଆଯାଏ ତେବେ କଅଣ ହେବ? ଗୋଟାଏ ମିଛ ଅହମିକା ତାକୁ ଆବୋରି ପକାଇବ ।

୨୦୦୯ରେ କଲଚରାଲ ଏକାଡେମୀର ବାର୍ଷିକ ସାଧାରଣ ଅଧିବେଶନ ଚାଲିଥାଏ। ସଭାପତିତ୍ୱ କରୁଥାଆନ୍ତି ବିଶିଷ୍ଟ ସାହିତ୍ୟିକ ଦେବେନ୍ଦ୍ର ମହାନ୍ତି । କର୍ମକର୍ତ୍ତା ନିର୍ବାଚନ ବେଳେ ହଠାତ୍ ରଘୁନାଥ ବିଶ୍ୱାଳ ହାତଯୋଡ଼ି ଠିଆ ହେଲେ ଏବଂ କହିଲେ 'ମୁଁ ନମ୍ରତାର ସହିତ ନିବେଦନ କରୁଚି ଶ୍ରୀଯୁକ୍ତ ଭୂପେନ୍ ମହାପାତ୍ର ଏଥର ସାଧାରଣ ସମ୍ପାଦକ ପଦ ଗ୍ରହଣ କରନ୍ତୁ । ସମସ୍ତେ ଚୁପ । ସେତେବେଳେ ଗୋଟିଏ ଅଲିଖିତ ନିୟମ କରା ଯାଇ ଥାଏ ଯେ କାର୍ଯ୍ୟକାରୀ ସମିତିରେ ମୁଖ୍ୟ ପଦବୀରେ କୌଣସି ସଦସ୍ୟ ଲଗାତର ଭାବେ ଦୁଇଥରରୁ ଅଧିକ ରହିବେ ନାହିଁ । ସେ ହିସାବରେ ଅକ୍ଷୟ ସାମଲ ଦୁଇ ଥର ସାଧାରଣ ସଂପାଦକ ହେଇ ସାରିଚନ୍ତି । ତାଙ୍କ ସ୍ଥାନ ପୂରଣ ହେବା ଦରକାର । ମୋତେ ଦେବେନ୍ଦ୍ର ବାବୁ ଆଗରୁ କହି ଦେଇଥିଲେ । 'ମନା କରିବେ ନାହିଁ, ଆପଣଙ୍କ ପ୍ରତି ଯୋଉ ଅନ୍ୟାୟ ହେଇଚି ତା'ର ପ୍ରାୟଶ୍ଚିତ୍ତ ଆବଶ୍ୟକ ।' ମୁଁ ଏଥିରେ ମନା କରି ପାରିଲି ନାହିଁ । ଭାବିଲି ବୃହତ୍ତର ସ୍ୱାର୍ଥଟିଏ ଅଛି ଆଗରେ । ଏକାଡେମୀର ସୁବର୍ଣ୍ଣ ଜୟନ୍ତୀ ହେବ ୨୦୧୧ରେ । ଅନେକ କିଛି କରିବାକୁ ଅଛି । ଅନ୍ତତଃ ସମସ୍ତେ ଜାଣିବେ ଗତ ଅର୍ଦ୍ଧଶତାବ୍ଦୀ ଭିତରେ ଏକାଡେମୀ କ'ଣ କରିଛି ? ଓଡ଼ିଆ ସାହିତ୍ୟରେ ତା'ର କି ପ୍ରଭାବ ପଡ଼ିଛି ? ଏ ବିଷୟରେ ତ ଆମେ ଆଗରୁ ଅନେକ ଥର କଥାବାର୍ତ୍ତା କରିଛୁ । ଏବେ ତା'ର ମୂଳଦୁଆ ନପଡ଼ିଲେ ୨୦୧୧ରେ କାମ ହେଇ ପାରିବ ନାହିଁ । ଶିଳ୍ପାଂଚଳ ସାହିତ୍ୟ ସମ୍ମିଳନୀ ଉପରେ ଏବେ ବହୁଳ ଭାବରେ ଆଲୋଚନା ହେଇଛି । ବିଭିନ୍ନ କଲେଜରେ ସେମିନାର ସବୁ ହେଇଛି ଏବଂ ସେ ସାହିତ୍ୟ ସମ୍ମିଳନୀ ସେତେବେଳେ ଏପରି ଆଲୋଚନା ପାଇଁ ବାଟ ତିଆରି କରିଚି ସେ ସବୁ ଦେଖିବାର କଥା । ତା'ର ବିଶଦ ଆଲୋଚନା ହେଲେ କଲଚରାଲ ଏକାଡେମୀର ଭାଷା ଓ ସାହିତ୍ୟ ଉପରେ ପଡ଼ିଥିବା ପ୍ରଭାବ ସ୍ପଷ୍ଟ ହେଇଯିବ । ଗୋଟିଏ ସାହିତ୍ୟାନୁଷ୍ଠାନର ସୁବର୍ଣ୍ଣ ଜୟନ୍ତୀ ପାଳନ ମୂଳରେ ଏହାହିଁ ମୁଖ୍ୟ ଉଦ୍ଦେଶ୍ୟ । ଦେବେନ୍ଦ୍ର ମହାନ୍ତି ସଭାପତି ଥିବାରୁ ମୁଁ ଖୁସି ଥିଲି । ଅନ୍ତତଃ ଏଇ ଅବସରରେ ସୁବର୍ଣ୍ଣ ଜୟନ୍ତୀର ରୂପରେଖ କଅଣ ହେବ ତାର ପ୍ରସ୍ତୁତି ଜରୁରୀ । ଗୋଟିଏ ରାଜ୍ୟ ସ୍ତରୀୟ ସାହିତ୍ୟ ସଭା କରି ଏବଂ ଶିଳ୍ପାଂଚଳ ସାହିତ୍ୟ ସମ୍ମିଳନୀ ଅବସରରେ ଯେଉଁ ପରି ଭାବରେ ବହୁ ଉଚ୍ଚମାନର ଲେଖା ଭାରତର ବିଶିଷ୍ଟ ଲେଖକମାନଙ୍କଠାରୁ ଆଣି ସ୍ୱତନ୍ତ୍ର ସ୍ମରଣିକା (ପୁସ୍ତକ ଆକାରରେ) ପ୍ରକାଶ କରା ଯାଇଥିଲା ସେପରି ହେବା ଦରକାର । ଏ ବିଷୟରେ ବିସ୍ତୃତ

ଆଲୋଚନା ମୁଁ ଦେବେନ୍ଦ୍ର ବାବୁଙ୍କ ସହିତ କରିଥିଲି । ଏଥିରେ କେନ୍ଦ୍ର ସାହିତ୍ୟ ଏକାଡେମୀ, ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ସଂସ୍କୃତି ବିଭାଗ ଏବଂ ଖାସ କରି ରାଉରକେଲା ଷ୍ଟିଲ ପ୍ଲାଂଟ ଏବଂ ସ୍ଥାନୀୟ ଶିଳ୍ପ କାରଖାନା ଯେଉଁମାନେ ଏକାଡେମୀର କାର୍ଯ୍ୟ ସହିତ ଆଗରୁ ସମ୍ପର୍କ ରଖିଆସିଥିଲେ ରଜନୀ ବାବୁଙ୍କ ସମୟରେ ସେମାନଙ୍କୁ ଏଥିରେ ସଂପୃକ୍ତ କରାଯିବ । କେନ୍ଦ୍ର ସଂସ୍କୃତି ବିଭାଗକୁ ସାଥିରେ ନେବାକଥା ଆମେ ଚିନ୍ତା କରିଥିଲୁ । କିନ୍ତୁ ନିକଟ ଅତୀତରେ ଯୋଉ ଘଟଣା ଘଟି ଯାଇଥିଲା ସେଇ ପରିପ୍ରେକ୍ଷୀରେ ଆମ ପ୍ରସ୍ତାବକୁ ସେମାନେ କିପରି ଗ୍ରହଣ କରି ଥାଆନ୍ତେ ସେଥିରେ ଆମର ସନ୍ଦେହ ସୃଷ୍ଟି ହେଇଥିଲା । ଏପରିକି ଓଡ଼ିଶା ସଂସ୍କୃତି ବିଭାଗ ମଧ୍ୟ କଥାଟାକୁ କିପରି ଭାବରେ ଗ୍ରହଣ କରିବେ ସେ କଥାରେ ମଧ୍ୟ ଆମେ ସନ୍ଦିହାନ ଥିଲୁ । ରାଉରକେଲା ଷ୍ଟିଲପ୍ଲାଂଟ ବିଷୟରେ ମଧ୍ୟ ଆମେ କଥାଟାକୁ ଆଉଥରେ ଚିନ୍ତା କରୁଥିଲୁ । ତାର କାରଣ ଗତକେତେ ବର୍ଷ ହେଲା ଏକାଡେମୀର କେତେକ କାମରେ କାରଖାନା କର୍ତ୍ତୃପକ୍ଷ ଖୁବ୍ ବେଶୀ ଆଗ୍ରହ ପ୍ରକାଶ କରୁଥିବାର ମନେହେଉନି । ପୂର୍ବରୁ ଆମର ଲୋକନାଟକ ମହୋତ୍ସବ କିମ୍ବା ଚାରୁକଳା ବିଦ୍ୟାଳୟର ବାର୍ଷିକ ଉତ୍ସବମାନଙ୍କରେ ଷ୍ଟିଲପ୍ଲାଂଟର ମେନେଜିଂ ଡାଇରେକ୍ଟର ମୁଖ୍ୟଅତିଥି ଭାବରେ ଯୋଗଦେଉଥିଲେ । ଏସମ୍ପର୍କ ଆମର ଏତେ ନିବିଡ଼ଥିଲା ଯେ ଆମେ ତାକୁ ଗୋଟାଏ ପବିତ୍ର ପରମ୍ପରା ଭାବରେ ଗ୍ରହଣ କରିନେଇଥିଲୁଁ । ଦେବେନ୍ଦ୍ର ବାବୁ କହିଲେ ଯଦି କର୍ତ୍ତୃପକ୍ଷଙ୍କ ମନରେ କୌଣସି ଭିନ୍ନ ଧାରଣା ସୃଷ୍ଟି ହେଉଥିବ ତେବେ ଆମେ ଥରେ ମୁଖ୍ୟଙ୍କୁ ଦେଖାକରି ସେ ପୂର୍ବ ସମ୍ପର୍କ ଫେରେଇ ଆଣିବାକୁ ଚେଷ୍ଟା କରିବା ଉଚିତ । ସେତକ ଆଗରୁ ହେଇ ନଥିଲେ ମଧ୍ୟ ଏବେ କରିବା । କାରଣ ଆମର ଯେ କୌଣସି କାମରେ ଷ୍ଟିଲ ପ୍ଲାଂଟ୍‌ର ଆନ୍ତରିକ ସାହାଯ୍ୟ/ସହଯୋଗ ଅପରିହାର୍ଯ୍ୟ । ମୁଁ ଏଥିରେ ରାଜି ହେଲି । ମୁଁ ଚିଠା ସେଇ ଅନୁସାରେ ପ୍ରସ୍ତୁତକଲି । ତାହା ପ୍ରଥମେ କାର୍ଯ୍ୟକାରୀ ସମିତିରେ ମଞ୍ଜୁର ହେବା ଦରକାର ।

ସୁବର୍ଣ୍ଣ ଜୟନ୍ତୀରେ ଆବଶ୍ୟକ ହେଉଥିବା ବିରାଟ ଆର୍ଥିକ ଅଂଶ କଥା ମଧ୍ୟ ଆମେ ଚିନ୍ତା କରିଥିଲୁଁ । ଅତି କମ୍‌ରେ ପାଂଚ ଲକ୍ଷ ଖର୍ଚ୍ଚ ହେବ ବୋଲି ଅଟକଳ କରିଥିଲୁ । ଅନ୍ତତଃ ଓଡ଼ିଶା ସଂସ୍କୃତି ବିଭାଗ, ଓଡ଼ିଶା ସାହିତ୍ୟ ଏକାଡେମୀ, ଇସ୍ପାତ କାରଖାନା ଛଡ଼ା ଏହା ସମ୍ଭବ ନୁହେଁ ଏବଂ ତେଣୁ ବ୍ୟକ୍ତିଗତ ଭାବରେ ସେମାନଙ୍କୁ ଭେଟିବାକୁ ଆମେ ମନେ ମନେ ସ୍ଥିର କରିଥିଲୁଁ । ମୋ ମନରେ ଏସବୁ ଥାଏ । ଏହି ଅବସରରେ ମୁଁ ଥରେ ଭୁବନେଶ୍ୱର ଯାଇଥିଲାବେଳେ ବିଶିଷ୍ଟ ଲେଖକ ଅଧ୍ୟାପକ ଡଃ ବିଜୟାନନ୍ଦ ସିଂହଙ୍କ ସହିତ ଭେଟ ହେଲା । ସେ ସେତେବେଳେ ରାଜ୍ୟ ଅଭିଲେଖାଗାରରେ ଡେପୁଟି ସେକ୍ରେଟେରୀ ଦାୟିତ୍ୱରେ ଥାଆନ୍ତି । ତାଙ୍କ ସହିତ ମୋର ଅନେକ ଦିନର ସମ୍ପର୍କ । ପ୍ରସଙ୍ଗ

କ୍ରମେ ମୁଁ ତାଙ୍କ ସହିତ ଆମ ଏକାଡେମୀର ସାଧାରଣ ସମ୍ପାଦକ ଥିବା କଥା କହିବାରୁ ସେ ତାର ସଦସ୍ୟ ହେବାକୁ ଆଗ୍ରହ ପ୍ରକାଶ କଲେ । ମୁଁ ଏହାକୁ ଏକ ସୁଯୋଗ ବୋଲି ଭାବିଲି । ତାଙ୍କ ପରି ଜଣେ ସୁପ୍ରତିଷ୍ଠିତ ସାହିତ୍ୟିକ, ଗବେଷକ ଏବଂ ଉତ୍ତମ ସଂଗଠକ ଆମ ଏକାଡେମୀକୁ ଆସିଲେ ଆମ ଅନୁଷ୍ଠାନର ଚେହେରା ବଦଳିଯିବ ଏଥିରେ ସନ୍ଦେହ ନାହିଁ । ଏକଦା ଡକ୍ଟର ଶ୍ରୀଚରଣ ମହାନ୍ତି ଓ ଓଡ଼ିଶାର ଅନ୍ୟତମ ବିଶିଷ୍ଟ ସାହିତ୍ୟ ସମାଲୋଚକ, ଗବେଷକ ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ରାଉରକେଲାରେ ଥିବାବେଳେ ଏକାଡେମୀର ସଦସ୍ୟ ଥିଲେ । କିନ୍ତୁ ଏକାଡେମୀ ସେମାନଙ୍କୁ ସବୁବେଳେ ଏକ ଘରିକିଆ କରି ରଖିଥିଲା । ଏକସମୟରେ ପ୍ରବୀଣ ଗବେଷକ ଅଧ୍ୟାପକ କୈଳାସ ଚନ୍ଦ୍ର ଦାଶ ମଧ୍ୟ ଥିଲେ । କିନ୍ତୁ ମୋ ଜାଣିବାରେ ସେମାନଙ୍କୁ ଆମେ ଅଜଣା ଅଶୁଣା ଭାବରେହିଁ ମର୍ଯ୍ୟାଦା ଦେଇ ଆସିଛୁଁ । ଏଥିରେ ଏକାଡେମୀର ଯେ ପ୍ରଭୂତ କ୍ଷତି ହେଇଛି ଏଥିରେ ସଂଦେହ ନାହିଁ

ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ଓ ଡଃ ଶ୍ରୀଚରଣ ମହାନ୍ତି 'ପ୍ରଗତି ଉତ୍କଳ ସଙ୍ଘ' ସହିତ ସଂପୃକ୍ତ ଥିଲେ । ପ୍ରଗତି ଉତ୍କଳ ସଂଘ ଓ ଆଦର୍ଶ ପାଠାଗାର ଦୁଇଟି କଲଚରାଲ ଏକାଡେମୀର ଜନ୍ମର ସାମାନ୍ୟ ଦୁଇ /ଚାରି ବର୍ଷର ପୂର୍ବରୁ ପ୍ରତିଷ୍ଠିତ । କିନ୍ତୁ ଏବେ ଏ ଦୁଇ ପାଠାଗାର ଓ କଲଚରାଲ ଏକାଡେମୀକୁ ଦେଖିଲେ ବିସ୍ମିତ ହେବାକୁ ପଡ଼େ । ବାସ୍ତବତା ଦୃଷ୍ଟିରୁ ଦେଖିଲେ କଲଚରାଲ ଏକାଡେମୀ ଗୋଟିଏ ନିରୋଳ ସାହିତ୍ୟାନୁଷ୍ଠାନ ହେଇଥିବାରୁ ପାଠାଗାର କେବଳ ପୁସ୍ତକ ସଂରକ୍ଷଣ କରିଥାଏ । ପ୍ରଗତି ଉତ୍କଳ ସଂଘ ଏବେ ଗୋଟିଏ ବିରାଟ ତଥା ରାଜ୍ୟସ୍ତରୀୟ ଅନୁଷ୍ଠାନରେ ପରିଣତ ହେଇଥିବା ବେଳେ ଆଦର୍ଶ ପାଠାଗାର ମଧ୍ୟ ସମ୍ମାନର କମ୍ ଉଚ୍ଚତାକୁ ଉଠିନାହିଁ ! ପ୍ରଗତି ଉତ୍କଳ ସଂଘ ବର୍ଷକୁ ଯେତିକି ଉଚ୍ଚମାନର ସାହିତ୍ୟ ସଭାର ଆୟୋଜନ କରୁଛି ଏବଂ ଯେତିକି ଗବେଷଣା ମୂଳକ ଗ୍ରନ୍ଥ ପ୍ରକାଶ କରୁଛି ତାହା ଏବେ ଅନ୍ୟ ପାଇଁ ଚିନ୍ତାର ବାହାରେ । ଇସ୍ପାତ ସାହିତ୍ୟ ସଂସଦର ଜନ୍ମ ସତୁରୀ ଦଶକରେ । ଅର୍ଥାତ୍ ଏକାଡେମୀ ଜନ୍ମର ଅନେକ ପରେ । ଅଥଚ ସେମାନେ ଆଜି କେଉଁଠି ଅଛନ୍ତି ତାହା ଦେଖିବାର କଥା । ଦୁଇଟିଯାକ ପାଠାଗାର ଏବଂ ଇସ୍ପାତ ସାହିତ୍ୟ ସଂସଦ ଏବେ ନିଜ ନିଜ ରାଜପ୍ରାସାଦରେ ବୋଲି କହିବାକୁ ହେବ । ଏହି ସବୁ ଅନୁଷ୍ଠାନର ସଦସ୍ୟମାନଙ୍କର ଅନୁଷ୍ଠାନକୁ ଆର୍ଥିକ ସହାୟତା ପ୍ରମାଣ କରେ ଯେ ସେମାନେ ତ୍ୟାଗର ଚରମ ସୀମାରେ । ସେମାନେ ୩୦ ହଜାର ୩୫ ହଜାର ଅକୁଣ୍ଠିତ ଚିତ୍ତରେ ଦାନ କରୁଛନ୍ତି । ସେ ଦାନର ତାଲିକା ଦେଖିଲେ ସେଇ ମହତମାନଙ୍କଠାରେ ମୁଣ୍ଡ ନଇଁଯାଏ ।

ପ୍ରଗତି ଉତ୍କଳ ସଂଘର ପ୍ରକାଶନର ତାଲିକା ଦେଖିଲେ ଆଖି ଖୁସି ହେଇଯାଏ । ଗତ ୫୦ ବର୍ଷ ଭିତରେ ୧୯ଟି ଅତି ଉନ୍ନତ ମାନର ପୁସ୍ତକ ସେମାନେ ପ୍ରକାଶ କରିଛନ୍ତି

ଏବଂ ଏଗୁଡ଼ିକ ବିଶେଷ କରି ସାହିତ୍ୟ ଓ ଇତିହାସର ଦୁର୍ମୂଲ୍ୟ ଗବେଷଣା ଗ୍ରନ୍ଥ । ତାଙ୍କର ଗୋଟିଏ 'ଭିଜିଟର ବୁକ' ଅଛି । ୧୯୬୯ରୁ ତାହା ଆରମ୍ଭ । ଆଚାର୍ଯ୍ୟ ହରିହର ଦାସ, ରମା ଦେବୀ, ପ୍ରାଣକୃଷ୍ଣ ପରିଜାଙ୍କଠାରୁ ଆରମ୍ଭ କରି ସଚ୍ଚି ରାଉତରାୟ, ନବୀନ କୁମାର ସାହୁ, ଅନ୍ନପୂର୍ଣ୍ଣା ମହାରଣା, ରାଧାନାଥ ରଥ, ସଦାଶିବ ମିଶ୍ର, ଭୁବନେଶ୍ୱର ବେହେରା, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଭୃତି ପ୍ରାୟ ୬୦ଜଣ ମହାନ୍ ଜ୍ଞାନୀ, ଗୁଣୀଙ୍କ ମନ୍ତବ୍ୟ ସେଥିରେ ସ୍ଥାନିତ । ଏବେ ତାହା ଅଭିଲେଖାଗାରରେ ପରିଣତ ହେବ । ଏ ଯାବତ୍ ଆମର ସମ୍ପାଦନା ମାତ୍ର ୪ଟା ।

ଏସବୁ ବିଷୟରେ ମୁଁ ଯେତେବେଳେ ଚିନ୍ତା କରେଁ ମୋ ଭିତରେ ଗୋଟାଏ ଉଦ୍‌ବେଳନ ସୃଷ୍ଟି ହୁଏ । ନୀତି ନୈତିକତାର ଆବେଷ୍ଟନୀ ଭିତରେ ଥାଇ ଆମେ କାହିଁକି ଏପରି କରି ପାରିଲୁ ନାହିଁ ?

ଯା'ହେଉ ସୁବର୍ଣ୍ଣ ଜୟନ୍ତୀକୁ ଯଦି ସଫଳ କରାଯାଇପାରେ ତେବେ ସାମାନ୍ୟ କିଛି ଧର୍ମ ଅର୍ଜନ କରି ହେବ ବୋଲି ମୁଁ ଭାବୁଥିଲି । ଅନ୍ତତଃ ତା'ର ଭାବମୂର୍ତ୍ତିର କିଛିଟା ସୁଧାର ଆଣି ହେବ । କିଛି କିଛି ବ୍ୟକ୍ତି ଆସିଲେ ଆମେ ତାଙ୍କର ସାହାଯ୍ୟ ନେଇ ପାରନ୍ତୁ । ମୁଁ ବିଜୟାନନ୍ଦଙ୍କଠାରୁ ଦରଖାସ୍ତଟିଏ ଲେଖେଇ ନେଲି ଏବଂ ପରବର୍ତ୍ତୀ କାର୍ଯ୍ୟକାରୀ ସମିତିରେ ତାଙ୍କ ସଦସ୍ୟତାକୁ ମଞ୍ଜୁର କରାଇନେଲି । ଫୋନରେ ବିଜୟାନନ୍ଦଙ୍କୁ ସେ କଥା ଜଣାଇଦେଲି । ସେ ଖୁସି ହେଲେ । ମୁଁ ମିଟିଂରେ ମଧ୍ୟ ଏକଥା କହିଲି ଯେ ବିଜୟାନନ୍ଦ ବାବୁଙ୍କଦ୍ୱାରା ଆମେ ସଂସ୍କୃତି ବିଭାଗ ଓ ଓଡ଼ିଶା ସହିତ୍ୟ ଏକାଡେମୀକୁ ପ୍ରଭାବିତ କରି ପାରିବା । ଫଳରେ ସରକାରଙ୍କ ଠାରୁ ୨/୩ଲକ୍ଷ ପାଇ ପାରିବାରେ ଅସୁବିଧା ହେବ ନାହିଁ। ବାକି ଟଙ୍କା ଆମେ ସେଲ ଓ ସ୍ଥାନୀୟ କଳ କାରଖାନାମାନଙ୍କରୁ ପାଇ ପାରିବା । ରାଜନେତାଙ୍କୁ ଏଥିରେ ପୂରେଇବାକୁ ମୋର ମୋଟେ ଇଚ୍ଛା ନଥିଲା । ସେଲର ଏମଡିଙ୍କ ସହିତ କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାପତି, ବିଶିଷ୍ଟ ସାହିତ୍ୟିକ, ଲେଖକଙ୍କୁ ଆଣିବା ମୋର ଇଚ୍ଛା । ସୋଭନିଅର ପାଇଁ ଜାତୀୟସ୍ତରର ଶିକ୍ଷାବିତଙ୍କଠାରୁ ଲେଖା ଅଣାଯିବ । ଦ୍ୱିଭାଷୀ ହେବ ଏବଂ ଏସବୁ କାମରେ ବିଜୟାନନ୍ଦ ସିଂହ ଆମକୁ ଠିକ୍ ବାଟ କଢ଼େଇ ପାରିବେ । କଲଚରାଲ ଏକାଡେମୀ ପ୍ରତି ଓଡ଼ିଶାର ବେଶ କିଛି ବିଶିଷ୍ଟ ସାହିତ୍ୟିକା/ଲେଖକ/ ପ୍ରଫେସର ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ପୋଷଣ କରନ୍ତି । ଏପରିକି ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ, ବିଭୂତି ପଟ୍ଟନାୟକ, ପ୍ରତିଭା ରାୟ ପ୍ରମୁଖ ସମସ୍ତେ ସଦୟ । ଅଭ୍ୟର୍ଥନା ସମିତିରେ ଏମାନଙ୍କୁ ସ୍ଥାନ ଦେଲେ ଏବଂ ରାଜ୍ୟପାଳଙ୍କୁ ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରଣ କଲେ କଥାଟା ସରଳ ହେଇଯିବ ।

ଦେବେନ୍ଦ୍ର ମହାନ୍ତି ଏକମତ ହେଲେ । ମୁଁ ବିଜୟାନନ୍ଦ ବାବୁଙ୍କୁ ଏକଥା କହିଲି । ସେ ମଧ୍ୟ ଯୋଜନା ଦେଖି ଖୁସି ହେଲେ । କୌଣସି ଗୋଟିଏ କାରଣରେ ସେ ଦିନ ବିଷ୍ଣୁବାବୁ ରାଉରକେଲା ଆସିଥିଲେ । ବୋଧେ କୌଣସି ଗୋଟେ ବିବାହରେ ଯୋଗ ଦେବା ପାଇଁ । ସେତ ଆମର ଏକାଡେମୀର ଗୋଟାଏ ମଜବୁତ ଖୁଂଟ । ସୁବର୍ଣ୍ଣ ଜୟନ୍ତୀରେ ତାଙ୍କର ସହଯୋଗ ଏକାନ୍ତ ଆବଶ୍ୟକ । ମୁଁ ଭାବିଲି ଭଲ ହେଲା । ବିଶେଷ ମିଟିଂଟିଏ ଡାକିଦେଲି । ସମସ୍ତେ ରହିଲେ । ସୁବର୍ଣ୍ଣ ଜୟନ୍ତୀ ୨୦୧୧ରୁ ୨୦୧୨ ପର୍ଯ୍ୟନ୍ତ ଚାଲିବା କଥା । ୧୧ରେ ଆରମ୍ଭ ହେଇ ଥାଆନ୍ତା (ଉଦ୍‌ଘାଟନ) ଏବଂ ୧୨ରେ ଉଦ୍‌ଯାପନ, ମଝିରେ ଅନ୍ୟାନ୍ୟ କାର୍ଯ୍ୟକ୍ରମ । ଏହାହିଁ ତ ନିୟମ ।

ମୁଁ ଯୋଜନା ଉପସ୍ଥାପନ କଲି । ଅଭ୍ୟର୍ଥନା ସମିତି ପାଇଁ ସବୁ ସ୍ଥାନୀୟ ଅନୁଷ୍ଠାନ ସମେତ ବିଶିଷ୍ଟ ବ୍ୟକ୍ତିଙ୍କୁ ରଖିବାକୁ ସ୍ଥିର ହେଲା । ଅନ୍ୟ ଗୋଟିଏ ପ୍ରସ୍ତାବରେ କିଛି ଟ୍ରେଡ୍ ୟୁନିଅନ ନେତାଙ୍କୁ ରଖିବାର ସ୍ଥିର ହେଲା କାରଣ ସେମାନେ ଏକାଡେମୀ ସହିତ ପ୍ରଥମରୁ ବନ୍ଧୁତାର ସମ୍ପର୍କ ରଖି ଆସିଛନ୍ତି । ମୋଟାମୋଟି ଯୋଜନାଗୁଡ଼ିକ ସମସ୍ତଙ୍କ ମନକୁ ପାଇଲା ଓ ମଞ୍ଜୁର ହେଲା । ଏଇ କଥାଟାକୁ ଗୋଟାଏ ରୋଡ୍ ମେପ ହିସାବରେ ଧରିବାର କଥା ।

ତାର ମାସକ ପରେ ନୂତନ ବର୍ଷପାଇଁ କର୍ମକର୍ତ୍ତା ନିର୍ବାଚନରେ ଅବସ୍ଥା ସମ୍ପୂର୍ଣ୍ଣ ବଦଳିଗଲା । ମୋର ତ ଲବି କରିବାର ନଥିଲା । କେବେବି କରିନି ।



# ଯାହା କହି ପାରି ନଥିଲି

କଲଚରାଲ ଏକାଡେମୀକୁ ଆଲୋଚନା କଲେ ରଜନୀକାନ୍ତ ଦାସଙ୍କ ନାମ ସ୍ୱତଃ ଆସିଯିବ । ତାଙ୍କ ସହିତ ମଧ୍ୟ ଆସିବ ଲକ୍ଷ୍ମୀଧର ନାୟକଙ୍କ ନାମ । ଏ ନାଁ ଦୁଇଟିକୁ ଛାଡ଼ି କଲଚରାଲ ଏକାଡେମୀ କଥା ଚିନ୍ତା କରାଯାଇ ପାରେନା । ସେମିତି ମଧ୍ୟ ଏମାନଙ୍କୁ ଛାଡ଼ି ରାଉରକେଲାର ଭାଷା ସାହିତ୍ୟ ଓ ନୂତନ ସଂସ୍କୃତି, ଶିକ୍ଷାୟନ ପରିପେକ୍ଷୀରେ ଚିନ୍ତା କରାଯାଇ ପାରେନା । ଏ ସବୁତ ବିଭିନ୍ନ ସମୟରେ ଆଲୋଚନାରେ ଓ ପତ୍ରପତ୍ରିକାରେ ସ୍ଥାନ ପାଇଛି ।

ମୁଁ ଏ ଦୁଇଜଣଙ୍କ ଉପରେ ଦୁଇଟି ପୁସ୍ତକ ରଚନା କରି ସାରିଥିବାରୁ ଏଠି ଆଉ ତାର ପୁନରାବୃତ୍ତି କରୁ ନାହିଁ । ଲକ୍ଷ୍ମୀଧର ବାବୁ ସେଇ ଷାଠିଏ ଦଶକର ପ୍ରଥମ ଭାଗରେ ରାଉରକେଲା ଛାଡ଼ିଥିଲେ । ରଜନୀ ବାବୁଥିଲେ ଶେଷପର୍ଯ୍ୟନ୍ତ । କିନ୍ତୁ କଲଚରାଲ ଏକାଡେମୀ ସହିତ ସମ୍ପର୍କକୁ ତୁଟେଇଥିଲେ ୧୯୯୫ରେ । ନବପତ୍ର ସହିତ ମଧ୍ୟ ସମ୍ପର୍କ କାଟିଥିଲେ । ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ଯାହାକୁ ପ୍ରାଣଠାରୁ ଅଧିକ ଭଲ ପାଇ ନୀତି ଓ

ନିଷ୍ଠାର ସହିତ ନେତୃତ୍ୱ ଦେଇ ନିଜ ହାତରେ ଗଢ଼ି ଆଣିଥିଲେ, ତା'ଠୁ ବିଦାୟ ନେଲେ ସମ୍ପୂର୍ଣ୍ଣ ଅନୌପଚାରିକ ଭାବରେ । ତା'ର ସୂଚନା ମଧ୍ୟ ବହୁ ଆଗରୁ ଦେଇଥିଲେ ।



# କ'ଣ ଥିଲା ତା'ର କାରଣ ?

ଏବକୁ ଅଛପା ହେଇ ରହିନାହିଁ । ଆସନର କଳି କଜିଆ ଭିତରେ ସେ କେବେବି ନଥାଆନ୍ତି ।ଏକାଡେମୀ ସହିତ ରଜନୀବାବୁ ସମ୍ପର୍କ ତୁଟାଇବାରୁ ଓଡ଼ିଶାର ବରେଣ୍ୟ କବି ଉମାଶଙ୍କର ପଣ୍ଡା କ୍ଷୁବ୍ଧ ହେଇ ଏକାଡେମୀକୁ ଯୋଉ ଦୀର୍ଘ ଚିଠି ଲେଖିଥିଲେ ତାକୁ ସମସ୍ତେ ଦେଖିଛନ୍ତି । ଉମାଶଙ୍କର ପଣ୍ଡା ଥିଲେ ଏକାଡେମୀ ଓ ନବପତ୍ରର ଦୀର୍ଘ ଦିନର ବନ୍ଧୁ ଓ ଶୁଭଚିନ୍ତକ ।

ଏଇଠୁ ଆରମ୍ଭ ହେଲା ଅବକ୍ଷୟର ସମୟ । ମୁଁ ଆଗରୁ କହିଚି ୯୦ ଦଶକରେ ଏକାଡେମୀ ପାଂଚନମ୍ବର ସେକ୍ଟରକୁ ଉଠି ଆସିଲା ପରେ କିଛି ସ୍ୱାର୍ଥବାଦୀଙ୍କ ଲୋଲୁପ ଦୃଷ୍ଟି ତା' ଉପରେ ପଡ଼ିଲା । ମୁଁ ସେତେବେଳେ ଆସାମରେ ଏବଂ ମୋତେ ସେ ସେତେବେଳେ ଯୋଉ ଚିଠି ଲେଖିଥିଲେ ସେ ସବୁତ ଏବେବି ଗଚ୍ଛିତ ଅଛି । ରଜନୀବାବୁଙ୍କ ବହିରେ ମୁଁ ସେ କଥା ଲେଖିଚି ମଧ୍ୟ । କହିବାର ଉଦ୍ଦେଶ୍ୟ ଅନ୍ତତଃ ସତ୍ୟ ଲୁଚି ନରହୁ ।

୧୯୯୪ରେ ସେ ସେଇ ଏକାଡେମୀ ପରିସରରେ କିଛି ଏକାଡେମୀର ସଦସ୍ୟଙ୍କୁ ଓ ଆଉ କିଛି ବାହାରର ଲୋକଙ୍କୁ ନେଇ ଗଢ଼ିଥିଲେ 'ବେଦବ୍ୟାସ ଫାଉଣ୍ଡେସନ ଟ୍ରଷ୍ଟ' ନାମକ ଆଉ ଗୋଟିଏ ସାହିତ୍ୟ ସଂଗଠନ । ଏଇ ଅନୁଷ୍ଠାନ ଯେ ତାଙ୍କର ଅନ୍ତର୍ଦାହରୁ ସୃଷ୍ଟି ହେଇଥିବ ଏଥିରେ ସନ୍ଦେହ ନାହିଁ। ମୁଁ ତ ତା'ର ଥିଲି ସାଧାରଣ ସମ୍ପାଦକ ଏବଂ ଯେତେଦୂର ମନେ ପଡୁଚି ବିଦ୍ୟାଧର ବାରିକ ଥିଲେ ଉପ ସଭାପତି । ବିନୋଦ ଚନ୍ଦ୍ର ନାୟକ ଥିଲେ ସଭାପତି ଓ ସେ ନିଜେ କାର୍ଯ୍ୟକାରୀ ସଭାପତି ।

ସେ ଅନୁଷ୍ଠାନ କିନ୍ତୁ ସେଇ ସେତକରେ ଶେଷ ହେଇଯାଇଥିଲା । ତାପରେ ସେ ଆଉ ପାଂଚ ନମ୍ବର ସେକ୍ଟର ଆଡ଼େ ଆଖି ପକେଇ ନାହାନ୍ତି । ଏଇ ସମୟ ଭିତରେ ପ୍ରଗତି ଉତ୍କଳ ସଂଘ ସହିତ ତାଙ୍କର ସମ୍ପର୍କ ଭଲ ଥିଲା । ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ଓ ଅଧ୍ୟାପକ ଶ୍ରୀଚରଣ ମହାନ୍ତି ପ୍ରଗତି ଉତ୍କଳ ସଂଘ ପାଇଁ ପ୍ରଥମରୁ କାମ କରୁଥିଲେ ବୋଲି ତାହା ଏବେ ଓଡ଼ିଶାର ଗୋଟିଏ ଭଲ ଅନୁଷ୍ଠାନ ଭାବରେ ଠିଆହେଇ ପାରିଛି । ମୁଁ ଆଗରୁ ଲେଖିଚି ଏ ଦୁଇ ବିଶିଷ୍ଟ ସାହିତ୍ୟିକ ତଥା ଗବେଷକ କଳଚରାଲ ଏକାଡେମୀର ମଧ୍ୟ ସଦସ୍ୟ ଥିଲେ । କିନ୍ତୁ ଏକାଡେମୀର ସେତେବେଳେ ଗୋଟାଏ ସମୟ ଥିଲା

ଯେତେବେଳେ ପ୍ରତିଭାକୁ ଅଣଦେଖା କରିବା ଆରମ୍ଭ ହେଇ ଯାଇଥିଲା । ତେଣୁ ସେମାନେ ସେଠୁ ନିଜକୁ ଦୂରେଇ ରଖିଲେ । ରଜନୀ ବାବୁ ଏକାଡେମୀଠାରୁ ଅଲଗା ହେଲା ପରେ ଶ୍ରୀଚରଣ ମହାନ୍ତି ଓ ଦେବେନ୍ଦ୍ର ଦାଶଙ୍କ ପ୍ରଗତି ଉତ୍କଳ ସଂଘ ସହିତ ନିକଟତର ହେଇ ଯାଇଥିଲେ । ଏଇଠି ସେଇ ପ୍ରଗତି ଉତ୍କଳ ସଂଘଦ୍ୱାରା ରଜନୀବାବୁଙ୍କ 'ରଜନୀକାନ୍ତ କାବ୍ୟ ସଂଚୟନ' ପ୍ରକାଶ ପାଇଲା ବେଶ ଧୂମଧାମରେ ।



# ମୃତ୍ୟୁର ବରଫ ଶୀତଳତା

ହଠାତ୍ ସେ ଦିନ ମୁଁ ଖବର ପାଇଲି ରଜନୀବାବୁ ଚାଲିଗଲେ (୨୯.୬.୨୦୦୫)ମୁଁ ଗୋଟାଏ ସାହିତ୍ୟ ସଭାରେ ଯୋଗ ଦେବାକୁ କେନ୍ଦୁଝର ଯାଇଥିଲି । ସେଠୁ ଫେରିବା ରାସ୍ତାରେ ମୁଁ ଅଟକି ଥିଲି ବଡ଼ବିଲରେ ମୋ ଝିଅ ଘରେ । ସକାଳୁ ହିଁ ମୋ ସ୍ତ୍ରୀ ମୋତେ ଫୋନ କଲେ ଲେଣ୍ଡ ଫୋନରେ ଯେ ରଜନୀ ବାବୁ ଚାଲିଗଲେ । ମୋର ସେତେବେଳେ ମୋବାଇଲ ନଥିଲା । ମୁଁ ଦେବେନ୍ଦ୍ର ମହାନ୍ତିଙ୍କ ଘରକୁ ଫୋନ କରି କହିଲି ଆପଣମାନେ ତାଙ୍କ ଘରକୁ ଯାଆନ୍ତୁ । ଫୁଲଟିଏ ଦିଅନ୍ତୁ । ଦିନେ ଦୁଇ ଦିନ ପରେ କିମ୍ବା ଏକାଦଶ ଦିନ ଭଲ ଭାବରେ ଶୋକ ସଭାଟିଏ କରିବା । ସେଥିରେ ସବୁ ସାହିତ୍ୟାନୁଷ୍ଠାନଠାରୁ ସରକାରୀ ବେସରକାରୀ ଓ ପ୍ରେସ କ୍ଲବକୁ ସାଥିରେ ନେବା । ମୁଁ ଆଜି ସନ୍ଧ୍ୟା ସୁଦ୍ଧା ଯାଇ ପହଂଚିବି ।

ଦେବେନ୍ଦ୍ର ବାବୁଙ୍କ କଥା ରହିଲାନି । ଗୋଟାଏ ଅନୌପଚାରିକ ଭାବରେ ସେହିଦିନ ସନ୍ଧ୍ୟାରେ ଏକାଡେମୀ ପରିସରରେ ଅଳ୍ପ କେତେ ଜଣଙ୍କୁ ନେଇ ଶୋକ ସଭାଟିଏ ଅନୁଷ୍ଠିତ ହୋଇଥିଲା । ପରେ ଶୁଣିଲି ଜଣେ ମାତ୍ର ଏକାଡେମୀର ସଦସ୍ୟ ରଜନୀବାବୁଙ୍କ ଘରକୁ ଯାଇଥିଲେ ତାଙ୍କ ମୃତ୍ୟୁ ଖବର ପାଇ । ଶବସତ୍କାର ପାଇଁ ବେଦବ୍ୟାସ ଯାଏ କେହି ଯାଇଥିଲେ କି ନା କେଜାଣି । ଅନ୍ୟମାନଙ୍କ କ୍ଷେତ୍ରରେ, ବିଶେଷ କରି ହରେକୃଷ୍ଣ ଦାସ, ବଂଶୀଧର ମହାପାତ୍ର, ସନତ ରାୟ ପ୍ରଭୃତିଙ୍କ ମୃତ୍ୟୁ ପରେ ତାଙ୍କ ଶବକୁ ଏକାଡେମୀ ଭବନକୁ ଆଣି ଯଥାବିଧି ସବୁ ସଦସ୍ୟଙ୍କଦ୍ୱାରା ପୁଷ୍ପଗୁଚ୍ଛ ଦିଆ ଯାଇଥିଲା ବେଳେ ଏହି ପ୍ରଥିତ ଯଶା ଓ କରିତକର୍ମାଙ୍କ ସମୟରେ ଗୋଟାଏ ଉଦ୍ଦେଶ୍ୟମୂଳକ ନୀରବତା ଦେଖାଦେଇଥିଲା । ସନତ ରାୟଙ୍କ ସମୟରେ ଯେଉଁ ଅସ୍ୱାଭାବିକ ଆତୁରତା କେତେଜଣଙ୍କ ଭିତରେ ପ୍ରକାଶ ପାଇଥିଲା ତାହା ଜଣକର ସମଗ୍ର କୃତି ଓ ରାଉରକେଲାକୁ ଦାନର ତୁଳନାତ୍ମକ ଚିତ୍ର ଆଙ୍କିଲାବେଳେ ବହୁପ୍ରଶ୍ନ ମନରେ ଉଙ୍କିମାରେ ।

ରଜନୀବାବୁ ଥିଲେ ଜଣେ ପ୍ରଗତିଶୀଳ ସାହିତ୍ୟିକ । ନୀତିନିଷ୍ଠ ସାମ୍ବାଦିକ, ସ୍ୱାଧୀନତା ସଂଗ୍ରାମୀ ଏବଂ ସର୍ବୋପରି ରାଉରକେଲା ଯେତେବେଳେ ଭିନ୍ନ ଭାଷା ଓ ସଂସ୍କୃତି କବଳରେ

ଚାପି ହେଇ ପଡୁଥିଲା ସେତେବେଳେ ସେ ହିଁ ପ୍ରଥମେ ସୁରେନ୍ଦ୍ର ଦ୍ୱିବେଦୀ, ଧନଞ୍ଜୟ ମହାନ୍ତି, ହୃଷୀକେଶ ରାୟ,ରାଜକିଶୋର ସାମନ୍ତରାୟ, ଧୂଳିଶ୍ୱର ବସ୍ତିଆ, ଲକ୍ଷ୍ମୀଧର ନାୟକ ଓ ବଟକୃଷ୍ଣ ପଣ୍ଡା ପ୍ରଭୃତିଙ୍କ ସହିତ ମିଶି ଓଡ଼ିଆ ଭାଷା ଓ ସ୍ୱାଭିମାନର ସୁରକ୍ଷା ପାଇଁ ଜନ ଆନ୍ଦୋଳନ ଆରମ୍ଭ କରିଥିଲେ । ଭାଷାର ପ୍ରଚାର ଓ ପ୍ରସାର ପାଇଁ ସେ ହିଁ ପ୍ରଥମେ ଲକ୍ଷ୍ମୀଧର ବାବୁଙ୍କ ସହିତ ମିଶି ରାଉରକେଲାର ପ୍ରଥମ ସାହତ୍ୟାନୁଷ୍ଠାନ କଳଚରାଲ ଏକାଡେମୀ ୧୯୬୧ ଓ ପ୍ରଥମ ସାହିତ୍ୟ ପତ୍ରିକା ନବପତ୍ର (୧୯୬୨)ପ୍ରକାଶ କରାଇଥିଲେ । ତା'ର ସୁଫଳ ଆଜି ଆମେ ଭୋଗ କରୁଛୁ ଓ ସେଥିପାଇଁ ଗର୍ବ ମଧ୍ୟ କରୁଛୁ ।

କିନ୍ତୁ ହାୟ, ସେଇ ମହାନ୍ ବ୍ୟକ୍ତିତ୍ୱଟିର ଶବାଧାର ଉପରେ ସେଦିନ ଆମେ ଫୁଲଟିଏ ମଧ୍ୟ ଦେଇ ପାରିଲୁ ନାହିଁ ।

ପୂଜ୍ୟ ପୂଜାର ବ୍ୟତିକ୍ରମ ଏ ଜାତିର ଏବକୁ ଗୋଟାଏ ରୁଗ୍‌ଣ ପରଂପରାରେ ପରିଣତ ହେଇ ଗଲାଣି । ଗାନ୍ଧୀ, ଗୋପବନ୍ଧୁ ଯେପରି ଏବେ ଆମ ପାଖରେ ପରିଚୟ ହୀନ ହେଇ ଗଲେଣି, ଯୁକ୍ତ ପରିବାର ପ୍ରଥା ଭାଙ୍ଗି ଖଣ୍ଡ ଖଣ୍ଡ ହେଇ ଯିବା ପରେ ପୁଅ ପାଖରେ ବାପ ମଧ୍ୟ ଦୂର ବିଦେଶାଗତ ପରିଚୟରେ ପରିଣତ ହେଲାଣି । ଦୂରରେ ଥିବା ବାପ ମାଆ ମଧ୍ୟ ଆଉ ଆଶା କରି ପାରୁ ନାହାନ୍ତି ପୁଅ ଅନ୍ତତଃ ଠିକ୍ ସମୟରେ ଆସି ଶବ ସତ୍କାର କରି ପାରିବ । ଦୂରତ୍ୱର ବ୍ୟବଧାନ ଖାଲି ବ୍ୟବଧାନ ନୁହେଁ, ମାନସିତାର ଦୂରତ୍ୱ ମଧ୍ୟ ଆଉ ଏକ ଶକ୍ତିଶାଳୀ କାରଣ ।

ରଜନୀକାନ୍ତ ବାବୁ ସେଇ ଦୂରତ୍ୱ ଭିତରେ ହଜି ଯାଇଥିବେ । ଏ ଜାତିକୁ କିଏ ବା କ୍ଷମା କରିପାରିବ ?

କିନ୍ତୁ କାହିଁକି ଏପରି ହେଲା ? ଶିଳ୍ପ ନଗର ରାଉରକେଲାର ପରମାୟୁ ଏବକୁ ଅର୍ଦ୍ଧ ଶତାବ୍ଦୀ ଅତିକ୍ରମ କଲାଣି । ଆମେ ଗୋଟାଏ ସଭ୍ୟ ତଥା ସମ୍ଭ୍ରାନ୍ତ ନାଗରିକ ଭାବରେ ଅନ୍ୟାନ୍ୟ ବହୁ କ୍ଷେତ୍ରରେ ନିଜର ମହତ୍ ଉଦାରତାର ପରିଚୟ ଦେଇ ବିଶେଷ କରି ମୃତ୍ୟୁ କ୍ଷେତ୍ରରେ ସାଶ୍ରୁଳ ନୟନରେ ଆଗେଇ ଯାଇ ଫୁଲଟିଏ ଦେଇ ନାହୁଁ କି ? ଭାଷା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ନିରବଚ୍ଛିନ୍ନ ଅବଦାନ ପାଇଁ ତ ନତଜାନୁ ହେଇଯିବା କଥା । କିନ୍ତୁ କୌଣସି ଗୋଟାଏ ଅଜଣା କାରଣ ଆମକୁ ସେତକ କରାଇ ଦେଲା ନାହିଁ ଯାହା ଆମର ଚରମ ଅଧୋଗତିର ସୂଚନା ମାତ୍ର ।

ପରବର୍ତ୍ତୀ ଅବସ୍ଥାରେ ବ୍ୟକ୍ତିଗତ ଭାବରେ ମୁଁ ପ୍ରଥମେ ଲକ୍ଷ୍ମୀଧର ବାବୁଙ୍କ ସ୍ମୃତି ରକ୍ଷା ପାଇଁ କିଛି କରିବାକୁ ଚାହିଁଥିଲି । ତାଙ୍କ ନାମରେ ଗୋଟାଏ ରାଜ୍ୟ ସ୍ତରୀୟ ପୁରସ୍କାର

ଦେବାର ଯୋଜନା କରିଥିଲି । ତାଙ୍କ ନାମରେ ବହିଟି ପ୍ରକାଶ ପାଇଲା ପରେ ତାଙ୍କର ଦୁଇ ପୁତ୍ର ଆମେରିକାରୁ ଓ ଦିଲ୍ଲୀରୁ ଆଗେଇ ଆସିଥିଲେ । ସେମାନେ ସମସ୍ତ ଖର୍ଚ୍ଚ ବହନ କରି ଥାଆନ୍ତେ । ଆଦର୍ଶ ପାଠାଗାର ସହିତ କଥାବାର୍ତ୍ତା ହେଇଥିଲା । କିନ୍ତୁ ସଫଳ ହେଲା ନାହିଁ । ପରେ ତାଙ୍କ ନାଁରେ ସ୍ମାରକୀ ବକ୍ତୃତାମାଳା କରେଇବାକୁ ମୁଁ ଏକାଡେମୀରେ ଆୟୋଜନ କଲି । ଗୋଟିଏ ବର୍ଷ ହେଲା । ପ୍ରଫେସର ପ୍ରଫୁଲ୍ଲ ମହାନ୍ତି ଓ ପ୍ରଫେସର ପୁଲିନ ବିହାରୀ ନାୟକ (ଯଥାକ୍ରମେ ତାଙ୍କ ଜାମାତା ଓ ପୁତ୍ର) ମଧ୍ୟ ଆସିଲେ । ବିରାଟ ସଭା ହେଲା । ସବୁ ଖର୍ଚ୍ଚ ମଧ୍ୟ ତାଙ୍କର । ରାଉରକେଲା ଇତିହାସରେ ସ୍ମାରକୀ ବକ୍ତୃତାମାଳା ମଧ୍ୟ ଏଇଟା ପ୍ରଥମ ।

କିନ୍ତୁ ତାପରେ ଆଉ ହେଲା ନାହିଁ ।

ରଜନୀବାବୁଙ୍କ ପାଇଁ ଅବଶ୍ୟ ଆମର 'କାବ୍ୟ କବିତା ଦିବସ'ଦିନ ତାଙ୍କର ସ୍ମୃତି ଚାରଣ ହୁଏ କିନ୍ତୁ ସେଇଟାକୁ ଯଥେଷ୍ଟ ବୋଲି କୁହାଯାଇ ପାରିବ ନାହିଁ । ଆମେ ତ କିଛି କଲୁ ନାହିଁ । ଆଦର୍ଶ ପାଠାଗାର ଲକ୍ଷ୍ମୀଧରଙ୍କ ସ୍ମୃତି ରକ୍ଷା ପାଇଁ 'ଲକ୍ଷ୍ମୀଧର ସାରସ୍ୱତ ସମ୍ମାନ' ଅବଶ୍ୟ ଦେଉଛି ପ୍ରତିବର୍ଷ ପୁସ୍ତକ ମେଳା ସମୟରେ । ଏଥିପାଇଁ ଆମର ଲାଜ କରିବା କଥା । ସେ ସମ୍ମାନ ପ୍ରଥମ କରି କଲଚରାଲ ଏକାଡେମୀର ସଭାପତିହିଁ ଗ୍ରହଣ କରିଥିଲେ ।



## କଲଚରାଲ ଏକାଡେମୀର ସୁବର୍ଣ୍ଣ ଜୟନ୍ତୀ

ସମାରୋହ ଶେଷ ହେଲା-ଅବଶ୍ୟ ୧୧-୧୨ରେ ନୁହେଁ । ବର୍ଷକ ପରେ ଏପ୍ରିଲ ମାସରେ । କେମିତି କଅଣ ହେଲା ମୁଁ ଜାଣିବାର ସୁଯୋଗ ପାଇ ନାହିଁ । ଯୋଉ ଦିନ ଆରମ୍ଭ ହେଲା, ଏପ୍ରିଲ ୧୫ ତାରିଖ, ମୁଁ ସେଦିନ କୋରାପୁଟରେ ଗୋଟାଏ ସାହିତ୍ୟ ସଭାରେ । କୋରାପୁଟରୁ ଆସିଲି ଭୁବନେଶ୍ୱର ଲେଖକ ସାମ୍ମୁଖ୍ୟର ମିଟିଂରେ ଯୋଗ ଦେବାକୁ । ତୃତୀୟ ଦିନ ଫେରିଲି । ସେଇ ଦିନ ମଧ୍ୟ ଉଦ୍‌ଯାପନ ଦିବସ ।

ସଭାପତି ବିଚିତ୍ରାନନ୍ଦ ସାହୁ ଆସିଲେ ଗାଡ଼ି ନେଇ । କହିଲେ ଆପଣ ଚାଲନ୍ତୁ । ଆପଣଙ୍କୁ ସେଠି ଅନେକ ଲୋକ ଖୋଜୁଛନ୍ତି । ମନେ ମନେ ଭାବିଲି, ଲୋକମାନେ ଖୋଜୁଛନ୍ତି, ଆପଣମାନେ ତ ଖୋଜୁ ନାହାନ୍ତି । କିନ୍ତୁ କାହାକୁ କହିବି ?

ଗଲି । ଲୋକ ନାଟକ ଉପରେ ଆଲୋଚନା ଚାଲିଥାଏ । ଲୋକ ନାଟକେ ଉପରେ ରଜନୀବାବୁ ମୂଲ୍ୟବାନ ସ୍ମରଣିକାଟିଏ ପ୍ରକାଶ କରାଇଛନ୍ତି । ଏବେ ମଧ୍ୟ ତାକୁ

ରେଫେରେନ୍ସ ବୁକ ଭାବରେ ସମସ୍ତେ ବ୍ୟବହାର କରୁଛନ୍ତି । ଅଧ୍ୟାପିକା ପ୍ରଭାତ ମଞ୍ଜରୀ ଦାସ ତା' ଉପରେ ଗବେଷଣା କରି ଡକ୍ଟରେଟ୍ ପାଇଲେଣି । ତାଙ୍କୁ ମୁଁ ଓ ହରିବାବୁ ବହୁ ତଥ୍ୟ ଯୋଗାଇ ଦେଇଥିଲୁଁ ।

ଏବେତ ପ୍ରଫେସର କୃଷ୍ଣଚରଣ ବେହେରାଙ୍କ ଅଧୀନରେ ଆଉ ଜଣେ ଭଦ୍ର ମହିଳା ଲୋପାମୁଦ୍ରା ନାୟକ( ?) ଲକ୍ଷ୍ମୀଧର ବାବୁଙ୍କ ଉପରେ ଗବେଷଣା କରୁଛନ୍ତି । ତାଙ୍କୁ ମଧ୍ୟ ମୋ ପାଖରେ ଥିବା ବହି ଓ ଅନ୍ୟ ତଥ୍ୟ ଯୋଗାଇ ଦେଇଛି । ବିଶେଷ କରି କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ଆୟୋଜିତ ଲକ୍ଷ୍ମୀଧର ନାୟକ ଜନ୍ମ ଶତବାର୍ଷିକୀ ପାଳନ ବେଳେ ମୁଁ ଉପସ୍ଥାପିତ କରିଥିବା ପ୍ରବନ୍ଧ ମଧ୍ୟ ଯୋଉଥିରେ ବହୁ ତଥ୍ୟ ଥିଲା, ତାକୁ ମଧ୍ୟ ଦେଇଛି । ତାଙ୍କ କାମ ସରିବଣି ବୋଧେ ।

ଏକାଡେମୀ ପରି ଗୋଟାଏ ପୁରାତନ ଓ ପ୍ରତିଷ୍ଠିତ ସାହିତ୍ୟାନୁଷ୍ଠାନର ସୁବର୍ଣ୍ଣ ଜୟନ୍ତୀ ପାଳନର ପ୍ରଥମ ଓ ପ୍ରଧାନ ଉଦ୍ଦେଶ୍ୟ ହେଲା ଅନୁଷ୍ଠାନ ପଚାଶ ବର୍ଷ ହେଲା ପ୍ରଚାର ଓ ପ୍ରସାର କରୁଥିବା ସାହିତ୍ୟ ନୀତି ଓ ଆଦର୍ଶ କିପରି ଭାବରେ ସମସାମୟିକ ଭାଷା ଓ ସାହିତ୍ୟକୁ ପ୍ରଭାବିତ କରିଛି ତା'ର ବିଧିବଦ୍ଧ ଆଲୋଚନା । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଏସବୁ ବିଷୟରେ ଆଂଶିକ ଆଲୋଚନା ସ୍ଥାନୀୟ କଲେଜ ଓ ପ୍ରଗତି ଉତ୍କଳ ସଂଘ ଓ ଆଦର୍ଶ ପାଠାଗାର ଆୟୋଜିତ ସୁବର୍ଣ୍ଣ ଜୟନ୍ତୀର ସେମିନାରମାନଙ୍କରେ ହେଇ ସାରିଚି ।

ଗୋଟାଏ ସାହିତ୍ୟାନୁଷ୍ଠାନର ସୁବର୍ଣ୍ଣ ଜୟନ୍ତୀର ସୁଦୂର ପ୍ରସାରୀ ପ୍ରଭାବକୁ ଠିକ୍ ନେତୃତ୍ୱ ଦେଇ ଲୋକାଭିମୁଖୀ କଳାବେଳକୁ ଆମ ହାତମୁଠା ଢିଲା ହୋଇ ଯାଇଥିବ ।

**(ସମାପ୍ତ)**

Mrs. Nandini Satpathy
Chairperson
State Planning Board, Orissa



Telephones : Off. : 40319?
PABX. : 259
Res. : 408695

BHUBANESWAR

Date 23-12-1995

Dear Bhupen,

Thank you for the felicitations. Your continuous love, affection, encouragement and co-operation will always inspire and strengthen me to serve the people & the nation.

With best wishes,

23/12/95
(Nandini Satpathy)

Mr. Bhupen Mahapatra,
L-45, Chhend Colony
Rourkela-769015.



D. K. BHANDARI
Ex. Member of Parliament
(Lok Sabha)

125, South Avenue,
New Delhi-110011
Tele. : 3010125

Primula Cottage,
Church Road,
Gangtok-737101
(Sikkim)
Tele. : 2446, 2304

April 5,90.

Dear Shri Mahapatra,

I have received your letter dated 24.2.90 and earlier letter also. I am sorry that I could not write to you earlier due to my pre-occupations but I have not forgotten you. I shall be sending you the magazine by registered post and shall be grateful if you could also contribute some articles for the magazine.

Hope you are keeping well,

With kind regards,

Yours sincerely,
DK Bhandari
(Smt.D.K.Bhandari)

Shri B.C.Das Mahapatra,
Deputy Commandant,
C.I.S.F., Post Office
Dhaligaon,
Distt.Kokrajhar (Assam)

D.K. BHANDARI
Member of Parliament
(Lok Sabha)



145, South Avenue,
New Delhi-110011
Phone : 3015714

August 6,92.

Dear Shri Mahapatra,

Thanks for your letter dated 31.7.92. I did not know about your posting. So the despatch of Himalaya Today is being done at the address available with me. I do not know as to whether you have been receiving copies of Himalaya Today.

Also thanks for your good wishes and compliments conveyed for the cause of Nepali Language to be included in 8th Schedule of the Constitution. I hope that Govt. propose to bring a Bill on this subject during the current session of Parliament. An assurance to this effect has been given by Hon'ble Prime Minister.

With warm regards,

Yours sincerely,

DK Bhandari

(Smt.D.K.Bhandari)

Shri B.C.Das Mahapatra,
Dy.Commandant,
C.I.S.F.,
P.O.Bolani, Distt.Keonjhar-
758037 (Orissa)

From : Dr.Basavaraj Sadar,
Assistant Station Director,
All India Radio,
DHARWAD : 580 008
(Karnataka State)

Date:23.04.2007

Respected Shri.Bupen Mohapatra Sir,

Namaste,

Sir,

While going through the Sahitya Academy Bi-Monthly Journal "Indian Literature" July-Aug-2006 issue, I read your short story entitled **"M.K.Gandhi"**, which attracted me very much. Immediately my mind started to translate it into Kannada and the pen followed the instruction of the mind. Now I have translated it in Kannada and the text is ready. I want to send it for publication in any one of the leading Kannada Journal. For this I need your permission. Hence I request you to kindly permit me to do so.

I am a Kannada writer (Poet and Short Story Writer) and working in All India Radio, Dharwad as Assistant Station Director. I have received State Sahitya Academy Award for my short story collection entitled **"Tapdanda"**. I have got many more awards for my short stories and poems. I think this much introduction is sufficient.

Sir, I one again request you to kindly permit me to translate and publish your short story entitled **'M.K.Gandhi'**. After the publication I will send you a copy of the same for your reference.

Sir, may I wait for your early reply.

Thanking you,

PE sent
8.7.5.07

Yours faithfully,

23/4/07

(Dr.BASAVARAJ SADAR)

Shri.Bupen Mohapatra,
'Kathaghar'
Chhend Colony,
Rourkela - 769 015.
(Orissa State)

From :
RADHA DUTTA
EDITOR
PURBADESH GALPAPATRA
C/O : AJIT DUTTA
FLAT NO. F/4
MADHAB SHANKAR HOUSING COMPLEX
PANDAB NAGAR
PANDU
GUWAHATI – 781012
ASSAM

Guwahati 8 August 2007

To
Shri Bhupen Mahapatra
Kathagar
Chhend Colony,
Rourkella, Orissa.

Sub Permission to translate into Bengali your story 'M.K. Gandhi' appearing in the Indian literature July-August 2006 (234) issue.

Dear Sir,

I write this letter from Guwahati. I am editor and publisher of 'Purbadesh Galpapatra', a Bengali little magazine of short-stories published from Guwahati. This magazine a non-commercial one, is in the twenty fifth year of its publication. Shri NirmalKanti Bhattacharjee, Secretary, Sahitya Akademi is well aware of this magazine.

The magazine has carved out a niche among the Bengali readers in the eastern zone.

We publish translation of the short-stories written in the different Indian languages.

We intend to publish Bengali translation of your story mentioned above in our autumn issue 2007.

Sri Subhas Kermakar, a retired professor of Bengali will translate the story. The translated story, we believe, will enhance the standard of our magazine.

I, therefore, request you to give us your kind permission early to translate the story.

With regards,

Sincerely,

Radha Datta

RADHA DUTTA

Ch. Sreeni Vasa Murthy
Asst. Commissioner of Labour(R)
3-140/1 Padmala Colony.
Waddepally Post.
Hanumakonda. AP 506 37

Dear Sir,

I had gone through your short Story in translated Version in Indian Literature issue No. 234. I am very much facinated to render it's translation to Telugu readers if you can kindly consent for.

I request you to kindly permit me to translate "H K-Gandhi" into Telugu.

Thanking you in anticipation

Sir,

12.12.06
Hanumakonda.

Yours Sincerely
[signature]
12.12.06
Ch. Sreenivasa Murthy



ନାଟକ 'କପଟପାଶା'ରେ ବିରୂପାକ୍ଷ ମହାନ୍ତି ଭୂମିକାରେ (ସବା ଡ଼ାହାଣ)



ନାଟକ 'ପ୍ରତାପଗଡ଼ରେ ଦି ଦିନ' ରେ ଦେବାନ୍ ଜନାର୍ଦ୍ଦନ
ପଞ୍ଚଯୋଶୀ ଭୂମିକାରେ (ସବା ଡ଼ାହାଣେ)



ପତ୍ନୀ ରାଧାରାଣୀଙ୍କ ସହିତ ମାଡ୍ରାସ ମେରିନା ବିଚ୍‌ରେ



ବୋଙ୍ଗାଇଗାଁଓ ରିଫାଇନାରୀ ସି.ଏମ୍.ଡ଼ିଙ୍କ ସହିତ ଗୁରତ୍ୱପୂର୍ଣ୍ଣ ଆଲୋଚନା



ବୋଙ୍ଗାଇଗାଁଓରେ ଦୁଇ ନାତୁଣୀ ସିକୁ ଓ ଚିକୁ ସହିତ




କବି ବ୍ରଜନାଥ ରଥଙ୍କ ସହିତ ମଞ୍ଚାସୀନ




କେନ୍ଦ୍ରୀୟ ସାହିତ୍ୟ ଏକାଡ଼େମୀ ଓ ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ ଲକ୍ଷ୍ମୀଧର ନାୟକ ଜନ୍ମ ଶତବାର୍ଷିକୀ ଉତ୍ସବ ଉପଲକ୍ଷେ ଆୟୋଜିତ ଆଲୋଚନା ଚକ୍ରରେ ପ୍ରବନ୍ଧ ଉପସ୍ଥାପନା





ରାଜ୍ୟ ସାହିତ୍ୟ ଏକାଡ଼େମୀ ତରଫରୁ ସଂସ୍କୃତି ମନ୍ତ୍ରୀ ଅଶୋକ ପଣ୍ଡାଙ୍କ ଦ୍ୱାରା ସମ୍ବର୍ଦ୍ଧିତ



ଜାନକୀ ବଲ୍ଲଭ ପଟ୍ଟନାୟକ ସ୍ମାରକୀ ଟ୍ରଷ୍ଟ ତରଫରୁ ଆସାମ୍‌ର ରାଜ୍ୟପାଳ
ବନଓ୍ୱାରୀ ଲାଲ୍ ପୁରୋହିତଙ୍କ ଦ୍ୱାରା ସମ୍ବର୍ଦ୍ଧିତ



'ଏମ୍.କେ. ଗାନ୍ଧୀ ଆଣ୍ଡ୍ ଅଦର ଷ୍ଟୋରିଜ୍' ବିଭୁତି ପଟ୍ଟନାୟକଙ୍କ ଦ୍ୱାରା ଲୋକାର୍ପିତ
ଅନ୍ୟମାନଙ୍କ ମଧ୍ୟରେ ଅନୁବାଦକ ଅଶୋକ କୁମାର ମହାନ୍ତି ଓ ଯତୀନ ନାଏକ



ହିନ୍ଦୀ ପୁସ୍ତକ 'ଖୋଲ୍ ତଥା ଅନ୍ୟ କାହାନିଆଁ' ପଞ୍ଚାନନ କାନୁନ୍‌ଗୋଙ୍କ ଦ୍ୱାରା ଲୋକାର୍ପିତ
ଅନ୍ୟମାନଙ୍କ ମଧ୍ୟରେ ବସନ୍ତ କୁମାର ପଣ୍ଡା, ଅଧ୍ୟାପକ ବିଶ୍ୱରଂଜନ ଓ ଅନୁବାଦିକା ବାସନ୍ତୀ ରଥ




ଉତ୍କଳ ସାହିତ୍ୟ ସମାଜ ତରଫରୁ ଜଷ୍ଟିସ୍ ଦେବପ୍ରିୟ ମହାପାତ୍ରଙ୍କ ଦ୍ୱାରା ସମ୍ବର୍ଦ୍ଧିତ



ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ, ଓଡ଼ିଶାର ରାଜ୍ୟପାଳ ବି.ଡ଼ି ଜତ୍ତି ଓ ମୁଖ୍ୟମନ୍ତ୍ର ନନ୍ଦିନୀ ଶତପଥୀଙ୍କ ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ ପରିଦର୍ଶନ ବେଳେ ଲେଖକଙ୍କ ନିରାପତ୍ତା ଡ୍ୟୁଟି (୨.୦୩.୧୯୭୧)



ବିନୋବା ଭାବେଙ୍କ ରାଉରକେଲାରେ ଏକ ସାଧାରଣ ସଭାରେ ଉଦ୍‌ବୋଧନ (୧୮.୧୦.୧୯୬୩)



ପୁଅ ବାହାଘର ଅବସରରେ ପରିବାରବର୍ଗଙ୍କ ସହିତ

ସୁବର୍ଣ୍ଣରେଖା ନଦୀକୂଳରୁ ଆରମ୍ଭ ହୋଇଥିବା ଶ୍ରୀ ଭୂପେନ୍ ମହାପାତ୍ରଙ୍କର ଜୀବନଯାତ୍ରା ତାଙ୍କୁ ନେଇଛି ଓଡ଼ିଶା ଓ ଭାରତର ଅନେକ ସହରକୁ ଓ ଦେଇଛି ଅନୁଭୂତିର ପ୍ରାଚୁର୍ଯ୍ୟ। ସଂଘର୍ଷମୟ ଏଇ ଜୀବନରେ ମିଳିଛି ସାହିତ୍ୟସୃଷ୍ଟି ଓ ସଂସ୍କୃତି ପ୍ରେମରୁ ଅଶେଷ ସନ୍ତୋଷ ଓ ସାନ୍ତ୍ୱନା। ଗଭୀର ଜୀବନବୋଧରୁ ସଫଳତାର ସ୍ୱାଦ ଓ ବିଫଳତାର ତିକ୍ତତାକୁ ଉପଭୋଗ କରିବାର ଶକ୍ତି ସେ ଆହରଣ କରିଛନ୍ତି। ତାଙ୍କ ଆତ୍ମକଥା ବ୍ୟକ୍ତିଜୀବନର କେବଳ ଗୋଟିଏ ସ୍ୱାଦ୍ୟ ଆଖ୍ୟାନ ନୁହେଁ, ଘଟଣାବହୁଳ କାଳଖଣ୍ଡର ଏକ ଉଜ୍ଜ୍ୱଳ ଓ ଜୀବନ୍ତ ଚିତ୍ରପଟ।

